# ବିଶ୍ୱ ସାହିତ୍ୟରେ ଫକୀରମୋହନ




ଡକ୍ଟର ନୃସିଂହ ଷଡ଼ଙ୍ଗୀ

## ବିଶ୍ୱ ସାହିତ୍ୟରେ ଫକୀରମୋହନ

ଓଡ଼ିଆ ଉପନ୍ୟାସର ଆଦି ପର୍ଯ୍ୟାୟ ଫକୀର ମୋହନଙ୍କ ସାଧନା ଓ ସିଦ୍ଧି ସହ ଯେପରି ଅନ୍ତରଂଗ ସେହିପରି ଭାବନିଷ୍ଠ ମଧ୍ୟ। ତତ୍କାଳୀନ ସମାଜର ନିଖୁଣ ଚିତ୍ର, ଶୋଷଣ ପେଷଣର କାରୁଣ୍ୟ ମଧ୍ୟରେ ସମ୍ବେଦନଶୀଳ - ମାର୍ମିକ ବାର୍ତ୍ତା, ନବ୍ୟ-ସଭ୍ୟ ଶିକ୍ଷିତଙ୍କ ଆଚାର ବ୍ୟବହାର, ସଂସ୍କାର ପ୍ରୟାସୀ ମନନଶୀଳତା, ନାରୀ ଓ ପୁରୁଷ ଚରିତ୍ରର ଯଥାଯୋଗ୍ୟ ବିଚାର, ଭୂମିକେନ୍ଦ୍ରିକ - ଅର୍ଥନୈତିକ ସମସ୍ୟା, ଅନ୍ଧବିଶ୍ୱାସ ପ୍ରତି ଶାଣିତ ଦୃଷ୍ଟିଭଙ୍ଗୀ, ଫକୀର ମୋହନଙ୍କ ଉପନ୍ୟାସ ବା ଗଳ୍ପ ସମୂହର କେବଳ ଏକ ବୈଶିଷ୍ଟ୍ୟ ନୁହେଁ, ସେହିକାଳ ଠାରୁ ଏ ଯାବତ୍ ଏସବୁ ଓଡ଼ିଆ ଉପନ୍ୟାସ ଓ ଗଳ୍ପ ସାହିତ୍ୟର ଭାବ-ଭୂମିକୁ ଉଜ୍ଜୀବିତ କରିବାର ଏକ ଏକ ସାର୍ଥକ ଓ ସାମର୍ଥ୍ୟପୂର୍ଣ୍ଣ ମାଧ୍ୟମ ଭାବେ ହିଁ ଗୃହୀତ ହୋଇ ଆସିଛନ୍ତି।

ଫକୀରମୋହନଙ୍କର ଏହି ସର୍ବକାଳୀନ ପ୍ରତିଭାର ଦ୍ୟୋତନା ତେଣୁ ବିଶ୍ୱସାହିତ୍ୟ ପରିପ୍ରେକ୍ଷୀରେ ବିଚାର ହେବା ଯୁଗ ଧର୍ମ ଅନୁସାରେ ଜରୁରୀ ହୋଇ ଉଠିଛି। ସେହି ଦୃଷ୍ଟିରୁ ବିଶ୍ୱସାହିତ୍ୟରେ ଫକୀର ମୋହନଙ୍କ ସହ ତୁଳିତ ହେବା ପାଇଁ ଯେଉଁ କେତେଜଣ ପ୍ରତିଭାଧର ସାହିତ୍ୟିକଙ୍କୁ ଗ୍ରହଣ କରାଯାଏ, ସେମାନଙ୍କ ମଧ୍ୟରୁ ସର୍ବାଧିକ ସାମ୍ୟ ଦର୍ଶାଉଥିବା ଆମେରିକୀୟ ଔପନ୍ୟାସିକ ନାଥାନିଏଲ୍ ହଥର୍ଣ୍ଣଙ୍କୁ ଏହି ସନ୍ଦର୍ଭ (Ph.D Thesis) ରେ ଫକୀର ମୋହନଙ୍କ ସହ ତୁଳନା କରିବା ପାଇଁ ଯଥା ଯୋଗ୍ୟ ପ୍ରୟାସ କରାଯାଇଛି। ଏହାଦ୍ୱାରା ଫକୀର ମୋହନଙ୍କ ପ୍ରତିଭା ଯେ ବିଶ୍ୱସାହିତ୍ୟରେ ଆକଳିତ ହେବାର ମର୍ଯ୍ୟାଦାଲାଭ କରିପାରିଛି ଓ ତଦାନୁସାରେ ଓଡ଼ିଆସାହିତ୍ୟ ଗୌରବାନ୍ୱିତ ହୋଇପାରିଛି, ଏହା ନିଷ୍କଂପ ସ୍ୱରରେ କୁହାଯାଇପାରେ।

ପ୍ରଫେସର ଡକ୍ଟର ବାସୁଦେବ ସାହୁ
ବିଭାଗୀୟ ମୁଖ୍ୟ/ଓଡ଼ିଆ ବିଭାଗ/ବାଣୀବିହାର

# ବିଶ୍ୱ ସାହିତ୍ୟରେ ଫକୀରମୋହନ

ଡକ୍ଟର ନୃସିଂହ ଷଡ଼ଙ୍ଗୀ
ଏମ୍. ଏ., ପିଏଚ୍. ଡି., ଡି.ଲିଟ୍ (ଉତ୍କଳ)
ଅଧ୍ୟାପକ, ଷ୍ଟିୱାର୍ଟ ସାଇନ୍ସ କଲେଜ, କଟକ-୧



ଓଡ଼ିଶା ବୁକ୍ ଷ୍ଟୋର

# ବିଶ୍ୱ ସାହିତ୍ୟରେ ଫକୀରମୋହନ

ଡକ୍ଟର ନୃସିଂହ ଷଡ଼ଙ୍ଗୀ

ପ୍ରକାଶକ : ବିଜୟ ଶଙ୍କର ପାତ୍ର, ଓଡ଼ିଶା ବୁକ୍ ଷ୍ଟୋର, ବିନୋଦ ବିହାରୀ, କଟକ-୨, ମୁଦ୍ରଣ : ଲିପିକାର, ଝାଞ୍ଜିରିମଙ୍ଗଳା, କଟକ-୯, ପ୍ରକାଶକାଳ : ୧୯୯୧, ସ୍ୱତ୍ୱାଧିକାରିଣୀ : ଶ୍ରୀମତୀ ସ୍ନିଗ୍ଧାରାଣୀ ଷଡ଼ଙ୍ଗୀ

ମୂଲ୍ୟ . ୭୫-୦୦

## BISWA SAHITYARE FAKIRMOHAN

( Fakirmohan in world Literature )

By Prof. **Dr. Nrusingha Sarangi,** Stewart Science College, Cuttack-1. Published by **Bijoy Shankar Patra,** Binod Behari, Cuttack-2, Printed at : **Lipikar,** Jhanjirimangala, Cuttack-9, 1st Edition : **1991** © **Smt. Snigdharani Sarangi,** Price : **Rs. 75-00**

# ବିଶ୍ୱ ସାହିତ୍ୟରେ ଫକୀରମୋହନ : କାହିଁକି ? କିପରି ??

'ଫକୀରମୋହନ'—ନାମକରଣର ଏ ଦାରିଦ୍ର୍ୟ, ଫକୀରମୋହନ ବ୍ୟକ୍ତିତ୍ୱ ବା ପ୍ରତିଭା ବିସ୍ତାରରେ କୌଣସି ପ୍ରତିବନ୍ଧକ ନୁହେଁ ଯେପରି ଆଦୌ ଆନନ୍ଦିତ ନଥିବା ବ୍ୟକ୍ତିଟିର ନାମ ନିତ୍ୟାନନ୍ଦ, ଅନ୍ଧଟିର ନାମ ପଦ୍ମଲୋଚନ, ସେହିପରି ପ୍ରତିଭାର ଏପରି ପରିପୂର୍ଣ୍ଣ ବ୍ୟକ୍ତିଟିର ନାମ ଯେ ଫକୀରମୋହନ ହେବା କିଛି ଅସ୍ୱାଭାବିକ ନୁହେଁ, ଏହା ଅନ୍ତତଃ 'ଫକୀର ମୋହନ'—ଏଇ ନାମଟିର ବିଶ୍ଳେଷଣ ବେଳେ ହୃଦୟଙ୍ଗମ କରାଯାଇ ପାରେ । ଫକୀରମୋହନଙ୍କ ବ୍ୟକ୍ତିତ୍ୱ ଓ ପ୍ରତିଭାର ଦୈର୍ଘ୍ୟ ତଥା ବ୍ୟାସ ଏତେ ବ୍ୟାପକ ଯେ, ଯାହାକୁ ନାମକରଣର ଦାରିଦ୍ର୍ୟ ଭିତରେ ମାପିବାର କେବେ ଅସ୍ପର୍ଦ୍ଧା କରିବାର ନୁହେଁ । ଏହି ହାତ ନପାଉଥିବା ଲମ୍ବା ବ୍ୟକ୍ତିତ୍ୱଟିର ପ୍ରତିଭା ଯେ କେବଳ ଆନ୍ତର୍ଜାତିକ ପ୍ରତିଭା ବିସ୍ତାରରେ ଅନ୍ତର୍ଭୁକ୍ତ, ଏହା ଅନ୍ତତଃ ଲିଖିତ 'ସନ୍ଦର୍ଭ' ଟିରେ ମୋର କହିବାର କଥା ହୋଇପଡ଼ିଛି । ତେଣୁ **"ବିଶ୍ୱ ସାହିତ୍ୟରେ ଫକୀରମୋହନ"**—ଏକ ଭିନ୍ନ ମୂଲ୍ୟାୟନ ବ୍ୟତୀତ ଅନ୍ୟ କିଛି ନୁହେଁ ।

ଆଧୁନିକ ଓଡ଼ିଆ ସାହିତ୍ୟ ବିସ୍ତାରରେ ଫକୀରମୋହନ ଯେ ଆଧୁନିକ ଓଡ଼ିଆ ସାହିତ୍ୟ ଭୂଇଁଆଧାରର ସଂଭ୍ରମଶୀଳ ସ୍ରଷ୍ଟା ଓ ସମ୍ଭ୍ରାନ୍ତପୂର୍ଣ୍ଣ ଦ୍ରଷ୍ଟା, ଏହା କହିବା ଅଳ୍ପ ହୁଏତ ସେପରି କିଛି ବୈଚିତ୍ର୍ୟପୂର୍ଣ୍ଣ ନୁହେଁ । ଫକୀରମୋହନ ଓଡ଼ିଆ ସାହିତ୍ୟର ଆଲୋଚନା କ୍ଷେତ୍ରରେ ଆଜି ଚର୍ବିତ ଚର୍ବଣ ପ୍ରତିଭାଟିଏ । କିନ୍ତୁ ଏହି ପ୍ରତିଭାର ବ୍ୟାପକ ମୂଲ୍ୟାୟନ ନିଜ ଭିଟାମାଟିରେ ଆଜି ଆଉ ବହୁଳ ପରିମାଣରେ ଘଟିବା ଘଟଣାକୁ ସହଜରେ ଗ୍ରହଣ କରାଯାଇନପାରେ । ଯେତେବେଳେ ବଙ୍ଗ-ସାହିତ୍ୟର ରବୀନ୍ଦ୍ରନାଥ ବିଶ୍ୱକବି, ଉତ୍ତର-ପ୍ରଦେଶର ପ୍ରେମଚାନ୍ଦ ସର୍ବଭାରତୀୟ ସ୍ତରର କଥାସମ୍ରାଟ, ସେତେବେଳେ ବିସ୍ମୟୋଦ୍ଦୀପକ ଫକୀରମୋହନ ପ୍ରତିଭା ଓଡ଼ିଶାର ସଂକୀର୍ଣ୍ଣ ସୀମା-ବଳୟ ମଧ୍ୟରେ ଆବଦ୍ଧ ରହିବା ଅନ୍ତତଃ ଓଡ଼ିଆ ସାହିତ୍ୟ ପକ୍ଷେ ଯେ ଆଦୌ ଗର୍ବ ବା ଗୌରବର ବିଷୟ ନୁହେଁ, ଏହା ସମସ୍ତେ ହୃଦୟଙ୍ଗମ କରିବେ ନିଶ୍ଚୟ । ସବୁଠାରୁ ପରିତାପର ବିଷୟ ଏହି ଯେ; ଅଦ୍ୟାବଧି ଫକୀରମୋହନ ପ୍ରତିଭା ଓଡ଼ିଆ ସାହିତ୍ୟ ସମାଲୋଚକର ଦୃଷ୍ଟି ଟପି ଭାରତର ସୀମା ବଳୟକୁ ଅତିକ୍ରାନ୍ତ କରିପାରି ନାହିଁ । ଏପରିକି କେହି କେହି ଓଡ଼ିଆ ସାହିତ୍ୟର ସମାଲୋଚକ ଫକୀରମୋହନଙ୍କ ନାମକୁ ମାତ୍ର ଚାର୍ଲସ୍ ଡିକେନ୍ସ ଓ ଟମାସହାର୍ଡ଼ିଙ୍କ ସହ ତୁଳନା କରିଛନ୍ତି । କିନ୍ତୁ ଆନ୍ତର୍ଜାତିକ ସ୍ତରରେ ଫକୀରମୋହନଙ୍କୁ ପ୍ରତିଷ୍ଠା ଦେବାକୁ ସେମାନେ ଆଦୌ ଚେଷ୍ଟା ହିଁ କରିନାହାନ୍ତି । ଏପରିକି ବିଶ୍ୱସାହିତ୍ୟର କେଉଁ କେଉଁ ପ୍ରଭାବଶାଳୀ ସାହିତ୍ୟିକଙ୍କ ପ୍ରତିଭାସହ ଫକୀରମୋହନଙ୍କୁ ତୁଳନା କରାଯାଇପାରେ ସେ ପ୍ରକାର ଅନ୍ୱେଷା ମଧ୍ୟ ହୋଇଥିବାର ଲକ୍ଷ୍ୟ କରାଯାଏ ନାହିଁ ।

ଫକୀରମୋହନଙ୍କୁ ବିଶ୍ୱ ସାହିତ୍ୟରେ ପ୍ରତିଷ୍ଠା ଦେବାପାଇଁ ଏହି ଗ୍ରନ୍ଥଟି ପ୍ରସ୍ତୁତ କଲାବେଳେ, ଅନ୍ତତଃ ଏକଥାକୁ ସ୍ୱୀକାର କରୁଛି ଯେ, ଫକୀରମୋହନ ଆପଣାର ବିସ୍ମୟୋଦ୍ଦୀପକ ପ୍ରତିଭା ବଳରେ ଆପେ ଆପେ ବିଶ୍ୱସାହିତ୍ୟର ଦୃଷ୍ଟି ଆକର୍ଷିତ ହୋଇପାରିଛନ୍ତି । ସେଥିପାଇଁ ତାଙ୍କ ଉପରେ ଗବେଷଣାକରି ସର୍ବପ୍ରଥମ ବିଦେଶୀ ଗବେଷକ ଜନ୍ ବୋଲ୍ଟନ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଉପାଧି ଲାଭ କରିପାରିଛନ୍ତି । ତେଣୁ ଫକୀରମୋହନଙ୍କୁ ମୁଁ ତୁଳନାତ୍ମକ ଭାବେ ଏହି ଗ୍ରନ୍ଥଟିରେ ଉପସ୍ଥାପିତ କରିବା ପୂର୍ବରୁ ଫକୀରମୋହନ ଯେ ବିଶ୍ୱ ସାହିତ୍ୟରେ ନିଜର ଏକ ନିର୍ଦ୍ଦିଷ୍ଟ ସ୍ଥାନ ଅକ୍ତିଆର କରିନେଇଛନ୍ତି, ଏହା ବିନାଦ୍ୱିଧାରେ କୁହାଯାଇପାରେ । ତେଣୁ ଏହି ଗ୍ରନ୍ଥଟିର ନାମକରଣ 'ବିଶ୍ୱସାହିତ୍ୟରେ ଫକୀରମୋହନ' ହେବା ବେଶ୍ ସମୀଚୀନ ତଥା ସଙ୍ଗତ ମନେହୁଏ ।

ଫକୀରମୋହନ ବିଶ୍ୱ ସାହିତ୍ୟରେ ଆକଳିତ ହେବାବେଳେ ସେ ଯେ, କେତେକାଂଶରେ ଚାର୍ଲସ ଡ଼ିକେନ୍ସ ଓ ସମ୍ପୂର୍ଣ୍ଣଭାବେ ମାର୍କିନ ଔପନ୍ୟାସିକ ନାଥାନିଏଲ୍ ହଥର୍ଣ୍ଣଙ୍କ ସହ ତୁଳନୀୟ ଏହା ଅନ୍ତତଃ ଏହି ଗ୍ରନ୍ଥଟିରେ ମୁଁ ସ୍ପଷ୍ଟ କରିଦେଇଛି । ଆଲୋଚ୍ୟ ଗ୍ରନ୍ଥଟିରେ ବିଶ୍ୱସାହିତ୍ୟ ପରିପ୍ରେକ୍ଷୀରେ ଫକୀରମୋହନଙ୍କୁ ଆଲୋଚନା କରିବାପାଇଁ ପରିସର ସୃଷ୍ଟି କରାଯାଇ ନାହିଁ; ବରଂ ବିଶ୍ୱସାହିତ୍ୟରେ ଫକୀରମୋହନଙ୍କୁ ପ୍ରତିଷ୍ଠା ଦେବାପାଇଁ ଗମ୍ଭୀର ଭାବେ ପ୍ରୟାସ କରାଯାଇଛି । ଏହି ପ୍ରୟାସକୁ ଚରିତାର୍ଥ କରିବା ପାଇଁ ମୁଁ ବିଶ୍ୱ ସାହିତ୍ୟରେ ପ୍ରତିଷ୍ଠିତ ମାର୍କିନ ଔପନ୍ୟାସିକ ହଥର୍ଣ୍ଣଙ୍କୁ ଏକ ମାଧ୍ୟମ ଭାବେ ଗ୍ରହଣ କରିଛି ଓ ସେହି ମାଧ୍ୟମକୁ ସମ୍ବଳ କରି ଫକୀରମୋହନଙ୍କୁ ତଉଲିଛି । ତେଣୁ **"ବିଶ୍ୱ ସାହିତ୍ୟରେ ଫକୀରମୋହନ"** ବସ୍ତୁତଃ ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣଙ୍କ ସହ ଫକୀରମୋହନଙ୍କର ଏକ ତୁଳନାତ୍ମକ ବିଭବଟିଏ ମାତ୍ର ।

ଗ୍ରନ୍ଥଟିର ପ୍ରକାଶ ପାଇଁ ଓଡ଼ିଶା ବୁକ୍ ଷ୍ଟୋରର ସତ୍ତ୍ୱାଧିକାରୀ ଶ୍ରୀଯୁକ୍ତ ଗୋବିନ୍ଦ ଚରଣ ପାତ୍ର ଓ ବନ୍ଧୁ ବିଜୟ ଶଙ୍କର ପାତ୍ରଙ୍କ ଆନ୍ତରିକ ଉଦ୍ୟମ ଓ ଅନୁରାଗ ଏହି ପରିପ୍ରେକ୍ଷୀରେ ମୁଁ ସ୍ମରଣ କରୁଛି । ଶ୍ରୀଯୁକ୍ତ ଫଠୋଣି ପଟ୍ଟନାୟକ, ସ୍ୱର୍ଗତ ପ୍ରଫେସର ଡଃ ଗୋପାଳ ଚନ୍ଦ୍ର ମିଶ୍ର, ଡଃ ଦେବେନ୍ଦ୍ର ମହାନ୍ତି, ଡଃ ଗଙ୍ଗାଧର ବଳ, ଡଃ ଆଶୁତୋଷ ପଟ୍ଟନାୟକ, ଡଃ ପ୍ରଫୁଲ୍ଲ ମହାନ୍ତି ଓ ଡଃ ଅସିତ୍ କବିଙ୍କ ପ୍ରେରଣା ସନ୍ଦର୍ଭଟିର ସୃଷ୍ଟି କ୍ଷେତ୍ରରେ ମୋ ପାଇଁ ଅବିସ୍ମରଣୀୟ । ସେମାନଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛି ।

ପରିଶେଷରେ ନିରବଧି କାଳର ସ୍ରୋତପଥରେ ଏହି ଗ୍ରନ୍ଥଟି ଫକୀରମୋହନଙ୍କ ଗୁଣମୁଗ୍ଧ ପାଠକ, ବିଜ୍ଞ ଗବେଷକ ଓ ବିଶିଷ୍ଟ ସୁଧୀ ସମାଜ ଦ୍ୱାରା ଆଦୃତ ହେଲେ ଓ ଓଡ଼ିଆ ସାହିତ୍ୟ ପାଇଁ କିଛି ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିପାରିଲେ ଶ୍ରମ ମୋର ସାର୍ଥକ ମଣିବି ।

ମହାବିଷୁବ ସଂକ୍ରାନ୍ତି, ୧୯୯୧ — **ନୃସିଂହ ଷଡ଼ଙ୍ଗୀ**

# ସୂଚୀ

## ପରିଚ୍ଛେଦ : ଏକ — ପୃଷ୍ଠା ୧-୩୭



## ପରିଚ୍ଛେଦ : ଦୁଇ — ପୃଷ୍ଠା ୩୮-୮୬



## ପରିଚ୍ଛେଦ : ତିନି — ପୃଷ୍ଠା ୮୭-୧୯୦

(କ) ହଥର୍ଣ୍ଣ
(ଖ) ଫକୀରମୋହନ

ହଥର୍ଣ୍ଣ ଓ ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟିର ମୂଲ୍ୟାଙ୍କନ ଓ ସାହିତ୍ୟିକ ଜୀବନର ସମୀକ୍ଷା :

( କବିତା, ଅନୁବାଦ, ଗଦ୍ୟ-ଉପନ୍ୟାସ, ଗଳ୍ପ )

(କ) ଔପନ୍ୟାସିକ ହଥର୍ଣ୍ଣ ଓ ତାଙ୍କ ସାହିତ୍ୟ
(ଖ) ଔପନ୍ୟାସିକ ଫକୀରମୋହନ ଓ ତାଙ୍କ ସାହିତ୍ୟ

## ପରିଚ୍ଛେଦ : ଚାରି



ଔପନ୍ୟାସିକ ହଥର୍ଣ୍ଣ ଓ ଫକୀରମୋହନଙ୍କ ଉପନ୍ୟାସ ସୃଷ୍ଟିରେ ଚିନ୍ତା ଓ ଚେତନାର ସାମଞ୍ଜସ୍ୟ ଓ ପାର୍ଥକ୍ୟ :

(କ) ସାମଞ୍ଜସ୍ୟ
(ଖ) ପାର୍ଥକ୍ୟ

ତୁଳନାତ୍ମକ ବିଚାରଧାରାରେ—ହଥର୍ଣ୍ଣଙ୍କ ଉପନ୍ୟାସ—"The House of the Seven Gables" ଓ ଫକୀରମୋହନଙ୍କ ଉପନ୍ୟାସ—"ଛ'ମାଣ ଆଠଗୁଣ୍ଠ"

(କ) ବିଷୟବସ୍ତୁ ଦୃଷ୍ଟିରୁ ( ଭୂମିକେନ୍ଦ୍ରିକ ଚିନ୍ତାଧାରା )
(ଖ) ଶୈଳୀ ଦୃଷ୍ଟିରୁ
(ଗ) ସମସ୍ୟା ଦୃଷ୍ଟିରୁ
(ଘ) ସାମାଜିକ ଚେତନା ଦୃଷ୍ଟିରୁ
(ଙ) ସାହିତ୍ୟିକ ମୂଲ୍ୟବୋଧ ଦୃଷ୍ଟିରୁ
(ଚ) କାଳଗତ ଚିରନ୍ତନତା ଦୃଷ୍ଟିରୁ
(ଛ) ଚରିତ୍ର ବିଚାର ଦୃଷ୍ଟିରୁ

## ପରିଚ୍ଛେଦ : ପାଞ୍ଚ



ଔପନ୍ୟାସିକ ହଥର୍ଣ୍ଣ ଓ ଔପନ୍ୟାସିକ ଫକୀରମୋହନଙ୍କ ଅନ୍ୟାନ୍ୟ ଉପନ୍ୟାସରେ ସମନ୍ୱୟବାଦ ଓ ତୁଳନାତ୍ମକ ବିଚାରବୋଧ :

(କ) ହଥର୍ଣ୍ଣଙ୍କ ଉପନ୍ୟାସ—'The Scarlet Letter'
'Blithadale Romance'
'The Marble Faun'
(ଖ) ଫକୀରମୋହନଙ୍କ ଉପନ୍ୟାସ—'ଲଛମା', 'ମାମୁଁ', 'ପ୍ରାୟଶ୍ଚିତ୍ତ'

□ □ □

# ପ୍ରସ୍ତାବନା

ସେଣ୍ଟ ଅଗଷ୍ଟାଇନ୍ ଥରେ କହିଥିଲେ—"ପୃଥିବୀ ଗୋଟିଏ ବିରାଟ ଗ୍ରନ୍ଥ । ଯେଉଁମାନେ ଘରୁ ଗୋଡ଼ କାଢ଼ି ନାହାନ୍ତି, ସେମାନେ ଏହି ବିଶାଳ ଗ୍ରନ୍ଥରୁ ଗୋଟିଏ ପୃଷ୍ଠା ଅଧ୍ୟୟନ କରିଛନ୍ତି ।" * ଏହି ଉକ୍ତିକୁ ଅଧିକ କବିତ୍ୱପୂର୍ଣ୍ଣ କରି ଏ ଯୁଗର କାବ୍ୟଗୁରୁ ରବୀନ୍ଦ୍ରନାଥ ଠାକୁର କହିଥିଲେ—"ପୃଥିବୀରେ ଗୋଟିଏ ମାତ୍ର ବହି ଅଛି, ଯାହାର ନାମ ଦୁଇଟି ପୃଷ୍ଠାର ବହି । ସେ ବହିର ଗୋଟିଏ ପୃଷ୍ଠା ଆକାଶ ଓ ଅପର ପୃଷ୍ଠାଟି ପୃଥିବୀ । ଏ ଦୁଇଟି ପୃଷ୍ଠାକୁ ସମଗ୍ର ଜୀବନ ବିନିମୟରେ ପଢ଼ାଯାଇପାରେ ।" **

ଏହି ନ୍ୟାୟରେ କୁହାଯାଇପାରେ ସାହିତ୍ୟର କ୍ଷେତ୍ର ଓ ଶିକ୍ଷାର କ୍ଷେତ୍ର ଏତେ ପ୍ରଶସ୍ତ ଯେ, ଏହାକୁ ସମଗ୍ର ଜୀବନ ବିନିମୟରେ ହିଁ ଅଧ୍ୟୟନ କରାଯାଇପାରେ । ମାତ୍ର ମଣିଷର ମନୋଭାବ ସାମ୍ପ୍ରତିକ କାଳରେ, ଧର୍ମ, ସମାଜ ଓ ରାଷ୍ଟ୍ର ଦୃଷ୍ଟିରୁ ଏତେ ସଂକୀର୍ଣ୍ଣ ହୋଇଯାଇଛି ଯେ, ତା'ର ମାନସିକ ସ୍ଥିତି କେବଳ ସ୍ୱଦେଶ ଓ ସ୍ୱଭାଷାରେ ବନ୍ଦୀ ହୋଇପଡ଼ିଛି । ନିଜସ୍ୱ ସାମଗ୍ରୀକୁ ନେଇ ମଣିଷ ଅହଂ କରି ଶିଖିଛି; କିନ୍ତୁ ଏହାର ମୂଲ୍ୟାୟନ ସମ୍ପର୍କରେ ସେ କ'ଣ ସଚେଷ୍ଟ ? ଆଜି ଏ ପ୍ରଶ୍ନର ସମାଧାନ ନିଜ ଦେଶର ସାହିତ୍ୟର ମୂଲ୍ୟାୟନରେ ନୁହେଁ କିମ୍ବା ନିଜ ଦେଶର ସାମଗ୍ରୀର ସ୍ତାବକତାରେ ନୁହେଁ, ବରଂ ଅପର ଦେଶର ସାହିତ୍ୟ ସହ, ଅପର ଦେଶର ସାମଗ୍ରୀ ସହ ତୁଳନାତ୍ମକ ବିଚାର-ବୋଧରେ ଏହାର ସମାଧାନ ଅଛି । କିନ୍ତୁ ସାମ୍ପ୍ରତିକ କାଳର ମଣିଷ ଏ ପ୍ରତି ଆଦୌ ସଚେତନ ନୁହେଁ । ଯେଉଁଥିପାଇଁ ଆମ ଦେଶର ବା ଆମ ଭାଷାର ଅନେକ ପ୍ରଚଣ୍ଡ ପ୍ରତିଭାଙ୍କର ଉଚିତ୍ ମୂଲ୍ୟାୟନ ହୋଇପାରୁ ନାହିଁ ।

ଓଡ଼ିଆ ସାହିତ୍ୟର ଅନ୍ୟତମ ପ୍ରତିଭାଧର କବି ଡଃ ମାୟାଧର ମାନସିଂହ ଇଂରାଜୀ ସାହିତ୍ୟର ଅଧ୍ୟାପକ ଥିଲେ । କିନ୍ତୁ ତାଙ୍କର ମନ ଓ ଚେତନାରେ ଅଧ୍ୟାପନାର ପ୍ରବାହ

---

* **The world is a great book of which they who never stir from home read only a page. (Augstine)**

** ଡଃ କୃଷ୍ଣଚରଣ ଦାଶ, ଆଧୁନିକ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକା—ପୃ—୨୪ ।

ଅପେକ୍ଷା ଜଣେ ସାହିତ୍ୟିକର ଚିନ୍ତା ଅଧିକ ମାତ୍ରାରେ ପ୍ରବାହିତ ହୋଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଅଧ୍ୟାପକର କର୍ତ୍ତବ୍ୟବୋଧରେ ଓ ଅନୁସନ୍ଧାନ ବା ଗବେଷଣାର ପ୍ରଚ୍ଛନ୍ନ ମୋହରେ ସେ ହୁଏତ 'କାଳିଦାସ ଓ ସେକ୍ସପିଅର'ଙ୍କ ଉପରେ ଏକ ତୁଳନାତ୍ମକ ସନ୍ଦର୍ଭ ଲେଖିଥିଲେ ଏବଂ ଡାର୍‌ହାମ୍ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡ଼ି, ଉପାଧି ପାଇଥିଲେ । ଜଣେ ଗବେଷକ ପାଇଁ ଗବେଷଣାତ୍ମକ ଦୃଷ୍ଟି ହିଁ ଯଥେଷ୍ଟ । ମାତ୍ର ଜଣେ ସାହିତ୍ୟ ଗବେଷକ ପକ୍ଷେ ଗବେଷଣାର କ୍ଷେତ୍ର ନିର୍ବାଚନ ତା'ର ଉନ୍ନତ ଚିନ୍ତାଧାରାର ପରିଚୟ ବହନ କରେ । ଓଡ଼ିଆ ସାହିତ୍ୟ ଓ ଇଂରାଜୀ ସାହିତ୍ୟରେ ଅନେକ ଗବେଷଣାତ୍ମକ ନିବନ୍ଧ ଲେଖାହୋଇଛି; ମାତ୍ର ଏସବୁ ସେହି ଗତାନୁଗତିକତାର ଗଣ୍ଡିଗୁଡ଼ିକରେ ମାଡ଼ିଗଲାଛି । ନିଜ ଦେଶର ସାହିତ୍ୟ ବା ସାହିତ୍ୟିକମାନଙ୍କ ସହ ଅପରଦେଶର ସାହିତ୍ୟ ବା ସାହିତ୍ୟିକ-ମାନଙ୍କର ତୁଳନାତ୍ମକ ଅଧ୍ୟୟନ ପ୍ରତି କେହି ସଚେଷ୍ଟ ନୁହନ୍ତି । 'ଏହା ଅବଶ୍ୟ କଷ୍ଟସାଧ୍ୟ । ମାତ୍ର ଜଣେ ଗବେଷକ ପାଇଁ 'କଷ୍ଟ' ଶବ୍ଦ ଉଚ୍ଚାରଣ ତା'ର ଅପାରଗତାର ପରିଚୟ ବ୍ୟତୀତ ଅନ୍ୟକିଛି ନୁହେଁ । ଅବଶ୍ୟ ଏକଥା କୁହାଯାଇପାରେ ଯେ, ଗବେଷକ ନିଜର ସୁବିଧାନୁସାରେ ଗବେଷଣା କରିବାର କ୍ଷେତ୍ର (Topic) ନିର୍ବାଚନ କରେ । ଏହା ତା'ର ନିଜସ୍ୱ । କିନ୍ତୁ ତା'ର ଏହି ନିଜସ୍ୱ ରୁଚିବୋଧ କେତେଦୂର ଯଥାର୍ଥ ବା ତା'ର ସୁବିଧାବାଦୀ ତା'ର ପରିଗ୍ରହକ ମନୋବୃତ୍ତିର, ତାହା ଲକ୍ଷ୍ୟ କରିବାର କଥା ।

ଗବେଷକ ନୂତନ ତଥ୍ୟର ସନ୍ଧାନୀ । ବସ୍ତୁ ଅନ୍ତରାଳରେ ଥିବା ଉପାଦାନ ଓ ତଥ୍ୟକୁ ସେ ଗବେଷଣା ମାଧ୍ୟମରେ ପ୍ରତିପାଦନ କରି ସ୍ୱ-ଯୁକ୍ତିର ଯଥାର୍ଥତା ଦର୍ଶାଏ, —ଏହାହିଁ ତା' ଗବେଷକ ଜୀବନର ସାର୍ଥକତା । କିନ୍ତୁ ଚରମ ସାର୍ଥକତା ଆସେ ଗବେଷକ ପାଇଁ, ଯେତେବେଳେ ସେ ନିଜ ଦେଶରୁ ଗବେଷକ ଦୃଷ୍ଟି ନେଇ ଅପର ଦେଶରେ ଅଜଣା ଅନୁସନ୍ଧାନରେ ବ୍ୟସ୍ତ ରହେ ଏବଂ ବହୁ ନୂତନ ତଥ୍ୟ ପାଠକ ସମାଜରେ ଉପସ୍ଥାପନା କରେ, ନିଜର ସାହିତ୍ୟର ବଳିଷ୍ଠତା, ପ୍ରାଚୀନତା ଓ ଚିରନ୍ତନତାକୁ ପ୍ରତିପାଦନ କରିବାକୁ ଯାଇ ଅନ୍ୟ ସାହିତ୍ୟ ସହ ତା'ର ତୁଳନା କରେ । ଏହି ଦୃଷ୍ଟିରୁ ବିଚାର କଲେ ଅଦ୍ୟାବଧି ଓଡ଼ିଆ ସାହିତ୍ୟରେ ଏ ପ୍ରୟାସ ହୋଇନାହିଁ । କେବଳ ଡଃ ମାୟାଧର ମାନସିଂହ ଇଂରାଜୀ ଭାଷାରେ "ସେକ୍‌ସପିଅର ଓ କାଳିଦାସ"ଙ୍କ ଉପରେ ଏକ ତୁଳନାତ୍ମକ ଅଧ୍ୟୟନଧର୍ମୀ ସନ୍ଦର୍ଭ ଲେଖି ସ୍ୱଦେଶର ଜଣେ ମହାନ କବିଙ୍କ ସହ ପାଶ୍ଚାତ୍ୟ ଜଗତର ଜଣେ ସାହିତ୍ୟିକଙ୍କୁ ମୂଲ୍ୟାୟନ କରିଛନ୍ତି । ଏଥିରେ ସେ ପ୍ରମାଣିତ କରିଅଛନ୍ତି ଯେ, ପ୍ରାଚ୍ୟ ସାହିତ୍ୟ ପାଶ୍ଚାତ୍ୟ ସାହିତ୍ୟ ପରି ମଧ୍ୟ ବଳିଷ୍ଠ ଚେତନାର ପରିଗ୍ରହକ ।

ଆଜି ଡଃ ମାନସିଂହଙ୍କର ଏହି ଅମୂଲ୍ୟ କୃତି ଆମ ଗବେଷଣା ଜଗତର ଏକ ପରମ ସମ୍ପଦ । ତାଙ୍କର ଆଦର୍ଶ ଓ ନିଜସ୍ୱ ଚିନ୍ତାଧାରାର ସମନ୍ୱୟରେ ମୁଁ ଆଜି "ଫକୀରମୋହନ ଓ ହାର୍ଡି"ଙ୍କ ଉପରେ ଏହି ତୁଳନାତ୍ମକ ସନ୍ଦର୍ଭ ଲେଖିଛି । ଏଥିରେ ମୁଁ ଆମ ଉପନ୍ୟାସର

ସାହିତ୍ୟ ଜନକ ତଥା ଯୁଗସ୍ରଷ୍ଟା ସାହିତ୍ୟିକ ଫକୀରମୋହନଙ୍କ ସହ ଆମେରିକୀୟ ଉପନ୍ୟାସ ଜଗତର ଜଣେ ଖ୍ୟାତନାମା ଔପନ୍ୟାସିକ ତଥା ଗାଳ୍ପିକ ନାଥିନିଏଲ୍ ହଥର୍ଣ୍ଣଙ୍କୁ ନାନା ଦୃଷ୍ଟିରୁ ତୁଳନା କରିଛି । ମୋର ଏହି ତୁଳନାତ୍ମକ ଅଧ୍ୟୟନ ଯେନତେନ ପ୍ରକାରେଣ ଏକ ସମାଧାନ ନୁହେଁ, ଏଥିରେ ଅଛି ମୋରବ ଦୁଃସାହସିକତାର ଜନିତ ପ୍ରଚେଷ୍ଟା ଓ ଅନେକ ଅପ୍ରାପ୍ତ, ଅନୁଦ୍‌ଘାଟିତ ତଥ୍ୟର ଉପସ୍ଥାପନା ।

ଆମେରିକୀୟ ସାହିତ୍ୟରେ ଓଡ଼ିଆ ସାହିତ୍ୟର କି ପ୍ରକାର ସମନ୍ୱୟ, ରହିଛି ତାହା ମୁଁ ପ୍ରଥମେ ଆଲୋଚନା କରି ପରେ ଆଲୋଚନା କରିଛି ଏହି ସାହିତ୍ୟର ଦୁଇ କର୍ଣ୍ଣଧାରଙ୍କ ସମ୍ପର୍କରେ । ହଥର୍ଣ୍ଣଙ୍କ ସାହିତ୍ୟିକ କାଳ, ଜନ୍ମଜାତକ ବିଗ୍ରହ, ସାହିତ୍ୟିକ ଶୈଳୀ ସହ ଔପନ୍ୟାସିକ ଫକୀରମୋହନଙ୍କର ଯେ ଏକ ନିର୍ଦ୍ଦିଷ୍ଟ ସମ୍ପର୍କ ଅଛି, ତାହା ମୁଁ ଏହି ନିବନ୍ଧରେ ତୁଳନାତ୍ମକଭାବେ ଆଲୋଚନା କରିଛି । ଏହି ଦୁଇ ଔପନ୍ୟାସିକଙ୍କର ଅନେକ କ୍ଷେତ୍ରରେ ବହୁ ସାମଞ୍ଜସ୍ୟ ଓ ବୈଚିତ୍ର୍ୟ ମଧ୍ୟ ପରିଲକ୍ଷିତ ହୋଇଛି । ସେ ସବୁକୁ ମୁଁ ଯଥାର୍ଥ ଯୁକ୍ତି ଦର୍ଶାଇ ଆଲୋଚନା କରିଛି । ଏଥିରେ ମୁଁ ଫକୀରମୋହନଙ୍କୁ କିମ୍ବା ହଥର୍ଣ୍ଣଙ୍କୁ ପରସ୍ପରଠାରୁ ଆହରଣ କରିଥିବା କଥା ଉଲ୍ଲେଖ କରିନାହିଁ, କାରଣ ଏ ନିବନ୍ଧ ଉଭୟ ଔପନ୍ୟାସିକଙ୍କ ତୁଳନାତ୍ମକ ବିଗ୍ରହ କରିବା ପାଇଁ ଉଦ୍ଦିଷ୍ଟ । ଏହା ବ୍ୟତୀତ ଏହି ଦୁଇ ଔପନ୍ୟାସିକ ନିଜ ନିଜର ସାହିତ୍ୟ କ୍ଷେତ୍ରରେ ଏଭଳି ପ୍ରଭାବଶାଳୀ ଯେ, ସେଠାରେ ମୌଳିକତା ବ୍ୟତୀତ ଆହରଣ, ଅନୁକରଣର ପ୍ରଶ୍ନ ଉଠି ନପାରେ । କିନ୍ତୁ ଉଭୟଙ୍କର ଚେତନାପ୍ରବାହ, କଥାବସ୍ତୁ ନିର୍ବାଚନ, କାଳଗତ ମୂଲ୍ୟବୋଧର ସାମ୍ୟ—ଦେଶ, ଓ ଭାଷାର ପୃଥକ୍ ସତ୍ତ୍ୱେ କିଭଳି ଏକା ଏକା ଭଳି ବୋଧହୁଏ, ତାହା ଏଠାରେ ଦର୍ଶାଯାଇଛି ।

ଅନେକ ସମୟରେ ପାଠକ ଅନୁଭବ କରେ, ସେ ଯାହା ପାଠକରୁଛି, ତାହା ଅନ୍ୟ କେଉଁ ସାହିତ୍ୟିକର ଯେପରି । ସେ ପାଠକରୁଥିବା ସାହିତ୍ୟ ଏବଂ ଏହାକୁ ଅନ୍ୟ ସାହିତ୍ୟ ଭିତରେ ଅନୁଭବ କରିବାର ଭାବ ହେଉଛି ଭିନ୍ନ । ଏ ଦୁଇକଥାବସ୍ତୁ ଏକ ହୋଇ-ନପାରେ । କିନ୍ତୁ ପାଠକ ମନକୁ ଏହା ଏଭଳିପରି ଲାଗେ କିପରି ? ଏହାର କାରଣ ହେଉଛି ଏହି ଦୁଇ ସାହିତ୍ୟିକଙ୍କ ସୃଷ୍ଟିସମ୍ପଦରେ ଅନେକତ୍ର ସାମ୍ୟ ପରିଲକ୍ଷିତ ହୁଏ; ଯେଉଁଥିପ୍ରତି ସମକାଳୀନ ଉଭୟ ସ୍ରଷ୍ଟା ଆଦୌ ସଚେତନ ନଥାନ୍ତି । ଉଭୟଙ୍କ ସୃଷ୍ଟିର ଏପ୍ରକାର ସାମ୍ୟପାଇଁ ପରସ୍ପର ଦେଶର ପରିସ୍ଥିତି ଓ ପରିବେଶ ଅନେକତଃ ଦାୟୀ । ଫକୀରମୋହନ ଓ ହଥର୍ଣ୍ଣଙ୍କ ସାହିତ୍ୟ ଏହି ଦୃଷ୍ଟିରୁ ବିଗ୍ରହ୍ୟ ।

ଯେତେବେଳେ ଆମେରିକାର ତେରଟି ଉପନିବେଶ ଇଂରେଜ କବ୍‌ଜାରୁ ମୁକ୍ତ ନୁହେଁ, ଦେଶରେ ଅସନ୍ତୋଷର ବହ୍ନି ଜଳିଉଠୁଛି, ସେହି ସମୟରେ ଏହାର ପ୍ରଭାବ ପଡ଼ିଛି ଆମେରିକାର ଅନେକ ଔପନ୍ୟାସିକଙ୍କ ଉପରେ; ଯେଉଁଥିରୁ ଅନ୍ୟତମ ହେଉଛନ୍ତି ଔପନ୍ୟାସିକ ହଥର୍ଣ୍ଣ । ହଥର୍ଣ୍ଣ ସେ କାଳର ଶାସନତନ୍ତ୍ରର ଓ ପ୍ରଭାବଶାଳୀ ବ୍ୟକ୍ତିବିଶେଷଙ୍କର

ଶୋଷଣ, ପେଷଣକୁ ଅତି ମର୍ମାନ୍ତିକ ଓ ଜୀବନ୍ତ ଭାବରେ ବର୍ଣ୍ଣନା କରିଛନ୍ତି ତାଙ୍କ ସାହିତ୍ୟରେ । ଔପନ୍ୟାସିକ ଫକୀରମୋହନ ମଧ୍ୟ ସେ ଦୃଷ୍ଟିରୁ ହାର୍ଡିଙ୍କ ସହ ତୁଳନୀୟ । ପରାଧୀନ ଭାରତବର୍ଷ, ପୁଣି ଏକ ପ୍ରଦେଶହୀନ ଉତ୍କଳ ପ୍ରଦେଶର ଦୟନୀୟ ଚିତ୍ର ଫକୀରମୋହନଙ୍କୁ ପ୍ରଭାବିତ କରିଛି । ଓଡ଼ିଶାର ନ'ଅଙ୍କ ଦୁର୍ଭିକ୍ଷ, ଭାଷାବିଲୋପ ଆନ୍ଦୋଳନ ଓ ଶୋଷଣକାରୀ କତିପୟ ଜମିଦାରମାନଙ୍କର ଶୋଷଣର ଭୟାବହତା ଫକୀରମୋହନଙ୍କ ସାହିତ୍ୟିକ ଚେତନାକୁ ସ୍ପର୍ଶ କରିଛି । ତେଣୁ ସେ ମଧ୍ୟ ତାଙ୍କ ସାହିତ୍ୟରେ ଏହି ଶୋଷଣ, ପେଷଣ, ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ବିଶେଷକରି ଭୂମିକୈନ୍ଦ୍ରିକ ଚିନ୍ତାଧାରା ହେତୁ ହାର୍ଡି ଓ ଫକୀରମୋହନ ନିଜ ନିଜ ସାହିତ୍ୟରେ ଅନେକ ସାମଞ୍ଜସ୍ୟ ଦର୍ଶାଇ ପାରିଛନ୍ତି । କେବଳ ଏତିକି ନୁହେଁ ଶୈଳୀ, ବର୍ଣ୍ଣନା, ଚରିତ୍ର, କାଳଗତ ଚିରନ୍ତନତା ଦୃଷ୍ଟିରୁ ଏହି ଦୁଇ ଔପନ୍ୟାସିକଙ୍କ ସୃଷ୍ଟିରେ ଅନେକ ସାମ୍ୟ ପରିଲକ୍ଷିତ ହୁଏ ।

ମୋଟାମୋଟି ଭାବେ ମୁଁ ଆମ ସାହିତ୍ୟ ଜଗତର ଜଣେ ପ୍ରତିନିଧିଶ୍ରେଣୀୟ ଔପନ୍ୟାସିକ ଓ ପାଶ୍ଚାତ୍ୟ ସାହିତ୍ୟ ଜଗତର ଜଣେ ପ୍ରତିନିଧିଶ୍ରେଣୀୟ ଔପନ୍ୟାସିକଙ୍କୁ ନେଇ ଏହି ତୁଳନାତ୍ମକ ସନ୍ଦର୍ଭ ଲେଖିବାର ଉଦ୍ଦେଶ୍ୟ ଅନ୍ତରାଳରେ ରହିଛି ଆମ ଦେଶର ଓ ଆମ ଭାଷାର ଉପନ୍ୟାସ ଜଗତର ଦୃଢ଼ ଭିତ୍ତି ପ୍ରତିପାଦିତ କରିବା ଓ ବଳିଷ୍ଠତାକୁ ପ୍ରମାଣିତ କରିବା । ମୋର ଏହି ଉଦ୍ଦେଶ୍ୟକୁ ଯଦି ସହୃଦୟ ପାଠକ, ଗବେଷକ, ସମାଲୋଚକ ଓ ନିରୀକ୍ଷକ ଯଥାର୍ଥ ଦୃଷ୍ଟିରେ ଦେଖିବେ, ତେବେ ମୋର ନୁହେଁ, ଓଡ଼ିଆ ସାହିତ୍ୟର ପ୍ରକୃତ ସ୍ୱରୂପ ବିଶେଷକରି କଥାସମ୍ରାଟ ଫକୀରମୋହନଙ୍କର ଉନ୍ନତ ସାହିତ୍ୟିକ ଭାବର ପ୍ରକୃଷ୍ଟ ପରିଚୟ ମିଳିପାରିବ । □□□

# ଆମେରିକାର ରାଜନୈତିକ ପରିସ୍ଥିତି ଓ ସାହିତ୍ୟିକ ବିକାଶ

## (କ) ରାଜନୈତିକ ପରିସ୍ଥିତି :

ଆମେରିକାର ସାହିତ୍ୟ ତା'ର ରାଜନୀତି ଦ୍ୱାରା ବହୁମାତ୍ରାରେ ପ୍ରଭାବିତ । ସେଥିପାଇଁ ଏହାର ସାହିତ୍ୟର ଇତିହାସ ଆଲୋଚନା କରିବା ପୂର୍ବରୁ ଏହାର ରାଜନୈତିକ ଇତିହାସକୁ ସମ୍ୟକ୍ ଅନୁଧ୍ୟାନ କରିବା ଉଚିତ୍ ।

ଭାରତ ଆବିଷ୍କାର କରିବା ଉଦ୍ଦେଶ୍ୟରେ କଲମ୍ବସ୍ ସ୍ପେନ୍ ସମ୍ରାଟ୍ ଫର୍ଡିନାଣ୍ଡ ଓ ରାଣୀ ଇସାବେଲଙ୍କ ଠାରୁ ଜାହାଜ ଓ ଅର୍ଥ ସାହାଯ୍ୟ ପାଇ ୧୪୯୨ ଖ୍ରୀଷ୍ଟାବ୍ଦରେ ନୌଯାତ୍ରା ଆରମ୍ଭ କରିଥିଲେ । ବିଶାଳ ମହୋଦଧି ବକ୍ଷରେ ତିନିଗୋଟି ଜାହାଜ ଚଳାଇ ପ୍ରାୟ ଦୁଇ ମାସ ପରେ ସେ ଆଟଲାଣ୍ଟିକ ମହାସାଗରସ୍ଥିତ ବାହାମା ଓ କ୍ୟୁବା ପ୍ରଭୃତି ଦ୍ୱୀପପୁଞ୍ଜ ଆବିଷ୍କାର କରିଥିଲେ । ଏହାପରେ ସେ ତିନିଥର ଜଳଯାତ୍ରା କରି ଆମେରିକାର ନିକଟବର୍ତ୍ତୀ ଅନ୍ୟକେତେକ ଦ୍ୱୀପ ଆବିଷ୍କାର କରିଥିଲେ । କିନ୍ତୁ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କର ଏକ ଭ୍ରାନ୍ତ ଓ ଦୃଢ଼ ଧାରଣା ଥିଲା ଯେ, ସେ ଭାରତ ଆବିଷ୍କାର କରିଛନ୍ତି । ତେଣୁ ସେ ତାଙ୍କ ଆବିଷ୍କୃତ ଏହି ଆମେରିକାସ୍ଥ ଦ୍ୱୀପପୁଞ୍ଜଗୁଡ଼ିକୁ ଭାରତ ଏବଂ ଏହାର ଅଧିବାସୀମାନଙ୍କୁ 'ଲୋହିତ ଭାରତୀୟ' (Red Indian) ଆଖ୍ୟା ଦେଇଥିଲେ । କିନ୍ତୁ ପ୍ରକୃତରେ ୧୫୦୩ ଖ୍ରୀଷ୍ଟାବ୍ଦରେ "ଆମେରିଗୋ ଭେସ୍‌ପୁସି" ନାମକ ଜଣେ ଇଟାଲୀୟ ନାବିକ ଆମେରିକାର ମୂଳ ଭୂଖଣ୍ଡ ଆବିଷ୍କାର କରିଥିଲେ । ଐତିହାସିକମାନଙ୍କ ମତରେ ତାଙ୍କ ନାମାନୁସାରେ ତାଙ୍କ ଆବିଷ୍କୃତ ଭୂଖଣ୍ଡର ନାମ ଆମେରିକା ରଖାଯାଇଥିଲା ।

ଆମେରିଗୋଙ୍କ ଆମେରିକା ଆବିଷ୍କାର ପରେ ପରେ ସେ ଏହାକୁ ପ୍ରାଚ୍ୟ ଭୂଖଣ୍ଡଠାରୁ ସମ୍ପୂର୍ଣ୍ଣ ପୃଥକ୍ ବୋଲି ପ୍ରମାଣିତ କରିଦେଇଥିଲେ । ଏହି ସମୟରେ ଇଉରୋପର ପଶ୍ଚିମ ଉପକୂଳବର୍ତ୍ତୀ ସ୍ପେନ୍, ପର୍ତ୍ତୁଗାଲ୍, ଫ୍ରାନ୍ସ, ଇଂଲଣ୍ଡ ଓ ହଲଣ୍ଡ ପ୍ରଭୃତି ରାଜ୍ୟର ବଣିକମାନେ ଦରିଆ ପାରି ରାଜ୍ୟମାନଙ୍କରେ ନିଜର ବାଣିଜ୍ୟ ଓ ରାଜ୍ୟ ପ୍ରସାର ପାଇଁ ଏକ ଧାରାବାହିକ ଉଦ୍ୟମ ଚଳାଇଥିଲେ । ଆମେରିକା ମହାଦେଶ ଆବିଷ୍କୃତ ହେବା ପରେ ପରେ ସ୍ପେନ୍ ସମ୍ରାଟ ଏହି ବିରାଟ ଭୂଖଣ୍ଡ ଉପରେ ନିଜର ଆଧିପତ୍ୟ ଜାହିର୍ କରିବାକୁ ପ୍ରଥମେ

ଚେଷ୍ଟା କରିଥିଲେ । ଏହି ସମୟରେ ପର୍ତ୍ତୁଗାଲ୍‌-ସ୍ପେନ୍‌ ଠାରୁ ପୃଥକ୍‌ ହୋଇଯିବାରୁ ଏଠାକାର ଶାସକ ଆମେରିକାର କେତେକାଂଶ ମଧ୍ୟ ଦାବି କଲେ । ଏହି ବିବାଦର ମଧ୍ୟସ୍ଥତା କରି ଖ୍ରୀଷ୍ଟଧର୍ମଗୁରୁ ପୋପ୍‌ ପର୍ତ୍ତୁଗୀଜ୍‌ମାନଙ୍କୁ ଆମେରିକାର "ବ୍ରାଜିଲ୍‌" ଅଞ୍ଚଳ ଓ ଏହାର ପଶ୍ଚିମକୁ ଥିବା ଅନ୍ୟସମସ୍ତ ରାଜ୍ୟ ସ୍ପେନ୍‌ର ଶାସନାଧୀନ ରହିବାର ନିଷ୍ପତ୍ତି ନେଇଥିଲେ । ୧୫୧୯ ଖ୍ରୀଷ୍ଟାବ୍ଦରେ ସ୍ପେନ୍‌ର ଶାସକ 'କାର୍ଟେଜ୍‌' (Cartage) ଉତ୍ତର ଆମେରିକାର ମେକ୍ସିକୋ ଅଞ୍ଚଳ ଦଖଲ କରିନେଲେ । ପିଜ୍ଜାର ନାମକ ଅନ୍ୟଜଣେ ସ୍ପେନୀୟ ସେନାପତି ଦକ୍ଷିଣ ଆମେରିକାର ପେରୁ (Peru) ରାଜ୍ୟ ମଧ୍ୟ ଅଧିକାର କରିନେଲେ । ଏହିପରି ଭାବେ କ୍ରମଶଃ ଉତ୍ତର ଓ ଦକ୍ଷିଣ ଆମେରିକାରେ ସ୍ପେନ୍‌ ଏକ ବିଶାଳ ସାମ୍ରାଜ୍ୟ ପ୍ରତିଷ୍ଠା କରିପାରିଥିଲେ ।

ଏହାର କିଛି ବର୍ଷ ପରେ ପୋପ୍‌ଙ୍କ ଆମେରିକା ରାଜ୍ୟବଣ୍ଟନ ନିଷ୍ପତ୍ତିକୁ ଅମାନ୍ୟ କରି ଇଂଲଣ୍ଡ, ହଲାଣ୍ଡ, ଡେନ୍‌ମାର୍କ, ସ୍ୱିଡେନ୍‌, ନରୱେ ପ୍ରଭୃତି ପ୍ରୋଟେଷ୍ଟାଣ୍ଟ ରାଜ୍ୟ ଓ କାଥଲିକ୍‌ ଫ୍ରାନ୍ସ ଆମେରିକା ଭୂଖଣ୍ଡରେ ନିଜ ନିଜ ପାଇଁ ବିଭିନ୍ନ ଅଞ୍ଚଳ ଦାବି କଲେ । କିନ୍ତୁ ପ୍ରାକୃତିକ ଅବସ୍ଥିତିର ସୁଯୋଗ ନେଇ ଇଂଲଣ୍ଡ ଅତି କ୍ଷିପ୍ରଗତିରେ ଅନ୍ୟମାନଙ୍କ ଦାବିକୁ ଉପେକ୍ଷାକରି ନିଜର କୌଶଳ ବଳରେ ଆମେରିକାରେ ଉପନିବେଶ ପ୍ରତିଷ୍ଠା କରିବାକୁ ଚେଷ୍ଟା କରିଥିଲା । ଏଥିପାଇଁ ସ୍ପେନ୍‌ ସହିତ ଇଂଲଣ୍ଡର ଯୁଦ୍ଧ ଅବଶ୍ୟମ୍ଭାବୀ ହୋଇପଡ଼ିଲା । ସେପରେ ୧୫୮୮ ଖ୍ରୀଷ୍ଟାବ୍ଦରେ 'ସ୍ପେନ୍‌'ର "Spanish Armada" ନାମକ ଏକ ବିରାଟ ନୌବହରକୁ ଇଂରେଜମାନେ ସମ୍ପୂର୍ଣ୍ଣ ଧ୍ୱଂସ କରିଦେଇ ଆଟଲାଣ୍ଟିକ ମହାସାଗରରେ ନିଜର ଏକଛତ୍ରାଧିପତ୍ୟ ପ୍ରତିଷ୍ଠା କରିବାକୁ ସକ୍ଷମ ହୋଇପାରିଥିଲା ।

ଏହି ଘଟଣାର କିଛିବର୍ଷ ପରେ ଅର୍ଥାତ୍‌ ୧୬୦୭ ଖ୍ରୀଷ୍ଟାବ୍ଦରେ ପ୍ରସିଦ୍ଧ ଇଂରେଜ ନାବିକ 'ସାର୍‌ ୱାଲ୍‌ଟର୍‌ ରାଲେ' ଉତ୍ତର ଆମେରିକାର ପୂର୍ବଉପକୂଳରେ 'ଭର୍ଜିନିଆ' ନାମକ ସ୍ଥାନରେ ପ୍ରଥମ ଇଂରେଜ ଉପନିବେଶ ସ୍ଥାପନ କରିଥିଲେ । ଇଂଲଣ୍ଡର ଶୁଦ୍ଧବାଦୀ (Puritan)ମାନେ ନିଜ ଶାସକଙ୍କ ଅତ୍ୟାଚାରରୁ ରକ୍ଷାପାଇବା ପାଇଁ ୧୬୨୦ ଖ୍ରୀଷ୍ଟାବ୍ଦରେ 'ଭର୍ଜିନିଆ'ର ଉତ୍ତରକୁ 'ନିଉପ୍ଲିମାଉଥ୍‌', ୧୬୩୦ରେ 'ମାସାଚୁସେଟ୍‌' ନାମକ ଦୁଇଟି ଉପନିବେଶ ସ୍ଥାପନ କରିଥିଲେ । 'ବୋଷ୍ଟନ' ଥିଲା 'ମାସାଚୁସେଟ୍‌'ର ଏକ ପ୍ରଧାନ ବନ୍ଦର । ଏହା ପରେ ପରେ ଇଂଲଣ୍ଡରୁ ନିର୍ବାସିତ ହେଉଥିବା ବ୍ୟକ୍ତିବିଶେଷ, ଯଥା—ଧର୍ମଯାଜକ, ରକ୍ଷଣଶୀଳ ଧାର୍ମିକ ସମ୍ପ୍ରଦାୟ ଏବଂ କେତେକ ନାବିକ କ୍ରମଶଃ ମେରିଲାଣ୍ଡ, କାରୋଲିନା, ନିଉୟର୍କ, ନିଉଜର୍ସି ଡିଲାଓୟାର, ପେନ୍‌ସିଲଭେନିଆ, ନେଭାସ୍କୋଟିଆ, ମିନର୍କା, ଓ ନିଉଫାଉଣ୍ଡ ଲ୍ୟାଣ୍ଡ ନାମରେ ନୂତନ ନୂତନ ଅଞ୍ଚଳରେ ବସବାସ ସ୍ଥାପନ କରି ରହିଲେ ।

ଫରାସୀମାନେ ଉତ୍ତର ଆମେରିକାରେ ବାଣିଜ୍ୟ ଓ ରାଜ୍ୟବିସ୍ତାର କ୍ଷେତ୍ରରେ ଇଂରେଜମାନଙ୍କର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ଥିଲେ । ସେମାନେ 'ସେଣ୍ଟ ଲରେନ୍ସ' ନଦୀ

ଉପତ୍ୟକାରେ କାନାଡ଼ା ଓ ମିସିସିପ୍ ନଦୀ ଉପତ୍ୟକାରେ 'ଲୁଇସିଆନା' ନାମକ ଦୁଇଟି ବିଶାଳ ଉପନିବେଶ ସ୍ଥାପନ କରିଥିଲେ । କିନ୍ତୁ (୧୭୫୬-୬୩) 'ସପ୍ତବର୍ଷ' ଯୁଦ୍ଧ ଚାଲିଥିବା ସମୟରେ ଇଂରେଜମାନେ ଅତି ସାହସରେ 'କାନାଡ଼ା'ର ରାଜଧାନୀ 'କୁଇବେକ୍' ଆକ୍ରମଣ କରିଥିଲେ ଏବଂ ଫରାସୀ ଶକ୍ତିକୁ ସମ୍ପୂର୍ଣ୍ଣଭାବେ ପରାସ୍ତ କରିଦେଇଥିଲେ । ଏହି ଯୁଦ୍ଧ ଫଳରେ ପ୍ୟାରିସ୍‌ଠାରେ ଉଭୟ ପକ୍ଷ ମଧ୍ୟରେ ସନ୍ଧି ସ୍ୱାକ୍ଷରିତ ହେଲା । ଏହାଦ୍ୱାରା ଇଂରେଜମାନେ ଫ୍ରାନ୍ସ୍ ଠାରୁ କାନାଡ଼ା, ମିସିସିପ୍ ନଦୀର ପୂର୍ବରେ ଥିବା ଅଞ୍ଚଳ ଓ ସ୍ପେନ୍ ଠାରୁ 'ଫ୍ଲୋରିଡ଼ା' ପାଇଲେ । ଏହିପରି ଚକ୍ରାନ୍ତ ଓ ଯୁଦ୍ଧ ଦ୍ୱାରା ସାହସୀ ଇଂରେଜ ଜାତି ସପ୍ତଦଶ ଶତାବ୍ଦୀର ଶେଷ ଓ ଅଷ୍ଟାଦଶ ଶତାବ୍ଦୀର ତିନି-ଚାରି ଦଶକ ସମୟ ସୀମା ଭିତରେ ଉତ୍ତର ଆମେରିକାରେ ନିଜର ଆଧିପତ୍ୟ ବିସ୍ତାର କରିବାରେ ସମର୍ଥ ହୋଇଥିଲେ ।

ଉତ୍ତର ଆମେରିକାରେ କାଳକ୍ରମେ ତେରୋଟି ଉପନିବେଶ ସ୍ଥାପିତ ହୋଇଥିଲା ଓ ଏ ସମସ୍ତ ଇଂଲଣ୍ଡର ଶାସନାଧୀନ ରହିଥିଲା । ଉପନିବେଶବାସୀ ଇଂରେଜମାନେ ନିଜର ଉପନିବେଶ ପାଇଁ ସ୍ୱତନ୍ତ୍ର ଶାସନ ବ୍ୟବସ୍ଥାମାନ ପ୍ରୟୋଗ କରିବାକୁ ଚେଷ୍ଟା କରିଥିଲେ । ସେମାନେ ଗଣତନ୍ତ୍ର ଶାସନ ଓ ସ୍ୱାଧୀନ ଭାବରେ ଧର୍ମାଚରଣର ବିଶେଷ ପକ୍ଷପାତୀ ଥିଲେ । ସେମାନେ ସବୁ ପ୍ରକାର ଉନ୍ନତି କରି ଉପନିବେଶର ଶକ୍ତି ଓ ସାମର୍ଥ୍ୟ ବୃଦ୍ଧି କରିବାକୁ ଅପ୍ରାଣ ଉଦ୍ୟମ କରିଥିଲେ । ଅପରପକ୍ଷରେ ଇଂଲଣ୍ଡର ଶାସକଗୋଷ୍ଠୀ ଏହି ଉପନିବେଶଗୁଡ଼ିକୁ ନିଜ ଅଧିକୃତ ରାଜ୍ୟ ବୋଲି ମନେକରୁଥିଲେ । ସେଥିପାଇଁ ଇଂଲଣ୍ଡର ଶାସକ ଉପନିବେଶବାସୀ ଇଂରେଜମାନଙ୍କ ଉପରେ ନିଜର ଆଧିପତ୍ୟ ଜାହିର୍ କରିବାକୁ ଚାହିଁଲେ । ସେମାନଙ୍କ ବାଣିଜ୍ୟ ବ୍ୟବସାୟ ଉପରେ କଟକଣା ଓ ସେମାନଙ୍କୁ ଇଂରେଜ ଜାହାଜ ବ୍ୟତୀତ ଅନ୍ୟ ଜାହାଜରେ ବାଣିଜ୍ୟ କରିବାକୁ ନିଷେଧ କରାଗଲା । ପ୍ରତ୍ୟେକ ଉପନିବେଶର ବଳକା ପଣ୍ୟଦ୍ରବ୍ୟଗୁଡ଼ିକ କେବଳ ଇଂଲଣ୍ଡକୁ ପଠାଇବା ପାଇଁ ଆଦେଶ ଦିଆଗଲା । ଇଉରୋପୀୟ ପଣ୍ୟଦ୍ରବ୍ୟଗୁଡ଼ିକ କେବଳ ଇଂରେଜ ବଣିକମାନଙ୍କଠାରୁ ଖରିଦ କରିବା ପାଇଁ ନିୟମ କରାଯାଇଥିଲା । ଯେଉଁ ଯେଉଁ ଦ୍ରବ୍ୟର ଉତ୍ପାଦନ ଦ୍ୱାରା ଇଂଲଣ୍ଡର ଶିଳ୍ପ ବାଧାପ୍ରାପ୍ତ ହେବାର ସମ୍ଭାବନା ଥିଲା, ସେ ସମସ୍ତ ପ୍ରସ୍ତୁତ ନକରିବା ପାଇଁ ଉପନିବେଶବାସୀଙ୍କୁ ମନା କରାଗଲା । ଇଂଲଣ୍ଡର ଏହି ବାଣିଜ୍ୟ ନୀତି ଦ୍ୱାରା ଉପନିବେଶବାସୀମାନେ ବିଶେଷ ଅସନ୍ତୁଷ୍ଟ ହୋଇଉଠିଲେ ।

ତତ୍କାଳୀନ ସ୍ପେନ୍ ଓ ଫ୍ରାନ୍ସ ପ୍ରଭୃତି ରାଜ୍ୟର ଶାସକମାନେ ସେମାନଙ୍କ ଶାସିତ ଉପନିବେଶଗୁଡ଼ିକରୁ କର ଆଦାୟ କରୁଥିଲେ । ସେହି ବ୍ୟବସ୍ଥା ଇଂରେଜର ତତ୍କାଳୀନ ସମ୍ରାଟ ତୃତୀୟ ଜର୍ଜ ଆମେରିକାବାସୀଙ୍କ ଉପରେ ଲଦି ଦେଲେ । ସପ୍ତବର୍ଷ ଯୁଦ୍ଧରେ ଇଂଲଣ୍ଡର ବହୁ ଅର୍ଥ ବ୍ୟୟ ହୋଇଥିଲା । ଏହା କେବଳ ଉପନିବେଶ ଗୁଡ଼ିକର ନିରାପତ୍ତା ପାଇଁ ବ୍ୟୟ ହୋଇଥିବା ଅଛିଳାରେ ଇଂଲଣ୍ଡ ସରକାର ୧୭୬୫ ଖ୍ରୀଷ୍ଟାବ୍ଦରେ ଆମେରିକାରେ

**'Stamp Act'** ଜାରି କରିଦେଲେ । ଏହା ଫଳରେ ଉପନିବେଶବାସୀମାନେ ଆଇନ ଅଦାଲତ ସମ୍ବନ୍ଧୀୟ ସମସ୍ତ ଷ୍ଟାମ୍ପ କାଗଜ ଇଂଲଣ୍ଡରୁ କିଣିବାକୁ ବାଧ୍ୟ ରହିଲେ ।

'ସପ୍ତବର୍ଷ ଯୁଦ୍ଧ' ପରେ ଫରାସୀମାନେ କାନାଡ଼ାରୁ ବିତାଡ଼ିତ ହୋଇଥିବାରୁ ଆମେରିକାବାସୀଙ୍କର ଫରାସୀ ଆକ୍ରମଣକୁ ଆଉ ଭୟ ନଥିଲା । ତେଣୁ ସେମାନେ ନିର୍ଭୟରେ ଏହି 'ଷ୍ଟାମ୍ପ ଆକ୍ଟ'କୁ ଅମାନ୍ୟ କଲେ । ତେରଟି ଉପନିବେଶ ମଧ୍ୟରୁ ନଅଟିର ପ୍ରତିନିଧିମାନେ ନିଉୟର୍କଠାରେ ମିଳିତ ହୋଇ ଗୋଟିଏ କଂଗ୍ରେସ ବା ସଭାର ଆୟୋଜନ କରିଥିଲେ । ସେଠାରେ ସେମାନେ ସ୍ଥିରକଲେ ଯେ, **'No Taxation without representation.'** ଅର୍ଥାତ୍—ଇଂଲଣ୍ଡର ପାର୍ଲିଆମେଣ୍ଟରେ ସେମାନଙ୍କ ପ୍ରେରିତ କୌଣସି ପ୍ରତିନିଧି ନଥିବାରୁ ଏହା ଦ୍ୱାରା ଧାର୍ଯ୍ୟ ହୋଇଥିବା କୌଣସି କର ଦେବାକୁ ସେମାନେ ବାଧ୍ୟ ନୁହନ୍ତି ।' ଏହି ଆନ୍ଦୋଳନର ଅଳ୍ପଦିନ ପରେ ଇଂରେଜ ସରକାର ବାଧ୍ୟହୋଇ ଏହି ଆଇନ ଉଠାଇ ଦେଇଥିଲେ ।

ଏହାପରେ ଆମେରିକାବାସୀଙ୍କ ଉପରେ ପ୍ରତିଶୋଧ ନେବାପାଇଁ ଇଂଲଣ୍ଡର ପାର୍ଲିଆମେଣ୍ଟ ୧୭୬୬ ଖ୍ରୀଷ୍ଟାବ୍ଦରେ **'Declaratory Act'** ନାମକ ଏକ ଆଇନ ପ୍ରଣୟନ କଲେ । ଏହାଦ୍ୱାରା ପାର୍ଲିଆମେଣ୍ଟର ଉପନିବେଶଗୁଡ଼ିକରେ ଆଇନ ପ୍ରଚଳନ ଓ କରଧାର୍ଯ୍ୟ କରିବାର କ୍ଷମତା ରହିଲା । ଏହି ଆଇନ ବଳରେ ଉପନିବେଶଗୁଡ଼ିକରେ ବିକ୍ରୀ ହେଉଥିବା ଚା' ସମେତ ୭ଟି ନିତ୍ୟବ୍ୟବହାର୍ଯ୍ୟ ପଦାର୍ଥ ଉପରେ କରଧାର୍ଯ୍ୟ କରାଗଲା । ଏଥିରେ ଉତ୍ତ୍ୟକ୍ତ ହୋଇ ଔପନିବେଶିକମାନେ ଆନ୍ଦୋଳନ ଚଳାଇଲେ । ୧୭୭୩ ଖ୍ରୀଷ୍ଟାବ୍ଦରେ 'ଇଷ୍ଟଇଣ୍ଡିଆ କମ୍ପାନୀ' ଭାରତବର୍ଷରୁ ଆମଦାନୀ ହୋଇଥିବା କେତୋଟି ଚା' ବୋଝେଇ ଜାହାଜ ବୋଷ୍ଟନ ବନ୍ଦରକୁ ପଠାଇଲେ । କିନ୍ତୁ ଦଳେ ଉତ୍ତ୍ୟକ୍ତ ଜନତା ଅଧରାତିରେ ସେହି ଜାହାଜରେ କୁଲି ବେଶରେ ପଶି ଚା' ବାକ୍ସ ସବୁ ସମୁଦ୍ରକୁ ଫିଙ୍ଗି-ଦେଲେ । ଏହି ଘଟଣା ଆମେରିକା ଇତିହାସରେ **"Boston Tea Party"** ନାମରେ ଅଭିହିତ । ଇଂରେଜ ସରକାର ଏଥିରେ ଉତ୍ତ୍ୟକ୍ତ ହୋଇ ୧୭୭୪ ଖ୍ରୀଷ୍ଟାବ୍ଦରେ ଏକ ଆକ୍ରୋଶମୂଳକ ମନୋଭାବ ନେଇ ବୋଷ୍ଟନ ବନ୍ଦରର କାରବାର ବନ୍ଦ କରିଦେଲେ ଏବଂ ସେଠାରେ 'ମାସାଚୁସେଟ୍ସ' ଉପନିବେଶର ସ୍ୱାୟତ୍ତ ଶାସନ ସଂସ୍ଥାକୁ ଭାଙ୍ଗିଦେଇ ତାକୁ ନିଜର ପ୍ରତ୍ୟକ୍ଷ ଶାସନରେ ରଖିଲେ । ଏହି ଘଟଣା ପରେ ପରେ ଆମେରିକାବାସୀଙ୍କ ମନରେ ଏକତା ଭାବ ଜାଗ୍ରତ ହେଲା ଏବଂ ସେମାନେ ଗୋଟିଏ ପତାକା ତଳେ ଠିଆହେବାର ସ୍ୱପ୍ନରେ ପାଗଳ ହୋଇ ଜୀବନତ୍ୟାଗୀ ବିଦ୍ରୋହ ଆରମ୍ଭ କରିଦେଲେ । ତେରଟି ଉପନିବେଶର ପ୍ରତିନିଧିମାନେ ୧୭୭୪ ଖ୍ରୀଷ୍ଟାବ୍ଦରେ 'ଫିଲେଡେଲ୍‌ଫିଆ' ସହରରେ ମିଳିତ ହୋଇ ଇଂଲଣ୍ଡ ସହିତ ସମସ୍ତ ବାଣିଜ୍ୟ ସମ୍ପର୍କ ତୁଟାଇ ଦେବାକୁ ଘୋଷଣା କଲେ । ତା' ପରବର୍ଷ ଇଂରେଜ ସରକାରଙ୍କ ବିରୁଦ୍ଧରେ ଆମେରିକାର ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇଗଲା ।

ଇଂଲଣ୍ଡ ସହିତ ଆମେରିକାର ସ୍ୱାଧୀନତା ସଂଗ୍ରାମ ପାଇଁ ଆମେରିକାର ପ୍ରଥମ ସେନାପତି ଭାବେ 'ଜର୍ଜ ଓ୍ୱାସିଂଟନ୍' ନିର୍ବାଚିତ ହୋଇଥିଲେ । ତାଙ୍କର ଉଦାରତା, ସାଧୁତା, ଅଦ୍ଭୁତ ରଣକୌଶଳ ଓ ସାଂଗଠନିକ ଦକ୍ଷତା ଯୋଗୁଁ ତାଙ୍କ ଉପରେ ଆମେରିକାବାସୀଙ୍କର ଗଭୀର ବିଶ୍ୱାସ ଥିଲା । ସେ ୧୭୭୬ ଖ୍ରୀଷ୍ଟାବ୍ଦ ଯୁଦ୍ଧରେ ଇଂରେଜ ସେନାପତିଙ୍କୁ ପରାସ୍ତ କରି 'ବୋଷ୍ଟନ' ବନ୍ଦରକୁ ଉଦ୍ଧାର କରିଥିଲେ । ଏହି ବର୍ଷ ତାଙ୍କ ନେତୃତ୍ୱରେ ତେରଟି ଉପନିବେଶର ପ୍ରତିନିଧିମାନେ ମିଳିତ ହୋଇ ଇଂରେଜ ସରକାରଙ୍କ ବିରୁଦ୍ଧରେ ସ୍ୱାଧୀନତା ଘୋଷଣା କଲେ । ଏହି ସମୟରେ **Franklin, John Adams** ପ୍ରଭୃତି ରାଜନୀତିଜ୍ଞମାନଙ୍କ ଅଦମ୍ୟ ଉତ୍ସାହ ଓ ପ୍ରେରଣା ଓ୍ୱାସିଂଟନଙ୍କୁ ବିଶେଷଭାବରେ ସାହାଯ୍ୟ କରିଥିଲା । ପୁଣି ତତ୍କାଳୀନ ଜାତୀୟତାବାଦୀ ଆମେରିକୀୟ ସାହିତ୍ୟିକମାନେ ଏହି ବିଦ୍ରୋହର ସ୍ୱରକୁ ସେମାନଙ୍କ ସୃଷ୍ଟି ମାଧ୍ୟମରେ ଜନସାଧାରଣଙ୍କ ନିକଟରେ ପହଞ୍ଚାଇଦେଇ ସ୍ୱାଧୀନତା ସଂଗ୍ରାମର ଲେଲିହାନ ଶିଖାକୁ ଅଧିକ ପ୍ରଜ୍ୱଳିତ କରିଦେଇଥିଲେ ।

ଏହାପରେ ଇଂଲଣ୍ଡ ଓ ଆମେରିକା ମଧ୍ୟରେ ତୁମୁଳ ସଂଗ୍ରାମ ଆରମ୍ଭ ହୋଇଗଲା । ଇଂଲଣ୍ଡର ଏହି ବିପତ୍ତି ବେଳେ ତା'ର ପ୍ରଧାନଶତ୍ରୁ ଫ୍ରାନ୍ସ, ସ୍ପେନ୍ ଏବଂ ହଲାଣ୍ଡ ଆମେରିକାବାସୀଙ୍କ ସ୍ୱାଧୀନତାକୁ ସ୍ୱୀକାର କରିଥିଲେ । ରୁଷିଆ, ଡେନମାର୍କ ଓ ସ୍ୱିଡ଼େନ୍, ଆମେରିକାକୁ ଯୁଦ୍ଧ ପାଇଁ ଆବଶ୍ୟକୀୟ ସାମଗ୍ରୀମାନ ଯୋଗାଇ ଦେଇଥିଲେ । ଇଉରୋପୀୟ ରାଜ୍ୟମାନଙ୍କର ସାହାଯ୍ୟ ଓ ସମର୍ଥନ ପାଇ ଉପନିବେଶ ସେନା ବିଜୟ ପଥରେ ଅଗ୍ରସର ହେଲେ । ୧୭୭୮ ଖ୍ରୀଷ୍ଟାବ୍ଦରେ ଓ୍ୱାସିଂଟନ୍ ଇଂରେଜ ସେନାଙ୍କୁ ପରାସ୍ତ କରି 'ଫିଲେଡେଲଫିଆ' ଉଦ୍ଧାର କରିଥିଲେ । ଇଂରେଜ ସେନାପତି କର୍ଣ୍ଣୱାଲିସ୍ ୧୭୮୧ ଖ୍ରୀଷ୍ଟାବ୍ଦରେ ନୌଯୁଦ୍ଧରେ ଫରାସୀ ସେନା ଓ ସ୍ଥଳଯୁଦ୍ଧରେ ଓ୍ୱାସିଂଟନଙ୍କ ସେନାଦ୍ୱାରା ଆକ୍ରାନ୍ତ ଓ ପରାସ୍ତ ହୋଇ **'York twon'** ଠାରେ ଆତ୍ମସମର୍ପଣ କଲେ । ଏହା ସଙ୍ଗେ ସଙ୍ଗେ ଆମେରିକା ସ୍ୱାଧୀନତା ସଂଗ୍ରାମର ଅବସାନ ହେଲା ।

୧୭୮୩ ଖ୍ରୀଷ୍ଟାବ୍ଦରେ ପ୍ୟାରିସ୍‌ଠାରେ ଏକ ସନ୍ଧି ଦ୍ୱାରା ଇଂରେଜ ସରକାର ଶିଶୁରାଷ୍ଟ୍ର ଆମେରିକାର ଉପନିବେଶଗୁଡ଼ିକର ସ୍ୱାଧୀନତାକୁ ସ୍ୱୀକୃତି ପ୍ରଦାନ କରିବାକୁ ବାଧ୍ୟ ହେଲେ । ୧୭୮୭ ମସିହାରେ ନିଜର ସମ୍ବିଧାନ ପ୍ରସ୍ତୁତ କରି ଆମେରିକା ଏକ ଯୁକ୍ତରାଷ୍ଟ୍ର ଭାବେ ସ୍ୱୟଂଶାସିତ ହେବାର ଗୁରୁଦାୟିତ୍ୱ ବହନ କଲା ।

ଉପନିବେଶବାସୀଙ୍କର ଏହି ଅତୀତ ଜଞ୍ଜାଳମୟ ବାର୍ତ୍ତାକୁ ସାହିତ୍ୟରେ ବର୍ଣ୍ଣନା କରି ତତ୍କାଳୀନ ସାହିତ୍ୟିକ ଗୋଷ୍ଠୀ ଏକ ନୂତନ ଆମେରିକା ଗଠନରେ ବ୍ରତୀ ହୋଇ-ଉଠିଲେ । ଇଂରେଜ ଶାସନ କବଳରେ ଦୀର୍ଘଦିନଧରି ପରାଧୀନତାର ଜାଲରେ ଛନ୍ଦି ହୋଇପଡ଼ିଥିଲେହେଁ ଆମେରିକାବାସୀ ତତ୍କାଳୀନ ଇଂରେଜମାନଙ୍କ ପ୍ରଭାବରେ

ବହୁଲ୍ଭାବେ ଯେ, ପ୍ରଭାବିତ ହୋଇପାରିଥିଲେ ଏକଥାକୁ ଅସ୍ୱୀକାର କରାଯାଇ ନପାରେ । ଆମେରିକା ଯେଉଁଥିପାଇଁ ଇଂରେଜ ସଭ୍ୟତା ନିକଟରେ ଋଣୀ, ତନ୍ମଧ୍ୟରୁ ତାହାର ସାହିତ୍ୟ ଅନ୍ୟତମ । ଆମେରିକାର ସାହିତ୍ୟିକ ବିକାଶରୁ ଏ ପ୍ରଭାବ ସ୍ପଷ୍ଟ ଅନୁଭୂତ ହୁଏ ।

**(ଖ) ସାହିତ୍ୟିକ ବିକାଶ :**

ଆମେରିକା ଦୀର୍ଘକାଳ (୧୬୦୭–୧୭୮୩) ଇଂଲଣ୍ଡର ଶାସନାଧୀନ ରହିବା ଫଳରେ ତାହାର ସାହିତ୍ୟ ଆହରଣଶୀଳ ଓ ଇଂରେଜୀ ସାହିତ୍ୟ ଦ୍ୱାରା ବେଶ୍ ପ୍ରଭାବିତ ହୋଇପାରିଥିଲା । ଏକ 'ନାବିକର ଦେଶ' ଭାବେ ଆମେରିକା ସାରା ବିଶ୍ୱରେ ପରିଚିତ । ତେଣୁ ତା' ସାହିତ୍ୟର ଆଦ୍ୟପର୍ଯ୍ୟାରେ ସେହି ନୌଯାତ୍ରାର ଦୁଃସାହସିକ ଚିତ୍ରମାନ ଦେଖିବାକୁ ମିଳେ । ତେଣୁ ଆମେରିକୀୟ ସାହିତ୍ୟ ପ୍ରଥମେ ପରାଧୀନଜନିତ ଉପନିବେଶିକ ଭାରାକ୍ରାନ୍ତ ଜୀବନର ଚିତ୍ର ଏବଂ ତା' ପରେ ଅନୁସନ୍ଧିତ୍ସୁମୂଳକ ନୌଯାତ୍ରାର ଉତ୍ତେଜନା ଓ ଆଗ୍ରହପୂର୍ଣ୍ଣ ରହସ୍ୟ, ରୋମାଞ୍ଚକର କାହାଣୀକୁ ନେଇ ଋଦ୍ଧିମନ୍ତ ହୋଇଉଠିଥିଲା । ଆଟଲାଣ୍ଟିକ ମହାସାଗରର ପ୍ରଶାନ୍ତ ବକ୍ଷରେ ଆମେରିକାବାସୀଙ୍କର କୌତୁହଳପ୍ରଦ ଜୀବିକାନିର୍ବାହର ମହାପ୍ରୟାସ ତଥା ନିଜକୁ ବିଶ୍ୱ ସମ୍ମୁଖରେ ଏକ ଶ୍ରେଷ୍ଠ ମହାସାଗରିକ, ସାଗରାନ୍ତରିକ ଜାତି ଭାବେ ଉପସ୍ଥାପିତ କରିବାର ଇଚ୍ଛା ପ୍ରଥମେ ହିଁ ତାହାର ତତ୍କାଳୀନ ପରାଧୀନତାଜନିତ 'ବିପର୍ଯ୍ୟସ୍ତ ସାହିତ୍ୟ'ର ପୃଷ୍ଠଭୂମି ହୋଇ ପରେ ନିଜକୁ ତଥା ନିଜର ସାହିତ୍ୟକୁ ବିଶ୍ୱଦରବାରରେ ଚମତ୍କୃତ ଭାବେ ଉପସ୍ଥାପିତ କରିପାରିଛି ।

ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀର ରାଜନୈତିକ ଘଟଣାବଳୀ ଆମେରିକୀୟ ସାହିତ୍ୟର ମୋଡ଼ ବଦଳାଇ ଦେଇଥିଲା । ତେଣୁ ଆମେରିକୀୟ ସାହିତ୍ୟର ଆଲୋଚନା କଲାବେଳେ ମୁଖ୍ୟତଃ ସପ୍ତଦଶ ଶତାବ୍ଦୀଠାରୁ ଏକ ସଚେତନଶୀଳ ରୂପମନ୍ତ ଆମେରିକୀୟ ସାହିତ୍ୟ ଉପରେ ହିଁ ଦୃଷ୍ଟି ନିବଦ୍ଧ ହୋଇଥାଏ । ଏହି ସମୟରୁ ଆମେରିକୀୟ ସାହିତ୍ୟ ତା'ର ମୂଲ୍ୟାୟନ ପାଇଁ ଉପଯୁକ୍ତ ଉପାଦାନ ସୃଷ୍ଟି କରିବାକୁ କ୍ଷମଶୀଳ ହୋଇପାରିଥିଲା । ପୂର୍ବରୁ ଆମେରିକୀୟ ସାହିତ୍ୟରେ ଆମେରିକାର ଅଭୂତପୂର୍ବ କଥନିକା ବା କିମ୍ବଦନ୍ତୀ ଓ ଅଲୌକିକ ଚିତ୍ରମାନ ରୂପାୟିତ ହୋଇଥିଲା । ମାତ୍ର ସପ୍ତଦଶ ଶତାବ୍ଦୀଠାରୁ ଏହାର ରୂପ ବଦଳିବାକୁ ଲାଗିଲା; ଯାହାଦ୍ୱାରା ଆମେରିକୀୟ ସାହିତ୍ୟର ବିକାଶପଥ ସୁଗମ ହୋଇପାରିଥିଲା ବୋଲି କହିବାକୁ ହେବ । ଏହି ସମୟରେ ଜନ୍ କଟନ୍ **(John Cotton)**, ରୋଜର୍ ଉଇଲିୟମ୍ **(Roger William)** ଏବଂ ନାଥିନିଏଲ୍ ଓ୍ୱାର୍ଡସ **(Nathniel Words)**ଙ୍କର ଧାର୍ମିକ ଚିନ୍ତାଧାରା ଆମେରିକୀୟ ସାହିତ୍ୟରେ ପ୍ରତିଫଳିତ ହୋଇପାରିଥିଲା ବୋଲି ଆମେରିକୀୟ ସାହିତ୍ୟର ଐତିହାସିକମାନେ ମତବ୍ୟକ୍ତ କରନ୍ତି । କିନ୍ତୁ ଏମାନଙ୍କ ପରବର୍ତ୍ତୀ ଲେଖକମାନଙ୍କ ସାହିତ୍ୟରେ ଏହି ଧର୍ମଚେତନା ସମ୍ବଳିତ

ସାହିତ୍ୟ ପରିବେଶକୁ ନେଇ ବ୍ୟଙ୍ଗାତ୍ମକ ସାହିତ୍ୟ ସୃଷ୍ଟି ପ୍ରତି ଅଧିକ ଆଗ୍ରହ ପ୍ରକାଶ ପାଇଥିବାର ଲକ୍ଷ୍ୟ କରାଯାଏ ।

ଜନ୍ ସ୍ମିଥ୍‌ଙ୍କ ଲେଖନୀ ମୂଳରେ ଆମେରିକାବାସୀଙ୍କର ଉପନିବେଶିକ ଶାସନ କାଳର ନିର୍ଯ୍ୟାତନାର ଚିତ୍ର ବେଶ୍ ବ୍ୟଙ୍ଗାତ୍ମକ ଓ ଶାଣିତ ଦୃଷ୍ଟିଭଙ୍ଗୀ ନେଇ ପ୍ରକାଶ ପାଇଥିଲା । ମାତୃଭୂମି ପ୍ରତି ଅଦମ୍ୟ ମମତା ଜନ୍ ସ୍ମିଥ୍‌ଙ୍କ ସାହିତ୍ୟକୁ ବେଶ୍ ଗର୍ବିମନ୍ତ କରିପାରିଥିଲା । କୌତୂହଳପ୍ରଦ ଦୁଃସାହସିକ ନୌଯାତ୍ରାର ଚିତ୍ରଠାରୁ ଆମେରିକୀୟ ସାହିତ୍ୟ ଜନ୍ ସ୍ମିଥ୍‌ଙ୍କ ପର୍ଯ୍ୟନ୍ତ ଏହିପରିଭାବେ ନିଜର ଅଭିବୃଦ୍ଧି ସାଧିତ କରିପାରିଥିଲା । ଭାରତୀୟ ସାହିତ୍ୟ ପରି ଆମେରିକୀୟ ସାହିତ୍ୟର ଏହି ଆଦ୍ୟପର୍ଯ୍ୟାୟରେ ମଧ୍ୟ ଅତି ଅଲୌକିକତାର ଚିତ୍ରମାନ ଦେଖିବାକୁ ମିଳିଥାଏ ।

ସପ୍ତଦଶ ଶତାବ୍ଦୀର ସାହିତ୍ୟରେ ଆମେରିକାର 'ଯାଦୁକରୀ ସାହିତ୍ୟ'ର ପ୍ରଭାବ ଅବଶ୍ୟ ସ୍ୱୀକାର୍ଯ୍ୟ । ତତ୍କାଳୀନ ଆମେରିକୀୟ ସମାଜରେ ଯାଦୁକର **(Witch Craft)**ର ପ୍ରଭାବ ଏକ ଅଶୁଭ ତଥା ରକ୍ଷଣଶୀଳ ଆମେରିକୀୟଙ୍କର ଘୋର ବିରୁଦ୍ଧାଚରଣ ହୋଇ-ଉଠିଥିଲା । ସେଥିପାଇଁ ଯାଦୁକରୀ ସାହିତ୍ୟରେ ତତ୍କାଳୀନ ଲୋକମତ, ସମାଜଚିତ୍ର ପ୍ରଭୃତି ରୂପାୟିତ ହୋଇଥିବାର ଦେଖିବାକୁ ମିଳେ ।

ଲୋକକଥା ଓ ଲୋକଗୀତ ଏହି ସମୟର ଆମେରିକୀୟ ସାହିତ୍ୟର ଅନ୍ୟତମ ବିଭବ । ସପ୍ତଦଶ ଶତାବ୍ଦୀର ଶେଷଦଶକ ପର୍ଯ୍ୟନ୍ତ ଏହା ଉପରେ ଆମେରିକୀୟ ସାହିତ୍ୟକ-ମାନେ ଖୁବ୍ ଗୁରୁତ୍ୱ ପ୍ରଦାନ କରିଥିଲେ । ତେଣୁ ଏହାର ଅଗ୍ରଗତି ତାଙ୍କ ସାହିତ୍ୟର ଅନ୍ୟାନ୍ୟ ଦିଗ ଅପେକ୍ଷା ଅଧିକ ବୋଲି ଅନୁମିତ ହୁଏ । ଏହିସବୁ ସାହିତ୍ୟରେ ଜନଜୀବନର ଚିତ୍ର ଓ ତତ୍କାଳୀନ ସାମାଜିକ ଅବସ୍ଥାମାନ ବର୍ଣ୍ଣିତ ହୋଇଥିଲା । ଲୋକମୁଖରୁ ଲୋକମୁଖକୁ ପ୍ରଚଳିତ ଏହି ସାହିତ୍ୟକୁ ଯଦିଓ ସାହିତ୍ୟିକ ମୂଲ୍ୟ ଦେବା ଠିକ୍ ହେବନାହିଁ ତଥାପି ଏହାର ସଂକଳନ ଉପରେ ଦୃଷ୍ଟିଦେଲେ ଯେ, ଏହା କେତେଦୂର ଗୁରୁତ୍ୱପୂର୍ଣ୍ଣ ତାହା ଜଣାପଡ଼ିଥାଏ । ମୋଟ୍‌ଉପରେ କହିବାକୁଗଲେ ଆମେରିକାର ସପ୍ତଦଶ ଶତାବ୍ଦୀର ଇତିହାସ କେବଳ ସାହିତ୍ୟର ଇତିହାସ ନୁହେଁ; ବରଂ ରାଜନୈତିକ ଇତିହାସର କେତେକାଂଶ ଏଥିରେ ପ୍ରତିଫଳିତ ହୋଇଛି ।

ଆମେରିକୀୟ ସାହିତ୍ୟର ଐତିହାସିକମାନଙ୍କ ମତରେ ଆମେରିକୀୟ ପଦ୍ୟ ସାହିତ୍ୟର ପ୍ରଥମ ପ୍ରତିଷ୍ଠିତ ଏବଂ ସର୍ବଜନାଦୃତ କବି ହେଉଛନ୍ତି ମିସେସ୍ ଆନେ **(Anne)** । ତାଙ୍କର ପ୍ରଥମ କବିତା ଗ୍ରନ୍ଥ **"The tenth muselately sprung up in America"** ୧୬୫୦ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡରେ ଛପା ହୋଇଥିଲା । ଅନ୍ୟ କେତେକ ସାହିତ୍ୟ ସମାଲୋଚକଙ୍କ ମତରେ "ମାଇକେଲ୍ ଉଇଗଲେସ୍ ଓ୍ୱାର୍ଥ' ତାଙ୍କ ବଳିଷ୍ଠ ସାହିତ୍ୟକୃତି ପାଇଁ ଆମେରିକୀୟ ସାହିତ୍ୟର ଆଦ୍ୟପ୍ରତିଷ୍ଠିତ ସ୍ୱନାମଧନ୍ୟ କବି ଭାବେ

ସ୍ୱୀକୃତ ପାଇବା ଉଚିତ୍ । ତାଙ୍କର 'Day of Doom' କାବ୍ୟ ଗ୍ରନ୍ଥ ୧୬୬୨ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇ ଆମେରିକୀୟ-ସାହିତ୍ୟରେ ସବୁଠାରୁ ଲୋକପ୍ରିୟତା ହାସଲ କରିପାରିଥିଲା । ତେଣୁ ତାଙ୍କ ସାହିତ୍ୟ ପ୍ରତି ଜନମାନସର ଅଧିକ ଆକର୍ଷଣ ରହିଛି ବୋଲି ସେମାନେ ଯୁକ୍ତି ଦର୍ଶାଇଥିଲେ । ସେହି ସମୟର ଅନ୍ୟଜଣେ ଖ୍ୟାତନାମା କବି ହେଉଛନ୍ତି "Edward Taylor' (ଏଡ୍‌ଓ୍ୱାର୍ଡ୍ ଟେଲର୍) ଯାହାଙ୍କ କୃତିରେ ଉପନିବେଶିକ ଜନଜୀବନର ଚିନ୍ତା ମଧ୍ୟରେ ଉଗ୍ରଜାତୀୟବାଦୀ ଚିନ୍ତାଧାରାର ଆଦ୍ୟାଭାସ ଦେଖିବାକୁ ମିଳିଥିଲା । ତାଙ୍କ ସାହିତ୍ୟରେ ପ୍ରଥମକରି ମେଟାଫିଜିକାଲ୍ (Metaphysical) ଚିନ୍ତାଧାରାର ପରିପ୍ରକାଶ ଘଟିଥିଲା । କିନ୍ତୁ ତତ୍କାଳୀନ ସମୟୋପଯୋଗୀ ଲେଖା ଲେଖିପାରିବାକୁ 'ଟେଲର୍' ସେତେଟା ସଫଳତା ହାସଲ କରିପାରିନଥିବା କଥା ଆଲୋଚକମାନେ ଦର୍ଶାଇଛନ୍ତି । ଉପନିବେଶିକ ସାହିତ୍ୟରେ ଯଦିଓ କାବ୍ୟ-କବିତା ସୃଷ୍ଟିରେ ଚରମ ଉଦାସୀନତା ଦେଖାଯାଇନଥିଲା, ତଥାପି ଏହା ସେତେ ପରିମାଣରେ ଜନମାନସକୁ ସ୍ପର୍ଶ କରିପାରି ସଫଳତା ହାସଲ କରିପାରିନଥିଲା ।

**ଗଦ୍ୟ ସାହିତ୍ୟର ବିକାଶଧାରା :**

ପ୍ରତ୍ୟେକ ସାହିତ୍ୟରେ ପ୍ରଥମେ ପଦ୍ୟ ଓ ତତ୍ପରେ ଗଦ୍ୟର ବିକାଶ ଘଟିବା ଯେପରି ବିଧି ପ୍ରତିପାଦିତ କଥା । ଭାରତୀୟ ସାହିତ୍ୟଠାରୁ ଆରମ୍ଭକରି ଆମେରିକୀୟ ସାହିତ୍ୟ ପର୍ଯ୍ୟନ୍ତ ଏହି ଧାରା ସମତାଳରେ ପ୍ରବାହିତ ହୋଇଛି । ଭାରତୀୟ ସାହିତ୍ୟରେ ପ୍ରଥମେ ପଦ୍ୟ ଏବଂ ତତ୍ପରେ ଗଦ୍ୟର ଉତ୍ପତ୍ତି ଓ ବିକାଶ ସାଧିତ ହେଲା ପରି ଆମେରିକୀୟ ସାହିତ୍ୟରେ ମଧ୍ୟ ତାହା ଘଟିଛି ।

ପଦ୍ୟ ସାହିତ୍ୟର ବିକାଶଧାରାଠାରୁ ଆମେରିକୀୟ ଗଦ୍ୟ ସାହିତ୍ୟର ବିକାଶଧାରା ବେଶ୍ ବଳିଷ୍ଠ ଓ ଉନ୍ନତ । ନୂତନ ଚିନ୍ତାଧାରା ନେଇ ଗଦ୍ୟସାହିତ୍ୟ ସୃଷ୍ଟିର ସୂତ୍ରପାତକାରୀ ଭାବେ କଟନ୍ ମାର୍ଥର (Cotton Marthor)ଙ୍କ ନାମ ଆମେରିକୀୟ ସାହିତ୍ୟରେ ଅବିସ୍ମରଣୀୟ ହୋଇ ରହିଛି । ଆଧ୍ୟାତ୍ମିକ ଚିନ୍ତା, ଚେତନା ଥିଲା ତାଙ୍କ ସାହିତ୍ୟର ମୁଖ୍ୟ ସ୍ୱର । ତେଣୁ ଧର୍ମ ନାମରେ ଭଣ୍ଡାମି କରିବା ଯଦିଓ ମାର୍ଥରଙ୍କର ଉଦ୍ଦେଶ୍ୟ ନଥିଲା, ତଥାପି ଆମେରିକୀୟ ଅନ୍ଧବିଶ୍ୱାସକୁ ତାଙ୍କ ଲେଖା ଯେ, ଆହୁରି ବଦ୍ଧମୂଳ କରିଥିଲା, ଏକଥା ଅସ୍ୱୀକାର କରାଯାଇନପାରେ । ତେଣୁ ଅନ୍ୟ କୌଣସି କୃତି ପାଇଁ ମାର୍ଥର ଅମର ହୋଇ ନ ରହିଲେ ବି, ତାଙ୍କର ଧାର୍ମିକ ଚିନ୍ତାଧାରାରେ ସେ ଯେପରି ଆମେରିକାର ଜନମାନସକୁ ପ୍ରଭାବିତ ଓ ଉଦ୍‌ବେଳିତ କରିପାରିଥିଲେ, ସେଥିପାଇଁ ସେ ଅବଶ୍ୟ ଅମର ହୋଇ ରହିବେ । ଭାରତୀୟ ସାହିତ୍ୟରେ ଯେପରି ଆଦ୍ୟ ସାହିତ୍ୟିକମାନେ ଧାର୍ମିକ ଚିନ୍ତାପ୍ରସୂତ ପୁରାଣମାନ ସୃଷ୍ଟି କରିଯାଇଁ ତତ୍କାଳୀନ ଉଦ୍‌ଭ୍ରାନ୍ତ ଜନମାନସକୁ ଈଶ୍ୱରବିଶ୍ୱାସୀ ଓ

ସଯତ ସାମାଜିକ ଜୀବନ ପ୍ରତି ଆକର୍ଷଣ ସୃଷ୍ଟି କରିପାରିଥିଲେ, ଆମେରିକୀୟ ସାହିତ୍ୟରେ ମାର୍ଥରଙ୍କ ଗଦ୍ୟସାହିତ୍ୟ ଠିକ୍ ସେହି ଭୂମିକା ଗ୍ରହଣ କରିଥିଲା ।

ଏହି ସମୟର ଅନ୍ୟଜଣେ ଗଦ୍ୟସ୍ରଷ୍ଟା ଭାବେ "ଜନ୍ ଓ୍ୱାଇଜ୍'ଙ୍କ ଅବଦାନକୁ ଅସ୍ୱୀକାର କରାଯାଇ ନପାରେ । ଏମାନଙ୍କ ଅଳ୍ପବହୁତ ସୃଷ୍ଟି ଭିତରେ ଯଦିଓ ଏମାନେ ଆମେରିକାର ଗଦ୍ୟସାହିତ୍ୟକୁ ଅଗ୍ରଗତି ପଥରେ ନେଇଯାଇଥିଲେ, ତଥାପି ଅଷ୍ଟାଦଶ ଶତାବ୍ଦୀର ତିନିଜଣ ସାହିତ୍ୟ ରଥୀଙ୍କ ଦ୍ୱାରା ଆମେରିକୀୟ ଗଦ୍ୟ ସାହିତ୍ୟର ପ୍ରଭୂତ ଉନ୍ନତି ସାଧିତ ହୋଇପାରିଥିଲା । (୧)

ଫ୍ରାଙ୍କ୍ଲିନ୍ ଉଇଲିୟମ ଓ ଯୋନାଥନଙ୍କର ପ୍ରତ୍ୟେକଙ୍କଠାରୁ ପ୍ରତ୍ୟେକର ପୃଥକ୍, ଚିନ୍ତାଧାରା ଆମେରିକାରେ ସେ ସମୟରେ ଠିକ୍ ଆମ ସାହିତ୍ୟ ପରି ତ୍ରୟୀ ସାଧକ (ଫକୀରମୋହନ, ରାଧାନାଥ, ମଧୁସୂଦନ)ଙ୍କ ଯୁଗର ସୂତ୍ରପାତ କରିଥିଲା ।

ଫ୍ରାଙ୍କ୍ଲିନ୍ ଥିଲେ ଜଣେ ନୀତିବାଦୀ ଦାର୍ଶନିକ । ରାଜନୀତିର ଘନଘଟା ଭିତରେ ନିଜକୁ ଉତ୍ସର୍ଗୀକୃତ କରିଦେଇଥିଲେ ମଧ୍ୟ ତତ୍କାଳୀନ ସମାଜପ୍ରତି ତୀକ୍ଷ୍ଣ ଦୃଷ୍ଟି ଭଙ୍ଗୀ ନିକ୍ଷେପ କରି ସେ ଯେଉଁ ସମ୍ଭାବନା ସାହିତ୍ୟ ସୃଷ୍ଟି କରିଯାଇଥିଲେ, ସେଥିପାଇଁ ସେ ଆଜି ତାଙ୍କ ସାହିତ୍ୟରେ ଅମର । ତାଙ୍କର ସମ୍ବାଦିକାମୀ ଚିନ୍ତାଧାରା ନିଜ ମାତୃଭାଷା ପ୍ରତି ଅଦମ୍ୟ ମୋହ ତାଙ୍କୁ ଜଣେ ମହାନ୍ ଦେଶ ସେବକ ତଥା ସାହିତ୍ୟକର ସମ୍ମାନ ଆଣି ଦେଇପାରିଥିଲା । ଜଣେ ଆମେରିକୀୟ ସମାଲୋଚକ ତାଙ୍କ ସମ୍ପର୍କରେ ଉଲ୍ଲେଖ କରିଛନ୍ତି—

Benjamin Franklin was a practical man, a philosopher and a politician. His pragmatic maxims home spun observation and insistance on simplicity in style make him seem now in many respects the first examplar of the American self-made man.

---

(୧) "× × × The three most distinguished 18th century writers of prose, representing three emerging American traditions were Benjamin Franklin, William Byrd, and Jonathan Edwards."

( Cassell's Encyclopaedia of literature, vol-I, )

ଉଇଲସ୍ନମ୍ ବେର୍ଡ୍ ଜଣେ ସମ୍ଭ୍ରାନ୍ତ ବଂଶୀୟ ନଥିଲେ ବି ସେ ରକ୍ଷଣଶୀଳ ଧର୍ମୀୟ ଗୋଷ୍ଠୀ ସପକ୍ଷରେ ସାହିତ୍ୟ ସୃଷ୍ଟି କରି ସେମାନଙ୍କ ପ୍ରତିନିଧିତ୍ୱ କରିଥିଲେ । ଏହା ସତ୍ତ୍ୱେ ବି ସେ ଥିଲେ ଜଣେ ଉଗ୍ର ଜାତୀୟବାଦୀ । ତାଙ୍କର ଗଦ୍ୟ ରଚନା (ପ୍ରବନ୍ଧ)ଗୁଡ଼ିକ ଏଥିପାଇଁ ବେଶ୍ ପ୍ରାଣବନ୍ତ ମନେହୁଏ । ସେ ରାଜତନ୍ତ୍ର ସପକ୍ଷରେ ଓ ଗଣତନ୍ତ୍ର ବିପକ୍ଷରେ ସ୍ୱର ଉଠାଇବା କଥା ତାଙ୍କ ଲିଖିତ କେତେକ ପ୍ରବନ୍ଧରୁ ଦେଖିବାକୁ ମିଳେ । ଇଂଲଣ୍ଡର ରାଣୀ 'ଆନେ'ଙ୍କ ସମୟର ଇଂରେଜ ସାହିତ୍ୟ ଦ୍ୱାରା ସେ ଖୁବ୍ ପ୍ରଭାବିତ ହୋଇପଡ଼ିଥିଲେ । ଏହି ଖ୍ୟାତିସମ୍ପନ୍ନ ଲେଖକଙ୍କ ସମ୍ପର୍କରେ ତାଙ୍କ ସମାଲୋଚକଙ୍କର ମତ ହେଉଛି—

> "He wrotes sprightly essays in verse as well as prose in the manner of the London wits of the age of queen Anne, and condescending satirical accounts of his less-favoured countrymens in a manner not far from that of wasington, Iraving or the urbane paragraphs of the Newyorker today."

ଯୋନାଥନ ଥିଲେ ମୁଖ୍ୟତଃ ଜଣେ ତର୍କବାଦୀ, ଯୁକ୍ତିଯୁକ୍ତ-ପ୍ରାମାଣିକ ସାହିତ୍ୟିକ । ଦାର୍ଶନିକ ଲକଆନଙ୍କ ଦୃଷ୍ଟିକୋଣ ତାଙ୍କ ସାହିତ୍ୟରେ ପ୍ରତିଫଳିତ ହୋଇଥିଲା । ଏଥିସହି ତାଙ୍କ ଲେଖାରେ ମଧ୍ୟ ଧାର୍ମିକ ଚିନ୍ତାଧାରାର ସମନ୍ୱୟ ଘଟିଛି । ସେ ସମୟରେ ତାଙ୍କର ଏହି ସାହିତ୍ୟ ସୃଷ୍ଟି ଯଦିଓ ଆମେରିକାବାସୀଙ୍କ ପକ୍ଷେ ସେତେ ଆନନ୍ଦ ଦେବାପରି ଉପାଦାନ ଯୋଗାଇ ପାରିନଥିଲା, ତଥାପି ଏହା ସେମାନଙ୍କ ପକ୍ଷେ ବହୁ ଶିକ୍ଷାପ୍ରଦ ଥିଲା ।

୧୬୩୯ ମସିହାଠାରୁ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଆମେରିକାରେ ମୁଦ୍ରଣ ଶିଳ୍ପର (Press) ବିକାଶ ଘଟିଥିଲା । ସାମ୍ବାଦିକତା କ୍ଷେତ୍ରରେ ଆମେରିକା ନିଜର ପ୍ରାକ୍ ସ୍ୱାଧୀନତା ପ୍ରାପ୍ତି ସମୟରେ ଇଂଲଣ୍ଡର ସାମ୍ବାଦିକତା ପରି ଆପଣାର ସମ୍ବାଦ କ୍ଷେତ୍ରକୁ ବେଶ୍ ବ୍ୟାପକ ଓ ପ୍ରଶସ୍ତ କରିପାରିଥିଲା । ଏହି ସମୟରେ ସ୍ୱାଧୀନତା ସଂଗ୍ରାମ ପାଇଁ ଉଦ୍ଦୀପନାମୂଳକ କାବ୍ୟକବିତା ସମେତ ଗଳ୍ପ ଉପନ୍ୟାସ ଲେଖିବାର ପ୍ରଚେଷ୍ଟା ମଧ୍ୟ କରାଯାଇଥିଲା । ତତ୍କାଳୀନ ସମୟରେ ଆବଶ୍ୟକତାନୁଯାୟୀ ଇଂରେଜ କବି ମିଲ୍ଟନ ଓ ପୋପ୍‌ଙ୍କ ଦ୍ୱାରାରେ ପ୍ରଭାବିତ ହୋଇ ଆମେରିକୀୟ ଲେଖକ ଜନ୍ ଟ୍ରମ୍ବୁଲ୍ (John Trumbul) ଓ ଫିଲିପ୍ ସାମୟିକ ଜାତୀୟବାଦୀ ଲେଖାମାନ ଲେଖି ତାଙ୍କ ସାହିତ୍ୟରେ ଏକ ନୂତନ ଦିଗନ୍ତର ସୂତ୍ରପାତ କରିବା ସଙ୍ଗେ ସଙ୍ଗେ ଆମେରିକାର ଆଗାମୀ ସ୍ୱାଧୀନତା ସଂଗ୍ରାମ ପାଇଁ ଏଥିରେ ଯେଉଁ ଖୋରାକ ଯୋଗାଇ ଦେଇଗଲେ, ତାହା ଆମେରିକା ପାଇଁ ଏକ ନୂତନ ଦୁନିଆ ଗଢ଼ିବାର ସ୍ୱପ୍ନକୁ ସଫଳ କରିବାରେ ସାହାଯ୍ୟ କରିଥିଲା ।

ଅମାସ୍ ପେନ୍‌ଙ୍କ ଗଦ୍ୟ, ଫ୍ରେନଉଙ୍କ ପଦ୍ୟ ଆମେରିକାର ପ୍ରାକ୍ ସ୍ୱାଧୀନତା କାଳରେ ଯେଉଁ ସ୍ୱର ଉତ୍ତୋଳନ କଲା, ତହିଁରେ ଆମେରିକାବାସୀଙ୍କ ଉତ୍ସାହ, ଉଦ୍ଦୀପନା, ସ୍ୱାଧୀନତା ପ୍ରାପ୍ତି ପାଇଁ ଦ୍ୱିଗୁଣିତ ହେବାକୁ ଲାଗିଲା । ଏମାନଙ୍କ ସାହିତ୍ୟ ସୃଷ୍ଟି ଆମେରିକାରୁ ଉପନିବେଶ ବାଦର ଉଚ୍ଛେଦ ବିରୁଦ୍ଧରେ ମୁଖ୍ୟତଃ ସ୍ୱର ଉତ୍ତୋଳନ କରିଥିଲା । ଏହି ଲେଖକ ଦ୍ୱୟଙ୍କ ଉଦାର ସୃଷ୍ଟିର ସାମୟିକ ଚେତନା ଆମେରିକୀୟ ସାହିତ୍ୟ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣିବାକୁ ସକ୍ଷମ ହୋଇପାରିଥିଲା । ଏହି ସମୟରେ ଥମାସ୍ ଜେଫରସନ୍, ଜନ୍ ଆଡାମଙ୍କ ସୃଷ୍ଟିଶୀଳ ପାଣ୍ଡୁଲିପି ଦାର୍ଶନିକ ଲକ୍, ରୁସୋ ଓ ଇଂରେଜ ବାସୀଙ୍କ ଆଇନାନୁଯାୟୀ ବହୁଭାବେ ପ୍ରଭାବିତ ହୋଇ ଯେଉଁ ନୂତନ ଚିନ୍ତାଧାରା ବ୍ୟକ୍ତ କଲା, ତାହା ପ୍ରତ୍ୟେକ ଆମେରିକା ବାସୀଙ୍କ ଗଣତନ୍ତ୍ର ଜନିତ ସ୍ୱାଧୀନତା ପ୍ରାପ୍ତିର ପ୍ରଥମ ଭିତ୍ତିଭୂମି କହିଲେ ଅତ୍ୟୁକ୍ତି ହେବନାହିଁ । କିନ୍ତୁ ଆମେରିକୀୟ ସାହିତ୍ୟରେ ଯଦିଓ ଏହି ସମୟରେ ଜାତୀୟତାର ସ୍ୱର ଉତ୍ତୋଳନ ହୋଇଥିଲା, ତଥାପି ସେ ସାହିତ୍ୟ ସମଗ୍ର ଆମେରିକାପାଇଁ ଗୋଟିଏ ସାହିତ୍ୟ ନହୋଇ ଏକ ଏକ ଆଞ୍ଚଳିକ ସାହିତ୍ୟ ଭାବେ ପରିପ୍ରକାଶିତ ହୋଇଥିଲା । କାରଣ ଉପନିବେଶିକ ସ୍ତରରେ ତତ୍କାଳୀନ ସାହିତ୍ୟିକମାନେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇପଡ଼ିଥିଲେ ।

୧୭୮୯ ସିହାରେ ଓ୍ୱାସିଂଟନ୍‌ଙ୍କ ଦ୍ୱାରା ଇଂରେଜମାନେ ସଂପୂର୍ଣ୍ଣଭାବେ ପରାସ୍ତ ହେବା ପର୍ଯ୍ୟନ୍ତ ଆମେରିକୀୟ ସାହିତ୍ୟ ଏହିପରିଭାବେ ଆଞ୍ଚଳିକ ଭିତ୍ତିରେ ନିଜକୁ ପ୍ରସ୍ତୁତ କରିପାରିଥିଲା, ଯାହାକି ଆମେରିକାର ସ୍ୱାଧୀନତା ପ୍ରାପ୍ତି ପରେ ନିଜକୁ "ଗୋଟିଏ ରାଷ୍ଟ୍ରର ସାହିତ୍ୟ' ଭାବେ ପରିଚିତ ପ୍ରଦାନ କରିବାକୁ କ୍ଷମଶୀଳ ହୋଇପାରିଥିଲା ।

ଅଷ୍ଟାଦଶ ଶତାବ୍ଦୀର ଶେଷ ଦୁଇଦଶକ ଥିଲା ଆମେରିକୀୟ ସାହିତ୍ୟ ତଥା ରାଜନୀତି ପକ୍ଷେ ଏକ ସନ୍ଧିସନ୍ଧ ମୁହୂର୍ତ୍ତ । ନିଜ ମାତୃଭୂମିକୁ ଇଂଲଣ୍ଡର ଉପନିବେଶିକ ଶାସନ କବଳରୁ ମୁକ୍ତ କରିବାର କଠିନ ସାଧନାକୁ ସିଦ୍ଧିରେ ପରିଣତ କରିବା ପାଇଁ ଆମେରିକାବାସୀଙ୍କ ଅଦମ୍ୟ ଉତ୍ସାହ, ଉଦ୍ଦୀପନା ବିଶ୍ୱର ଇତିହାସରେ ଓ ସାହିତ୍ୟରେ ପ୍ରାୟ ବିରଳ । ସେମାନଙ୍କ ସାହିତ୍ୟିକ ବୃନ୍ଦ ଯଦିଓ ଏହି ସମୟରେ ସାମୟିକ ସାହିତ୍ୟ ସୃଷ୍ଟି କରି ଜନମାନସକୁ ଉତ୍ତେଜିତ କରିବାକୁ ଗ୍ରହିଁଥିଲେ, ତଥାପି ଆନ୍ତର୍ଜାତିକ କ୍ଷେତ୍ରରେ ଏହାର ମୂଲ୍ୟ ଚିରନ୍ତନ ନହେଲେ ବି ଆମେରିକାର ସାହିତ୍ୟ ଜଗତ ପାଇଁ ଏହା ଏକ ଚୀରନ୍ତନୀ ସାହିତ୍ୟ ଭାବେ ଗ୍ରହଣୀୟ । ଏହି ସାହିତ୍ୟିକ ଗୋଷ୍ଠୀ ତତ୍କାଳୀନ ଆବଶ୍ୟକାନୁଯାୟୀ ସାହିତ୍ୟକୁ ରୂପାୟିତ କରି, ସମୟୋପଯୋଗୀ ଚେତନା ସୃଷ୍ଟି କରି ଆମେରିକାର ଜନମାନସକୁ ଯଥାସାଧ୍ୟ ପଥପ୍ରଦର୍ଶନ ଦେଇ ଆମେରିକୀୟ ସାହିତ୍ୟକୁ ଋଦ୍ଧିମନ୍ତ କରିପାରିଥିଲେ ।

ଏହିପରି ୯ଡ଼ନ୍ତ୍ରା ପରେ ମଧ୍ୟ ଊନବିଂଶ ଶତାବ୍ଦୀର ପ୍ରଥମ ପାଦରେ ଆମେରିକୀୟ ସାହିତ୍ୟ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ଗଢ଼ିଉଠି ପାରିନଥିଲା । ଏକ ଅନିର୍ଦ୍ଦିଷ୍ଟ ତଥା ଅନୋଳିତ ସଭ୍ୟତାର ଶୀକାର ହୋଇପଡ଼ିବା ସଙ୍ଗେ ସଙ୍ଗେ ଆମେରିକୀୟ ସାହିତ୍ୟ ଯୁଦ୍ଧର ବୀଭତ୍ସିକା, କରୁଣତା, ବିଭତ୍ସତା ଓ ଅସହାୟତାର ଚକ୍ର ଜାଲ ଭିତରେ ଛୁପାୟିତ କରିପାରିଥିଲା । ଏହି ସମୟରେ ଡ୍ୟୁଫେ ଏବଂ ଜେମସ ପ୍ରଭୃତି ଆମେରିକୀୟ ଜାତୀୟବାଦୀ ସାହିତ୍ୟିକମାନେ ଇଉରୋପୀୟ ସାହିତ୍ୟିକମାନଙ୍କ ସେମାନଙ୍କ ସମାଲୋଚନାର ଶୀକାର କରିପାରିଥିଲେ । ସେମାନଙ୍କ ବଳିଷ୍ଠ ଉପସ୍ଥାପନା ଯୁକ୍ତିଯୁକ୍ତ ପ୍ରମାଣିକ ଆଲୋଚନା ଆମେରିକୀୟ ସାହିତ୍ୟର ଆଲୋଚନା ଦିଗଟିକୁ ବେଶ୍ ବଳିଷ୍ଠ ଭିତ୍ତିଭୂମି ପ୍ରଦାନ କରିପାରିଥିଲା । ଏହାର ଅଳ୍ପ ବର୍ଷ ପରେ ପରେ ଜୋସେଫ୍ ଡେନି (Joseph Denny) ଫିଲେଡ଼େଲ୍ ଫିଆରେ, ଓ୍ୱାସିଂଟନ ନିଉୟର୍କରେ ଏବଂ ପରେ ପରେ ହେନେରି ଓ୍ୱାଡ଼ସ ଓ୍ୱାର୍ଥ ନିଉଇଂଲଣ୍ଡର ଜନମାନସରେ ଏକ ନୂତନ ଚେତନା ସୃଷ୍ଟି କରିବା ଦିଗରେ ସକ୍ଷମ ହୋଇପାରିଥିଲେ ।

ଊନବିଂଶ ଶତାବ୍ଦୀର ପ୍ରଥମ ଦୁଇଦଶକ ପର୍ଯ୍ୟନ୍ତ ଆମେରିକୀୟ ସାହିତ୍ୟରେ Romanticismର ଆବିର୍ଭାବ ଘଟିନଥିଲା । ଅନ୍ୟ ପକ୍ଷରେ ସେହି ସମୟରେ ରୋମାଣ୍ଟି-ସିଜିମ୍‌ର ବଳିଷ୍ଠ ପ୍ରଭାବ ଫ୍ରାନ୍ସ ଓ ଇଂରେଜ ସାହିତ୍ୟକୁ ପ୍ରଚ୍ଛନ୍ନ ଭାବେ ଆଚ୍ଛାଦିତ କରି ରଖିଥିଲା । ଏହି ଦୃଷ୍ଟିରୁ ଆମେରିକୀୟ ସାହିତ୍ୟିକମାନେ ସେମାନଙ୍କ ଚିନ୍ତା ଓ ଚେତନା-ଠାରୁ ଗୋଟିଏ ଯୁଗ ପଛରେ ପଡ଼ିରହିଥିଲେ ଏବଂ ପରେ ପରେ ଇଂରେଜ ସାହିତ୍ୟ ଦ୍ୱାରା ପ୍ରଭାବିତ ହୋଇ କେତେକ ଆମେରିକୀୟ ଲେଖକ ସେହି ଚିନ୍ତା ଓ ଚେତନାକୁ ଆମେରିକାର ସାହିତ୍ୟରେ ପ୍ରୟୋଗ କରିବାକୁ ସକ୍ଷମ ହୋଇପାରିଥିଲେ ।

୧୮୩୦ ମସିହାରୁ ୧୮୪୦ ମସିହାର ସମୟ ସୀମା ଭିତରେ "Adgar Alan Poe"ଙ୍କ ସାହିତ୍ୟରେ ପ୍ରଥମେ Romanticismର ପଦଧ୍ୱନି ଶୁଣିବାକୁ ମିଳିଲା । ତାଙ୍କର ଏହି କାବ୍ୟିକ ଚେତନା କଲେରିଜ୍‌ଙ୍କ 'Poetic Theory' ଦ୍ୱାରା ବହୁଭାବେ ପ୍ରଭାବିତ ହୋଇଥିବାର ଜଣାଯାଏ ଏବଂ ବିଶେଷକରି ସେ Mrs. Browingଙ୍କ କାବ୍ୟ-କବିତାର ଜଣେ ଦୃଢ଼ ପୃଷ୍ଠପୋଷକ ଥିବାରୁ ତାଙ୍କ କାବ୍ୟ-କବିତାରେ ସେ କେତେ-କାଂଶରେ ତାଙ୍କ ଦ୍ୱାରା ମଧ୍ୟ ପ୍ରଭାବିତ ହୋଇଥିବା ପରି ମନେହୁଅନ୍ତି । ତାଙ୍କ କବିତାର ବଳିଷ୍ଠ ପଂକ୍ତି, ଯୁଗପୋଯୋଗୀ କାବ୍ୟିକଛଟା ଓ ଚେତନା, ଲାଳିତ୍ୟ, ସଦୃଷ୍ଟାନ୍ତ ଉପମା, ଉଦାହରଣ ପ୍ରଭୃତି ତାଙ୍କୁ ଜଣେ ବିଶିଷ୍ଟ ଆମେରିକୀୟ କବି ଭାବରେ ପରିଚିତ କରାଇ ପାରିଥିଲା । ତାଙ୍କର ଏହି ଶୈଳୀ ତାଙ୍କ ପରବର୍ତ୍ତୀ ବହୁ ସାହିତ୍ୟିକମାନଙ୍କୁ ପ୍ରଭାବିତ କରି-ପାରିଥିଲା । ଊନବିଂଶ ଶତାବ୍ଦୀର ଅଦ୍ୟଭାଗରେ ଜଣେ ବିଶିଷ୍ଟ ସାହିତ୍ୟିକ ଭାବେ ସେ ଆମେରିକୀୟ ସାହିତ୍ୟରେ ଏଥିପାଇଁ ବେଶ୍ ସୁପରିଚିତ ହୋଇପାରିଛନ୍ତି ।

ଆମେରିକୀୟ ସାହିତ୍ୟରେ ଊନବିଂଶ ଶତାବ୍ଦୀର ଦ୍ୱିତୀୟ ପର୍ଯ୍ୟାୟରେ ବହୁ ପ୍ରତିଷ୍ଠିତ ସଂସ୍କାରବାଦୀ ସାହିତ୍ୟିକ ଦେଖାଦେଇଥିଲେ । ନିଗ୍ରୋ-ଦାସତ୍ୱ ପ୍ରଥାର ଉଚ୍ଛେଦ ଏବଂ ସର୍ବୋପରି ବ୍ୟକ୍ତି ସ୍ୱାଧୀନତା ଉପରେ ସେମାନଙ୍କ ସାହିତ୍ୟସୃଷ୍ଟି ଖୁବ୍ ସଚେତନ ଥିବାପରି ମନେହୁଏ । ନୂତନ ସ୍ୱାଧୀନତା ପ୍ରାପ୍ତ ଆମେରିକାର ଜନମାନସକୁ ଏହି ଚିନ୍ତାଧାରା ଆହୁରି ଉଦ୍‌ବେଳିତ କରିଦେଇଥିଲା ବୋଲି ଆମେରିକୀୟ ସାହିତ୍ୟର ସମାଲୋଚକମାନେ ମନ୍ତବ୍ୟ କରିଛନ୍ତି । କାରଣ ନୂଆ କରି ସ୍ୱାଧୀନତା ପାଇଥିବା ଆମେରିକା ପକ୍ଷେ ଏହା ଥିଲା ଏକ ସମସ୍ୟା ଓ ଏକ ମୁଖ୍ୟ ସଂକଟ । ତେଣୁ ଊନବିଂଶ ଶତାବ୍ଦୀର ଦ୍ୱିତୀୟ ପର୍ଯ୍ୟାୟରେ ଏହି ଚେତନା ସମ୍ପନ୍ନ ଲେଖକମାନଙ୍କର ସାହିତ୍ୟସେ ଖୁବ୍ ଗୁରୁତ୍ୱପୂର୍ଣ୍ଣ, ଏକଥା ଅସ୍ୱୀକାର କରିହେବ ନାହିଁ । ଯେଉଁମାନଙ୍କ ଲେଖାରେ ଏହି ବିପ୍ଳବର ସୂତ୍ରପାତ ହୋଇଥିଲା ସେମାନେ ଥିଲେ, "ଉଇଲିୟମ୍ ଲଏଡ୍", "ଗ୍ୟାରିସନ୍", ହ୍ୱିଟର୍" ପ୍ରଭୃତି ବହୁ ଲେଖକ ବୃନ୍ଦ । ଏହାପରେ କ୍ରୀତଦାସ ପ୍ରଥା ବିରୁଦ୍ଧରେ ସ୍ୱରୋତ୍ତୋଳନ ଏବଂ ସେମାନଙ୍କ ପ୍ରତି ଏକ ସମବେଦନାପୂର୍ଣ୍ଣ ଅଭିବ୍ୟକ୍ତିର ପରିପ୍ରକାଶ 'ମିସ୍ ହେରିଏଟ ବେକର ଷ୍ଟୋ"ଙ୍କ "Uncle Toms Cabin" ଉପନ୍ୟାସରେ ଦେଖିବାକୁ ମିଳିଥିଲା ବୋଧେ ଏଥିପାଇଁ ଏହି କ୍ରୀତଦାସପ୍ରଥା ଜନିତ ସମସ୍ୟାବହୁଳ ଉପନ୍ୟାସଟି ଆମେରିକୀୟମାନଙ୍କ ନିକଟରେ ବେଶ୍ ଆଦୃତ ହୋଇପାରିଥିଲା । ତେଣୁ ନୂଆକରି ଗଢ଼ାହୋଇଥିବା ଆମେରିକା ସରକାରଙ୍କ ପକ୍ଷେ ଏହି ଚିନ୍ତାଧାରାର ସାହିତ୍ୟକମାନେ ଥିଲେ ଘୋର ସଙ୍କଟ ସ୍ୱରୂପ । ଏହି ସମୟରେ ଆମେରିକୀୟ ସାହିତ୍ୟରେ କ୍ୟାଣ୍ଟେ, କାର୍ଲାଇଲ୍, ପ୍ଲେଟୋ, ପ୍ରଭୃତି ପ୍ରାଚ୍ୟ-ପାଶ୍ଚାତ୍ୟ ଦାର୍ଶନିକଙ୍କ ଚିନ୍ତାଧାରା କ୍ରମଶଃ ଆମେରିକୀୟ ସାହିତ୍ୟିକମାନଙ୍କ ଦ୍ୱାରା ଆଦୃତ ହୋଇ ସେମାନଙ୍କ ସାହିତ୍ୟରେ ପରିବ୍ୟାପ୍ତ ହୋଇଥିଲା ।

ଊନବିଂଶ ଶତାବ୍ଦୀର ଏକ ବିଶେଷ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି, ଏହି ସମୟରେ ଆମେରିକୀୟ ସାହିତ୍ୟରେ ବିଶେଷକରି ଉପନ୍ୟାସ ରଚନାରେ ନୂତନତ୍ୱ ଏବଂ ଏକ ବିସ୍ତୃତ ଚିନ୍ତାଧାରାର ପରିପ୍ରକାଶ ଘଟିଥିଲା । ଉପନ୍ୟାସ ସୃଷ୍ଟି ପରିପ୍ରେକ୍ଷୀରେ ଯଦି ଆମେରିକୀୟ ସାହିତ୍ୟକୁ ସ୍ମରଣକୁ ଅଣାଯାଏ, ତେବେ ଊନବିଂଶ ଶତାବ୍ଦୀ ହିଁ ହେବ ଏହାର ଆଦ୍ୟପାଦଛୁ ଏବଂ ଏହି ପର୍ଯ୍ୟାୟ (ସୀମାରେଖା)ଠାରୁ ଆମେରିକାର ଗଦ୍ୟସାହିତ୍ୟ ମୁଖ୍ୟତଃ ଉପନ୍ୟାସ ବହୁଳ । (ଏହି ଅଧ୍ୟାୟର ଶେଷ ପର୍ଯ୍ୟାୟରେ ଏହାର ବିଶେଷ ଆଲୋଚନା ହୋଇଛି ।)

୧୮୦୫ ମସିହାରୁ ଆମେରିକୀୟ ସାହିତ୍ୟରେ ଦେଖାଦେଇଥିବା ଅନିଶ୍ଚିତ ଗତିବିଧି ଊନବିଂଶ ଶତାବ୍ଦୀର ମଧ୍ୟପର୍ଯ୍ୟାୟର ଚାରିଜଣ ସାହିତ୍ୟସ୍ରଷ୍ଟାଙ୍କ ସୃଷ୍ଟି ଦ୍ୱାରା ନିୟନ୍ତ୍ରିତ ହୋଇଥିଲା । ସେମାନେ ଓ ସେମାନଙ୍କ ପ୍ରତିନିଧି ଶ୍ରେଣୀୟ ସୃଷ୍ଟି ହେଲା—ହଥର୍ଣ୍ଣଙ୍କ 'ସ୍କାରଲେଟ୍ ଲେଟର'-୧୮୫୦, ମେଲଭିଲେଙ୍କ 'ମୋବିଡ଼ିକ'-୧୮୫୧, ଥୋରେଙ୍କ —'ଓ୍ୱାଲ୍‌ଡେନ୍'-୧୮୫୪, ହ୍ୱିଟ୍ ମ୍ୟାନଙ୍କ 'ଲିଭ୍ସ ଅଫ୍ ଗ୍ରାସ୍'-୧୮୫୫ ।

ହଥର୍ଣ୍ଣଙ୍କ 'Scarlet Letter' ଓ ମେଲ୍‌ଭିଲେଙ୍କ 'Mobedic' ମଣିଷ ଜୀବନର ପାପ-ପୁଣ୍ୟର ଚକ୍ରକୁ ପ୍ରକାଶ କରି ମଣିଷର ପାପ-ପୁଣ୍ୟ ପ୍ରତି ଏକ 'ସକାଳ ଓ ସନ୍ଧ୍ୟା'ର, 'ଆନନ୍ଦ ଓ ବିଷାଦ'ର ସୀମାରେଖାକୁ ନିର୍ଦ୍ଦେଶ (ଇଙ୍ଗିତ) ଦେଇଥିଲା ଓ ପରିଣତି, ପାର୍ଥକ୍ୟ ପ୍ରଭୃତି ସୃଷ୍ଟିଇଥିଲା । ଏଥିରେ Emorson (ଇମରସନ୍)ଙ୍କ ମନସ୍ତତ୍ତ୍ୱର ପରୀକ୍ଷା ନିରୀକ୍ଷା କେତେକାଂଶରେ ପ୍ରତିଫଳିତ ହୋଇଥିବାର ଦେଖାଯାଏ ।

ଏହି ସମୟରେ ଇମରସନ୍ (Emorson) ଥିଲେ ଆମେରିକୀୟ ଉପନ୍ୟାସ ଜଗତର ଜଣେ ବଳିଷ୍ଠ ଓ ବହୁ ପ୍ରକାଶିତ ଔପନ୍ୟାସିକ । ପ୍ରାଚ୍ୟ ଦାର୍ଶନିକଙ୍କ ଚିନ୍ତାଧାରା ଓ 'ଏନିକ୍'ଙ୍କ ସିଦ୍ଧାନ୍ତର ସମନ୍ୱୟ ତାଙ୍କ ସାହିତ୍ୟ ସୃଷ୍ଟିରେ ଲକ୍ଷ୍ୟ କରାଯାଏ । ହ୍ୱିଟ୍‌ମ୍ୟାନ୍‌ଙ୍କ 'ଲିଭସ୍‌ଅଫ୍ ଗ୍ରାସ୍' କେତେକାଂଶରେ Emorsonଙ୍କ ଚିନ୍ତାଶୀଳ ତତ୍ତ୍ୱ ଦ୍ୱାରା ମଧ୍ୟ ପ୍ରଭାବିତ ହୋଇପଡ଼ିଥିଲା । ଜଣେ ମଣିଷର ଦୈନନ୍ଦିନ ଜୀବନର ପରୀକ୍ଷା ତତ୍ତ୍ୱ ଭାବେ 'ଥୋରେ'ଙ୍କ 'ଓ୍ୱାଲଡେନ୍'କୁ ଗ୍ରହଣ କରିନିଆଯାଇପାରେ । ଏହି ତିନିଜଣ ସାହିତ୍ୟିକ ତାଙ୍କର ସୃଜନି ପ୍ରତିନିଧି ସ୍ଥାନୀୟ ସୃଷ୍ଟି ମାଧ୍ୟମରେ ଆମେରିକୀୟ ବିକ୍ଷିପ୍ତ ଚିନ୍ତାଧାରାକୁ କେତେକାଂଶରେ ସୁସଂଯତ କରିପାରିଥିଲେ । ଏମାନଙ୍କ ଦ୍ୱାରା ଆମେରିକୀୟ ସାହିତ୍ୟର ଏକ ନିର୍ଦ୍ଦିଷ୍ଟ ଗତି ନିୟନ୍ତ୍ରିତ ହୋଇଥିଲା । ଏକ ଶିଥିଳ ସାହିତ୍ୟ ସୃଷ୍ଟି ଏମାନଙ୍କ ଉଦ୍ୟମରେ ବିଲୁପ୍ତ ହୋଇ ଏକ ଦ୍ରୁତଶୀଳ ସାହିତ୍ୟ ସୃଷ୍ଟିର ପରମ୍ପରା ସୃଷ୍ଟି କରିଥିଲା । ସାହିତ୍ୟ ଜଗତରୁ ଏମାନଙ୍କର ବିଦାୟ ସଙ୍ଗେ ସଙ୍ଗେ ଆମେରିକୀୟ ସାହିତ୍ୟରେ ଏକ ବିଶିଷ୍ଟ ଯୁଗର ଅବସାନ ଘଟିଲା ।

୧୮୬୧ର ଆମେରିକାର ଗୃହଯୁଦ୍ଧ ନିର୍ଦ୍ଦୟଭାବରେ ଆମେରିକାର ପ୍ରତ୍ୟେକ ବିକାଶଶୀଳ ସୃଷ୍ଟିକୁ କ୍ଷତବିକ୍ଷତ କରିଦେଇଥିଲା । ଯୁଦ୍ଧୋତ୍ତର ନୈରାଶ୍ୟ ତତ୍କାଳୀନ ଆମେରିକୀୟ ସାହିତ୍ୟିକମାନଙ୍କୁ ବେଶ୍ ପ୍ରଭାବିତ କରିପାରିଥିଲା । ସେଥିପାଇଁ ଯୁଦ୍ଧୋତ୍ତର ଆମେରିକୀୟ ସାହିତ୍ୟ ପରିବର୍ତ୍ତିତ ହୋଇ ନୂତନଭାବରେ ନିଜକୁ ପରିପ୍ରକାଶ କଲା । ଏହି ଅବଶ୍ୟମ୍ଭାବୀ ପରିବର୍ତ୍ତନରେ ପୁରାତନ ତତ୍ତ୍ୱ ସବୁ ବିଲୟ ଭଜିଲା ଓ ନୂତନ ତତ୍ତ୍ୱମାନ ଆତ୍ମପ୍ରକାଶ କଲା । ଏଥିରେ ଆମେରିକୀୟ ସାହିତ୍ୟ ନେଲା ଏକ ଭିନ୍ନ ମୋଡ଼ । ୧୮୬୫ ମସିହା ବେଳକୁ ଯେତେବେଳେ ଗୃହଯୁଦ୍ଧର ପରିସମାପ୍ତି ଘଟିଲା, ସେତେବେଳକୁ ହଥର୍ଣ୍ଣ ଓ ଥୋରେ ଇହଧାମରୁ ବିଦାୟ ନେଇସାରିଥିଲେ । ମେଲ୍‌ଭିଲେ ମଧ୍ୟ ତାଙ୍କ ସାହିତ୍ୟ ସୃଷ୍ଟିରୁ ଅବସର ନେଇସାରିଥିଲେ । ତଥାପି ଏମାନଙ୍କ ସମଧାମୟିକ ଭାବେ ସୃଷ୍ଟିକ୍ଷମ ଥିବା ଆମେରିକାର ପ୍ରିୟ ଲେଖକ ଇମରସନ୍ ଓ ହ୍ୱିଟ୍‌ମ୍ୟାନ୍‌ଙ୍କ ପ୍ରଭାବ ବହୁଦିନ ପର୍ଯ୍ୟନ୍ତ ଆମେରିକୀୟ ସାହିତ୍ୟର ଅନୁଜ ସାହିତ୍ୟିକମାନଙ୍କୁ ବେଶ୍ ପ୍ରଭାବିତ କରିପାରିଥିଲା । Emorson ଓ Whit man ତାଙ୍କର ସବୁଠାରୁ ଶ୍ରେଷ୍ଠ ରଚନାମାନ ଯୁଦ୍ଧ ପରେ ହିଁ ରଚନା କରିଥିଲେ । ଏହିଥିରେ ହିଁ ସେମାନେ ନିଉ-ଇଂଲଣ୍ଡର ସାହିତ୍ୟକୁ ଉଦ୍‌ବୁଦ୍ଧ

କରିପାରିଥିଲେ; ଯହିଁରେ ତାଙ୍କ ପରବର୍ତ୍ତୀ ସାହିତ୍ୟର ବିକାଶଧାରା ବେଶ୍ ବଳିଷ୍ଠ ସମୃଦ୍ଧ, ଓ ରୁଚିଶୀଳ ହୋଇପାରିଥିଲା ।

ଊନବିଂଶ ଶତାବ୍ଦୀର ଯୁଦ୍ଧ ପରବର୍ତ୍ତୀ ଏହି ମଧ୍ୟବର୍ତ୍ତୀକାଳୀନ ସାହିତ୍ୟ ସୃଷ୍ଟିରେ ଯୁଦ୍ଧଜନିତ ଘଟଣାବଳୀଗୁଡ଼ିକୁ ନେଇ ହ୍ୱିଟ୍‌ମ୍ୟାନ୍‌ଙ୍କ **'Drum Taps'** ଓ ମେଲ୍‌ଭିଲେଙ୍କ **'Bettle Place'** ପୁସ୍ତକମାନ ରଚିତ ହୋଇଥିଲା । ଯୁଦ୍ଧର ଅବସାନ ପରବର୍ତ୍ତୀ ସାହିତ୍ୟ ଆମେରିକୀୟ ସାହିତ୍ୟରେ ଏକ ନୂତନ ଦିଗନ୍ତ ସୃଷ୍ଟି କରିବାକୁ ସକ୍ଷମ ହୋଇଥିଲା । ଆମେରିକୀୟ ସାହିତ୍ୟର ଜଣେ ସମାଲୋଚକଙ୍କ ମତରେ—**'At the words and new areas of literary activity were discovered in American literature'** ଅତଏବ ଯୁଦ୍ଧୋତ୍ତର ସାହିତ୍ୟରେ ଆମେରିକୀୟ ସାହିତ୍ୟର ଏକ ଭିନ୍ନ ପରିବର୍ତ୍ତନଶୀଳ ରୂପରେଖ ଦେଖିବାକୁ ମିଳିଲା ।

ଏହି ସମୟରେ **'Mark Twain'** ଜଣେ ବ୍ୟଙ୍ଗ ତଥା ହାସ୍ୟ ରସାତ୍ମକ ଲେଖକ ଭାବରେ ଆମେରିକୀୟ ସାହିତ୍ୟରେ ଅବତୀର୍ଣ୍ଣ ହୋଇଥିଲେ । ପିଲଙ୍କ ପାଇଁ ଶ୍ରେଷ୍ଠ ଶ୍ରେଷ୍ଠ ମଜାଗପ ଲେଖିବାରେ ସେ ବେଶ୍ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କର ଏହି ଗଳ୍ପ-ଗୁଚ୍ଛ ଆମେରିକୀୟ ପାଠକଗୋଷ୍ଠୀଙ୍କ ଦ୍ୱାରା ବେଶ୍ ଆଦୃତ ହୋଇଥିବାର ଜଣାଯାଏ ।

ଯୁଦ୍ଧୋତ୍ତର ଆମେରିକୀୟ ସାହିତ୍ୟରେ ଯେଉଁ କେତେଜଣ ଔପନ୍ୟାସିକ ବେଶ୍ ପ୍ରତିଷ୍ଠିତ ହୋଇପାରିଥିଲେ । ତନ୍ମଧ୍ୟରୁ **Howells, Henery James** ଥିଲେ ଅନ୍ୟତମ । ହେନେରୀ ଜେମ୍‌ସ ନିଃସନ୍ଦେହରେ ତତ୍‌କାଳୀନ ଆମେରିକୀୟ ସାହିତ୍ୟରେ ଥିଲେ ଜଣେ ଲବ୍ଧ ପ୍ରତିଷ୍ଠିତ ଔପନ୍ୟାସିକ । ଏ କ୍ଷେତ୍ରରେ **Howells**ଙ୍କ ପ୍ରତିଭାକୁ ମଧ୍ୟ ଅସ୍ୱୀକାର କରାଯାଇନପାରେ । ଏମାନଙ୍କ ସମୟ ଥିଲା ଆମେରିକୀୟ ସାହିତ୍ୟ କ୍ଷେତ୍ରରେ ଏକ ବିକାଶଶୀଳ ସମୟ ।

ଊନବିଂଶ ଶତାବ୍ଦୀର ଶେଷ ଦୁଇଦଶକରେ କେତେକ କାବ୍ୟ-କବିତା ରଚିତ ହୋଇ ଆମେରିକୀୟ ସାହିତ୍ୟର ଶ୍ରୀବୃଦ୍ଧି କରିଥିଲା । ୧୮୯୦ ମସିହାରେ **Smily Dickinson** ଓ **Stephen**ଙ୍କର କାବ୍ୟ-କବିତା ଆମେରିକୀୟ ସାହିତ୍ୟର ଅଭିବୃଦ୍ଧି ସାଧନ କରିପାରିଥିଲା । ଏହି ସମୟରେ ବିଶେଷକରି କାବ୍ୟ-କବିତା ତୁଳନାରେ କଥା-ସାହିତ୍ୟ ଓ ଉପନ୍ୟାସ ସାହିତ୍ୟର ସୃଷ୍ଟି ପ୍ରାଧାନ୍ୟଲାଭ କରିଥିଲା । **O. Henery, Kipling** ଏବଂ **Stevenson** ପ୍ରଭୃତି ଗାଳ୍ପିକ ଓ ଔପନ୍ୟାସିକମାନେ ସେମାନଙ୍କ ଗଳ୍ପ, ଉପନ୍ୟାସରେ ଐତିହାସିକ ଚରିତ୍ରମାନ ଉପସ୍ଥାପିତ କରିଥିଲେ ।

ବିଂଶ ଶତାବ୍ଦୀର ଅସ୍ତୁମାରମ୍ଭରେ ଆମେରିକୀୟ କାବ୍ୟ-ସାହିତ୍ୟ ଏକ ବିଶେଷ ଉଲ୍ଲେଖଯୋଗ୍ୟ କୃତିତ୍ୱ ପ୍ରଦର୍ଶନ କରିପାରିଥିଲା । ଏ ବିଷୟରେ ମତ ଦେବାକୁ ଯାଇଁ—

"Cassell's Ency Clapaedia of literature, vol-I କହେ"— "The second decade of the century there was a sudden flowing of verse, natured from abroad by the husbandry of Ezra pound, nalured at home by the persistent care of Merriet monroe whom in chicage in 1912 established poetry, the most consistently seccessful of American's Little Magazines". (2)।

୧୯୧୨ ମସିହାରୁ ୧୯୨୨ ମସିହା ସମୟସୀମା ମଧ୍ୟରେ 'ଏଲ୍ୟୁଟ୍'ଙ୍କ କବିତା ଓ 'ଓ୍ୱେଷ୍ଟଲ୍ୟାଣ୍ଡ'ର ପ୍ରକାଶନ ବିଶ୍ୱକବିତା କ୍ଷେତ୍ରରେ ଏକ ନୂତନ ବିପ୍ଳବର ସୃଷ୍ଟି କଲା । ସେହିପରି ୧୯୧୯ ମସିହାରୁ ୧୯୨୯ ମସିହା ଭିତରେ ମଧ୍ୟ ଉପନ୍ୟାସ ସାହିତ୍ୟର ବହୁ ଅଗ୍ରଗତି ହୋଇପାରିଥିଲା । ସମାଲୋଚନା ସାହିତ୍ୟରେ ମଧ୍ୟ ଅଗ୍ରଗତିର ଆରମ୍ଭରେ H. L. Menken ଅନୁରୂପ ଭାବେ ପ୍ରତିଷ୍ଠିତ ହୋଇପାରିଥିଲେ । ନାଟକ, ପ୍ରବନ୍ଧ ଓ ଉପନ୍ୟାସ ସୃଷ୍ଟିର ଏକ ସୀମାରେଖା ନିର୍ଦ୍ଧାରିତ କରିବାକୁ ଯାଇଁ Cassell's E. of Lit, vol-1 କହେ—'It was a time of disillusionment of stock taking, in which the hars voice of H. L. Meken in criticism and the tragedy stricken voice of Eugen O. Neill in the Drama, Joined in unison with the Novelists."

From and Emersons 'winsbourg', Ohio and James Branch Cabell's furgen at the begining of the period to James wolfe's "Look home word' Angel and William Fulkners "The sound and the furry" at its close. There was an unpece dented production of stimulating Prose." (3)

ବିଂଶ ଶତାବ୍ଦୀର ତୃତୀୟ ଦଶକରେ ଆମେରିକୀୟ ସାହିତ୍ୟରେ ଆରମ୍ଭ ହେଲା ଚେତନା ପ୍ରବାହ (Stream of Consciousness)ର ଯୁଗ । ଏହି ସମୟରେ— ସମୟର ପରିବର୍ତ୍ତନକୁ ନିଜ ଲେଖା ମାଧ୍ୟମରେ ଯେଉଁମାନେ ପ୍ରକାଶ କରିପାରିଥିଲେ,

---

(2) Cassell's eneyclopacdia of literature—vol (I)

(3) Cassell's encyclopaedia of literature—voll (I)

ସେମାନଙ୍କ ଭିତରେ John Das, Stain back ଓ James T· Farrell ଥିଲେ ଅନ୍ୟତମ । Stainbackଙ୍କର 'The moon is down" ସେ ସମୟର ଏକ ବିଶିଷ୍ଟ ଉପନ୍ୟାସ ଭାବେ ସ୍ୱୀକୃତ । ଏହି ସମୟରେ ସଙ୍କାସ୍ତ ଶୈଳୀରେ ଏମାନେ ଥିଲେ ଅନୁରଞ୍ଜିତ । ସଙ୍କାସ୍ତ ଚିନ୍ତାଧାରାରେ ଏମାନେ ଥିଲେ ଅଭିବଂଜିତ ଓ ଏମାନଙ୍କ ସାହିତ୍ୟ ଏକାଧାରରେ ଯୁଗପତ୍ ଚେତନା ସହିତ ଏମାନଙ୍କ ମାନସିକ ସନ୍ଧି ଉର ପରିପ୍ରକାଶ ଘଟାଇ ପାରିଥିଲା ।

୧୯୪୦ ମସିହାର ପରବର୍ତ୍ତୀ ସାହିତ୍ୟ ଆମେରିକୀୟ ସାହିତ୍ୟରେ ସମାଲୋଚନାର କ୍ଷେତ୍ରକୁ ପ୍ରଶସ୍ତ କରିଥିବାର ନିଦର୍ଶନ ମିଳେ (୪) । ଦ୍ୱିତୀୟ ବିଶ୍ୱଯୁଦ୍ଧ ଆମେରିକୀୟ ସାହିତ୍ୟରେ ଘୋର ପରିବର୍ତ୍ତନ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଏହାର ବିକାଶକ୍ରମକୁ ଖୁବ୍ ଦ୍ରୁତତର କରିଦେଇଥିଲା । ତଥାପି ଏହିପରି ଏକ ନୂତନ ଯୁଗର ସୂତ୍ରପାତ ସମୟରେ William Faulknerଙ୍କ ବ୍ୟତୀତ ଅନ୍ୟ କୌଣସି ଲେଖକ ସେପରି ଉଲ୍ଲେଖଯୋଗ୍ୟ କୃତିତ୍ୱ ହାସଲ କରିପାରିନଥିଲେ । ଆମେରିକୀୟ ସାହିତ୍ୟକୁ ତାଙ୍କର ଦାନ ବହୁଭାବେ ସ୍ୱୀକୃତ ଓ ଅବିସ୍ମରଣୀୟ । ଏହିପରି ଜଣେ ବଳିଷ୍ଠ ସାହିତ୍ୟିକ ଭାବେ ସେ ବିବେଚିତ ହୋଇ ନୋବେଲ୍ ପୁରସ୍କାର (Noble Prize) ପାଇବାକୁ ସକ୍ଷମ ହୋଇଥିଲେ ।

ଆମେରିକୀୟ ସାହିତ୍ୟର ଏହି କ୍ରମବିକାଶ ଏବେସୁଦ୍ଧା ଅପ୍ରତିହତ । ଆମେରିକାର ସାହିତ୍ୟ ଏହି ବିକାଶଧାରାକୁ ବଜାୟରଖି ଏ ଯାଏଁ ପ୍ରାଣମୂର୍ଚ୍ଛା ସଂଗ୍ରାମ କରି ଆଜି 'ହେମିଙ୍ଗ୍ ୱେ', 'ହେଲ୍‌ବେଲ୍'ଙ୍କ ପରି ଅନୁକାରିତ ଖ୍ୟାତିସମ୍ପନ୍ନ ସାହିତ୍ୟିକ ସୃଷ୍ଟି କରିବାରେ ସକ୍ଷମ ହୋଇପାରିଛି ।

ଆମେରିକୀୟ ସାହିତ୍ୟର କ୍ରମବିକାଶରେ ଉପନ୍ୟାସ ସାହିତ୍ୟ ଯେ, ସବୁଠାରୁ ବଳିଷ୍ଠ ଏବଂ ଊନବିଂଶ ଶତାବ୍ଦୀର ସନ୍ଧିକ୍ଷଣ ମୁହୂର୍ତ୍ତରେ ଏହାର ଅବଦାନ ଓ ଏହାର ସ୍ରଷ୍ଟା-

---

(୪) From the 1940 developed, efeteriorated perhaps into a period of criticism more artistically. Self-concsious as a new critics found new meaning in old works and when the principle of design perhaps bettet illustrated in such things as the Empire state building and the Jurge washingtion bridge was applied into analysis, if not the creation of literature.

(Cassell's ency. of lit. vol-1)

ମାନଙ୍କର ଅଦମ୍ୟ ଉତ୍ସାହ ଯେ, କଭଲଭାବେ ତାର ସାହିତ୍ୟକୁ ପରିପୁଷ୍ଟ କରିପାରିଥିଲା, ତାହା ଭାବିଲେ ନିଶ୍ଚୟ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଊନବିଂଶ ଶତାବ୍ଦୀର ସାମାଜିକ, ରାଜନୈତିକ, ସମସ୍ୟାବହୁଳ ଘଟଣାବଳୀକୁ ନେଇ ତତ୍କାଳୀନ କଥାସାହିତ୍ୟ କିପରି ଋଦ୍ଧିମନ୍ତ ଏବଂ ଏହାର ସ୍ରଷ୍ଟାମାନେ କିପରି ପ୍ରବଳ ସଂସ୍କାରବାଦୀ ହୋଇଉଠିଥିଲେ ତାହାର ପରିପ୍ରକାଶ ଅନ୍ୟ ଏକ ଆଲୋଚନାର ଅପେକ୍ଷା ରଖେ । ସେଥିପାଇଁ ଆମକୁ "ଊନବିଂଶ-ଶତାବ୍ଦୀର ଉପନ୍ୟାସ ଜଗତ ଓ ଏହାର ଔପନ୍ୟାସିକ" ବୃନ୍ଦଙ୍କ ସହ ଏକ ବ୍ୟାଖ୍ୟାପୂର୍ଣ୍ଣ ସମ୍ପର୍କ ଓ ଗବେଷଣାତ୍ମକ ଅନୁଶୀଳନ ରକ୍ଷାକରିବାକୁ ପଡ଼ିବ ।

ସମ୍ପୂର୍ଣ୍ଣ ଆମେରିକୀୟ ଉପନ୍ୟାସ ଜଗତକୁ ଆମୂଳଚୂଳ ଆଲୋଚନା କରିବା ସମ୍ଭବପର ନୁହେଁ କି ତାହା ଏ ଗବେଷଣାତ୍ମକ ସନ୍ଦର୍ଭଟିର ଲକ୍ଷ୍ୟ ନୁହେଁ । କାରଣ ଆମ ସାହିତ୍ୟରେ ନାରାୟଣାନନ୍ଦ ଅବଧୂତ ସ୍ୱାମୀ, ବ୍ରଜନାଥ ବଡ଼ଜେନା, ରାମଶଙ୍କର ବା ଉମେଶଚନ୍ଦ୍ରଙ୍କୁ କଥାସାହିତ୍ୟ ବା ଉପନ୍ୟାସର ଆଦ୍ୟସ୍ରଷ୍ଟା ଭାବେ ସମ୍ମାନ ପ୍ରଦାନ କରା ହେଉଥିଲେ ବି ମୁଖ୍ୟତଃ ଆମେ ଫକୀରମୋହନଙ୍କୁ ଆମ କଥାସାହିତ୍ୟର ଉପଯୁକ୍ତ ସ୍ରଷ୍ଟା ଭାବେ ଧରିନେଇ ଆଲୋଚନାର ଏକ ନିର୍ଦ୍ଦିଷ୍ଟ ସୀମାରେଖା ଏବଂ ପରିସର ଠିକ୍ କରିନେଇ-ଥାଉଁ । ସେହିପରି ଊନବିଂଶ ଶତାବ୍ଦୀ ହିଁ ଆମେରିକୀୟ ଉପନ୍ୟାସଜଗତକୁ ଅନୁଶୀଳନ କରିବାର ପ୍ରକୃଷ୍ଟ ସମୟ ଏବଂ ବିଶେଷକରି ଏହି ସନ୍ଦର୍ଭର ପକ୍ଷଭୁକ୍ତ ଔପନ୍ୟାସିକ ହାଥର୍ଣ୍ଣ ଏହି ସମୟସୀମାର ଅନ୍ତର୍ଭୁକ୍ତ । ତେଣୁ ଊନବିଂଶ ଶତାବ୍ଦୀର ଆମେରିକୀୟ ଉପନ୍ୟାସଜଗତ ଆଲୋଚନା କରିବା ପରିପ୍ରେକ୍ଷୀରେ ତାଙ୍କୁ ଯେ ସମ୍ପୂର୍ଣ୍ଣ ଅଧ୍ୟୟନ କରିହେବ ଏକଥା— ନିଃସନ୍ଦେହରେ କୁହାଯାଇପାରେ । ସେହି ଦୃଷ୍ଟିରୁ "ଊନବିଂଶ ଶତାବ୍ଦୀର ଆମେରିକୀୟ ଉପନ୍ୟାସ ଜଗତ"କୁ ଅନୁଧ୍ୟାନ କରିବା ଏକାନ୍ତ ଅପରିହାର୍ଯ୍ୟ ।

## ଊନବିଂଶ ଶତାବ୍ଦୀର ଆମେରିକୀୟ ଉପନ୍ୟାସ ଜଗତ ଓ ଔପନ୍ୟାସିକବୃନ୍ଦ

ଊନବିଂଶ ଶତାବ୍ଦୀର ଆମେରିକୀୟ ଔପନ୍ୟାସିକମାନଙ୍କର ମାନବୀୟ ସ୍ଥିତିର ବିଭିନ୍ନ ଦିଗ ଓ ବିଭାଗ ପ୍ରତି ଏକ ଆବଶ୍ୟକ ସୁଳଭ ଅନ୍ତର୍ଦୃଷ୍ଟି ହିଁ ପୂର୍ବବର୍ତ୍ତୀ ଔପନ୍ୟାସିକମାନଙ୍କଠାରୁ ସେମାନଙ୍କୁ ପୃଥକ୍ କରାଇଦିଏ । ଊନବିଂଶ ଶତାବ୍ଦୀର ପରିପ୍ରେକ୍ଷୀରେ ବିବିଧ ଜଟିଳ ମାନବୀୟ ପରିସ୍ଥିତି ପ୍ରତି ଭିନ୍ନ ଭିନ୍ନ ପ୍ରତିକ୍ରିୟା ସମୂହକୁ ସେମାନେ ସେମାନଙ୍କ ରଚନାରେ ରୂପ ଦେବାକୁ ଚେଷ୍ଟା କରିଛନ୍ତି । ମାନବୀୟ ସଙ୍କଟ,

ଦ୍ୱନ୍ଦ୍ୱ ଏବଂ ଏକ ଅସ୍ଥିର, ଚତ୍ତ ଚଞ୍ଚଳ, ପରିବର୍ତ୍ତନଶୀଳ ପୃଥିବୀରେ ନିଜର ପରିଚୟ ସନ୍ତୁ ପ୍ରତିଷ୍ଠା ପାଇଁ ମଣିଷର ଅବିରାମ ସଂଗ୍ରାମ ହିଁ ସେମାନଙ୍କ ଉପନ୍ୟାସଗୁଡ଼ିକର ମୂଳକଥା । ଏହି ପରିପ୍ରେକ୍ଷୀରେ ଆମେରିକାର ଊନବିଂଶ ଶତାବ୍ଦୀର ଉପନ୍ୟାସ ଜଗତ ସହ ନିବିଡ଼ ସମ୍ପର୍କ ରକ୍ଷି ପ୍ରତିଷ୍ଠିତ ହୋଇଥିବା କେତେକ ଔପନ୍ୟାସିକ ଓ ସେମାନଙ୍କ କୃତିକୁ ଆଲୋଚନା କରାଯାଇପାରେ ।

ଊନବିଂଶ ଶତାବ୍ଦୀର ଆମେରିକୀୟ ଉପନ୍ୟାସ ଜଗତକୁ ଯେଉଁମାନେ ତାଙ୍କ ଅମୂଲ୍ୟ ସୃଷ୍ଟି ଦ୍ୱାରା ଋଦ୍ଧିମନ୍ତ କରିପାରିଥିଲେ, ସେମାନଙ୍କ ମଧ୍ୟରୁ କୁପର (Cooper), ମାର୍କ-ଟୁଇନ୍ (Mark Twain), ମେଲ୍‌ଭିଲେ (Melville), ହେନେରୀ ଜେମ୍‌ସ (Henery James), ହାଓ୍ୱେଲ୍‌ସ (Howells), ହଥର୍ଣ୍ଣ (Hawthrone), ଥୋରେ (Thoreau), ଲଙ୍ଗ ଫେଲୋ (Long Fellow), ଇମର୍ସନ (Emerson), ବେକର୍‌ଷ୍ଟୋ (Becherstowe) ପ୍ରମୁଖ ଅନ୍ୟତମ । ଏହି ସମୟରେ ଅନ୍ୟାନ୍ୟ ବହୁ ଔପନ୍ୟାସିକ ଉପନ୍ୟାସ ରଚନା କରିଥିଲେହେଁ ଏମାନଙ୍କ ପରି ସେମାନେ କାଳଜୟୀ, ପ୍ରଭାବଶାଳୀ ବା ଖ୍ୟାତିସମ୍ପନ୍ନ ହୋଇପାରି ନଥିଲେ । ତେଣୁ ଉପରୋକ୍ତ ପ୍ରତିଷ୍ଠିତ ଔପନ୍ୟାସିକମାନଙ୍କ ଉପନ୍ୟାସଗୁଡ଼ିକ ଆମେରିକୀୟ ଉପନ୍ୟାସ ଜଗତକୁ ସମୃଦ୍ଧ, ପ୍ରାଣବନ୍ତ ଓ ଚିରନ୍ତନ ମୂଲ୍ୟ ପ୍ରଦାନ କରିପାରିଛି । ଊନବିଂଶ ଶତାବ୍ଦୀର ଆମେରିକୀୟ ସାହିତ୍ୟ ବିଶ୍ୱର ଯେକୌଣସି ସାହିତ୍ୟ ଅପେକ୍ଷା ଏକ ବିଶେଷ ଦୃଷ୍ଟି ଆକର୍ଷଣ କରେ । ଆମେରିକୀୟ ସାହିତ୍ୟରେ ଏହି ବିଶେଷ ଦୃଷ୍ଟି ଆକର୍ଷଣକାରୀ ଦିଗଟି ହେଉଛି ପ୍ରଥମକରି ତାହାର ଉପନ୍ୟାସ ସାହିତ୍ୟ । ଊନବିଂଶ ଶତାବ୍ଦୀର କେତେକ ଔପନ୍ୟାସିକଙ୍କ ଉପରେ ମତବ୍ୟକ୍ତ କରିବାକୁ ଯାଇଁ ଆମେରିକୀୟ ସାହିତ୍ୟର ଜଣେ ବିଶିଷ୍ଟ ସମାଲୋଚକ **Froster** କହନ୍ତି—

> "Mark Twain is essentially free of European influence. The Literary heritage of Howells and James was very substantially European French, and French influenced realistis' and naturalistis. Cooper debts to English novelists Scott and Marrey at were unconcealed, Hawthorne whose native sources—The Colonial annalists-tended to be more 'Elizabethan' in thought and feeling than indigenously American, was a frequent borrower, like Iraving from European Popular fiction. Malvilles fiction is a richly

variegated texture of echoes and adoptations from European classics. Other American writers of his period showed similar influences from the old world."

ଆମେରିକୀୟ ଔପନ୍ୟାସିକମାନଙ୍କର ଅପର ସାହିତ୍ୟ ଦ୍ୱାରା ପ୍ରଭାବିତ ହୋଇଥିବାର ମାତ୍ରା ଯେତେ ପରିମାଣରେ ଥିଲେ ସୁଦ୍ଧା ସେମାନଙ୍କ ନିଜସ୍ୱ ଚିନ୍ତାଧାରାରେ ସେମାନେ ଏହି ପ୍ରଭାବକୁ ଯେ, ଭିନ୍ନ ରୂପେ ବ୍ୟକ୍ତ କରିଥିଲେ, ତାହା ସେମାନଙ୍କ ସୃଷ୍ଟିରୁହିଁ ଅନୁଶୀଳନ କରାଯାଇପାରେ ।

୧୮୬୧ ମସିହାର ଗୃହଯୁଦ୍ଧ ପୂର୍ବରୁ ଓ ପରେ ଊନବିଂଶ ଶତାବ୍ଦୀର ଆମେରିକୀୟ ସାହିତ୍ୟର ଗତି କୌଣସି ନିର୍ଦ୍ଦିଷ୍ଟ ବାଦାଭିମୁଖୀ (Towards-Ism) ନଥିଲା । ଏକ ଅନିଶ୍ଚିତ, ଆନ୍ଦୋଳିତ ସଭ୍ୟତାର ଶିକାର ହୋଇପଡ଼ିବା ସଙ୍ଗେ ସଙ୍ଗେ ଉପନିବେଶିକ ଶାସନକାଳର ଅତ୍ୟାଚାର, ଯୁଦ୍ଧର କରୁଣ ବିଭୀଷିକା, ଆମେରିକାର ଅସ୍ଥିର ଵିଶୃଙ୍ଖଳ, ସାହିତ୍ୟରେ ଯେପରି ରୂପ ନେଇଥିଲା, ତାହା ବିଶ୍ୱର କୌଣସି ଉଲ୍ଲେଖଯୋଗ୍ୟ ସାହିତ୍ୟରେ ଦେଖିବାକୁ ମିଳେନାହିଁ । ଏହି ସମୟରେ ପଦ୍ୟସାହିତ୍ୟ ଅପେକ୍ଷା ଉପନ୍ୟାସ ସାହିତ୍ୟର ବହୁଳ ବିକାଶ ଘଟିଥିଲା । ତତ୍କାଳୀନ ମାନବିକ ଚରିତ୍ରର ପରାକାଷ୍ଠା ଜୀବନ୍ତ ଭାବେ ଗଦ୍ୟ ଦ୍ୱାରା ପରିପ୍ରକାଶ ଘଟିପାରିବ ବୋଲି ବୋଧେ ସେ ସମୟର ଲେଖକ ଗୋଷ୍ଠୀ ଅନୁଭବ କରିଥିଲେ । ସେଥିପାଇଁ ପ୍ରାୟତଃ ପଦ୍ୟବହୁଳ ନହୋଇ ଊନବିଂଶ ଶତାବ୍ଦୀର ଆମେରିକୀୟ ସାହିତ୍ୟ ଗଦ୍ୟନାମରେ ବହୁ ପ୍ରାଣବନ୍ତ ଉପନ୍ୟାସ ସୃଷ୍ଟି କରିଥିଲା ।

ଊନବିଂଶ ଶତାବ୍ଦୀ ଥିଲା ଆମେରିକୀୟ ସାହିତ୍ୟ ପାଇଁ ଏକ 'ନବଜାଗରଣର ଯୁଗ ।' ଏହି ଜାଗରଣର ଆତ୍ମବିକାଶ ଘଟିଥିଲା ତା'ର ଉପନ୍ୟାସ ସାହିତ୍ୟରେ । ସେଥିପାଇଁ ଏହି ଶତାବ୍ଦୀର ଔପନ୍ୟାସିକମାନଙ୍କୁ ଆମେ ଏକାଧାରରେ-ସଂସ୍କାରବାଦୀ, ଜାତୀୟବାଦୀ, ମାନବବାଦୀ, ଧର୍ମବାଦୀ ତଥା ବାସ୍ତବବାଦୀ ଭାବେ ଦେଖିବାକୁ ପାଇପାଉ । ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ଆମେରିକୀୟ ସାହିତ୍ୟରେ ବହୁ ପ୍ରତିଷ୍ଠିତ ସଂସ୍କାରବାଦୀ ଔପନ୍ୟାସିକମାନେ ଦେଖାଦେଇଥିଲେ । ଘୃଣ୍ୟ ନିଗ୍ରୋ ଦାସତ୍ୱପ୍ରଥାର ଉଚ୍ଛେଦକୁ ସେ ସମୟର ଏକ ସଂସ୍କାରବାଦୀ ସାହିତ୍ୟିକ ସ୍ୱର ଭାବେ ଧରିନିଆଯାଇଥିଲା ।

ଊନବିଂଶ ଶତାବ୍ଦୀର ଆମେରିକୀୟ ଉପନ୍ୟାସ ମୁଖ୍ୟତଃ ତତ୍କାଳୀନ ସାମାଜିକ, ରାଜନୈତିକ, ଅର୍ଥନୈତିକ ଓ ଅନିବାର୍ଯ୍ୟସଜନିତ ବହୁ ସାମାଜିକ ସମସ୍ୟାବହୁଳ ଘଟଣାକୁ ଜୀବନ୍ତଭାବେ ବ୍ୟକ୍ତ କରିପାରିଛି । ଏସବୁର ମୁଖ୍ୟ ପୁରୋଧାଭାବେ ଜେମ୍ସ ଫେନିମୋର୍ କୁପର (James Fanimore Cooper)ଙ୍କୁ ପ୍ରଥମେ ଆଲୋଚନାର ଅନ୍ତର୍ଭୁକ୍ତ କରାଯାଇପାରେ ।

## ଜେମ୍ସ ଫେନମୋର କୂପର

## (James Fanimore Cooper)

୧୭୮୯ ମସିହାରେ କୁପର୍ ଆମେରିକାର ନ୍ୟୁର୍କ ସହରରେ ଜନ୍ମଗ୍ରହଣ କରିଥିଲେ । କୁପର୍‌ଙ୍କ ସାହିତ୍ୟିକ ଜୀବନ ବହୁତ ବିଳମ୍ବରେ ଆରମ୍ଭ ହୋଇଥିଲା । ୧୮୨୦ ମସିହା ପର୍ଯ୍ୟନ୍ତ ତାଙ୍କର କୌଣସି ସାହିତ୍ୟସୃଷ୍ଟି ଆତ୍ମପ୍ରକାଶ କରିନଥିଲା । ଆମେରିକୀୟ ଉପନ୍ୟାସ କ୍ଷେତ୍ରରେ ସେ ବହୁତ ବିଳମ୍ବ ଆତ୍ମପ୍ରକାଶ କରିଥିଲେହେଁ ତାଙ୍କର ଶୈଳୀ ଓ ମନୋରମ ବିଷୟ ବିନ୍ୟାସ ହେତୁ ସେ ଖୁବ୍ ଶୀଘ୍ର ଆମେରିକୀୟ ଉପନ୍ୟାସ ଜଗତରେ ପ୍ରତିଷ୍ଠିତ ହୋଇପାରିଥିଲେ । ତାଙ୍କ ସମ୍ପର୍କରେ ଆମେରିକୀୟ ସମାଲୋଚକ 'Robbert E. Spiller' କହିଛନ୍ତି—

> "There is no doubt that as a man of thought and feeling cooper more than any otber writer of his generation, understood the time and place in which he lived and gave them voice and meaning. It is he who stands at the Portal of American Literature, rather than Freneau or Brown. Iraving or Bryant and who is recogniged at home and abroad as the first and one of the greatest of, American writer of fiction."

କୁପର୍ ଥିଲେ ଜଣେ ବାସ୍ତବବାଦୀ ସାହିତ୍ୟିକ । ତିରିଶ ବର୍ଷ ବୟସ ପର୍ଯ୍ୟନ୍ତ ସେ ଆମେରିକୀୟ ସାହିତ୍ୟର ପାଠକ ଥିଲେ । କିନ୍ତୁ ହଠାତ୍ ତାଙ୍କ ପ୍ରତିଭାର ବିସ୍ଫୋରଣ ଘଟିଲା । ତାଙ୍କ ଉପନ୍ୟାସଗୁଡ଼ିକ ସେତେବେଳେ ଏତେ ଜନାଦୃତ ହୋଇଥିଲା ଯେ, ତାହା ସେ ସମୟରେ ଇଂଲଣ୍ଡ, ଜର୍ମାନ୍ ଓ ଫ୍ରାନ୍ସରେ ମଧ୍ୟ ପ୍ରକାଶିତ ହୋଇଥିଲା । ଏହା ବ୍ୟତୀତ ତାଙ୍କର ବହୁ ଉପନ୍ୟାସ ଇଟାଲୀ, ସ୍ୱିଡେନ୍, ଡେନ୍‌ମାର୍କ ପ୍ରଭୃତି ଇଉରୋପୀୟ ଦେଶମାନଙ୍କର ଭାଷାରେ ଅନୂଦିତ ହୋଇ ବହୁ ଥର ପ୍ରକାଶିତ ହେବାର ଗୌରବ ଅର୍ଜନ କରିଥିଲା । ତାଙ୍କର ଉପନ୍ୟାସଗୁଡ଼ିକ ମଧ୍ୟରୁ 'The Spy' ନାମକ ଉପନ୍ୟାସ ସାତ ଥର ଏବଂ 'The Pioneers' ଉପନ୍ୟାସ ଛ' ଥର ପ୍ରକାଶିତ ହୋଇଥିଲା । 'The Pilot' ନାମକ ଏକ ଉପନ୍ୟାସ ପାଇଁ କୁପର୍ ମଧ୍ୟ ବହୁ ଖ୍ୟାତି ଅର୍ଜନ କରିପାରିଥିଲେ ।

୧୮୦୮ରୁ ୧୮୧୧ ମସିହା ପର୍ଯ୍ୟନ୍ତ କୁପର୍ Yale ଠାରେ Navyରେ କାମ କରୁଥିଲେ । ଏହି କ୍ଷେତ୍ରରୁ ଅର୍ଜନ କରିଥିବା ଅଭିଜ୍ଞତା ତାଙ୍କୁ ଉପନ୍ୟାସ ରଚନା କ୍ଷେତ୍ରରେ ବେଶ୍ ପ୍ରେରଣା ଯୋଗାଇଥିଲା । 'The Spy' ତାଙ୍କର ଏକ ପ୍ରସିଦ୍ଧ ଉପନ୍ୟାସ । ତାଙ୍କର ବାସ୍ତବ ଚିନ୍ତାଧାରାକୁ ସେ ଏଥିରେ ରୂପ ଦେଇଛନ୍ତି । ବିପ୍ଲବାତ୍ମକ ଦୃଷ୍ଟିଭଙ୍ଗୀ ଓ ଯୁଦ୍ଧର କରୁଣ ବର୍ଣ୍ଣନା ସମେତ ଏହି ଉପନ୍ୟାସରେ ତାଙ୍କର ଏକ ନୂତନ ଦୃଷ୍ଟିଭଙ୍ଗୀ ଦେଖିବାକୁ ମିଳେ । 'The Pirate'ରେ ସେହିପରି ବହୁ ଦୁଃସାହସିକ ଚିତ୍ରମାନ ବର୍ଣ୍ଣିତ ହୋଇଛି । ତାଙ୍କର 'The Pilot' ଉପନ୍ୟାସରେ ମଧ୍ୟ ସାମାଜିକ, ରାଜନୈତିକ ତଥା ଆମେରିକୀୟ ଜନଜୀବନର ଚିତ୍ର ଉଦ୍ଭାସିତ।

୧୮୨୩ ମସିହାରେ ତାଙ୍କର 'The Pioneers' ଉପନ୍ୟାସ ପ୍ରକାଶିତ ହୋଇଥିଲା । ୧୮୨୬ ମସିହାରେ ତାଙ୍କର ଆଉ ଗୋଟିଏ ଉପନ୍ୟାସ 'The Last of the Mabicans' ପ୍ରକାଶିତ ହୋଇଥିଲା । ୧୮୨୭ ମସିହାରେ ତାଙ୍କର 'The Prairie' ଉପନ୍ୟାସ ପ୍ରକାଶ ଲାଭ କରିଥିଲା । ୧୮୨୫ ଓ ୧୮୨୯ ମସିହାରେ ସେ ଦୁଇଟି ଐତିହାସିକ ଉପନ୍ୟାସ ରଚନା କରିଥିଲେ । ଏହି ଦୁଇଟି ଉପନ୍ୟାସ ହେଲା— "The Lionel Lincol (1825) ଓ 'The wept of wish-ton wish" (1829) ।

ତାଙ୍କର 'Red Rover' ଉପନ୍ୟାସ ୧୮୨୮ ମସିହାରେ 'The water witch' ଉପନ୍ୟାସ ୧୮୩୦ ମସିହାରେ ପ୍ରକାଶିତ ହୋଇ ତାଙ୍କ ଉଚ୍ଚକୋଟିର ଉପନ୍ୟାସ ରଚନାଶୈଳୀର ସର୍ବୋଚ୍ଚ ପରିଚୟ ପ୍ରଦାନ କରିଥିଲା । ୧୮୩୧ରେ 'The Brano', ୧୮୩୨ରେ 'The Heidenmouer', ୧୮୩୩ରେ 'The Heads man' ଉପନ୍ୟାସର ପ୍ରକାଶନ ତାଙ୍କ ନିରଳସ ସାହିତ୍ୟସାଧନାର ପରିଚୟ ବହନ କରେ ।

'A Letter to his country men' ୧୮୩୩ ମସିହାରେ ତାଙ୍କର ଆମେରିକା ପ୍ରତ୍ୟାଗମନ ପରେ ୧୮୩୪ ମସିହାରେ ପ୍ରକାଶିତ ହୋଇଥିଲା । ଉପନ୍ୟାସ ଜଗତରୁ ତାଙ୍କର ବିଦାୟ ନେବାର ସମୟ ଯେ ଆସନ୍ନ ଅର୍ଥାତ୍ କୁପର୍ ତାଙ୍କ ସାହିତ୍ୟ ସାଧନାରେ ଯେ ଅବକ୍ଷୟ ପଥର ଯାତ୍ରୀ, ତାହା ତାଙ୍କର ଏହି ଉପନ୍ୟାସର ଦୁର୍ବଳ ଭାବ ଚେତନାରୁ ସ୍ପଷ୍ଟ ଅନୁମିତ ହୋଇଯାଇଥିଲା । ଏହି ଉପନ୍ୟାସ ପ୍ରକାଶିତ ହେବାର ଛଅ ବର୍ଷ ପରେ ସେ କେତେକ ପ୍ରବନ୍ଧମାନ ରଚନା କରିଥିଲେ । ଏହାର କିଛି ସମୟ ପରେ ସେ ପୁଣି ତିନିଖଣ୍ଡି ଉପନ୍ୟାସ ରଚନା କରିଥିଲେ । ୧୮୩୫ ମସିହାରେ 'The Monikins' ଉପନ୍ୟାସରେ ତାଙ୍କ ବ୍ୟଙ୍ଗାତ୍ମକ ଚିନ୍ତାଧାରାର ପରିପ୍ରକାଶ ଘଟିଥିଲା । ୧୮୩୮ ମସିହାରେ ତାଙ୍କର ଏକସଙ୍ଗରେ ଅନ୍ୟ ଦୁଇଖଣ୍ଡି ଉପନ୍ୟାସ 'Home ward Bound' ଓ 'Home as found' ପ୍ରକାଶିତ ହୋଇଥିଲା ।

୧୮୩୮-୪୦ ମସିହା ବେଳକୁ କୁପର୍ ତାଙ୍କ ବାର୍କ୍ୟାବଷ୍ଟାରେ ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଔପନ୍ୟାସିକ ଭାବେ ପରିଚିତ ହୋଇସାରିଥିଲେ। ୧୮୪୩ ମସିହାରେ ପ୍ରକାଶିତ ତାଙ୍କର ଉପନ୍ୟାସ 'Wyandolle' ଆମେରିକୀୟ ଉପନ୍ୟାସ ସାହିତ୍ୟରେ ଏକ ଉଲ୍ଲେଖଯୋଗ୍ୟ ସୃଷ୍ଟି। କୁପର୍ଙ୍କ ଉପନ୍ୟାସ ଜଗତକୁ ଶୈଳୀ ଓ ବକ୍ତବ୍ୟ ଦୃଷ୍ଟିରୁ ଦୁଇଭାଗରେ ବିଭକ୍ତ କରାଯାଇପାରେ (*)। କୁପର୍ ତାଙ୍କର ବଳିଷ୍ଠ ଶୈଳୀ ଓ ପ୍ରାଞ୍ଜଳ ଭାବ ପ୍ରକାଶ ପାଇଁ ଆମେରିକୀୟ ଉପନ୍ୟାସ ଜଗତରେ ଅବିସ୍ମରଣୀୟ ହୋଇ ରହିବେ।

୧୮୪୪ରୁ୧୮୪୬ ମସିହା ସମୟସୀମା ମଧ୍ୟରେ କୁପର୍ ତାଙ୍କର ସର୍ବଶେଷ ଗୁରୁତ୍ୱପୂର୍ଣ୍ଣ ଉପନ୍ୟାସ ପ୍ରକାଶ କରିଥିଲେ। ସେଗୁଡ଼ିକ ହେଲା 'Afloat and ashor' (1844), 'Satan stoe' (1845), 'The Chain bearer' (1845) ଏବଂ 'Reds King' (1846)।

/ କୁପର୍ ଊନବିଂଶ ଶତାବ୍ଦୀର ଆମେରିକୀୟ ଉପନ୍ୟାସ ଜଗତକୁ ତାଙ୍କର ବିପୁଳ ସୃଷ୍ଟିରେ ବେଶ୍ ସମୃଦ୍ଧ, ଶ୍ରୀମନ୍ତ ଓ ବଳିଷ୍ଠ କରିପାରିଥିଲେ। ତାଙ୍କ ପରି ନିରଳସ ସାହିତ୍ୟ ସାଧକ ଆମେରିକୀୟ ସାହିତ୍ୟରେ ବିରଳ। ତାଙ୍କ ଶୈଳୀ ଓ ପ୍ରତିଭା ତାଙ୍କର ସମସାମୟିକ ଓ ପରବର୍ତ୍ତୀ ଅନେକ ଔପନ୍ୟାସିକମାନଙ୍କୁ ଅନେକାଂଶରେ ପ୍ରଭାବିତ କରିଥିବାର ଲକ୍ଷ୍ୟ କରାଯାଏ।

## ନାଥାନିଏଲ୍ ହଥର୍ଣ୍ଣ

## [ Nathniel Hawthrone ]

ଔପନ୍ୟାସିକ ହଥର୍ଣ୍ଣ ତାଙ୍କର ନୂତନ ଶୈଳୀ, ମାର୍ଜିତ ରୁଚିବୋଧ ଓ ତତ୍କାଳୀନ ଆମେରିକାର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ସମସ୍ୟାକୁ ଜୀବନ୍ତଭାବେ ତାଙ୍କ ଉପନ୍ୟାସରେ ରୂପ ଦେଇ ଆମେରିକୀୟ ଉପନ୍ୟାସ ଜଗତରେ ଅବିସ୍ମରଣୀୟ ହୋଇ ରହିଛନ୍ତି।

---

(*) The novel of this final phase may be divided in two Classes : those in which the Problem society are Para mount and those in which the Solutions of formal religion take over the centre of interest." (By-Spiller)

ହଥର୍ଣ୍ଣ ଆମେରିକାର 'ମାସାଚୁସେଟ୍' ସହରରେ ୧୮୦୪ ମସିହାରେ ଜନ୍ମଗ୍ରହଣ କରିଥିଲେ । କୁପର୍‌ଙ୍କ ପରବର୍ତ୍ତୀ ଔପନ୍ୟାସିକ ଭାବେ ସେ ଆମେରିକୀୟ ଉପନ୍ୟାସ ଜଗତରେ ପ୍ରତିଷ୍ଠିତ । ଜୀବନର ଅତି ବାଲ୍ୟାବସ୍ଥାରେ ପିତାଙ୍କୁ ହରାଇ ଏକ ଅନିଶ୍ଚିତ ସାମାଜିକ ପୃଷ୍ଠଭୂମି ଉପରେ ତାଙ୍କର ବାଲ୍ୟାବସ୍ଥା ଅତି ଶୋଚନୀୟ ହୋଇପଡ଼ିଥିଲା । ଏହି ଯନ୍ତ୍ରଣାପୂର୍ଣ୍ଣ ଅଭିଜ୍ଞତା, ଅନୁଭୂତ, ସାମାଜିକ ନ୍ୟାୟଦାୟୀ ତଥା ସଂସ୍କାରବାଦୀ ମନୋବୃତ୍ତି ନେଇ ହଥର୍ଣ୍ଣ ତାଙ୍କ ଉପନ୍ୟାସ ଜଗତ ସୃଷ୍ଟି କରିଥିଲେ । ତାଙ୍କ ଜୀବନ କାଳର ପ୍ରଥମ ୩୦ ବର୍ଷ ପରେ ସେ ଜଣେ ପ୍ରତିଷ୍ଠିତ ଲେଖକ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ । ୧୮୩୦ରୁ ୧୮୫୦ ମସିହା ପର୍ଯ୍ୟନ୍ତ ଦୀର୍ଘ ୨୦ବର୍ଷ କାଳ ସେ ଗାଳ୍ପିକ ଭାବେ ଓ ତା'ପରେ ୧୮୫୦ ମସିହାରୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଜଣେ ବିଶିଷ୍ଟ ଔପନ୍ୟାସିକ ଭାବେ ଆମେରିକୀୟ ସାହିତ୍ୟରେ ଆବିର୍ଭାବ ହୋଇଥିଲେ ।

୧୮୫୦ ମସିହାରେ ହଥର୍ଣ୍ଣଙ୍କର ପ୍ରଥମ ଓ ଶ୍ରେଷ୍ଠ ଉପନ୍ୟାସ ଭାବେ 'The Scarlet letter'ର ପ୍ରକାଶନ ଘଟିଥିଲା । ଏହା ପରେ ସେ ତାଙ୍କ ପାରିବାରିକ ଜୀବନର ଦୁଃଖ ଦୁର୍ଦ୍ଦଶା ପୂର୍ଣ୍ଣ କାହାଣୀ, ତାଙ୍କ ଜୀବନର ଦୈନ୍ୟ ଓ କାଙ୍କ୍ଷିତ ମୁହୂର୍ତ୍ତଗୁଡ଼ିକୁ ୧୮୫୧ ମସିହାରେ ପ୍ରକାଶିତ ତାଙ୍କର ଦ୍ୱିତୀୟ ଉପନ୍ୟାସ 'The House of the Seven Gables'ରେ ରୂପ ଦେଇଥିଲେ । ଏଥିରେ ସେ ଆମେରିକୀୟ ରକ୍ଷଣଶୀଳ ସଂସ୍କୃତ ଓ ଋଷିସୃଷ୍ଟ ଚିନ୍ତାଧାରାକୁ ମଧ୍ୟ ରୂପ ଦେଇ ତତ୍କାଳୀନ ସମୟ ଚେତନାକୁ ଲିପିବଦ୍ଧ କରିଯାଇଛନ୍ତି । 'The House of the Seven Gables' ଉପନ୍ୟାସ ରଚନା ପରେ ସେ ଅନ୍ୟ ଯେଉଁ ଦୁଇଟି ଉପନ୍ୟାସ ରଚନା କରିଥିଲେ, ସେ ଦୁଇଟି ହେଲା—"The Blithedale Romance (1852) ଏବଂ 'The Marble Faun' (1860) । ସମାଲୋଚକମାନଙ୍କ ମତରେ ଏହି ଗୁଡ଼ିକ ପ୍ରକାଶିତ ଉପନ୍ୟାସ ବ୍ୟତୀତ ତାଙ୍କର ବହୁ ଅପ୍ରକାଶିତ ଉପନ୍ୟାସ ମଧ୍ୟ ରହିଛି ।

[ପରବର୍ତ୍ତୀ ଅଧ୍ୟାୟରେ ତାଙ୍କ ସମ୍ପର୍କରେ ବିସ୍ତୃତ ରୂପେ ଆଲୋଚନା ହୋଇଛି]

**ହେରିଏଟ୍ ବେକରଷ୍ଟୋ**

**[ Mrs. Herriet Beecher Stowe ]**

ଊନବିଂଶ ଶତାବ୍ଦୀର ଜଣେ ବିଶିଷ୍ଟ ଔପନ୍ୟାସିକା ଭାବେ ମିସେସ୍ ଷ୍ଟୋଙ୍କର ଅବଦାନ ବିଶେଷ ଉଲ୍ଲେଖଯୋଗ୍ୟ । ୧୮୬୧ ମସିହାର ଗୃହଯୁଦ୍ଧ ହେବାର ନଅବର୍ଷ ପୂର୍ବରୁ ଅର୍ଥାତ୍ ୧୮୫୨ ମସିହାରେ ତାଙ୍କର ପ୍ରଖ୍ୟାତ ଉପନ୍ୟାସ 'Uncle Toms Cabin' ପ୍ରକାଶିତ ହୋଇଥିଲା । ଏହି ଉପନ୍ୟାସ ତାଙ୍କୁ ଜଣେ ଖ୍ୟାତନାମା

ଔପନ୍ୟାସିକା ହେବାର ଗୌରବ ପ୍ରଦାନ କରିଛୁ । ବ୍ୟକ୍ତି ସ୍ୱାଧୀନତା କ୍ଷୁଣ୍ଣ ହେବାର ଚିତ୍ର ସେ ଏହି ଉପନ୍ୟାସରେ ପ୍ରଦାନ କରିଅଛନ୍ତି । ଦାସତ୍ୱ ପ୍ରଥାର ଉଚ୍ଛେଦ ସାଧନ ପାଇଁ ସ୍ୱାଧୀନତା ପ୍ରାପ୍ତିର ନୂତନ ସରକାରଙ୍କୁ ଏହି ଉପନ୍ୟାସର ସ୍ୱର ଖୁବ୍ ବିଚଳିତ କରିପକାଇଥିଲା । ଏହି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଉପନ୍ୟାସଟିର ମୂଳ କାହାଣୀ ହେଉଛି ଜଣେ ନିଗ୍ରୋ ଲୋକର ଦାସତ୍ୱ ସମ୍ପର୍କରେ, ଯିଏ କି ମୁକ୍ତି ପାଇଁ ଛଟପଟ ହୋଇଉଠିଛି । କିନ୍ତୁ ସେ ମୁକ୍ତି ପାଇବା ପୂର୍ବରୁ ଜୀବନର ଅସହ୍ୟ ଜ୍ୱାଳାରେ ମୃତ୍ୟୁବରଣ କରିଛି । ତା' ମୁନିବର ନିର୍ମମ ଅତ୍ୟାଚାର ଓ ନିଷ୍ଠୁରତା ତା' ମୃତ୍ୟୁର ସର୍ବଶ୍ରେଷ୍ଠ କାରଣ । ବାସ୍ତବିକ ଉପନ୍ୟାସଟି ପାଠ ପରେ ପାଠକ ମନରେ ସ୍ୱତଃ ବିପ୍ଳବ ଦେଖାଦେବା ସ୍ୱାଭାବିକ । ଏହି ଉପନ୍ୟାସଟି ସମ୍ପର୍କରେ ଆମେରିକୀୟ ସାହିତ୍ୟର ଜଣେ ବରିଷ୍ଠ ସମାଲୋଚକ 'Abel' କହିଛନ୍ତି—

> "Uncle Toms exhibits thistrait of sensibility to an extreeme degree. It manifests it self especially in two ways : In a vivid religious faith and in an intense sympathy and kindness towards all mankind. He was a short of Parfiarch in religious matters, and had the soft impressible nature of his kindly race. These attributes make Tom a bladk christ whose sufferings are symbolic of all the Sufferings of his People and who Joyously offers himself as a Sacrifice."

'Uncle Toms cabin' ବ୍ୟତୀତ 'ମିସେସ୍ ଷ୍ଟୋ'ଙ୍କର ଅନ୍ୟ ଉପନ୍ୟାସ ଗୁଡ଼ିକ ଯଥାକ୍ରମେ ୧୮୫୯ରେ 'The Ministers, wooing' ୧୮୬୨ରେ 'The pearl of Orr's Island" ଏବଂ ୧୮୬୯ରେ "Old Town Folks' ନାମରେ ପ୍ରକାଶିତ ହୋଇ ଆମେରିକୀୟ ଉପନ୍ୟାସ ଜଗତକୁ ଏକ ଦୃଢ଼ ପୃଷ୍ଠଭୂମି ଯୋଗାଇ ପାରିଥିଲା ।

## ହରମାନ୍ ମେଲ୍‌ଭିଲେ

## [Herman Melville]

ଜୀବନର ସମସ୍ତ ବାସ୍ତବାନୁଭୂତିକୁ ନେଇ ଊନବିଂଶ ଶତାବ୍ଦୀର ଔପନ୍ୟାସିକ ମେଲ୍‌ଭିଲେ ତାଙ୍କ ଉପନ୍ୟାସ ଗୁଡ଼ିକର ପୃଷ୍ଠଭୂମି ନିର୍ମାଣ କରିଥିଲେ । ୩୧ ବର୍ଷ ବୟସରେ

ସେ ତାଙ୍କର ପ୍ରସିଦ୍ଧ, ଉପନ୍ୟାସ "Mobedick' କୁ ରଚନା କରିଥିଲେ । ନାଥାନିଏଲ୍ ହାଥର୍ଣ୍ଣଙ୍କ ଗଭୀର ଶ୍ରଦ୍ଧା ଓ ଭକ୍ତିର ନିଦର୍ଶନ ସ୍ୱରୂପ ମେଲ୍‌ଭିଲେ ତାଙ୍କର ଏହି ଉପନ୍ୟାସଟିକୁ ତାଙ୍କୁ ଉତ୍ସର୍ଗ କରିଥିଲେ । ଏହି ସମୟରେ ହାଥର୍ଣ୍ଣ ତାଙ୍କର 'Mosses from an old manse' ରଚନାରେ ବ୍ୟସ୍ତ ଥିଲେ ।

Melvilleଙ୍କ ସମ୍ପର୍କରେ Abel କହିଛନ୍ତି—"His first great—books were written at the sametime as Howthornes 'Mosses from an old manse' and Long fellow's 'Evang aline' his last in the same decade as Hamlin garland's 'Main—Travelled Roads' and Stefen Crane's 'Red Badge of courage, and his grapple with good and evil was as profound as Howthornes. His realism as vivid and Modern as Crane's."

ବର୍ଣ୍ଣନାର ଚଞ୍ଚଳତା, ଅନୁଭୂତିର ତୀବ୍ରତା, ପରିହାସର ତୀକ୍ଷ୍ଣତା ଓ ସୌନ୍ଦର୍ଯ୍ୟ ଚେତନା ମେଲ୍‌ଭିଲେଙ୍କ ଉପନ୍ୟାସ ଜଗତକୁ ବେଶ୍ ଋଦ୍ଧିମନ୍ତ କରିବା ସଙ୍ଗେ ସଙ୍ଗେ ଆମେରିକୀୟ ଉପନ୍ୟାସ ସାହିତ୍ୟକୁ ବାଧ୍ୟ କରିଛି ତାଙ୍କପରି ଏକ ବଳିଷ୍ଠ ପ୍ରତିଭାକୁ ସ୍ୱୀକାର କରିବାକୁ । ମେଲ୍‌ଭିଲେ ହାଥର୍ଣ୍ଣଙ୍କ ସମସାମୟିକ ଔପନ୍ୟାସିକ ହୋଇଥିଲେହେଁ ସେ ହାଥର୍ଣ୍ଣଙ୍କ ଦ୍ୱାରା ବହୁଭାବେ ପ୍ରଭାବିତ ହୋଇଥିବା ପରି ମନେହୁଅନ୍ତି । ତାଙ୍କର Romatic ଉପନ୍ୟାସ 'Typee' ୧୮୪୬ ମସିହାରେ ଆମେରିକାରେ ପ୍ରକାଶ ପାଇବାର ଗୋଟିଏ ମାସ ପୂର୍ବରୁ ଇଂଲଣ୍ଡରେ ପ୍ରଥମକରି ପ୍ରକାଶ ପାଇଥିଲା । ଏଥିରେ ମେଲ୍‌ଭିଲେଙ୍କର ଜଣେ ବଳିଷ୍ଠ ଔପନ୍ୟାସିକ ହେବାର ପ୍ରତିଶ୍ରୁତି ଲିପିବଦ୍ଧ ଥିଲା । ତାଙ୍କର ପ୍ରଥମ ଉପନ୍ୟାସ ଭାବେ ଏହା ତାଙ୍କୁ ଖୁବ୍ ସୁନାମର ଅଧିକାରୀ କରାଇପାରିଥିଲା ।

୧୮୪୭ ମସିହାରେ ତାଙ୍କର ଦ୍ୱିତୀୟ ଉପନ୍ୟାସ 'Omoo'ର ପ୍ରକାଶନ ଘଟିଥିଲା । ୧୮୪୯ରେ ତାଙ୍କର ତୃତୀୟ ଉପନ୍ୟାସ 'Mardi' ପ୍ରକାଶିତ ହେଲା । 'Mardi' ଉପନ୍ୟାସ ରଚନାର ସେହିବର୍ଷ ଅର୍ଥାତ୍ ୧୮୪୯ ମସିହାରେ ତାଙ୍କର ଚତୁର୍ଥ ଉପନ୍ୟାସ 'Red Burn' ପ୍ରକାଶିତ ହୋଇଥିଲା । ଏଥିରେ ଜଣେ ନାବିକ ବାଳକର କାହାଣୀ ବର୍ଣ୍ଣିତ । ଆମେରିକୀୟ ଉପନ୍ୟାସ ଜଗତରେ ଏହି ଉପନ୍ୟାସ ଏକ ଅନବଦ୍ୟ ସୃଷ୍ଟି । ୧୮୫୦ରେ ତାଙ୍କର ଅନ୍ୟଗୋଟିଏ ଉପନ୍ୟାସ 'white Jacket' ପ୍ରକାଶିତ ହୋଇଥିଲା । ଏହା ବେଶ୍ ସୂଚନାଧର୍ମୀ । ଏହାର ଗୋଟିଏ ବର୍ଷ ପରେ ୧୮୫୧ ମସିହାରେ ମେଲ୍‌ଭିଲେ ତାଙ୍କର ପ୍ରସିଦ୍ଧ ଉପନ୍ୟାସ 'ମୋବେଡ଼ିକ୍' (Mobeydick)କୁ ପ୍ରକାଶିତ କରାଇଥିଲେ । ତାଙ୍କ ଔପନ୍ୟାସିକ ଜୀବନରେ ଏହା ତାଙ୍କର ସର୍ବଶ୍ରେଷ୍ଠ କୃତି । ଏହାପରେ ୧୮୫୨

ମସିହାରେ ସେ 'Pierre' ଉପନ୍ୟାସକୁ ରୂପ ଦେଇଥିଲେ । ଏହା ବ୍ୟତୀତ ତାଙ୍କର କହୁ କ୍ଷୁଦ୍ର ଉପନ୍ୟାସ ଆମେରିକୀୟ ଉପନ୍ୟାସ ଜଗତକୁ ବେଶ୍ ଋଦ୍ଧିମନ୍ତ କରିପାରିଥିଲା । ଜଣେ ସଫଳ ଔପନ୍ୟାସିକ ଭାବେ ତାଙ୍କର ଦାନ ଆମେରିକୀୟ ଉପନ୍ୟାସ ଜଗତରେ ଅବିସ୍ମରଣୀୟ ।

## ମାର୍କ ଟ୍ୱାଇନ୍

## [ Mark Twain ]

ଊନବିଂଶ ଶତାବ୍ଦୀର ଜଣେ ବଳିଷ୍ଠ ଔପନ୍ୟାସିକ ଭାବେ ମାର୍କ ଟ୍ୱାଇନ୍ଙ୍କ ନାମ ଅବିସ୍ମରଣୀୟ । ସମସାମୟିକ ଔପନ୍ୟାସିକମାନଙ୍କ ମଧ୍ୟରେ ଜଣେ ପ୍ରତିଭାଶାଳୀ ଗଳ୍ପ ସ୍ରଷ୍ଟା ଭାବେ ସେ ଖ୍ୟାତସମ୍ପନ୍ନ ଥିଲେ ହେଁ, ଜଣେ ବାସ୍ତବ ଓ ରହସ୍ୟବାଦୀ, ହାସ୍ୟ-ରସିକ ଔପନ୍ୟାସିକ ଭାବେ ସେ ସୁଖ୍ୟାତି ଅର୍ଜନ କରିଥିଲେ । ଜଣେ ସଫଳ ଶିଶୁ ସାହିତ୍ୟିକ ଭାବେ ମଧ୍ୟ ସେ ସର୍ବଜନବନ୍ଦିତ । କିନ୍ତୁ ତାଙ୍କ ଉପନ୍ୟାସରେ ଜୀବନ୍ତ ରୂପପ୍ରକାଶ ପାଇଁ ସେ ଜଣେ ସଚେତନଶୀଳ ଔପନ୍ୟାସିକ ଭାବେ ପ୍ରତିଷ୍ଠିତ ହୋଇ ପାରିଛନ୍ତି । ତେଣୁପାଇଁ ଊନବିଂଶ ଶତାବ୍ଦୀର ଯେଉଁ କେତେଜଣ ଔପନ୍ୟାସିକ ନିଜ ନିଜ ପ୍ରତିଭା ବଳରେ ଅବିସ୍ମରଣୀୟ ତନ୍ମଧ୍ୟରୁ ମାର୍କ ଟ୍ୱାଇନ୍ ଅନ୍ୟତମ । ବୋଧେ ସେଥିପାଇଁ— "Most of Americans reg3rd Mark Twain with Special effection." (6) ମାର୍କ ଟ୍ୱାଇନ୍ଙ୍କର କୃତିଗୁଡ଼ିକ ମଧ୍ୟରେ ୧୮୬୯ ମସିହାରେ ପ୍ରକାଶିତ "The New Piligrims Progress", ୧୮୭୬ ମସିହାରେ ପ୍ରକାଶିତ "The Adventures of Tomsaw year, ୧୮୭୪ ମସିହାରେ ପ୍ରକାଶିତ 'The Gilded", ୧୮୮୨ରେ ପ୍ରକାଶିତ "The Prince and the Pauper', ୧୮୮୩ରେ ପ୍ରକାଶିତ 'Life on the Mississipe" ୧୮୮୯ରେ ପ୍ରକାଶିତ "A Connectieut yankeeinking Arthurs Court" ଅନ୍ୟତମ ।

ଏସବୁ ବ୍ୟତୀତ ଜଣେ ପ୍ରଭାବଶାଳୀ ଆଲୋଚକ ଭାବେ ମାର୍କ ଟ୍ୱାଇନ୍ ବେଶ୍ ପରିଚିତ । କିନ୍ତୁ ସେ ତାଙ୍କର ଉପନ୍ୟାସ ରଚନାରେ ଆକର୍ଷଣୀୟ ଶୈଳୀ ଓ କଥାବସ୍ତୁ ଦ୍ୱାରା ଆମେରିକୀୟ ଉପନ୍ୟାସ ଜଗତରେ ଶ୍ରେଷ୍ଠ ବାରି ହୋଇ ପଡ଼ନ୍ତି । ତେଣୁ ସେ ତାଙ୍କ ସାହିତ୍ୟରେ ଅମର ଓ ଅବିସ୍ମରଣୀୟ ।

---

(6) Darrel Abel (American literature-Vol-1)

## ଉଇଲୟମ ଡି: ହ୍ୱେଲ୍ସ
## [ William D. Howells ]

ଆମେରିକୀୟ ଉପନ୍ୟାସ ଜଗତରେ ପ୍ରତିଭାବାନ୍ ଔପନ୍ୟାସିକ ହ୍ୱେଲ୍ସ ଥିଲେ ଏକାଧାରରେ ଜଣେ କବି, ସାମ୍ବାଦିକ, ସମାଲୋଚକ ଓ ଔପନ୍ୟାସିକ । ୧୮୫୨ ମସିହାରେ ହଥର୍ଣ୍ଣଙ୍କ ଉପନ୍ୟାସ "The Blithedale Romance" ପ୍ରକାଶ ପାଇଲା ବେଳକୁ ହ୍ୱେଲ୍ସଙ୍କୁ ମାତ୍ର ପନ୍ଦର ବର୍ଷ ବୟସ ହୋଇଥିଲା । ୧୯୨୦ ମସିହାରେ ମୃତ୍ୟୁବରଣ କରିବା ପର୍ଯ୍ୟନ୍ତ ତାଙ୍କ ସାରସ୍ୱତ ଚେତନା ଖୁବ୍ ସକ୍ରିୟ ଥିଲା । ତତ୍କାଳୀନ ଦୁଇ ପ୍ରତିଷ୍ଠିତ ଔପନ୍ୟାସିକ ମାର୍କ ଟ୍ୱାଇନ୍ ଓ ହେନେରି ଜେମ୍ସଙ୍କ ସହ ତାଙ୍କର ନିବିଡ଼ ବନ୍ଧୁତା ଥିଲା ।

୧୮୭୫ ମସିହାରୁ ୧୮୯୫ ମସିହା ଭିତରେ ଯେ ତାଙ୍କର ସର୍ବଶ୍ରେଷ୍ଠ କୃତିଗୁଡ଼ିକର ରଚନା ସମାପନ କରିଥିଲେ । ବହୁ ଭ୍ରମଣ କାହାଣୀର ସ୍ରଷ୍ଟା ଭାବେ ସେ ତାଙ୍କ ସାହିତ୍ୟରେ ସୁବିଦିତ । ତାଙ୍କ ଜୀବନକାଳ ଭିତରେ ସେ ୩୫ ଖଣ୍ଡି ଉପନ୍ୟାସ ଲେଖିଛନ୍ତି । ତାଙ୍କର ପ୍ରଥମ ଉପନ୍ୟାସ ୧୮୭୨ରେ ପ୍ରକାଶ ପାଇଥିଲା । ଏହି ପ୍ରଥମ ଉପନ୍ୟାସ "Their wedding Journey"କୁ ଯେ ଏକ ବିବାହିକାନ୍ତ ଭ୍ରମଣ କାହାଣୀକୁ ନେଇ ରଚନା କରିଥିଲେ । ଏହା ପରେ ପରେ ସେ ୧୮୭୩ରେ "A chance Acquaintance", ୧୮୭୫ରେ 'A Foregone Conclusion', ୧୮୭୯ରେ 'The lady of the Aroostook', ୧୮୮୦ରେ 'The undiscovered country', ୧୮୮୧ରେ "Dr. Breen's Practice', ୧୮୮୨ରେ "A modern instance', '୧୮୮୩ରେ—"A woman's Reason', ୧୮୮୬ରେ 'Indian summer', ୧୮୮୭ରେ 'The Ministers charge', ୧୮୮୮ରେ 'April Hopes', ୧୮୯୦ରେ 'A Hazard of New Fortunes', ୧୮୯୨ରେ 'An imperative Duty', ୧୮୯୬ରେ 'The day of their weeding', ୧୮୯୮ରେ 'The story of Aplay', ୧୮୯୯ରେ Ragged Lady', ୧୯୦୨ରେ 'The Kentos' ୧୯୦୩ରେ 'Letters home', ୧୯୦୫ରେ Miss Bellard's inspiration', ୧୯୦୯ରେ 'Fennel and Rue' ପ୍ରଭୃତି ଉପନ୍ୟାସ ମାନ ରଚନା କରି ସେ ଆମେରିକୀୟ ଉପନ୍ୟାସ ଜଗତକୁ ବେଶ୍ ସମୃଦ୍ଧ କରିପାରିଥିଲେ । ଏହି ଦୀର୍ଘ ଏବଂ ବିରତିହୀନ ସାହିତ୍ୟ-ସାଧନା ହ୍ୱେଲ୍ସଙ୍କ ପ୍ରଚଣ୍ଡ ପ୍ରତିଭାର ଯଥାର୍ଥ ପରିଚାୟକ । ତେଣୁ ହ୍ୱେଲ୍ସ ଆମେରିକୀୟ ଉପନ୍ୟାସ ଜଗତରେ ଜଣେ ପ୍ରଭାବଶାଳୀ ଔପନ୍ୟାସିକ ଭାବେ ଗୌରବାନ୍ୱିତ ।

## ହେନେରୀ ଜେମ୍ସ
## [ Henry James ]

ଊନବିଂଶ ଶତାବ୍ଦୀର ଜଣେ ବହୁ ପ୍ରକାଶିତ ଔପନ୍ୟାସିକ ଭାବେ ହେନେରୀ ଜେମ୍ସଙ୍କ ନାମ ଉଲ୍ଲେଖଯୋଗ୍ୟ । ଊନବିଂଶ ଶତାବ୍ଦୀର ଶେଷଭାଗରେ ଓ ବିଂଶ ଶତାବ୍ଦୀର ଆରମ୍ଭରେ ସେ ତାଙ୍କର ଉପନ୍ୟାସଗୁଡ଼ିକ ରଚନା କରିଥିଲେ । ସେ ଇଂରେଜ ଔପନ୍ୟାସିକମାନଙ୍କ ଦ୍ୱାରା ବହୁ ଭାବେ ପ୍ରଭାବିତ ହୋଇପଡ଼ିଥିଲେହେଁ ତାଙ୍କ ଉପନ୍ୟାସ ରଚନା ଶୈଳୀରେ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । (7) ଏହି ମହାନ୍ ସାହିତ୍ୟିକଙ୍କର ଅବଦାନ ଆମେରିକୀୟ 'ଉପନ୍ୟାସ ଜଗତରେ ଅବିସ୍ମରଣୀୟ । ଜଣେ ସଫଳ କଥାକାର ଭାବେ ସେ ଆମେରିକୀୟ ସାହିତ୍ୟ. ଜଗତରେ ସୁପରିଚିତ । ୧୮୭୫ରୁ ୧୯୧୧ ଭିତରେ ତାଙ୍କର ସମସ୍ତ ଉପନ୍ୟାସ ମାନ ରଚିତ ହୋଇଥିଲା । ୧୯୦୨ ମସିହାରେ ରଚିତ **'The Wings of the Dove'** ତାଙ୍କର ସମଗ୍ର ଉପନ୍ୟାସ ଜଗତରେ ଏକ ଶ୍ରେଷ୍ଠ ରଚନା । ତାଙ୍କର କେତେକ ଉପନ୍ୟାସରେ ଆମେରିକାର ଗୃହଯୁଦ୍ଧ ଓ ସାମାଜିକ ବିପର୍ଯ୍ୟୟର ଚିତ୍ର ଦେଖିବାକୁ ମିଳେ ।

ତାଙ୍କର ପ୍ରଥମ ଉପନ୍ୟାସ ୧୮୭୫ ମସିହାରେ **'Rode rick Hudson'** ନାମରେ ପ୍ରକାଶିତ ହୋଇଥିଲା । ୧୮୭୭ ମସିହାରେ **'The American'** ୧୮୭୮ ମସିହାରେ **'The watch and word'** ୧୮୭୯ ମସିହାରେ **'Confindence'** ୧୮୮୦-୮୧ ମସିହାରେ **'Wasington Square', 'The Portrait Lady'**, ୧୮୮୬ରେ **'The Bostonious'** ୧୮୮୮ରେ **'The Rever berator'** ୧୮୮୯ରେ **'The Tragic Muse'**, ୧୮୯୬ରେ **'The Other House'**, ୧୮୯୭ରେ **'The Spoils of Paynton'**, ୧୯୦୧ରେ **'The Sacred found'** ୧୯୦୨ରେ **'The wings of the Dove'**, ୧୯୦୩ରେ **'The Ambasador'**, ୧୯୦୪ରେ **'The Golden bowl** : ଉପନ୍ୟାସ, ମାନ ତାଙ୍କ

---

(7) He was the first of the great psychological realists in our time on a much more complicated and more Subtly Subjective level than his Russian Predecessors. Turgnev, Tolstoi and Dostoeviske. In this Productivity and the high level of his writting, in his insight into human motivation, and in his Possession of the architectonics of fiction. He was a remarkable innovations, Constantly frtile, blod and independent and a man with a style". (Cassel's, encyclopaedia of American Literature vol-I )

ଦ୍ୱାରା ରଚିତ ହୋଇ ବେଶ୍ ଆଦୃତ ଲାଭ କରିଥିଲା । ତାଙ୍କର ସର୍ବଶେଷ ଉପନ୍ୟାସ ହେଲେ **'The out-cry'** ଉପନ୍ୟାସ ପରିଚିତ ।

ହେନେରୀଙ୍କର ଏହି ବିପୁଳ କୃତିଗୁଡ଼ିକ ବିଂଶ ଶତାବ୍ଦୀର ଆଦ୍ୟ ପର୍ଯ୍ୟାୟର ଉପନ୍ୟାସ ଜଗତ ପାଇଁ ଏକ ଉଲ୍ଲେଖଯୋଗ୍ୟ ଅବଦାନ କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ଉପନ୍ୟାସମାନଙ୍କରେ ହେନେରୀ ତାଙ୍କର ପରବର୍ତ୍ତୀ ଔପନ୍ୟାସିକମାନଙ୍କୁ ଅନେକ ପ୍ରେରଣା ଓ ଦିଗ୍‌ଦର୍ଶନ ଦେଇପାରିଥିଲେ । ତାଙ୍କର ଦୀର୍ଘ ସମୟର ନିରଳସ ସାହିତ୍ୟ ସାଧନା ତାଙ୍କୁ ଆମେରିକୀୟ ଉପନ୍ୟାସ ଜଗତରେ ତ ଅମର କରି ରଖିଛି; କିନ୍ତୁ ତତୋଽଧିକ ନୂତନ ପ୍ରତିଭାମାନଙ୍କର ଭୂୟୋବିକାଶ ଦିଗରେ ତାଙ୍କ ପ୍ରଭାବକୁ ଅପ୍ରତିହତ ରଖିପାରିଛି ।

ଉପରୋକ୍ତ ଆଲୋଚ୍ୟ ଔପନ୍ୟାସିକମାନଙ୍କ ବ୍ୟତୀତ ଅନ୍ୟାନ୍ୟ ବହୁ ଔପନ୍ୟାସିକ୍ ଏହି ସମୟରେ ଲେଖନୀ ଚାଳନା କରିଥିଲେ । ମାତ୍ର ସେମାନେ ଏତେ ପ୍ରଭାବଶାଳୀ ହୋଇ-ପାରି ନଥିଲେ । ତେଣୁ ଆଲୋଚନାର ଗୁରୁତ୍ୱ ଏବଂ ଏମାନଙ୍କ ସୃଷ୍ଟିର ପ୍ରଭାବସ୍ଥାନ ପ୍ରଭାବ ଦୃଷ୍ଟିରୁ ସେମାନଙ୍କୁ ଆଲୋଚନାର ପରିସରକୁ ଆଣିବା ପ୍ରୟୋଜନୀୟ ହେଉନଥିବାରୁ ଅଗତ୍ୟା ତାଙ୍କୁ ଏଠାରେ ବାଦ୍ ଦେବାକୁ ପଡ଼ିଲା । ଅଷ୍ଟାଦଶ ଶତାବ୍ଦୀ ଅପେକ୍ଷା ଊନବିଂଶ ଶତାବ୍ଦୀର ପ୍ରତ୍ୟେକ ସାହିତ୍ୟ ସୃଷ୍ଟିରେ କିଛିଟା ଭିନ୍ନ ଦୃଷ୍ଟିକୋଣ ପ୍ରତିଫଳିତ ହୋଇଛି । ବିଶେଷକରି ଊନବିଂଶ ଶତାବ୍ଦୀ ପାଇଁ ଏହା ଥିଲା ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏହିସବୁ ଦୃଷ୍ଟିରୁ ଆଲୋଚିତ ଊନବିଂଶ ଶତାବ୍ଦୀର ଏହି ଔପନ୍ୟାସିକମାନଙ୍କ ଭୂମିକାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ ।

କାଳର କରାଳ ଗର୍ଭରେ ପ୍ରାୟତଃ ପୃଥିବୀର ସମସ୍ତ ସୌନ୍ଦର୍ଯ୍ୟ ଓ ଅସୌନ୍ଦର୍ଯ୍ୟ ବସ୍ତୁ ଲୀନ ହୋଇଯାଏ । ସେହି ଦୃଷ୍ଟିରୁ ବିଚାରକଲେ ସାହିତ୍ୟ ଓ ସାହିତ୍ୟିକମାନେ ହିଁ କେବଳ କାଳର ଏହି ମହାକର୍ଷଣରୁ ଉତ୍ତୀର୍ଣ୍ଣ ହୋଇପାରିବେ । ସେଥିପାଇଁ ବୋଧେ ଊନବିଂଶ ଶତାବ୍ଦୀର ଆମେରିକୀୟ ଔପନ୍ୟାସିକମାନଙ୍କ ପ୍ରଭାବ କାଳର କରାଳ ସ୍ରୋତରେ ଲୀନ ହୋଇନଯାଇ, ତା' ବକ୍ଷରେ ଉତ୍ତୀର୍ଣ୍ଣ ହୋଇ ଏହାର ପରବର୍ତ୍ତୀ ବିଂଶ ଶତାବ୍ଦୀର ଔପନ୍ୟାସିକମାନଙ୍କୁ ବେଶ୍ ପ୍ରଭାବିତ କରିପାରିଛି ।

ପ୍ରତ୍ୟେକ ସାହିତ୍ୟରେ ଓ ପ୍ରତ୍ୟେକ ଯୁଗରେ 'ପ୍ରଭାବ' ପରି ଏକ ଶକ୍ତିର ବୈଶିଷ୍ଟ୍ୟ ତା' ପରବର୍ତ୍ତୀ ସାହିତ୍ୟରେ ଓ ସମସାମୟିକ ସାହିତ୍ୟରେ ଊଣାଅଧିକେ ଉପଲବ୍ଧ । ଏହି ପରିପ୍ରେକ୍ଷୀରେ ଊନବିଂଶ ଶତାବ୍ଦୀର ଔପନ୍ୟାସିକ ଓ ଉପନ୍ୟାସ ମାନଙ୍କର ଧାରାବାହିକ ଆଲୋଚନା କରାଗଲା । କିନ୍ତୁ ଏକଥା ସତ୍ୟ ଯେ, ସବୁରି ଉପରେ ଅତି ଶକ୍ତିଶାଳୀ ହେଉଛି

ସମୟ । ସମୟ ଘଟଣାକୁ ନିୟନ୍ତ୍ରିତ କରେ । ସାହିତ୍ୟ ଏହି ସମୟ ଓ ଘଟଣାର ଚୌହଦୀରେ ବନ୍ଧା ଏକ ସୃଷ୍ଟିସର୍ବସ୍ୱ ସମ୍ପତ୍ତି ।

ବିଶ୍ୱର ଯେକୌଣସି ସାହିତ୍ୟ ସମସାମୟିକ ଘଟଣାବଳୀ ଓ ସମୟର ଅପ୍ରତିହତ ପ୍ରଭାବରୁ ଆଦୌ ମୁକ୍ତ ନୁହେଁ ବୋଲି କୁହାଯାଇପାରେ । ସମୟାନୁକ୍ରମେ ଯାହା ଘଟେ, ସାହିତ୍ୟରେ ତା'ର ପ୍ରତିଫଳନ ଘଟିଥାଏ ମାତ୍ର । ତେଣୁ ପ୍ରତ୍ୟେକ ଦେଶର ସାହିତ୍ୟରେ ସମୟର ସ୍ପନ୍ଦନ ଘଟଣା ପ୍ରବାହରେ ହୁଏ ଉପଲବ୍ଧ । ଆମେରିକୀୟ ଉପନ୍ୟାସ ସାହିତ୍ୟରେ ଯେଭଳି ଏହା ସୁସ୍ପଷ୍ଟ, ସେହିପରି ଏହା ପ୍ରାଞ୍ଜଳ ଓ ବର୍ଣ୍ଣୋଚ୍ଛ୍ୱାସମୟ ଅନ୍ୟଦେଶର ସାହିତ୍ୟରେ ମଧ୍ୟ । ଏଣୁ ଓଡ଼ିଆ ପରି ଏକ ପ୍ରାଦେଶିକ ଭାଷା-ସାହିତ୍ୟରେ ଏହାର ବ୍ୟତିକ୍ରମ ବା ଘଟିବ କିପରି ? ତେଣୁ ସମୟର ସ୍ପନ୍ଦନ କିପରି ଓଡ଼ିଆ ସାହିତ୍ୟ ବିଶେଷକରି ତା'ର ଉପନ୍ୟାସ ମଧ୍ୟରେ ସ୍ପନ୍ଦିତ ହୋଇଛି, ଯାହାକି ଆମେରିକୀୟ ସାହିତ୍ୟରେ ଘଟିଥିଲା; ତାହା ପରବର୍ତ୍ତୀ ଅଧ୍ୟାୟରେ ଆମର ଆଲୋଚ୍ୟ ବିଷୟବସ୍ତୁ । □□□

# ଓଡ଼ିଆ ଉପନ୍ୟାସ ସାହିତ୍ୟର ଆଦିପର୍ବ ଓ ଫକୀରମୋହନ

**[ ଉମେଶଚନ୍ଦ୍ର ସରକାରଙ୍କଠାରୁ ଫକୀରମୋହନଙ୍କ ପର୍ଯ୍ୟନ୍ତ ଏକ ଧାରାବାହିକ ଆଲୋଚନା ।]**

( କ )

ଓଡ଼ିଆ ଉପନ୍ୟାସର ବିକାଶଧାରା ବା ସୃଷ୍ଟି ପ୍ରବାହ ନିମୂଳୀ ଲତାତୁଲ୍ୟ ନୁହେଁ । ଏହା ଆଧୁନିକତାର ଫଳ । ଏହାର ନିର୍ଦ୍ଦିଷ୍ଟ ପୃଷ୍ଠଭୂମି ଯେପରି ଅଛି, ଏହାର ବିକାଶସ୍ରୋତ ମଧ୍ୟ ସେହିପରି ସୁସ୍ପଷ୍ଟ । ଓଡ଼ିଆ ଗଦ୍ୟସାହିତ୍ୟର ବଳିଷ୍ଠ ପରମ୍ପରାରେ ଉପନ୍ୟାସ ଏକ ଅମୂଲ୍ୟ ସୃଷ୍ଟି ପ୍ରବାହ । ଉପନ୍ୟାସ ଆଧୁନିକ ଓଡ଼ିଆ ସାହିତ୍ୟର ଏକ ଚମତ୍କାର ସୃଷ୍ଟି ସମ୍ପଦ ଓ ନବୀନ ଯୁଗର କଳାକ୍ଷେତ୍ରରେ ନୂତନ ବାର୍ତ୍ତାବହର ଭୂମିକା ଗ୍ରହଣ କରିଥିଲେ ସୁଦ୍ଧା ପ୍ରାଚୀନ ସାହିତ୍ୟରେ ଏହାର ସ୍ଥିତିକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ପ୍ରାଚୀନ ସାହିତ୍ୟକୁ ଭିତ୍ତିକରି ଆଜିର ଉପନ୍ୟାସ ଆଧୁନିକରୁ ଆଧୁନିକତର ହୋଇ-ଚାଲିଛି ।

କାହାଣୀ ବା କଥାବସ୍ତୁ ଉପନ୍ୟାସର ଅପରିହାର୍ଯ୍ୟ ଅଙ୍ଗ । ସେ ଦୃଷ୍ଟିରୁ କାହାଣୀ ଉପଭୋଗ କରିବାର ପିପାସା ମାନବ ପ୍ରାଣରେ ଚିରନ୍ତନ ଏବଂ ରସୋଚ୍ଛ୍ୱଳ ହୋଇଉଠିଛି । ସମାଲୋଚକମାନେ ଏହି ମତବାଦର ପୃଷ୍ଠପୋଷକତା କରି ପ୍ରାଚୀନ ଲୋକସାହିତ୍ୟରେ କାହାଣୀର ସୃଷ୍ଟିସତ୍ତା ନିହିତ ଥିବା କଥା ପ୍ରକାଶ କରନ୍ତି । ଅତୀତର ଇତିହାସରେ ସାହିତ୍ୟର ସୃଷ୍ଟି ଚର୍ଚ୍ଚା ଓ ଅନୁଶୀଳନ ବିଦଗ୍ଧ ପଣ୍ଡିତମଣ୍ଡଳୀରେ ସୀମିତ ଥିଲା । ନିରକ୍ଷର ଜନତାଙ୍କର ସାହିତ୍ୟ ରସପିପାସାକୁ ପରିପୁଷ୍ଟ କରିବା ପାଇଁ ବିଦଗ୍ଧ ସାହିତ୍ୟରେ ସମାନ୍ତ-ରାଳ ଭାବରେ ଏକ ଲୋକ ସଂସ୍କୃତିମୂଳକ ସାହିତ୍ୟ ସର୍ଜନା ହୋଇଥିଲା । ବିଦଗ୍ଧ ସାହିତ୍ୟ ଓ ଲୋକସାହିତ୍ୟ ଭିତରେ ପ୍ରଭେଦ ଏତିକି ଯେ, ଲୋକସାହିତ୍ୟର କୌଣସି ଲିଖିତ ପ୍ରତି-ରୂପ ନଥିଲା । ସମୟକ୍ରମେ ଲୋକମୁଖରେ ପ୍ରଚଳିତ ହୋଇ ଶ୍ରୁତିରୁ ଶ୍ରୁତିକୁ ଲମ୍ଫ ପ୍ରଦାନକରି ଏହା କାଳଜୟୀ ସାହିତ୍ୟ ସମ୍ପଦ ଭାବରେ ଗଣ୍ୟ ହୋଇଆସୁଛି ।

ଲୋକସାହିତ୍ୟରେ ଗଳ୍ପ ଓ କାହାଣୀ ବିଭାଗ ଖୁବ୍ ବ୍ୟାପକ, ଏପରିକି ବହୁ ଗଳ୍ପ ଓ କାହାଣୀ ପଦ୍ୟରୂପରେ ଲୋକସାହିତ୍ୟରେ ପରିପୂର୍ଣ୍ଣ । ଲୋକସାହିତ୍ୟର ଅଧିକାଂଶ ପଦ୍ୟ

ଓ ଗଦ୍ୟ ସୃଷ୍ଟିର ଅନ୍ତରାଳରେ କାହାଣୀ ପରିବେଷଣର ପ୍ରୟାସ ଆମ ନିକଟରେ ସ୍ପଷ୍ଟ ପ୍ରତିଭାତ ହୁଏ । ଏଥିପାଇଁ ଆମ ଉପନ୍ୟାସ ସାହିତ୍ୟର ଆଦିମ ସଙ୍କେତ ରୂପେ ଆମ ଲୋକ-ସାହିତ୍ୟର ଗଳ୍ପ ଓ କାହାଣୀ ବିଭାଗକୁ ଗ୍ରହଣ କରିପାରୁ ନାହୁଁ ।

ଏହି ଲୋକସାହିତ୍ୟର ପରିପୂରକ ଅନ୍ୟ ଯେଉଁ ବିଦ୍‌ଗ୍‌ଧ ସାହିତ୍ୟର ସଂସ୍କାର ଆମ ଦେଶରେ ସେତେବେଳେ ଘଟିଥିଲା, ସେ ଭିତରେ ବୈଦିକ ସାହିତ୍ୟ ଏକ ବିଶିଷ୍ଟ କୃତି । ଏଥିରେ ବହୁ ମନୋରମ ପରିପ୍ରକାଶ ଭଙ୍ଗୀକୁ ସନ୍ଦର୍ଶନ କଲେ ଜଣାଯାଏ ଯେ, ଓଡ଼ିଆ ଉପନ୍ୟାସର ଅବିକଶିତ ଏକ ଦୁର୍ବଳ ଏବଂ ପ୍ରାଚୀନ ସ୍ରୋତ ଏଥିରେ ପ୍ରବାହିତ । ପରବର୍ତ୍ତୀ ସମୟରେ ବୌଦ୍ଧଯୁଗ ସମ୍ବଳିତ କାହାଣୀ ଓ ଜାତକଗଳ୍ପ କାଳବକ୍ଷରେ କଥାସାହିତ୍ୟ ସୃଷ୍ଟିର ଧାରାକୁ ଅବ୍ୟାହତ ରଖିଥିବାର ସୂଚନା ମିଳେ । ଉପରୋକ୍ତ ସୃଷ୍ଟି ସମୃଦ୍ଧ ସମୂହ ଯୁଗାଦର୍ଶରେ ପ୍ରଭାବିତ ଏବଂ ତତ୍କାଳୀନ ଯୁଗରୁଚିରେ ବିମଣ୍ଡିତ ହୋଇଥିଲେ ସୁଦ୍ଧା ଏମାନେ ଉପନ୍ୟାସ କଳାର ମୌଳିକ ଉପାଦାନ କାହାଣୀଧର୍ମିତାକୁ ନିଚ୍ଛକ ରୂପେ ପ୍ରତି-ପାଦନ କରନ୍ତି ।

ପରବର୍ତ୍ତୀ ଯୁଗରେ ସଂସ୍କୃତ ସାହିତ୍ୟ, ହିତୋପଦେଶ, ପଞ୍ଚତନ୍ତ୍ର, ବେତାଳ ପଞ୍ଚବିଂଶତି ଓ ଦଶକୁମାର ଚରିତ ପ୍ରଭୃତିରେ ଆମର କଥାସାହିତ୍ୟର ଅମନ୍ଦ ମନ୍ଦାକିନୀ ଧାରାର ପ୍ରବାହ ଲକ୍ଷ୍ୟ କରାଯାଇପାରେ । ଏଗୁଡ଼ିକ ନୀତିଶିକ୍ଷାର ପୃଷ୍ଠଭୂମି ଉପରେ ଉପଦେଶାତ୍ମକ ଓ ଲୋକକଲ୍ୟାଣମୂଳକ ଭାବେ ସୃଷ୍ଟି ହୋଇଥିଲେହେଁ କଥାସାହିତ୍ୟର ପାଠକମାନଙ୍କ ପାଇଁ ଯେ, ନିର୍ଭରଯୋଗ୍ୟ ସାହିତ୍ୟ ସାମଗ୍ରୀ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

କାଳର ବିବର୍ତ୍ତନ ଧାରାରେ ଏ ସମସ୍ତ କ୍ରମେ ଅପସାରିତ ହୋଇ ସାହିତ୍ୟର ମୁଖ୍ୟ ପୃଷ୍ଠଭୂମି ଭାବେ ଦେଖାଦେଇଛି ପୁରାଣ ଶାସ୍ତ୍ର । ଏହି ପୁରାଣ ଯୁଗର ଅଖଣ୍ଡ ପ୍ରବାହ ଜନସାଧାରଣଙ୍କ ଉପରେ ଏତେବେଳ ଅନୁଭୂତ ହୁଏ । ପୁରାଣ ସାହିତ୍ୟର ସର୍ଜନା ମୂଳରେ ଧର୍ମ, ଭକ୍ତି, ନୀତି ଓ ଆଦର୍ଶବାଦର କାମନା ସ୍ପଷ୍ଟ ପ୍ରତିଫଳିତ ହୋଇଥିଲେହେଁ ଏଗୁଡ଼ିକ ମୁଖ୍ୟତଃ ବହୁ ଗଳ୍ପ ଓ କାହାଣୀ ମଧ୍ୟରେ ପରିପ୍ରକାଶିତ ହୋଇଛନ୍ତି । ବହୁ ଉପଭୋଗ୍ୟ ଆଖ୍ୟାୟିକାର ଆଭ୍ୟନ୍ତରୀଣ ପ୍ରବାହ ଉପରେ ପୁରାଣର ବିଭିନ୍ନ ଚରିତ୍ରଗୁଡ଼ିକ ସେମାନଙ୍କର ଅମୂଲ୍ୟ ଅବଦାନ ପାଠକମାନଙ୍କ ପାଇଁ ସୃଷ୍ଟି କରିଯାଇଛନ୍ତି । ସୁତରାଂ ପୌରାଣିକ ଚରିତ୍ର ଓ ପୁରାଣକାରର ଅଭିଳାଷକୁ ବାଦ୍‌ଦେଲେ ପୁରାଣ ସାହିତ୍ୟର ଅନ୍ୟ ଯେଉଁ ଉପାଦାନଟି ବିଶେଷ ପ୍ରଭାବ ସୃଷ୍ଟି କରେ, ତାହାହିଁ ପାଠକ ସମାଜର ଆଦରଣୀୟ ବସ୍ତୁ ବା କାହାଣୀ । ଏ ପର୍ଯ୍ୟାୟରେ ପୁରାଣକାର ସାରଳା ଦାସଙ୍କଠାରୁ ଆରମ୍ଭକରି ପଞ୍ଚସଖା ଯୁଗର ବିଭିନ୍ନ ସାହିତ୍ୟରଥୀଙ୍କ ନାମ ସ୍ମରଣ କରାଯାଇପାରେ ।

ପୁରାଣ ସାହିତ୍ୟରୁ ଦୂରେଇଦେଇ ଲୋକମାନଙ୍କ ନିକଟରେ ରସାଳ କାବ୍ୟ-ସମ୍ପଦ ଉପହାର ଦିଅନ୍ତି ପରବର୍ତ୍ତୀ ରୀତିଯୁଗ କାବ୍ୟକାରମାନେ । ଏମାନଙ୍କର କାବ୍ୟ ସମ୍ପଦରେ ପୁରାଣମୂଳକ ଅତି ବାସ୍ତବତା ଅନେକାଂଶରେ କ୍ଷୀଣ ହୋଇଯାଇଛି । ରକ୍ଷଣ ଧର୍ମଧାରଣାକୁ ଏମାନେ ମଧ୍ୟ ବହୁ ପରିମାଣରେ ପରିତ୍ୟାଗ କରିବାର ପ୍ରୟାସ କରିଛନ୍ତି । ଚରିତ୍ରମାନଙ୍କ ଅତିଭୌତିକତା ଓ ଦୈବୀ ଜଗତରୁ ଉଦ୍ଧାର କରି ବହୁ କାବ୍ୟକାର ସାମାଜିକ ପୃଷ୍ଠଭୂମିକୁ ଆଧାର କରି ଏହି ସମୟରେ କାବ୍ୟ-କବିତା ରଚନାର ଅଭିଯାନ ଚଳାଇଛନ୍ତି । ପ୍ରାଚୀନ ପୁରାଣଶାସ୍ତ୍ରର କାହାଣୀ ପର୍ଯ୍ୟାୟକୁ ପରିତ୍ୟାଗ କରି ଏତେବେଳେ ବହୁ କବି କପୋଳକଳ୍ପିତ ଘଟଣାବଳୀ ସଂଯୋଗରେ କାବ୍ୟମାନ ରଚନା କରିଛନ୍ତି । ଫଳରେ ଏଯୁଗର କାବ୍ୟ ବର୍ଣ୍ଣନାର ଅନ୍ତରାଳରେ ଲୁକ୍କାୟିତ ଥିବା ଶାସ୍ତ୍ରୀୟ ବା କାଳ୍ପନିକ କାହାଣୀ-ଗୁଡ଼ିକ ଓଡ଼ିଆ କଥାସାହିତ୍ୟର ବିକାଶ ପଥକୁ ପରୋକ୍ଷରେ ଉପାଦାନ ଯୋଗାଇଛନ୍ତି ।

କ୍ରମେ ପ୍ରାଚୀନ ସାହିତ୍ୟରେ ପଦ୍ୟର ସୃଷ୍ଟି ହୋଇଛି ସଙ୍କୁଚିତ । ନାନା କାରଣରୁ ସ୍ରଷ୍ଟା ମନରେ ଗଦ୍ୟର ଚେତନା ସଞ୍ଚରିତ ହେଲା । ପଦ୍ୟ ଅପେକ୍ଷା ଗଦ୍ୟ ଯେ କାହାଣୀ ଓ ପରିପ୍ରକାଶ ଲାଗି ଉତ୍କୃଷ୍ଟ ମାଧ୍ୟମ ଏ ଧାରଣା ଲୋକମାନଙ୍କ ମନରେ ସଞ୍ଚରିତ ହେଲା । ଫଳରେ ଓଡ଼ିଆ ଗଦ୍ୟ ସାହିତ୍ୟର ଆଦ୍ୟ ପର୍ଯ୍ୟାୟରେ ଯେଉଁ ଗଦ୍ୟ ସୃଷ୍ଟିମାନ ଦେଖିବାକୁ ମିଳଇ, ତହିଁରେ ଗଦ୍ୟର ବିକୃତ ରୂପହିଁ ସ୍ପଷ୍ଟ ହୋଇଉଠିଲା । ବିଭିନ୍ନ ଓଗ୍ରାବୃତ୍ତ କଥା, ମାଦଳାପାଞ୍ଜି, ରୁଦ୍ରସୁଧାନିଧି ଓ ଚତୁରବିନୋଦ ପ୍ରଭୃତିକୁ ଆମେ ଏହି ପ୍ରାଚୀନ ଗଦ୍ୟର ଅନ୍ତର୍ଭୁକ୍ତ କରିପାରିବା । ଏଗୁଡ଼ିକ ଅବିକଶିତ ଗଦ୍ୟ ସାହିତ୍ୟର ପ୍ରାଚୀନ ନିଦର୍ଶନ ସ୍ୱରୂପ ଓଡ଼ିଆ ସାହିତ୍ୟରେ ଉଲ୍ଲେଖଯୋଗ୍ୟ ।

ମାତ୍ର ଏହି ଗଦ୍ୟଶୈଳୀ ସମ୍ପୂର୍ଣ୍ଣ ରୂପେ ଏକ ଅଭିନବ ଢଙ୍ଗରେ ପରିପ୍ରକାଶ ନେଲା ଊନବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟରେ । ଏହି ସମୟ ସୀମାଠାରୁ ଓଡ଼ିଆ ସାହିତ୍ୟର ବହୁମୁଖୀ ଧାରା, ଯଥା—ଉପନ୍ୟାସ, ପ୍ରବନ୍ଧ, ନାଟକ ଆଦିର ଆଦ୍ୟ ସଙ୍କେତ ମଧ୍ୟ ଦେଖିବାକୁ ମିଳିଲା । ଏହି ପରିପ୍ରେକ୍ଷୀରେ ଓଡ଼ିଆ ଉପନ୍ୟାସ ସାହିତ୍ୟର ଆବିର୍ଭାବ ଓ ଏଥିରେ ଅନ୍ତର୍ଭୁକ୍ତ କେତେକ ଔପନ୍ୟାସିକ ଆମର ଆଲୋଚ୍ୟ ।

( ଖ )

ଊନବିଂଶ ଶତାବ୍ଦୀ ଓଡ଼ିଆ ସାହିତ୍ୟର ଇତିହାସରେ ଅବିସ୍ମରଣୀୟ । କେବଳ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନୁହେଁ, ଓଡ଼ିଶାର ରାଜନୀତି, ସମାଜନୀତି, ଅର୍ଥନୀତି କ୍ଷେତ୍ରରେ ମଧ୍ୟ ଏହି ଶତାବ୍ଦୀ ଏକ ଅଭୂତପୂର୍ବ ଆଲୋଡ଼ନ ସୃଷ୍ଟି କରିଛି । ଅବଶ୍ୟ ଏକଥା ସତ୍ୟ ଯେ, ଆମର ରାଜନୀତିକ ସଂଗ୍ରାମମୁଖର ଦିବସରୁ ଏ ଆଧୁନିକତାର ଜନ୍ମ ଏବଂ ଏକଥା ମଧ୍ୟ ଅସ୍ୱୀକାର କରିହେବ ନାହିଁ ଯେ, ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ସମ୍ପର୍କରୁ ଓଡ଼ିଆ ସାହିତ୍ୟରେ ଆଧୁନିକତାର ଅଭ୍ୟୁଦୟ ଘଟିଛି ।

୧୮୦୩ ମସିହାରେ ଓଡ଼ିଶା ଇଂରେଜ ଶାସନାଧୀନ ହେବାପରେ ସେମାନଙ୍କ ଶିକ୍ଷା-ଦୀକ୍ଷା, ଆଚାର ବ୍ୟବହାର ଓ ଧର୍ମ-ସଭ୍ୟତା ଏ ଦେଶରେ ପ୍ରବର୍ତ୍ତିତ ହେବାକୁ ଲାଗିଲା । ଲୋକରୁଚି ପରିବର୍ତ୍ତିତ ହେବାଫଳରେ ପ୍ରାଚୀନ ସାହିତ୍ୟର ଗତାନୁଗତିକ ପ୍ରବାହ ରୁଦ୍ଧ ହୋଇ ତା'ର ସ୍ଥାନରେ ମୁଣ୍ଡ ଟେକିଲା ବିଦେଶୀ ମୋହର ମରା ଆଧୁନିକ ସାହିତ୍ୟ । ସଂସ୍କୃତ ସାହିତ୍ୟର ଆଦର୍ଶରେ ଏ ଦେଶରେ ପ୍ରବାହିତ ହେଉଥିବା ରୀତି-ସାହିତ୍ୟର ଧାରା ଆଧୁନିକତା ପାଇଁ ପ୍ରବଳ ପ୍ରତିବନ୍ଧକ ସୃଷ୍ଟି କରିଥିଲା । ବିଜାତୀୟ ଚିନ୍ତାଧାରା କହି କେତେକ ଏହି ଆଧୁନିକତା ବିରୁଦ୍ଧରେ ନାସିକାକୁଞ୍ଚନ କଲେ । ମାତ୍ର ଶିକ୍ଷିତ ମହଲରେ ଏକ ନବ୍ୟ ରୁଚିବୋଧ ସୃଷ୍ଟି ହୋଇଥିଲା, ଏହି ସାହିତ୍ୟ ଧାରାର ପରିପ୍ରକାଶ ପାଇଁ ।

ଅବଶ୍ୟ ଏହି କାଳକୁ ବଙ୍ଗ ପ୍ରଦେଶରେ ଶିକ୍ଷାର ଯେପରି ବିକାଶ ସାଧିତ ହୋଇ-ଥିଲା, ଓଡ଼ିଶାରେ ସେପରି ହୋଇନଥିଲା । ବଙ୍ଗ ପ୍ରଦେଶରେ ଶିକ୍ଷା ବିକାଶ ଦିଗରେ ପର୍ଯ୍ୟାପ୍ତ ଅର୍ଥର ବ୍ୟବସ୍ଥା କରାଯାଉଥିଲାବେଳେ ଓଡ଼ିଶା ସେଥିରୁ ସାମାନ୍ୟ ଭାଗ ମଧ୍ୟ ପାଉନଥିଲା । କମ୍ପାନୀ ସରକାରଙ୍କର ଏହି ଅବାଞ୍ଛିତ ମତଗତି ଫଳରେ ଓଡ଼ିଶାରେ ଆଧୁନିକ ଶିକ୍ଷାର ପ୍ରସାର ବିଶେଷ ଭାବରେ ବ୍ୟାହତ ହୋଇଥିଲା । ମାତ୍ର ଲର୍ଡ଼ ମେକେଲ୍‌ଙ୍କ ଶିକ୍ଷାନୀତି ଅନୁସୃତ ହେବାଫଳରେ ଓଡ଼ିଶାରେ ଶିକ୍ଷା ପ୍ରତି ସାଧାରଣ ଲୋକେ ଆଗ୍ରହୀ ହେଲେ । ଆଧୁନିକ ଇଂରାଜୀ ଶିକ୍ଷା ନ ପାଇଲେ ସରକାରୀ ଚାକିରି ମିଳିବ ନାହିଁ; ଏହି ଧାରଣା କ୍ରମେ ଲୋକଙ୍କ ମନରେ ଆଶଙ୍କା ସୃଷ୍ଟି କଲା । ୧୮୬୦ ମସିହା ବେଳକୁ ଏ ଚିନ୍ତାଧାରାର ଅଗ୍ରମାରମ୍ଭ ହୋଇଥିଲେ ମଧ୍ୟ ନଅଙ୍କ ଦୁର୍ଭିକ୍ଷ ପରେ ଇଂରାଜୀ ଶିକ୍ଷା ପ୍ରତି ଆମ ଲୋକଙ୍କର ଆଗ୍ରହ ବଢ଼ିଲା । ଏ ସମ୍ପର୍କରେ ଡକ୍ଟର ନଟବର ସାମନ୍ତରାୟ ତାଙ୍କ "ଓଡ଼ିଆ ସାହିତ୍ୟର ଇତିହାସ"ରେ ଯଥାର୍ଥରେ ଲେଖିଛନ୍ତି—

> "ଆଧୁନିକ ଶିକ୍ଷା ପ୍ରସାର ଫଳରେ ଗତ ଶତାବ୍ଦୀରେ ଏ ଦେଶର ଲୋକଙ୍କ ଜୀବନଧାରାରେ ଯେଉଁ ନୂତନ ଆଭିମୁଖ୍ୟ ଓ ପ୍ରାଣ-ପ୍ରବାହ ଦେଖାଦେଇଥିଲା, ଆଧୁନିକ ସାହିତ୍ୟ ହେଉଛି ସେହି ନୂତନ ପ୍ରାଣ-ପ୍ରବାହର ଏକ କଳା-ସୌନ୍ଦର୍ଯ୍ୟ-ମୟ ସୃଷ୍ଟିଗତ ଅଭିବ୍ୟକ୍ତି ମାତ୍ର । ଆଧୁନିକ ଶିକ୍ଷାୟତନ ହିଁ ସାହିତ୍ୟ ବିକାଶର ଆଦି ପ୍ରସୂତି-କେନ୍ଦ୍ର । ଇଂରାଜୀ ଶିକ୍ଷା ଓ ସାହିତ୍ୟର ପ୍ରସାର ଦ୍ୱାରା ଏ ଦେଶର ଲୋକଙ୍କ ଚିନ୍ତା ଓ ଅଭ୍ୟାସରେ ପରିବର୍ତ୍ତନ ଆନୟନ କରିବାର ଯେଉଁ ମଧୁର ସ୍ୱପ୍ନ ଦିନେ ଲର୍ଡ଼ ମେକ୍‌ଲେ ଦେଖିପାରିଥିଲେ ସେହି ସ୍ୱପ୍ନର ବାସ୍ତବ ସତ୍ୟରେ ପରିଣତି ହେଉଛି ଆଧୁନିକ ଶିକ୍ଷା-ପ୍ରସୂତ ଏକ ଶିକ୍ଷିତ ମଧ୍ୟବିତ୍ତଶ୍ରେଣୀ । ନୂତନ ସୃଷ୍ଟି ଆଦର୍ଶରେ ଅନୁପ୍ରାଣିତ, ନୂତନ

ଜୀବନବୋଧରେ ଉଜ୍ଜୀବିତ, ନୂଆ ଆଶା-ଆକାଂକ୍ଷା ଓ ଜୀବନ-ଜିଜ୍ଞାସାରେ ଉନ୍ମାଦିତ ଏଇ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ ଏକ ପରିବର୍ତ୍ତିତ ଚିତ୍ତବୃତ୍ତିର ଅଧିସ୍ଥରେ ପାଶ୍ଚାତ୍ୟ ସାହିତ୍ୟକୁ ଆଦର୍ଶ ରୂପେ ସ୍ୱୀକାର କରି ଆଧୁନିକ ସାହିତ୍ୟ ନିର୍ମାଣରେ ତତ୍ପର ହୋଇପଡ଼ିଥିଲା ।"

ପୁନଶ୍ଚ ଖ୍ରୀଷ୍ଟଧର୍ମ ପ୍ରଚାର ପାଇଁ ଖ୍ରୀଷ୍ଟିଆନ୍ ମିସ୍‌ନେରୀମାନେ ଏ ଦେଶକୁ ଆସି ଓଡ଼ିଆ ଭାଷାରେ ପ୍ରଚାରପୁସ୍ତିକା ଓ ବାଇବେଲ୍ ଛାପିବାକୁ ଚେଷ୍ଟା କଲେ । ପରେ ପରେ ଏ ଦେଶରେ ମୁଦ୍ରଣ ଯନ୍ତ୍ର ସେମାନେ ସ୍ଥାପନ କଲେ ଏବଂ ଖ୍ରୀଷ୍ଟଧର୍ମ ସମ୍ବନ୍ଧୀୟ ପତ୍ରିକା ପ୍ରକାଶ କଲେ । ଆଧୁନିକ କାଳରେ ସାହିତ୍ୟ ପ୍ରସାରର ସର୍ବଶ୍ରେଷ୍ଠ ମାଧ୍ୟମ ହେଲା ଏହି ମୁଦ୍ରାଯନ୍ତ୍ର ସ୍ଥାପନ ଓ ପତ୍ରିକାମାନଙ୍କର ପ୍ରକାଶନ । ଇଂରେଜମାନେ ଧର୍ମପ୍ରଚାର ପାଇଁ ଏ କୌଶଳ ଅବଲମ୍ବନ କରିଥିଲେହେଁ, ପ୍ରକୃତରେ ପରୋକ୍ଷରେ ସେମାନେ ଓଡ଼ିଆ ସାହିତ୍ୟର ପ୍ରଭୂତ ଉନ୍ନତି ସାଧିତ କରିଯାଇଛନ୍ତି ।

ଓଡ଼ିଶାରେ ସର୍ବପ୍ରଥମେ ୧୮୩୭ ଖ୍ରୀଷ୍ଟାବ୍ଦରେ ଖ୍ରୀଷ୍ଟିୟାନ୍ ପାଦ୍ରୀମାନଙ୍କ ଦ୍ୱାରା କଟକରେ 'ମିଶନ୍ ପ୍ରେସ୍' ସ୍ଥାପିତ ହୋଇଥିଲା । ଏଠାରୁ 'ଜ୍ଞାନାରୁଣ' ନାମକ ପ୍ରଥମ ଓଡ଼ିଆ ପତ୍ରିକା ପ୍ରକାଶିତ ହୋଇଥିଲା । ଏହାପରେ କର୍ମଯୋଗୀ ଗୌରୀଶଙ୍କରଙ୍କ ଉଦ୍ୟମରେ 'କଟକ ପ୍ରିଣ୍ଟିଂ କମ୍ପାନୀ' ସ୍ଥାପିତ ହୋଇଥିଲା । ପରେ ପରେ ଓଡ଼ିଆ ଭାଷା ଓ ସାହିତ୍ୟର କେତେକ ଅନୁରାଗୀ ବ୍ୟକ୍ତିଙ୍କ ପ୍ରଚେଷ୍ଟାରେ 'ଉତ୍କଳ ଦୀପିକା' (୧୮୬୬), 'ସମ୍ବାଦ ବାହିକା' (୧୮୬୮), 'ଉତ୍କଳ ଦର୍ପଣ (୧୮୭୩), 'ଉତ୍କଳପୁତ୍ର' (୧୮୭୩) ଓ 'ସ୍ୱଦେଶୀ' (୧୮୭୩), ଆଦି ସାହିତ୍ୟ ଓ ସମ୍ବାଦଧର୍ମୀ ପତ୍ର-ପତ୍ରିକା ଆତ୍ମପ୍ରକାଶ କରିଥିଲା । ଏହି ସାମୟିକ ପତ୍ର-ପତ୍ରିକାଗୁଡ଼ିକ ଆଧୁନିକ ସାହିତ୍ୟର ପରିବର୍ତ୍ତିତ ରୁଚିବୋଧକୁ ଏ ଦେଶର ଶିକ୍ଷାପ୍ରାପ୍ତ ଓ ଅଳ୍ପ ଶିକ୍ଷିତ ଜନସାଧାରଣଙ୍କ ନିକଟରେ ପହଞ୍ଚାଇ ଦେବାର ଗୁରୁଦାୟିତ୍ୱ ବହନ କରି ଆଧୁନିକ ସାହିତ୍ୟ ସୃଷ୍ଟିର ପଥକୁ ପରିଷ୍କାର କରିଦେଇଥିଲା ।

ଠିକ୍ ଏହିପରି ଏକ ସମୟରେ ଓଡ଼ିଆଭାଷା ଓ ସାହିତ୍ୟର ବିନାଶାର୍ଥେ ସୃଷ୍ଟି ହୋଇଥିଲା ଏକ ହୀନ ଚକ୍ରାନ୍ତ । ଓଡ଼ିଶାରେ ଓଡ଼ିଆ ଭାଷାକୁ ଲୋପ କରି କଚେରୀ ଓ ସ୍କୁଲ୍ ଗୁଡ଼ିକରେ ବଙ୍ଗଳାଭାଷା ପ୍ରଚଳନ ପାଇଁ ପ୍ରବଳ ଉଦ୍ୟମ ଦେଖାଦେଇଥିଲା । ଏହି ଭାଷା ବିଲୋପ ଆନ୍ଦୋଳନର ନେତୃତ୍ୱ ନେଇଥିଲେ ବାଲେଶ୍ୱର ସ୍କୁଲର ପ୍ରଧାନ ଶିକ୍ଷକ ବାବୁ କାନ୍ତିଲାଲ୍ ଭଟ୍ଟାଚାର୍ଯ୍ୟ । ଖ୍ରୀ ୧୮୬୮-୭୦ ମଧ୍ୟରେ ଏହି ଆନ୍ଦୋଳନର ଆରମ୍ଭ ଓ ଶେଷ ହୋଇଥିଲା । "ଉଡ଼ିୟା ଏକଟି ସ୍ୱତନ୍ତ୍ର ଭାଷାନୟ"ର ଚକ୍ରାନ୍ତ ବିରୁଦ୍ଧରେ ମସୀ ସଂଗ୍ରାମ ଆରମ୍ଭ କରିଦେଇଥିଲେ ବିପ୍ଳବୀ ସାହିତ୍ୟିକ ଫକୀରମୋହନ ସେନାପତି, କବିବର ରାଧାନାଥ ରାୟ, ମଧୁସୂଦନ ରାଓ, ରାମଶଙ୍କର ରାୟ ଆଦି ଓଡ଼ିଶାର ବରପୁତ୍ର

ମାନେ । ଓଡ଼ିଆ ଭାଷାର ସ୍ୱତନ୍ତ୍ର୍ୟ ଓ ଏହାର ଦୃଢ଼ଭିତ୍ତିଭୂମି ପ୍ରମାଣ କରିବା ପାଇଁ ଏମାନେ ଯେ, କେବଳ ପାଠ୍ୟପୁସ୍ତକ ରଚନାରେ ଦିନରାତି ଅବିଶ୍ରାନ୍ତ ପରିଶ୍ରମ କରିଥିଲେ ତା' ନୁହେଁ, ଏମାନଙ୍କ ଲେଖନୀରେ ସୃଷ୍ଟି ହୋଇଥିଲା ଓଡ଼ିଆସାହିତ୍ୟର ଅନେକ ପ୍ରତିବନ୍ଧ-ମୂଳକ ଗ୍ରନ୍ଥ । ଓଡ଼ିଆଭାଷା ଓ ସାହିତ୍ୟର ଆଲୋଚନା କାଳରେ ଏମାନେ ଅବିସ୍ମରଣୀୟ ।

ଯେତେବେଳେ ଓଡ଼ିଶା ବ୍ରିଟିଶ୍ ଶାସନ କବଳିତ ଓ ନାନା ସାମାଜିକ ନିର୍ଯ୍ୟାତନାରେ ନିର୍ଯ୍ୟାତିତ, ଠିକ୍ ସେହି ସମୟରେ, ୧୮୬୬ ମସିହାରେ ଓଡ଼ିଆ ଜାତିର ଚରମ ଦୁର୍ଭାଗ୍ୟ ରୂପେ ନଅଙ୍କ ଦୁର୍ଭିକ୍ଷ ଉପସ୍ଥିତ ହେଲା । ନାମକୁ ମାତ୍ର ସେତେବେଳେ ଓଡ଼ିଶାରେ ଗଜପତି ରାଜା ଶାସନ କରୁଥିଲେ କିନ୍ତୁ ପ୍ରକୃତରେ ଶାସନ କରୁଥିଲେ ଇଂରେଜମାନେ । ଓଡ଼ିଆ ଜାତିର ରାଜନୀତିରେ ଏହା କମ୍ ଧକ୍କା ନୁହେଁ । ନାନାପ୍ରକାର ଦୁର୍ଯୋଗକୁ ଦୁର୍ଭିକ୍ଷର କରାଳଜ୍ୱାଳା ଓଡ଼ିଆ ଜାତିର ମେରୁଦଣ୍ଡକୁ ସମ୍ପୂର୍ଣ୍ଣ ରୂପେ ଭାଙ୍ଗିଦେଲା । ଓଡ଼ିଆମାନଙ୍କ ଦରଦକୁ ପ୍ରକାଶ କରିବାକୁ ଭାଷାର ଯେଉଁ ମାଧ୍ୟମ ଇଂରେଜମାନଙ୍କ ପାଇଁ ଆବଶ୍ୟକ ହେଲା, ତାହା ଉତ୍ତମରୂପେ ଓଡ଼ିଆମାନେ ପ୍ରକାଶ କରିପାରିନଥିଲେ । ଏହି ଚରମ ଦୁର୍ଯୋଗକୁ କେବଳ ଭାଷାର ବାଧାବନ୍ଧନ ହିଁ ଟାଣି ଆଣିଥିଲା । ଇଂରେଜ ଶିକ୍ଷାଠାରୁ ଦୂରରେ ରହିବାରୁ ଜାତିର ଏହି ମହା କ୍ଷତି ଘଟିଲା ବୋଲି ବିଚାର କରି ଓଡ଼ିଆମାନେ ଶିକ୍ଷାୟତନ ଆଡ଼କୁ ମୁହାଁଇଲେ । ଫଳରେ ଏକ ନବ୍ୟ-ଚେତନାର ଅଭ୍ୟୁଦୟ ଘଟିଲା । ଏହି ଚେତନା ଓଡ଼ିଆ ସାହିତ୍ୟରେ ଯେତେବେଳେ ପ୍ରବେଶ କଲା, ସେତେବେଳେ ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗ ବିକଶିତ ହେବାକୁ ଲାଗିଲା । କାବ୍ୟ-କବିତା କ୍ଷେତ୍ରରେ—ରାଧାନାଥ, ଫକୀରମୋହନ, ମଧୁସୂଦନ, ଉପନ୍ୟାସ କ୍ଷେତ୍ରରେ ଉମେଶଚନ୍ଦ୍ର, ରାମଶଙ୍କର, ଫକୀରମୋହନ, ନାଟକ କ୍ଷେତ୍ରରେ ଜଗମୋହନ, ରାମଶଙ୍କର ଓ ପ୍ରବନ୍ଧ କ୍ଷେତ୍ରରେ ରାଧାନାଥ, ମଧୁସୂଦନ ଆଦିଙ୍କ ଭୂମିକା ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିପ୍ରସ୍ତର ହିଁ ସ୍ଥାପନ କରିଥିଲା କେବଳ ସେମାନଙ୍କଠାରେ ନବ୍ୟ-ଚେତନାର ଅନୁପ୍ରବେଶ ପାଇଁ ।

## ( ଗ )

ରାଧାନାଥଙ୍କ ପୂର୍ବରୁ ଓଡ଼ିଆ କାବ୍ୟକବିତାର ଯେପରି ଏକ ନିର୍ଦ୍ଦିଷ୍ଟ ପରମ୍ପରା ଓ ଧାରା ପ୍ରବାହିତ ଥିଲା ଏବଂ ରାଧାନାଥ ତାକୁ ବିଭିନ୍ନଶୈଳୀରେ ନବୀକରଣ କରିଥିଲେ, ତାହା ସେପରି ହେବାର ସୁଯୋଗ ଲାଭ କରିନଥିଲା, ବିଶେଷକରି ଉପନ୍ୟାସ କ୍ଷେତ୍ରରେ । ତେଣୁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଊନବିଂଶ ଶତାବ୍ଦୀହିଁ ହେଉଛି ଓଡ଼ିଆ ଉପନ୍ୟାସ ସାହିତ୍ୟର ଆଦିପର୍ବ । ଏହି ଆଦିପର୍ବରେ ଯେଉଁ ଔପନ୍ୟାସିକମାନେ ଓଡ଼ିଆ ଉପନ୍ୟାସର ଶୁଭଦାନ ଅବସରରେ ଆବିର୍ଭାବ ହୋଇଥିଲେ, ସେମାନେ ହେଲେ ଉମେଶ ଚନ୍ଦ୍ର ସରକାର, ରାମଶଙ୍କର ରାୟ ଓ ଫକୀରମୋହନ ସେନାପତି । ଏମାନଙ୍କ ସୃଷ୍ଟି ସଂପଦ ଓ ଔପନ୍ୟାସିକ ପ୍ରତିଭା ଏହି ପର୍ଯ୍ୟାୟରେ ଆମର ଆଲୋଚ୍ୟ ।

## ଉମେଶ ଚନ୍ଦ୍ର ସରକାର :

ଉମେଶଚନ୍ଦ୍ର ସରକାର ଓଡ଼ିଆ ସାହିତ୍ୟର ଆଦ୍ୟ ଔପନ୍ୟାସିକ କି ନାଁ ସେ ବିଷୟରେ ଅଦ୍ୟାବଧି ବହୁ ମତ, ମତାନ୍ତର ଦେଖାଦେଇଛି । ଆମ ସାହିତ୍ୟର କେତେକ ସମାଲୋଚକ ରାମଶଙ୍କର ରାୟଙ୍କୁ ଓଡ଼ିଆ ଉପନ୍ୟାସର ପ୍ରଥମ ସ୍ରଷ୍ଟା ବୋଲି କହିଥାନ୍ତି । ତେବେ ଏକଥା ସତ୍ୟ ଯେ, ତାଙ୍କର 'ପଦ୍ମମାଳୀ' ଉପନ୍ୟାସ ଓଡ଼ିଆ ସାହିତ୍ୟର ପ୍ରଥମ ପୂର୍ଣ୍ଣାଙ୍ଗ ଉପନ୍ୟାସ । ଏହା ପୂର୍ବରୁ ରାମଶଙ୍କରଙ୍କର ଯେଉଁ 'ସୌଦାମିନୀ' ଉପନ୍ୟାସଟି ଧାରାବାହିକ ଭାବେ 'ଉତ୍କଳମଧୁପ' ପତ୍ରିକାରେ ପ୍ରକାଶିତ ହୋଇଥିଲା, ତାହା ସମ୍ପୂର୍ଣ୍ଣ ହୋଇପାରି-ନଥିଲା । ଏଥିପାଇଁ ଉମେଶଚନ୍ଦ୍ର ହେଉଛନ୍ତି ଓଡ଼ିଆ ଉପନ୍ୟାସର ଆଦ୍ୟପର୍ବର ପ୍ରଥମ ପୂର୍ଣ୍ଣାଙ୍ଗ ଉପନ୍ୟାସର ସ୍ରଷ୍ଟା ।

ପ୍ରଥମ ପୂର୍ଣ୍ଣାଙ୍ଗ ଓଡ଼ିଆ ଉପନ୍ୟାସର ସ୍ରଷ୍ଟା ଉମେଶଚନ୍ଦ୍ର ସରକାର ୧୮୫୭ ମସିହାରେ ପୁରୀଠାରେ ଭୂମିଷ୍ଠ ହୋଇଥିଲେ । ବାଲ୍ୟକାଳରେ ତାଙ୍କର ପିତୃବିୟୋଗ ଘଟିଥିଲା । ଏହାପରେ ସେ କଟକ ଆସି ଆତ୍ମୀୟସ୍ୱଜନମାନଙ୍କ ସହାୟତାରେ ବି. ଏ. ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ । ଶିକ୍ଷା ସମାପ୍ତି ପରେ ସେ ଓଡ଼ିଶା କମିଶନରଙ୍କ ଅଫିସ୍‌ରେ କିଛିଦିନ କାର୍ଯ୍ୟ କରିବା ପରେ ଗଡ଼ଜାତ ରାଜ୍ୟ ଢେଙ୍କାନାଳର ଆସିଷ୍ଟାଣ୍ଟ ମେନେଜର ଭାବେ କାର୍ଯ୍ୟଭାର ଗ୍ରହଣ କରିଥିଲେ ।

ଉମେଶଚନ୍ଦ୍ରଙ୍କୁ ଯେତେବେଳେ ୩୧ ବର୍ଷ ସେତେବେଳେ ସେ ରଚନା କରିଥିଲେ ଓଡ଼ିଆସାହିତ୍ୟର ପ୍ରଥମ ପୂର୍ଣ୍ଣାଙ୍ଗ ଉପନ୍ୟାସ 'ପଦ୍ମମାଳୀ ।'' ଢେଙ୍କାନାଳର ପରିବେଶ, ପରିସ୍ଥିତି ତାଙ୍କୁ ଏହି ସାରସ୍ୱତ କାର୍ଯ୍ୟରେ ବେଶ୍ ସହାୟକ ହୋଇପାରିଥିଲା ୧୮୮୮/୮୯ ମସିହାରେ 'କଟକ ପ୍ରିଣ୍ଟିଂକମ୍ପାନୀ'ରୁ ତାଙ୍କର 'ପଦ୍ମମାଳୀ' ପ୍ରକାଶିତ ହୋଇଥିଲା । ଉମେଶଚନ୍ଦ୍ର ଢେଙ୍କାନାଳରୁ ଯାଇ ପରେ ପରେ ତାଳଚେର ଓ କନିକା ଗଡଜାତ ରାଜ୍ୟର ମ୍ୟାନେଜର କାର୍ଯ୍ୟ ତୁଲାଇଥିଲେ । ମାତ୍ର ଏହି ସମୟରେ ତାଙ୍କର ଶାରୀରିକ ଅସୁସ୍ଥତା ହେତୁ ସେ ୧୮୮୯ ମସିହାରେ କାର୍ଯ୍ୟରୁ ସ୍ୱେଚ୍ଛାକୃତ ଅବସର ନେଲେ । ଅବସର ନେବାପରେ ସାହିତ୍ୟ ସାଧନାରେ ସେ ନିଜକୁ ନିୟୋଜିତ କରିଥିଲେ ମଧ୍ୟ 'ପଦ୍ମମାଳୀ' ପରି ଅନ୍ୟ କୌଣସି ଉଲ୍ଲେଖଯୋଗ୍ୟ କୃତି ସେ ସୃଷ୍ଟି କରିପାରିନଥିଲେ । ତାଙ୍କର ଅନ୍ୟାନ୍ୟ ସୃଷ୍ଟି ମାନଙ୍କ ମଧ୍ୟରେ ନାଟକ 'ଯତୋଧର୍ମ ସ୍ତତୋ ଜୟ,' 'ଓଡ଼ିଆ ଛନ୍ଦମାଳା,' 'ମହିମ୍ନ-ସ୍ତବ,' ଆଦି ଅନ୍ୟତମ । ଏତଦ୍‌ଭିନ୍ନ ସେ Temple of Truth' ନାମକ ଏକ ଇଂରାଜୀ ଗ୍ରନ୍ଥ ମଧ୍ୟ ରଚନା କରିଥିଲେ ।

ଉମେଶଚନ୍ଦ୍ର ଥିଲେ ନିର୍ଭୀକ । ସମାଲୋଚନା ବା ବ୍ୟଙ୍ଗ ବିଦ୍ରୂପକୁ ସେ ଆଦୌ ମାତ୍ର ଭ୍ରୂକ୍ଷେପ କରୁନଥିଲେ । କାହାରି ନିକଟରେ ନିଜକୁ ହୀନକରିଦେବା ଥିଲା ତାଙ୍କର

ନଥିଲା । କିନ୍ତୁ ଜୀବନର ଅନ୍ତିମ ପର୍ଯ୍ୟାୟରେ—ଅର୍ଥାଭାବ ହେତୁ ସେ ବାଧ୍ୟ ହୋଇ ୧୯୧୧ ମସିହାରେ ତାଳଚେର ରାଜାଙ୍କ ଅଧୀନରେ ଅଡିଟର ଭାବେ କାର୍ଯ୍ୟ କରିଥିଲେ । ତାଳଚେରରେ ମାତ୍ର ତିନୋଟି ବର୍ଷ ଅତିବାହିତ କରିବା ପରେ ୧୯୧୪ ମସିହାରେ ଆମାଶୟ ରୋଗରେ ସେ ପ୍ରାଣ ହରାଇଥିଲେ ।

ଉମେଶଚନ୍ଦ୍ର 'ପଦ୍ମମାଳୀ' ଉପନ୍ୟାସ ବ୍ୟତୀତ ଅନ୍ୟ ଏକ ଉପନ୍ୟାସ ମଧ୍ୟ ରଚନା କରିଥିଲେ । ତାହାହେଲା 'କେଉଁଝରର ବିଦ୍ରୋହ' । ଉମେଶଚନ୍ଦ୍ର ଥିଲେ ବଙ୍ଗାଳୀ । କାଳେ ଓଡ଼ିଆ ଭାଷାରେ ସାହିତ୍ୟ ସୃଷ୍ଟି ବେଳେ ତାଙ୍କର ଅପରିମାର୍ଜିତ ଭାଷା ପ୍ରୟୋଗ ହୋଇଯିବ, ତାହା ସେ ଅନେକ ସ୍ଥଳେ ଆଶଙ୍କା କରିଥିଲେ । ମାତ୍ର 'ପଦ୍ମମାଳୀ' ଉପନ୍ୟାସର ପ୍ରକାଶନ ପରେ ତାହା ଯେ ଦୂରୀଭୂତ, ହୋଇଥିଲା, ଏକଥା ନିଃସନ୍ଦେହରେ କୁହାଯାଇପାରେ (୧) । 'ପଦ୍ମମାଳୀ' ଉପନ୍ୟାସ ଥରେ ନୁହେଁ, ଉମେଶଚନ୍ଦ୍ରଙ୍କ ଜୀବିତାବସ୍ଥାରେ ମଧ୍ୟ ଏହା ୧୯୧୨ ମସିହାରେ ସଂଶୋଧିତ ଓ ପରିବର୍ଦ୍ଧିତ ହୋଇ ପୁଣି ଥରେ ଆତ୍ମପ୍ରକାଶ ଲାଭ କରିଥିଲା ।

'ପଦ୍ମମାଳୀ' ଏକ ଐତିହାସିକ ଉପନ୍ୟାସ । ୧୮୩୫ ମସିହାରେ ନୀଳଗିରି ଗଡ଼ଜାତ ରାଜ୍ୟରେ ଘଟିଥିବା ଏକ ଘଟଣାକୁ ଆଧାର କରି ଏହା ରଚିତ । "ଦୁଇଗୋଟି ସମସାମୟିକ ଐତିହାସିକ ଘଟଣାର ସମନ୍ୱୟରେ 'ପଦ୍ମମାଳୀ' ରଚିତ ହୋଇଅଛି । ନୀଳଗିରି ରାଜ୍ୟର କର୍ମଚାରୀମାନଙ୍କ ଦ୍ୱାରା 'ପଞ୍ଚଗଡ଼'ର ଆକ୍ରମଣ—ଏକଗୋଟି, ଅପରଟି ହରିହର ଭ୍ରମରବର ବାବୁଙ୍କ ଦ୍ୱାରା ନୀଳଗିରି ଆକ୍ରମଣ । ପୁରାତତ୍ତ୍ୱ ଅନୁସନ୍ଧିତ୍ସୁ ପାଠକ ସ୍ୱଳ୍ପ ଆୟାସବ୍ୟୟ କଲେ, ଏହି ଐତିହାସିକ ଘଟଣା ଦ୍ୱୟର ମୌଳିକତା ଅବଗତ ହୋଇପାରିବେ । କ୍ରମେ ଅନ୍ୟାନ୍ୟ ଇତିବୃତ୍ତ ଗ୍ରନ୍ଥ ମଧ୍ୟରେ ସନ୍ନିବେଶିତ ହୋଇଅଛି,—ଯଥା ନୀଳଗିରି ରାଜ୍ୟର ଇତିହାସ, ପାଞ୍ଚଗଡ଼ ନୀଳଗିରିର ଅଧିକାରରୁ ଚ୍ୟୁତ ହୋଇ ଗଭର୍ଣ୍ଣମେଣ୍ଟଙ୍କରୁ ଖାସ-ମାହାଲଭୁକ୍ତ ହେବା, ପାଞ୍ଚଗଡ଼ ଲୁଣ୍ଠନକାରୀଙ୍କର ଓ ନୀଳଗିରି ଆକ୍ରମଣକାରୀଙ୍କର ବାଲେଶ୍ୱରର ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ ହେନେରି ରିକେଟ୍ସଙ୍କ ଦ୍ୱାରା ବିଚାର ଇତ୍ୟାଦି । ଏ ସକଳ ବର୍ଣ୍ଣନାରେ ଏକ ପକ୍ଷରେ ଯେପରି ଇତିହାସର ଏକ ବର୍ଣ୍ଣର ଅପଲାପ କରିନାହୁଁ ଅନ୍ୟ ପକ୍ଷରେ ପାଠକଙ୍କର ଚିତ୍ତରଞ୍ଜନ କରିବାକୁ ସମଧିକ ଯତ୍ନବାନ୍ ହୋଇଅଛୁଁ ।" (୨)

---

(୧) ପ୍ରକୃତ ଘଟଣା ସମ୍ବଳିତ କୌଣସି ଉପନ୍ୟାସ ଅବଧି ଓଡ଼ିଆ ଭାଷାରେ ପ୍ରଚାରିତ ହୋଇନଥିବାରୁ ଉମେଶବାବୁଙ୍କ ଏହି ପ୍ରଥମ ଉଦ୍ୟମଟି ବିଶେଷ ପ୍ରଶଂସନୀୟ । ଏହି ଖଣ୍ଡିକୁ ଓଡ଼ିଶାର ପ୍ରଥମ **Novel** କହିଲେ ଅଯୁକ୍ତ ହେବନାହିଁ ।
(ସମ୍ବାଦ ବାହିକା, ୧୮୮୯, ମଇ-୨)

(୨) 'ପଦ୍ମମାଳୀ', ଦ୍ୱିତୀୟ ସଂସ୍କରଣର ଭୂମିକା—୧୯୧୨ ନଭେମ୍ବର ।

ଏହି ଉପନ୍ୟାସର ଐତିହାସିକ ସତ୍ୟତା ଉପରେ ଅନୁଶୀଳନ କରିବାକୁ ଯାଇଁ ଡକ୍ଟର କୃଷ୍ଣଚରଣ ବେହେରା ଲେଖିଛନ୍ତି—"କାରଣ ଇତିହାସର ସାହିତ୍ୟିକ ଉପଯୋଗିତା ଆଧୁନିକ ଯୁଗର ଲୋକମାନେ ଭଲଭାବରେ ହୃଦୟଙ୍ଗମ କରିଥିଲେ । ଇଂରାଜୀ ତଥା ବଙ୍ଗଳା ସାହିତ୍ୟରେ ସେତେବେଳେ ଇତିହାସରୁ କାହାଣୀ ବା ଉପାଦାନ ଗ୍ରହଣ କରାଯାଇ ଉପନ୍ୟାସମାନ ରଚିତ ହେଉଥିଲା । ଉମେଶଚନ୍ଦ୍ର ସାହିତ୍ୟ ସାଧନାରେ ସେହି ପନ୍ଥା ଅନୁସରଣ କଲେ । ଓଡ଼ିଆ କମିସନରଙ୍କ ଅଫିସ୍‌ର କର୍ମଚାରୀ ହିସାବରେ ସେ ସରକାରୀ ରେକର୍ଡ଼ ପତ୍ରରୁ ମାଳଗିରର ଉକ୍ତ ଐତିହାସିକ ଘଟଣା ସଂଗ୍ରହ କରିଥିବେ କିମ୍ବା ନିଜେ ହୁଏତ ସରକାରୀ କାମରେ ମାଳଗିର ପର୍ଯ୍ୟଟନ କରିଥିବେ । ସେତେବେଳେ ଏହି 'ଅନ୍ଧାରୀ ମୂଳକ' ରେଜାତ ସମୂହର ବିଭିନ୍ନ ଖବରାଖବର ପତ୍ରପତ୍ରିକା ପୃଷ୍ଠାରେ କ୍ୱଚିତ ପ୍ରକାଶ ପାଉଥିଲା । ଉମେଶଚନ୍ଦ୍ର ତହିଁରୁ ମଧ୍ୟ କଥାବସ୍ତୁ ଆହରଣ କରିଥିବେ । 'ପଦ୍ମମାଳୀ'ରେ ବର୍ଣ୍ଣିତ ବିଭିନ୍ନ ସ୍ଥାନ ଓ ଘଟଣା ଗୁଡ଼ିକ ବିଷୟରେ ତାଙ୍କର ପ୍ରତ୍ୟକ୍ଷ ଜ୍ଞାନ ବା ଅଭିଜ୍ଞତା ଥିବାର ସ୍ପଷ୍ଟ ଜଣାପଡ଼େ । ତା' ନହୋଇଥିଲେ ଉପନ୍ୟାସରେ ସ୍ଥାନ ଓ ପରିବେଶର ଏକ ନିର୍ଦ୍ଦିଷ୍ଟ ତଥା ନିର୍ଭୁଲ୍ ଚିତ୍ର ସେ ଦେଇପାରି ନଥାନ୍ତେ ।" (୩)

'ପଦ୍ମମାଳୀ' ଉପନ୍ୟାସରେ ଇତିହାସ ଅଛି ସତ୍ୟ; କିନ୍ତୁ ଏଥିରେ ଔପନ୍ୟାସିକଙ୍କ କଳ୍ପନାପୂତ ବାସ୍ତବରେ ଉପନ୍ୟାସଟିକୁ ସୁଖପାଠ୍ୟ କରିଛି । ଘଟଣା ବର୍ଣ୍ଣନା, ଚରିତ୍ର ସମାବେଶରେ ଔପନ୍ୟାସିକ ଉମେଶଚନ୍ଦ୍ର କେତେକ ସ୍ଥଳେ ଏହି ପନ୍ଥା ଅବଲମ୍ବନ କରିଅଛନ୍ତି । "ମୋଟାମୋଟି ଉପନ୍ୟାସରେ ମୁଖ୍ୟ ଐତିହାସିକ ଘଟଣା ଓ ଚରିତ୍ର ଅକ୍ଷୁଣ୍ଣ ବା ଅପରିବର୍ତ୍ତିତ ରହିଛି । ଯେଉଁଠି ଯାହା ଖଣ୍ଡନ ମଣ୍ଡନ କରାଯାଇଛି, ତାହା ଉପନ୍ୟାସଟିକୁ ରସୋତ୍ତୀର୍ଣ୍ଣ କରିବା ଉଦ୍ଦେଶ୍ୟରେ ହିଁ କରାଯାଇଛି । ମନେରଖିବାକୁ ହେବ ସାହିତ୍ୟ, ଇତିହାସ ନୁହେଁ । ଉପନ୍ୟାସ ମଧ୍ୟରୁ ଶୁଷ୍କ ଇତିହାସ ନୁହେଁ । କେବଳ ମାତ୍ର ଇତିହାସ ରସ ଆମର ଅନୁସନ୍ଧେୟ । ବୋଲିବା ବାହୁଲ୍ୟ ଯେ, 'ପଦ୍ମମାଳୀ'ରେ ଉମେଶଚନ୍ଦ୍ର ସେହି ଇତିହାସ-ରସ ପରିବେଷଣ କରିବାରେ ସମର୍ଥ ହୋଇଛନ୍ତି । (୪)

## 'ପଦ୍ମମାଳୀ'ର କଥାବସ୍ତୁ ସାର :

ଏକ ସରଳ କଥାବସ୍ତୁକୁ ନେଇ 'ପଦ୍ମାବଳୀ' ରଚିତ । 'ପଦ୍ମମାଳୀ' ହେଉଛି 'ପଞ୍ଚଗଡ଼'ର ଅମିନ ଜଗବନ୍ଧୁ ପଟ୍ଟନାୟକଙ୍କର କନ୍ୟା । ସେ ଏକଦା ନିଜର ମା' ସହିତ ମାଣିକ୍ରୀର ପ୍ରସିଦ୍ଧ କଟାରୁଆ ବୈଦ୍ୟନାଥଙ୍କ ଜାଗର ଯାତ୍ରା ଦେଖିବାକୁ ଯାଇଥିଲା । ମାଣିକ୍ରୀ

(୩) ଡଃ କୃଷ୍ଣଚରଣ ବେହେରା—ଓଡ଼ିଆ ଉପନ୍ୟାସ, ୧୯୬୮, ପୃ-୧୫୭

(୪) ଡଃ କୃଷ୍ଣଚରଣ ବେହେରା—ଓଡ଼ିଆ ଉପନ୍ୟାସ—ପ୍ରକାଶକାଳ-୧୯୬୮, ପୃ-୧୫୭।୫୮

ନୀଳଗିରି ଠାରୁ ପ୍ରାୟ ବାର ମାଇଲ୍ ଦୂର, ମୟୂରଭଞ୍ଜର ଦକ୍ଷିଣାଂଶରେ ଅବସ୍ଥିତ । ଏହି-ଠାରେ ଅବସ୍ଥିତ କଞ୍ଚାରୁଆ ବୈଦ୍ୟନାଥଙ୍କ ମନ୍ଦିର । ଏଠାରେ ପ୍ରତିବର୍ଷ ସପ୍ତାହ ବ୍ୟାପୀ ଜାଗର ଯାତ୍ରା ହୁଏ । ବିଭିନ୍ନ ଅଞ୍ଚଳରୁ ହଜାର ହଜାର ଜନସମାଗମ ଏଠାରେ ହୁଏ । ଏହି ଯାତ୍ରା ଦେଖିବାକୁ ଯାଇଥିବା ଉପନ୍ୟାସର ନାୟିକା 'ପଦ୍ମମାଳୀ'କୁ ବଦ୍‌ମାସ୍ ଦୁର୍ଯୋଧନ ଦାସ ବାଞ୍ଛାନିଧି ବଳବନ୍ତ ରାୟଙ୍କ ଯୋଗେ ଅପହରଣ କରି ନେଇଯାଇଛି । ଏହି ସମୟରେ ସେଠାରେ ଥିଲେ କାର୍ତ୍ତିପଦାର ରାଜା ପରୀକ୍ଷିତ ସିଂହ । ସେ ଅନ୍ତରାଳରେ ଥାଇ ଦୁର୍ଯୋଧନର କାର୍ଯ୍ୟକଳାପ ଉପରେ ଦୃଷ୍ଟି ରଖିଥିଲେ । କାର୍ତ୍ତିପଦା ନୀଳଗିରି ଗଡ଼ଠାରୁ ପ୍ରାୟ ସତର ମାଇଲ୍ ଦୂର । ଏହି କାର୍ତ୍ତିପଦାର ରାଜା ପରୀକ୍ଷିତ ସିଂହ ଦୁର୍ଯୋଧନ କବଳରୁ ପଦ୍ମମାଳୀକୁ ରକ୍ଷା କରିଛନ୍ତି ଏବଂ ମଠର ମହନ୍ତ ରାମାନୁଜ ଦାସଙ୍କ ତତ୍ତ୍ୱାବଧାନରେ ଆଣି ଗୁପ୍ତ ଦେଇଛନ୍ତି । ଫଳତଃ ପଦ୍ମମାଳୀ ପରୀକ୍ଷିତଙ୍କୁ ଏତେବେଳେ ଭଲ ପାଇ ବସିଛି । ପରୀକ୍ଷିତ ସିଂହ ମଧ୍ୟ ପଦ୍ମମାଳୀ ଆଡ଼କୁ ଟାଣିହୋଇ ଯାଇଛନ୍ତି ଭଲ ପାଇବାର ଆକର୍ଷଣରେ । ଏମାନଙ୍କ ବିବାହ ମଧ୍ୟ ସ୍ଥିର ହୋଇଯାଇଛି । କିନ୍ତୁ ଦୁର୍ଯୋଧନ ରାଣୀମାତାଙ୍କୁ କୌଶଳରେ ହାତକରି ପୁଣି ଥରେ ପଦ୍ମମାଳୀକୁ ବଳାତ୍କାରରେ ହରଣ କରିନେଇଛି । ଏହି ଦୁର୍ଯୋଧନ ନିଜର ଅଭିପ୍ରାୟ ପୂରଣ ସକାଶେ ଘଣ୍ଟଶିଳାର ଗଡ଼ନାୟକ ଲମ୍ବୋଦର ଗଜେନ୍ଦ୍ରଙ୍କ କନ୍ୟା ଜୟନ୍ତୀକୁ ମଧ୍ୟ ଅପହରଣ କରିଆଣିଛି । ଅପହୃତା ଜୟନ୍ତୀ ଓ ପଦ୍ମମାଳୀଙ୍କୁ ଆପଣାର ଯୌନ ଲାଳସା ସିଦ୍ଧି ପାଇଁ ଦୁର୍ଯୋଧନ ଗୋପନରେ ବନ୍ଦୀକରି ରଖିଛି । କିନ୍ତୁ ଏହାର ପରିଣତି ହୋଇଛି ଭୟାବହ । ଘଣ୍ଟଶିଳାର ହରିହର ଭ୍ରମରବର ଓ ରାଜା ପରୀକ୍ଷିତ ସିଂହ ଉଭୟ ମିଳିତ ହୋଇ ନୀଳଗିରି ଆକ୍ରମଣ କରିଛନ୍ତି । ରାଣୀ ଚନ୍ଦ୍ରାଦେବୀ ଏଥିରେ ଭୟ ପାଇ ବାଲେଶ୍ୱର ମାଜିଷ୍ଟ୍ରେଟଙ୍କ ଶରଣାପନ୍ନ ହୋଇଛନ୍ତି ।

ବ୍ରିଟିଶ୍ ସରକାରଙ୍କ ପାଇଁ ଏହା ଥିଲା ଅପୂର୍ବ ସୁଯୋଗ । ଏହି ସୁଯୋଗ ନେଇ ସେମାନେ ଗଡ଼ଜାତ ରାଜାମାନଙ୍କୁ ନିଜ ଅକ୍ତିଆରରେ ରଖୁଥିଲେ । ଏଣେ କିନ୍ତୁ ପରୀକ୍ଷିତ ସିଂହ ଓ ହରିହର ଭ୍ରମରବର ଗଡ଼ଆକ୍ରମଣ କରି ଦୁର୍ଯ୍ୟୋଧନଙ୍କୁ ବନ୍ଦୀକଲେ ଏବଂ ପଦ୍ମ-ମାଳୀ ଓ ଜୟନ୍ତୀକୁ ଉଦ୍ଧାର କଲେ । ରାଣୀଙ୍କ ଅନୁରୋଧକ୍ରମେ କଲେକ୍ଟର ସାହେବ ଯେତେବେଳେ ସୈନ୍ୟସାମନ୍ତଧରି ସେଠାରେ ଉପସ୍ଥିତ ହେଲେ, ସେତେବେଳେ ଆକ୍ରମଣ-କାରୀମାନେ ନୀଳଗିରି ତ୍ୟାଗକରି ଚାଲିଯାଇଥିଲେ । ଏହାପରେ ଔପନ୍ୟାସିକ ଆଲୋଚ୍ୟ ଉପନ୍ୟାସରେ ଅନୁଷ୍ଠିତ ପ୍ରେମପର୍ବର ସମାଧାନ କରିଅଛନ୍ତି । ପଦ୍ମମାଳୀ ପରୀକ୍ଷିତ ସିଂହଙ୍କୁ ବିବାହ କରିଛି । ଜୟନ୍ତୀ ବିବାହ କରିଛି । ଏହି ଉପନ୍ୟାସର ଅନ୍ୟତମ ନାୟକ ବାଞ୍ଛାନିଧି ବଳବନ୍ତରାୟଙ୍କୁ । ଉପନ୍ୟାସର ପରିସମାପ୍ତିରେ ଦୋଷୀ, ଲମ୍ପଟ, ଦୁର୍ଯ୍ୟୋଧନ ଦାସର ମୃତ୍ୟୁ ହୋଇଛି ।

ଓଡ଼ିଆ ଉପନ୍ୟାସର ଆଦିପର୍ବର ପ୍ରଥମ ପୂର୍ଣ୍ଣାଙ୍ଗ ଉପନ୍ୟାସ ଏହି 'ପଦ୍ମମାଳୀ' ଅନେକାଂଶ ଉପନ୍ୟାସ ସୁଲଭ ଗୁଣର ବାହାକଭାବେ ଅସଫଳ ହୋଇଛି । କାରଣ ଇତିହାସର ବାସ୍ତବ ବର୍ଣ୍ଣନା ଏହାକୁ ଉପନ୍ୟାସ ଧର୍ମଠାରୁ ଟାଣି ଆଣିଛି । କିନ୍ତୁ ଏହା ଓଡ଼ିଆ ଉପନ୍ୟାସର ପ୍ରଥମ ପ୍ରଚେଷ୍ଟା ହୋଇଥିବାରୁ ଏହାର ଦୋଷ ଗୁଣ ତୁଳନାରେ କହାର ଗୌଣ କହିଲେ ଅତ୍ୟୁକ୍ତି ହେବନାହିଁ । ବିଶେଷକରି ଏହା ରୋମାନ୍ସଧର୍ମୀ । (୫)

ଔପନ୍ୟାସିକ ଉମେଶଚନ୍ଦ୍ର ଥିଲେ ବଙ୍ଗାଳୀ । ତେଣୁ ଓଡ଼ିଆ ଉପନ୍ୟାସ ରଚନା କାଳରେ ସେ ଯେଉଁ ଭାଷାଗତ ସତର୍କତା ଅବଲମ୍ବନ କରିଥିଲେ ସେଥିରେ ତାଙ୍କର ଅଲକ୍ଷ୍ୟ

(୫) ପଦ୍ମମାଳୀ ଘଟଣା ପ୍ରଧାନ ଉପନ୍ୟାସ; ଚରିତ୍ର ପ୍ରଧାନ ନୁହେଁ । ନୀଳଗିରିର ଐତିହାସିକ ଘଟଣା ସହିତ ପଦ୍ମମାଳୀ ଓ ଜୟନ୍ତୀର ପ୍ରଣୟ-ଉପାଖ୍ୟାନ ସଂଯୋଜିତ କରି ଲେଖକ ଏହାକୁ ରୋମାନ୍ସର ରୂପ ପ୍ରଦାନ କରିଅଛନ୍ତି । 'An Historical Romance of Orissa Tributary mahals" ଅଥବା ଓଡ଼ିଶାର ଗଡ଼ଜାତମାହାଲର ଏକ ଐତିହାସିକ ଉପନ୍ୟାସ' ନାମରେ ମଧ୍ୟ ଏହାକୁ ଅଭିହିତ କରାଯାଇଛି । ରୋମାନ୍ସ ଓ ଉପନ୍ୟାସ—ଦୁହେଁ ଏକଜାତୀୟ ହେଲେହେଁ ଦୁହିଁଙ୍କ ମଧ୍ୟରେ ସୂକ୍ଷ୍ମପାର୍ଥକ୍ୟ ବିଦ୍ୟମାନ । ରୋମାନ୍ସ ଉପନ୍ୟାସର ଆବାହକ ବା ପଥପ୍ରଦର୍ଶକ । ଏହା ଉପନ୍ୟାସର ମୂଳଦୁଆ ସ୍ଥାପନ କରିଛି । ବିଶ୍ୱର ବିଭିନ୍ନ ସାହିତ୍ୟରେ ଉପନ୍ୟାସର ବିକାଶ ପୂର୍ବରୁ ବହୁସଂଖ୍ୟକ ରୋମାନ୍ସ ରଚିତ ହୋଇଥିବାର ପରିଲକ୍ଷିତ ହୁଏ । ଓଡ଼ିଆସାହିତ୍ୟରେ ମଧ୍ୟ ଏହାର ବ୍ୟତିକ୍ରମ ଘଟିନାହିଁ । ପ୍ରକୃତ ଉପନ୍ୟାସ ପଦବାଚ୍ୟ 'ଛମାଣ ଆଠଗୁଣ୍ଠ' ରଚିତ ହେବା ପୂର୍ବରୁ 'ସୌଦାମିନୀ,' ଅନାଥିନୀ,' 'ପଦ୍ମମାଳୀ,' 'ବିବାସିନୀ' ଇତ୍ୟାଦି ରୋମାନ୍ସ ସୃଷ୍ଟି ହୋଇଛି ।

ବାସ୍ତବତାର ଆପେକ୍ଷିକ ପ୍ରାଧାନ୍ୟ ହିଁ ରୋମାନ୍ସ ଓ ଉପନ୍ୟାସ ମଧ୍ୟରେ ପାର୍ଥକ୍ୟ । ବାସ୍ତବତା ଉପନ୍ୟାସର ପ୍ରାଣ; କିନ୍ତୁ ରୋମାନ୍ସରେ ବାସ୍ତବତା ବଡ଼ କଥା ନୁହେଁ । ଏଥିରେ ବିଶେଷ ଭାବରେ ଅସାଧାରଣତ୍ୱ, କଳ୍ପନା ପ୍ରବଣତା ଓ ଜୀବନର ବର୍ଣ୍ଣ ବହୁଳତା ସ୍ଥାନ ପାଇଥାଏ । XX ପଦ୍ମମାଳୀରେ ଏହି ରୋମାନ୍ସ ଧର୍ମ ସମ୍ପୂର୍ଣ୍ଣରୂପେ ବିଦ୍ୟମାନ । ଏଥିରେ ଦୁର୍ଯ୍ୟୋଧନ ଦାସଙ୍କର ଦୁଇଥର 'ପଦ୍ମମାଳୀ' ହରଣ, ଘଣ୍ଟଶିଳାରୁ ଜୟନ୍ତୀ ଅପହରଣ, ପରୀକ୍ଷିତ ସିଂହ ଓ ଦୁର୍ଯ୍ୟୋଧନ ଦାସଙ୍କ ମଧ୍ୟରେ ମଲ୍ଲଯୁଦ୍ଧ, ଦେଉଳସାହି ମଠ ମହନ୍ତଙ୍କର କାର୍ଯ୍ୟକଳାପ, ପଦ୍ମମାଳୀ-ପରୀକ୍ଷିତ ସିଂହଙ୍କର ପ୍ରେମ ଉପାଖ୍ୟାନ, ହରିହର ଭ୍ରମରବର ଓ ପରୀକ୍ଷିତ ସିଂହଙ୍କର ମିଳିତ ଭାବରେ ନୀଳଗିରି ଆକ୍ରମଣ ଓ ଗଡ଼ ଲୁଣ୍ଠନ ପ୍ରଭୃତି ଚିତ୍ର ଏକାନ୍ତ ଭାବରେ ରୋମାନ୍ସ ସୁଲଭ ।"

(ଡକ୍ଟର କୃଷ୍ଣଚରଣ ବେହେରା—ଓଡ଼ିଆ ଉପନ୍ୟାସ, ପୃ—୧୬୦, ୧୬୨)

ଅର୍ଗଳ ଦେଇ କେତେକ ସ୍ଥଳରେ ସଂସ୍କୃତ ଓ ବଙ୍ଗଳା ଭାଷାର ପ୍ରୟୋଗ ହୋଇଯାଇଛି।(୬) ତେବେ ଏସବୁ ଭାଷାଗତ ଦୋଷ ବା ଅତିରଞ୍ଜିତ ବର୍ଣ୍ଣନା ପାଇଁ । ଯେ ଏ ଉପନ୍ୟାସର ଏକ ବିଶେଷ କ୍ଷତି ଘଟିଛି, ଏକଥା ନୁହେଁ; ବରଂ ଆଦ୍ୟ ଓଡ଼ିଆ ଉପନ୍ୟାସ ଭାବେ ଏସବୁ କ୍ଷତି ମାର୍ଜ୍ଜନୀୟ ଓ ସ୍ୱାଭାବିକ । ଔପନ୍ୟାସିକ ଉଭୟ ଇଂରାଜୀ ଓ ବଙ୍ଗଳା ଉପନ୍ୟାସ ପଢ଼ିଥିବେ କାରଣ ତାଙ୍କର ଉଭୟ ଭାଷାରେ ଦଖଲ ଥିବା କଥା ତାଙ୍କ ଜୀବନରୁ ଜଣାଯାଏ । କିନ୍ତୁ ଏହା ସତ୍ତ୍ୱେ ତାଙ୍କ ଉପନ୍ୟାସ ରଚନାରେ କୌଣସି ବିଦେଶାଗତ ପ୍ରଭାବ ପରିଲକ୍ଷିତ ହୁଏ ନାହିଁ । ଡକ୍ଟର କୃଷ୍ଣଚରଣ ବେହେରା ଏ ସମ୍ପର୍କରେ ଲେଖିଛନ୍ତି—

"ଉମେଶଚନ୍ଦ୍ର ତତ୍‌କାଳୀନ ବଙ୍ଗଳା ତଥା ଇଂରାଜୀ ଉପନ୍ୟାସ ପାଠ କରିଥିବା ସମ୍ଭବ । ଉପନ୍ୟାସର ଶିଳ୍ପ-ଗତ ସହିତ ସେ ପରିଚିତ ହୋଇଥିବା ନିଶ୍ଚିତ । କିନ୍ତୁ ପଦ୍ମମାଳୀର ଆତ୍ମିକ ତଥା ଅଙ୍ଗିକରେ ସେ ମୁଖ୍ୟତଃ ଆମ ପ୍ରାଚୀନ କଥାସାହିତ୍ୟର ପରମ୍ପରା ଅନୁସରଣ କରିଥିବାର ଦେଖାଯାଏ । ଉପନ୍ୟାସର ପ୍ଲୋଟାଂଶ, ଚରିତ୍ର ରୂପାୟନ, ସମାଜଚିତ୍ର, ମର୍ମବାଣୀ ଓ ରଚନାଶୈଳୀ ପ୍ରତ୍ୟେକ କ୍ଷେତ୍ରରେ ତାଙ୍କର ସ୍ୱଦେଶୀୟ ଦୃଷ୍ଟି-କୋଣ ପରିସ୍ଫୁଟ ହୋଇଛି, ଉପରୋକ୍ତ ଆଲୋଚନାରୁ ଏହାହିଁ ପ୍ରତିପନ୍ନ ହୁଏ । ତେଣୁ ଆମର ପ୍ରଥମ ପୂର୍ଣ୍ଣାଙ୍ଗ ଉପନ୍ୟାସ ଆମର ମାଟି ଓ ଜଳବାୟୁର ଫସଲ ବୋଲି ନିର୍ଦ୍ୱିଧାରେ ମତ ପ୍ରଦାନ କରାଯାଇପାରେ ।" (ଓଡ଼ିଆ ଉପନ୍ୟାସ-ପୃ ୧୭୭)

ଔପନ୍ୟାସିକ ଉମେଶ ଚନ୍ଦ୍ର ସରକାର 'ପଦ୍ମମାଳୀ' ଉପନ୍ୟାସରେ ଯେଉଁ ଅରୁଣ ଆଭାର ସନ୍ଧାନ ଦେଇଥିଲେ, ଫକୀରମୋହନଙ୍କ କାଳରେ ତାହା ବାଳସୂର୍ଯ୍ୟର ସ୍ପଷ୍ଟାଭାସରେ ଆଲୋକିତ ହୋଇଉଠିଥିଲା । 'ପଦ୍ମମାଳୀ'ର ସ୍ରଷ୍ଟା ଉମେଶ ଚନ୍ଦ୍ରଙ୍କ ସମ୍ପର୍କରେ ପରି-ଶେଷରେ ଏତିକି କୁହାଯାଇପାରେ ଯେ—"ଉମେଶ ଚନ୍ଦ୍ର ସରକାର ଓଡ଼ିଆରେ ପ୍ରଥମେ ଉପନ୍ୟାସ ପଦ୍ମମାଳୀ (୧୮୮୮) ରଚନା କରି ସାହିତ୍ୟରେ ଏକ ନୂତନଧାରାର ପ୍ରବର୍ତ୍ତନ କରିଥିଲେ । ଏହି ଉପନ୍ୟାସର କଥାବସ୍ତୁରେ ରହସ୍ୟ ଓ ରୋମାଞ୍ଚ ଯେପରି ପ୍ରକଟିତ ହୋଇଛି, ସେହିପରି ସାମାଜିକ ସ୍ତରରେ ନର-ନାରୀର ପ୍ରେମ-ପ୍ରୀତି, ବିବାହ-ବନ୍ଧନ, ଷାରତ୍ତ୍ୱ ଓ ଦୁଷ୍ଟ ଚରିତ୍ରଗୁଡ଼ିକର ନିପୁଣ ଆଲେଖ୍ୟ ଅଙ୍କିତ ହୋଇଅଛି । ଏକ ସାଧାରଣ ସାମାଜିକ କଥାବସ୍ତୁ ଉପରେ ଲେଖକ ଯେଉଁ ପାତ୍ର-ପାତ୍ରୀଙ୍କୁ ଠିଆ କରାଇ-ଅଛନ୍ତି, ସେମାନେ ସମାଜର ସୁଖ-ଦୁଃଖ ସମ୍ପର୍କୀୟ ଜୀବନ୍ତ ଚିତ୍ର ଦେଖାଇ ପାରିନଥିଲେ

(୬) ଉପନ୍ୟାସର ଭାଷାବିନ୍ୟାସରେ ଉମେଶ ଚନ୍ଦ୍ର ବୈଶିଷ୍ଟ୍ୟ ପ୍ରଦର୍ଶନ କରିପାରି ନାହାନ୍ତି । ମୁଖ୍ୟତଃ ଶୁଦ୍ଧ, ମାର୍ଜିତ ଓ ସଂସ୍କୃତାନୁଗ ଭାଷା ସେ ବ୍ୟବହାର କରିଛନ୍ତି । ( ଡକ୍ଟର କୃଷ୍ଣ ଚରଣ ବେହେରା—ଓଡ଼ିଆ ଉପନ୍ୟାସ, ପୃ-୧୭୫ )

ମଧ୍ୟ ଉପନ୍ୟାସ ରଚନାର ପ୍ରାଥମିକ ଉଦ୍ୟମ ରୂପେ ଉମେଶ ଚନ୍ଦ୍ର ସରକାରଙ୍କ ଔପନ୍ୟାସିକ ମନୋବୃତ୍ତି ଏଥିରେ ସଫଳତାର ସହିତ ଅଂକିତ ହୋଇଅଛି ।" (୭)

## କେନ୍ଦୁଝର ବିଦ୍ରୋହ (୧୯୦୭) :

'କେନ୍ଦୁଝର ବିଦ୍ରୋହ' ଉମେଶ ଚନ୍ଦ୍ରଙ୍କର ଦ୍ୱିତୀୟ ଉପନ୍ୟାସ । ଏହା ମଧ୍ୟ ଇତିହାସକୁ କେନ୍ଦ୍ର କରି ରଚିତ । ଉମେଶ ଚନ୍ଦ୍ର 'ଉଦାସୀ' ଛଦ୍ମ ନାମରେ 'ମୁକୁର' ପତ୍ରିକାରେ ଏହାକୁ ଧାରାବାହିକ ଭାବେ ପ୍ରକାଶ କରିଥିଲେ । ମାତ୍ର ଉପନ୍ୟାସଟି ସମାପନ ପୂର୍ବରୁ ଏହାର ଧାରାବାହିକ ପ୍ରକାଶନ ବନ୍ଦ ହୋଇଯାଇଥିଲା । ଏତେବେଳକୁ ଉମେଶଚନ୍ଦ୍ର ଚାକିରିରୁ ଅବସର ନେଇସାରିଥିଲେ । ମାତ୍ର 'ଉଦାସୀ' ଛଦ୍ମନାମଧାରୀ ଉମେଶଚନ୍ଦ୍ରଙ୍କ ଉଦାସୀନତା ହେତୁ ଉପନ୍ୟାସଟି ସମ୍ପୂର୍ଣ୍ଣ ହୋଇ ପାରିନଥିଲା କହିଲେ ଚଳେ ।

ଔପନ୍ୟାସିକ ଉମେଶ ଚନ୍ଦ୍ର ତାଙ୍କର ପ୍ରଥମ ଉପନ୍ୟାସର ୧୯ ବର୍ଷ ପରେ ଏହି ଉପନ୍ୟାସ ରଚନା ଆରମ୍ଭ କରି ଆଉ ଶେଷ କରିପାରି ନଥିଲେ । କିନ୍ତୁ ଏହି ଅସମ୍ପୂର୍ଣ୍ଣ ଉପନ୍ୟାସରୁ ଉମେଶଚନ୍ଦ୍ରଙ୍କ ଇତିହାସ ସଚେତନଭାବ ସ୍ପଷ୍ଟ ପରିଦୃଷ୍ଟ ହୁଏ । (୮) ୧୮୬୮ ମସିହାରେ ସଂଘଟିତ କେନ୍ଦୁଝର ଗଡ଼ଜାତ ରାଜ୍ୟର ଏକ ସଂଘର୍ଷମୟ ଘଟଣା ହେଉଛି ଆଲୋଚ୍ୟ ଉପନ୍ୟାସର କଥ ବସ୍ତୁ । ଗବେଷକ ଡକ୍ଟର କୃଷ୍ଣଚରଣ ବେହେରା ଏହାର କଥାବସ୍ତୁ ସମ୍ପର୍କରେ ଲେଖିଛନ୍ତି—"ଉପନ୍ୟାସର ପ୍ରକାଶିତ ସାତଟି ପରିଚ୍ଛେଦରୁ ଜଣାପଡ଼େ ଯେ, ଲେଖକ ଏହି ଐତିହାସିକ କଥାବସ୍ତୁକୁ ପ୍ରାୟ ଅବିକଳ ଭାବରେ ଗ୍ରହଣ କରିଛନ୍ତି । ଅବଶ୍ୟ ଉପନ୍ୟାସର ଶେଷାଂଶ ସେ କି ଭାବରେ ଚିତ୍ରଣ କରିଥା'ନ୍ତେ, ତାହା ବୋଲିବା କଷ୍ଟକର ।" ପୁଣି ସେ ଲେଖିଛନ୍ତି ଯେ, "ପଦ୍ମମାଳୀ' ଓ 'କେନ୍ଦୁଝର ବିଦ୍ରୋହ' ଘଟଣା ବିନ୍ୟାନ ବା ଗଳ୍ପ ଗୁଂଫନ ମଧ୍ୟରେ କେତେକ ସାଦୃଶ୍ୟ ପରିଲକ୍ଷିତ ହୁଏ । ଉଭୟରେ କୂଟଚକ୍ରାନ୍ତ, ମେଳି ଓ ବିଦ୍ରୋହର ଚିତ୍ର ପରିସ୍ଫୁଟ, ଅବଶ୍ୟ ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ।

---

(୭) ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ—ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ ।

(୮) "ଉମେଶଚନ୍ଦ୍ର ବିଶେଷ ଇତିହାସ ସଚେତନ ଥିବାର ଜଣାପଡ଼େ । ଏ ଦେଶର ଇତିହାସରୁ ଗଳ୍ପାଂଶ ଆହରଣ କରି ସାର୍ଥକ ଉପନ୍ୟାସ ଲେଖିବାର କୌଶଳ ଯେ, ସେ ଆୟତ୍ତ କରିଥିଲେ, ପଦ୍ମମାଳୀ' ଏବଂ 'କେନ୍ଦୁଝର ବିଦ୍ରୋହ'ରୁ ତାହା ପ୍ରତୀୟମାନ ହୁଏ । ଏଥିରୁ ମଧ୍ୟ ତାଙ୍କର ସ୍ୱଦେଶ ପ୍ରେମ ଏବଂ ଜାତୀୟ ଐତିହ୍ୟ ପ୍ରତି ସମ୍ମାନ ବୋଧର ପ୍ରମାଣ ମିଳେ ।"

( ଡକ୍ଟର କୃଷ୍ଣ ଚରଣ ବେହେରା—ଓଡ଼ିଆ ଉପନ୍ୟାସ )

ଉଭୟଙ୍କ ପ୍ରେମୋପାଖ୍ୟାନର ପରିବେଶ, ଦୁଃସାହସିକ ଶୌର୍ଯ୍ୟପୂର୍ଣ୍ଣ କାର୍ଯ୍ୟାବଳୀ ସନ୍ନିବେଶିତ କରାଯାଇଛି । ଏହି ପରିପ୍ରେକ୍ଷିତରେ ଉଭୟ ଉପନ୍ୟାସରେ ଅଭିଜାତ ଶ୍ରେଣୀର ପ୍ରେମୋପାଖ୍ୟାନ ସୃଷ୍ଟି କରାଯାଇଛି । ବସ୍ତୁତଃ 'ପଦ୍ମମାଳୀ' ପରି 'କେନ୍ଦୁଝରର ବିଦ୍ରୋହ' ମଧ୍ଯ **"An 'Historical Romance of the Orissa Tributary Mehals"** ଅଥବା 'ଓଡ଼ିଶା ଗଡ଼ଜାତ ମହାଲ'ର ଏକ ଐତିହାସିକ ଉପନ୍ୟାସ ।"

'ପଦ୍ମମାଳୀ' (୧୮୮୮), 'କେନ୍ଦୁଝରର ବିଦ୍ରୋହ' (୧୯୦୭) ବ୍ୟତୀତ ଉମେଶଚନ୍ଦ୍ରଙ୍କର ଆଉ ସେପରି କିଛି ଉଲ୍ଲେଖଯୋଗ୍ୟ କୃତି ଦୃଷ୍ଟିଗୋଚର ହୁଏନାହିଁ । ଉମେଶଚନ୍ଦ୍ର 'ପଦ୍ମମାଳୀ' ଛଡ଼ା ଅନ୍ୟ କିଛି ନଲେଖିଥିଲେ ବି ସେ ଯେ, ଓଡ଼ିଆ ଉପନ୍ୟାସର ଆଦ୍ୟପର୍ବର ଅମର ସ୍ରଷ୍ଟା ଭାବରେ ପରିଚିତ ଅମର ହୋଇଥା'ନ୍ତେ ଏକଥା ନିଃସନ୍ଦେହରେ କୁହାଯାଇପାରେ । ଉମେଶଚନ୍ଦ୍ର ଓଡ଼ିଆ ଉପନ୍ୟାସର ଆଦିସ୍ରଷ୍ଟା ବା ପ୍ରଥମ ଔପନ୍ୟାସିକ ହୁଅନ୍ତୁ, ନହୁଅନ୍ତୁ କିନ୍ତୁ ସେ ଯେ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଏକ ନିର୍ଦ୍ଦିଷ୍ଟ ଆଲୋକବର୍ତ୍ତିକା ରୂପେ ପ୍ରତିଭାତ ଏକଥା ଅସ୍ୱୀକାର କରିହେବ ନାହିଁ ଏବଂ ଏକଥା ଅସ୍ୱୀକାର କରିହେବ ନାହିଁ ଯେ, ତାଙ୍କର ସାଧନା ବଳରେ ଏ ଦେଶର ପ୍ରଥମ "ଉପନ୍ୟାସ କୋଣାର୍କ"ର ମୂର୍ତ୍ତି ମରିଥିଲା ଏବଂ ପରବର୍ତ୍ତୀ କାଳରେ ଅନ୍ୟମାନେ ତାଙ୍କୁ ଅନୁସରଣ କରିଥିଲେ ମାତ୍ର । ଆମର ଉପନ୍ୟାସ ଜଗତର ଆଦ୍ୟପର୍ବରେ ରାମଶଙ୍କର ବାରିଶ ବଢ଼େଇରୂପେ ଯେଉଁ 'ସୌଦାମିନୀ' ଉପନ୍ୟାସର କଳା-କୋଣାର୍କ ନିର୍ମାଣ କରିଥିଲେ ଓ ଅପୂର୍ଣ୍ଣ ରଖିଥିଲେ ତାହାକୁ 'ପଦ୍ମମାଳୀ' ଉପନ୍ୟାସରେ ଧର୍ମପଦରୂପେ ମୁଣ୍ଡି ମାରିଥିଲେ ଔପନ୍ୟାସିକ ଉମେଶଚନ୍ଦ୍ର ଏଥିକୁ ସମାଲୋଚକମାନେ ହିଁ ବିଚାର କରିବେ ଓଡ଼ିଆ ଉପନ୍ୟାସର ଆଦିସ୍ରଷ୍ଟା କିଏ ? ରାମଶଙ୍କର ନାଁ ଉମେଶଚନ୍ଦ୍ର ? କୋଣାର୍କର ଗୌରବ କାହାର ? ବାରିଶ ବଢ଼େଇଙ୍କର ନାଁ ଧର୍ମପଦର ?

**ରାମଶଙ୍କର ରାସ୍ତ୍ର :**

ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଏବଂ ନାଟକ କ୍ଷେତ୍ରରେ ରାମଶଙ୍କର ଏକ ବିସ୍ମୃତ ସତ୍ତା କିନ୍ତୁ ତାଙ୍କ ପ୍ରତିଭାର ସ୍ୱାବକତା ଯେ, ଅନେକାଂଶରେ 'ଅନ୍ତ-ଉତ୍ତ-ହଟନ' କରାଯାଇଛି, ଏହା ନିଃସନ୍ଦେହରେ କୁହାଯାଇପାରେ । ଯେତେବେଳେ ଜଗମୋହନ ଲାଲଙ୍କର 'ବାବାଜୀ' ନାଟକ ୧୮୭୭ ମସିହାରେ ପ୍ରକାଶ ପାଇଲା, ସେତେବେଳକୁ ରାମଶଙ୍କର ନାଟକ ରଚନାରେ ମଧ୍ୟ ମନୋନିବେଶ କରିନଥିଲେ । (୧) କିନ୍ତୁ ୧୮୮୦ ମସିହାରେ ସେ ହଠାତ୍

(୧) 'ସମ୍ବାଦ ବାହିକା' ମତରେ ଏହି 'ବାବାଜୀ' ନାଟକ ହିଁ ଥିଲା ଦର୍ଶକ ଓ ପାଠକଙ୍କ ପକ୍ଷରେ 'ନୂଆଫଳ ସ୍ୱରୂପ । ଏହି ନୂଆ ଫଳର ଆସ୍ୱାଦନ ପରେ ଓଡ଼ିଆ ନାଟ୍ୟ ସାହିତ୍ୟରେ ନାଟ୍ୟକାର ରାମଶଙ୍କର ରାୟଙ୍କର ଆବିର୍ଭାବ ଘଟିଲା ଏବଂ ଓଡ଼ିଆ

"'କାଞ୍ଚିକାବେରୀ' ନାମକ ନାଟକ ରଚନାକରି ଏହାର ବହୁଳ ପ୍ରଚାର ଆରମ୍ଭ କରିଦେଲେ । ଏହି ପ୍ରଚାରର ସମସ୍ତ ଦାୟିତ୍ୱ ଯେ ତାଙ୍କର ବଡ଼ଭାଇ ଗୌରୀଶଙ୍କରଙ୍କ ସମ୍ପାଦିତ 'ଉତ୍କଳ ଦୀପିକା' ଗ୍ରହଣ କରିଥିଲା, ଏକଥା ନିଃସଙ୍କୋଚରେ କୁହାଯାଇପାରେ । କାରଣ 'ଉତ୍କଳ ଦୀପିକା'ରେ ଗୌରୀଶଙ୍କର ସ୍ୱୟଂ ସଂସ୍କୃତ ଓ ଇଂରାଜୀ ନାଟ୍ୟତତ୍ତ୍ୱ ଅନୁଯାୟୀ 'ବାବାଜୀ'କୁ ପ୍ରକୃତ ନାଟକ ଭାବରେ ଗ୍ରହଣ କରିନଥିଲେ ଏବଂ 'ଅଚିରେ ପ୍ରକୃତ ନାଟକ ରଚିତ ହେବ ବୋଲି ମନ୍ତବ୍ୟ ଦେଇଥିଲେ । ଏଥିରୁ ରାମଶଙ୍କରଙ୍କ ପ୍ରତିଭା ବିଚ୍ଛୁରଧାରାରେ ଯେଉଁ ପକ୍ଷପାତ ନୀତି ରହିଥିଲା, ତାହା ସ୍ପଷ୍ଟ ଅନୁମେୟ । କେବଳ ଏତିକି ନୁହେଁ, ତତ୍‌କାଳୀନ ନବ୍ୟ ଉତ୍କଳୀୟମାନଙ୍କ ମଧ୍ୟରେ ରାମଶଙ୍କର ଅନ୍ୟତମ ଶିକ୍ଷିତ ବ୍ୟକ୍ତି ହୋଇଥିବାରୁ ଏବଂ ତାଙ୍କର ବେଶ୍ ବଂଶପରମ୍ପରା ଓ ପ୍ରତିଷ୍ଠା ଥିବାରୁ ତାଙ୍କୁ ନିର୍ବିଚାରରେ ଓ ଅନ୍ଧଭାବରେ ତତ୍‌କାଳୀନ କେତେକ ସାହିତ୍ୟିକ ଓଡ଼ିଆ ସାହିତ୍ୟର ପ୍ରଥମ ଔପନ୍ୟାସିକ ଓ ନାଟ୍ୟକାର ଭାବେ ମଧ୍ୟ ଗ୍ରହଣ କରିଅଛନ୍ତି । ତାଙ୍କ "'କାଞ୍ଚିକାବେରୀ' ସମ୍ପର୍କରେ କହିବାକୁ ଯାଇଁ 'ନାଟ୍ୟକଳା' ପୁସ୍ତକରେ ଗିରିଜାଶଙ୍କର ସ୍ୱୟଂ ମଧ୍ୟ ନିର୍ବିଚାରରେ ରାମଶଙ୍କରଙ୍କୁ ପ୍ରଥମ ନାଟ୍ୟକାରର ସମ୍ମାନ ପ୍ରଦାନ କରିଅଛନ୍ତି । (୧୦) ଏପରିକି ବ୍ୟାସକବି ଫକୀରମୋହନ ରାମଶଙ୍କରଙ୍କୁ ଆଦ୍ୟନାଟ୍ୟକାର ଓ ଆଦ୍ୟ ଔପନ୍ୟାସିକ ଭାବେ ବର୍ଣ୍ଣନା କରି ତାଙ୍କର 'ଉତ୍କଳ ଭ୍ରମଣଂ' ପୁସ୍ତକରେ ଲେଖିଛନ୍ତି—

"ହେ ରାମଶଙ୍କର ମୋର ମାଗୁଛୁ ମନକୁ
ହୋଇପାର ଭାଇ ତୁମେ ଗଢ଼ରା ପଛକୁ
ଓଡ଼ିଆ ନାଟକ ଆଉ ନଭେଲର ଲେଖା
ପ୍ରଥମରେ ତୁମ୍ଭଠାରେ ଗଲାସିନା ଦେଖା ।"

ଫକୀରମୋହନ ରାମଶଙ୍କରଙ୍କ ପ୍ରତିଭାକୁ ତାଙ୍କ ବଡ଼ଭାଇ ଗୌରୀଶଙ୍କରଙ୍କ ଖାତିରରେ ମାପିଥିବା ପରି ମନେହୁଅନ୍ତି, ଯେଉଁଥିରେ ଯୁକ୍ତି ଅତ୍ୟନ୍ତ ଦୁର୍ବଳ । କାରଣ

---

(୯) ନାଟ୍ୟଜଗତକୁ ତାଙ୍କର ପ୍ରଥମ ଅର୍ଘ୍ୟ ହେଲା 'କାଞ୍ଚିକାବେରୀ' । ୧୮୮୦ ମସିହାରେ ଏହା ରଚିତ ହେଲା ଏବଂ ୧୮୮୧ ସାଲ୍ ଫେବୃଆରୀ ମାସ ୭ ତାରିଖ ସୋମବାର ଦିନ କଟକରେ ଏହା ସର୍ବପ୍ରଥମେ ଅଭିନୀତହେଲା । ('କାଞ୍ଚିକାବେରୀ', ସମ୍ପାଦନା— ବୈଷ୍ଣବଚରଣ ସାମଲ)

(୧୦) "ଓଡ଼ିଆରେ ପ୍ରଥମ ରଚିତ ହେଲା ୧୮୮୦ ମସିହାରେ । ତାହା ପୂର୍ବରୁ ଯେଉଁ 'ବାବାଜୀ' ନାଟକର ଚିତ ହୋଇଥିଲା ତାହା ବାସ୍ତବରେ ନାଟକ ନୁହେଁ ।"— (ଗିରିଜାଶଙ୍କର—ନାଟ୍ୟକଳା)

ରାମଶଙ୍କରଙ୍କ ପୂର୍ବରୁ ଜଗମୋହନ ଲାଲଙ୍କ 'ବାବାଜୀ' ନାଟକ ରଚିତ ହୋଇଥିଲେ ହିଁ ତାହା 'ନାଟକ' ହେଲନାହିଁ, ଅଥଚ ତତ୍‌ପରବର୍ତ୍ତୀ ପ୍ରକାଶିତ ରାମଶଙ୍କରଙ୍କ ନାଟକ 'କାଞ୍ଚିକାବେରୀ'କୁ କୁହାଗଲା ଓଡ଼ିଆରେ ପ୍ରଥମ ନାଟକ ବୋଲି। ଠିକ୍ ସେହିପରି ରାମଶଙ୍କର ଏକ ଅପୂର୍ଣ୍ଣ ଉପନ୍ୟାସ ରଚନା କଲାବେଳେ, ତାହା ଅପୂର୍ଣ୍ଣ ହେଲେ ବି ସେ ହେଲେ ଓଡ଼ିଶାର ପ୍ରଥମ ଔପନ୍ୟାସିକ। ଏହା କେଉଁ ଯୁକ୍ତି ଭିତ୍ତିକ ? 'ବାବାଜୀ' ଦୁର୍ବଳ ନାଟ୍ୟକଳାରେ ରଚିତ ହୋଇଥାଇପାରେ ସତ୍ୟ, କିନ୍ତୁ ଏହା ଅପୂର୍ଣ୍ଣ ନୁହେଁ। ଯେତେବେଳେ ରାମଶଙ୍କରଙ୍କ ଉପନ୍ୟାସ "ସୌଦାମିନୀ" ଅପୂର୍ଣ୍ଣ ଥାଇ ବି ଏବଂ ଅନେକ ଦୋଷଦୁର୍ବଳତାରେ ଭାରାକ୍ରାନ୍ତ ଥାଇବି ଓଡ଼ିଆ ସାହିତ୍ୟର ପ୍ରଥମ ଉପନ୍ୟାସ ହେବାର ଗୌରବ ଅର୍ଜନ କରିଛି, ସେତେବେଳେ 'ବାବାଜୀ' ନାଟକ ସଂପୂର୍ଣ୍ଣ ହୋଇ ମଧ୍ୟ କାହିଁକି ଓଡ଼ିଆରେ ପ୍ରଥମ ନାଟକର ସମ୍ମାନ ବହନ ନକରିବ ? ଏହି ବିଚାରରେ ବିଚାରକଲେ ରାମଶଙ୍କର ଓଡ଼ିଆ ସାହିତ୍ୟର ପ୍ରଥମ ନାଟ୍ୟକାର ନୁହନ୍ତି, ପୁଣି ଏକ ଅପୂର୍ଣ୍ଣ ଉପନ୍ୟାସ ରଚନା କରି, ଉପନ୍ୟାସ ରଚନାର ଆଦ୍ୟ ସଙ୍କେତ ତାଙ୍କଠାରୁ ମିଳିଥିଲେ ବି ସେ ଓଡ଼ିଆ ଉପନ୍ୟାସର ପ୍ରଥମ ଔପନ୍ୟାସିକ ମଧ୍ୟ ନୁହନ୍ତି। କାରଣ ତାଙ୍କର ସ୍ୱପକ୍ଷ ସମାଲୋଚକ-ମାନଙ୍କ ଯୁକ୍ତି ହିଁ ତାଙ୍କୁ ଏ ସୌଭାଗ୍ୟରୁ ବଞ୍ଚିତ କରିଛି।

ରାମଶଙ୍କର ଅତି ନିସଙ୍କୋଚରେ ଓ ଅତି ନିର୍ଲଜ ଭାବରେ ମଧ୍ୟ ନିଜକୁ ଓଡ଼ିଆ ନାଟକର ପ୍ରଥମ ସ୍ରଷ୍ଟା ବୋଲି 'କାଞ୍ଚିକାବେରୀ' ନାଟକର ପ୍ରସ୍ତାବନାରେ ଉଲ୍ଲେଖ କରିଅଛନ୍ତି। (୧୧) ରାମଶଙ୍କରଙ୍କର ଏ ପ୍ରକାର ଆତ୍ମପ୍ରଚାର, ତାଙ୍କ ଭାଇ ଗୌରୀଶଙ୍କରଙ୍କର ତାଙ୍କ ପକ୍ଷ ସମର୍ଥନ କରି ପତ୍ର-ପତ୍ରିକାରେ ତାଙ୍କର ବ୍ୟାପକ ପ୍ରଚାର ଓ ଓଡ଼ିଶାର ତତ୍କାଳୀନ କେତେକ ସାହିତ୍ୟିକ ଏମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ରାମଶଙ୍କରଙ୍କୁ ଓଡ଼ିଆ ସାହିତ୍ୟର ପ୍ରଥମ ନାଟକ ଓ ପ୍ରଥମ ଉପନ୍ୟାସର ସ୍ରଷ୍ଟା ବୋଲି ଯେତେ ଯୁକ୍ତି ଦର୍ଶାଇଲେ ବି ଏହା ଯେ ପକ୍ଷପାତ ଜଡ଼ିତ ଏକଥା ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ବାରି

(୧୧) ସୂତ୍ର—" × × × ସେଦିନ ଆମ୍ଭେମାନେ 'କାଞ୍ଚିକାବେରୀ' ନାମକ ଯେଉଁ ନବପ୍ରଣୀତ ନାଟକ ଖଣ୍ଡି ଦେଖିଥିଲୁଁ, ଯହିଁରେ ଅଭିନୟ କରିବା ନିମନ୍ତେ ତୁମ୍ଭେ ଅମ୍ଭଠାରେ ପ୍ରତିଶ୍ରୁତ ହୋଇଥିଲ, ଆଜ ସେହି ନାଟକର ଅଭିନୟ ଦେଖାଇ ଏ ଅପୂର୍ବ ଦର୍ଶକମଣ୍ଡଳୀର ତୃପ୍ତି ବିଧାନ କର।"

ନଟ—ବିଜ୍ଞବର ! 'ଅମ୍ଭେ କହିଥିଲୁ ସତ୍ୟ, ମାତ୍ର ତାହା ଓଡ଼ିଆରେ ପ୍ରଥମ ନାଟକ।'··· ଇତ୍ୟାଦି।

[କାଞ୍ଚିକାବେରୀ' ପ୍ରସ୍ତାବନା]

ହୋଇପଡ଼ୁଛି । ତେବେ ଏକଥା ଅସ୍ୱୀକାର କରାଯାଇ ନପାରେ ଯେ, ରାମଶଙ୍କର 'ସୌଦାମିନୀ' ନାମକ ଉପନ୍ୟାସରେ ପ୍ରଥମ କରି ଉପନ୍ୟାସ-କଳାର ବୀଜବପନ କରିଥିଲେ ବୋଲି । କିନ୍ତୁ ତାହା ଯେହେତୁ ଅସମ୍ପୂର୍ଣ୍ଣ ଓ ଅପ୍ରାପ୍ତ (ବିଲୁପ୍ତ) ସେହେତୁ ତାଙ୍କର ପ୍ରଥମ ଔପନ୍ୟାସିକ ହେବାର ଗୌରବ ନାନା ଯୁକ୍ତି ଅନୁଯାୟୀ କ୍ଷୁଣ୍ଣ ହେଉଛି । ଗୋଟିଏ ଉଦାହରଣ ଦେଇ ଦେଖିଲେ ଏ କଥାର ସତ୍ୟାସତ୍ୟ ଜଣାପଡ଼ିବ । କଥାଟି ହେଲା—ଓଡ଼ିଆ ଗଳ୍ପ ଜଗତରେ ଫକୀରମୋହନ ଆଦ୍ୟ ଗାଳ୍ପିକ ଭାବେ ସମ୍ମାନିତ । ତାଙ୍କର ପ୍ରଥମ ଗଳ୍ପ 'ଲଛମନିଆ' 'ବୋଧଦାୟିନୀ' ପତ୍ରିକାରେ ପ୍ରକାଶିତ ହୋଇଥିଲା ବୋଲି ସେ ଲେଖିଥିଲେ । କିନ୍ତୁ ଏହା ନମିଳିବାରୁ ତାଙ୍କର ପରବର୍ତ୍ତୀ ଗଳ୍ପ 'ରେବତୀ'କୁ 'ପ୍ରଥମ ଓଡ଼ିଆ କ୍ଷୁଦ୍ରଗଳ୍ପ' ବୋଲି ଧରିନିଆଗଲେ । ଯଦି ଏ କ୍ଷେତ୍ରରେ 'ରେବତୀ' ଓ 'ଲଛମନିଆ' ର ସ୍ରଷ୍ଟା ଭିନ୍ନ ଭିନ୍ନ ହୋଇଥା'ନ୍ତେ, ତେବେ 'ଲଛମନିଆ' ନାଁ 'ରେବତୀ' କେଉଁଟି ହୋଇଥା'ନ୍ତା ପ୍ରଥମ ଗଳ୍ପ ଓ କିଏ ହୋଇଥା'ନ୍ତେ ପ୍ରଥମ ଗାଳ୍ପିକ ? 'ଲଛମନିଆ' ଅପ୍ରାପ୍ତ ହେତୁରୁ ଅଥଚ ଫକୀରମୋହନଙ୍କ ସ୍ୱୀକୃତ ଥିଲେ ବି (୧) ଏହାକୁ ଯେତେବେଳେ ଓଡ଼ିଆଗଳ୍ପ ସାହିତ୍ୟର ପ୍ରଥମ ଗଳ୍ପର ସମ୍ମାନରୁ ବଞ୍ଚିତ କରାଯାଇଛି, ସେତେବେଳେ ରାମଶଙ୍କରଙ୍କ ଉପନ୍ୟାସ 'ସୌଦାମିନୀ' ପ୍ରତି ଏ ଯୁକ୍ତି ଲାଗୁହେଲେ ରାମଶଙ୍କର କ'ଣ ଓଡ଼ିଆ ଉପନ୍ୟାସର ପ୍ରଥମ ଔପନ୍ୟାସିକର ଗୌରବ ଲାଭକରିବେ କି ? ଏହି ଯୁକ୍ତି ଅନୁଯାୟୀ କୁହାଗଲେ ରାମଶଙ୍କରଙ୍କ ପରବର୍ତ୍ତୀ ଅଥଚ ଏକ ପୂର୍ଣ୍ଣାଙ୍ଗ ଉପନ୍ୟାସ ରଚନା କରିଥିବା ଔପନ୍ୟାସିକ ଉମେଶଚନ୍ଦ୍ର ହିଁ ହେବେ ଓଡ଼ିଆ ସାହିତ୍ୟର ପ୍ରଥମ ଔପନ୍ୟାସିକ । ତଥାପି ରାମଶଙ୍କରଙ୍କ ଔପନ୍ୟାସିକ ଜୀବନର ଆଦ୍ୟ ସଙ୍କେତ ଯେ ତାଙ୍କର ଅପୂର୍ଣ୍ଣ ଉପନ୍ୟାସ 'ସୌଦାମିନୀ'ରେ ଥିଲା ଏହା ଅସ୍ୱୀକାର କରାଯାଇନପାରେ । ତେଣୁ ଏହି ପରିପ୍ରେକ୍ଷୀରେ ରାମଶଙ୍କରଙ୍କ ଔପନ୍ୟାସିକ ଜୀବନ ଓ ତାଙ୍କ ରଚିତ କେତେକ ଉପନ୍ୟାସକୁ ଆଲୋଚନାର ପରିସର ମଧ୍ୟକୁ ଅଣାଯାଇ ପାରେ ।

---

(୧) 'ବୋଧଦାୟିନୀ' ପତ୍ରିକାରେ ମୁଁ ଗୋଟିଏ ଗଳ୍ପ ଲେଖିଥିଲି, ତାହାର ନାମ 'ଲଛମନିଆ' । ବୋଧକରେ ଉତ୍କଳରେ ତାହାହିଁ ପ୍ରଥମ ମୁଦ୍ରିତ ଗଳ୍ପ । ଲୋକେ ତାହା ଆଗ୍ରହର ସହିତ ପଢିଥିଲେ । ମାତ୍ର ସେ କେତେ ଜଣ ? ମୁଁ ବାଲେଶ୍ୱରରୁ ଚାଲିଆସି ଯେତେବେଳେ ଗଡ଼ଜାତମାନଙ୍କରେ କର୍ମକରିବାକୁ ଗଲି, ସେତେବେଳେ ମୋର ସାହିତ୍ୟ ଲେଖା ବନ୍ଦ ହୋଇଗଲା । ଆଉ ଦଶବର୍ଷ କାଳ ମୁଁ ଲେଖା ଛାଡ଼ି-ଦେଲି । [ଫକୀରମୋହନ ଆତ୍ମଜୀବନ ଚରିତ ]

ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଅନେକ ସମାଲୋଚକ ରାମଶଙ୍କରଙ୍କୁ ପ୍ରଥମ ଔପନ୍ୟାସିକ (୧୩) କହୁଥିବାବେଳେ ଅନ୍ୟ କେତେକ ସମାଲୋଚକ ଉମେଶଚନ୍ଦ୍ର ସର-

(୧୩) (କ)—"ସୌଦାମିନୀ'କୁ ଆମ ସାହିତ୍ୟରେ ପ୍ରଚଳିତ ଅର୍ଥରେ ପ୍ରଥମ ଉପନ୍ୟାସ ବୋଲିଯାଇପାରେ । ସ୍ୱର୍ଗୀୟ ରାମଶଙ୍କର ରାୟ (୧୮୫୭-୧୯୩୧) ଯେତେବେଳେ କୋଡ଼ିଏ ବର୍ଷ ବୟସରେ କଟକ ରେଭେନ୍‌ସା କଲେଜରେ ପଢ଼ୁଥିଲେ । ସେତେ-ବେଳେ "ଉତ୍କଳ ମଧୁପ' ପତ୍ରିକାରେ ଧାରାବାହିକ ଭାବରେ ଏହି ଉପନ୍ୟାସ ପ୍ରକାଶ କରିଥିଲେ ।" (ଡଃ କୃଷ୍ଣଚରଣ ବେହେରା, ଓଡ଼ିଆ ଉପନ୍ୟାସ, ପୃ-୧୪୦)

(ଖ)—(ସୌଦାମିନୀ 'ଉପନ୍ୟାସଟି ପୂର୍ଣ୍ଣାଙ୍ଗ ହୋଇ ପୁସ୍ତିକାକାରରେ ପ୍ରକାଶିତ ହୋଇନାହିଁ ବୋଲି ଏହା ପ୍ରଥମ ଉପନ୍ୟାସ କୁହାନଯିବା ଅଯୌକ୍ତିକ । ଓଡ଼ିଆ ଉପନ୍ୟାସର ପ୍ରଥମ ମନ୍ଦିର ମୂର୍ତ୍ତି ମଣ୍ଡନାହିଁ ବା ମୂର୍ତ୍ତିମନ୍ତ ଭୂପୂନ୍ତ ପଡ଼ିଛି, ଏଥିଲାଗି ଔପନ୍ୟାସିକ ଦାୟୀ ବା ଦୋଷୀ ନୁହନ୍ତି । ଭଗ୍ନ ହେଲେ ମଧ୍ୟ କୋଣାର୍କର ଗୌରବ କ୍ଷୁଣ୍ଣ ହୋଇନାହିଁ । ଅସମ୍ପୂର୍ଣ୍ଣ 'ମହାଯାତ୍ରା' ଗୌରବମୟ ଆସନର ଅଧିକାରୀ ହୋଇଅଛି । ଗଙ୍ଗାଧର ମେହେରଙ୍କ ଆତ୍ମାଉର୍ଦ୍ଧନ ସମ୍ପର୍କୀୟ ଅପୂର୍ଣ୍ଣ କାବ୍ୟ 'ପଦ୍ମିନୀ' ଗ୍ରନ୍ଥାବଳୀର ଶ୍ରୀବର୍ଦ୍ଧନ କରିଅଛି । ସେହିପରି 'ସୌଦାମିନୀ'କୁ ପ୍ରକାଶ କରିବାରେ 'ଲଜ୍ଜା, ସଙ୍କୋଚ, ବା କ୍ଷୋଭର କୌଣସି ହେତୁ ନାହିଁ । 'ପଦ୍ମମାଳୀ'ର ଦଶବର୍ଷ ଆଗରୁ ୧୮୭୮ରେ ରାମଶଙ୍କର ଉପନ୍ୟାସର ଆଦ୍ୟ ଓଁକାର ଉଚ୍ଚାରଣ କରିଅଛନ୍ତି । ତାହାର ଆଦ୍ୟ ଅର୍ଘ୍ୟ ତାଙ୍କର ପ୍ରାପ୍ୟ ।

[ ଡଃ କୁଞ୍ଜବିହାରୀ ଦାଶ—ସମାଲୋଚନା, ପୃ-୩୮ ]

(ଗ)—'ହେ ରାମଶଙ୍କର ମୋର ମାନୁଛି ମନକୁ
ହୋଇପାର ଭାଇ ତୁମେ ଦେଖି ପଛକୁ
ପ୍ରଥମ ନାଟକ ଆଉ ନଭେଲର ଲେଖା
ପ୍ରଥମରେ ତୁମଠାରେ ହେଲା ସିନା ଦେଖା ।'

(ଉତ୍କଳଭ୍ରମଣଂ—ଫକୀରମୋହନ)

ତାଙ୍କୁ 'ପ୍ରଥମ ଔପନ୍ୟାସିକ (୧୪) ବୋଲି କହୁଥାନ୍ତି । କିନ୍ତୁ ଏସବୁ ଦ୍ୱନ୍ଦ୍ୱ ଭିତ୍ତିକ ଆଲୋଚନାକୁ ବାଦ୍‌ଦେଲେ ଏକଥା ନିଶ୍ଚିତ ସତ୍ୟ ଯେ, ରାମଶଙ୍କର ରାଧାନାଥ ଯୁଗର ଜଣେ ପ୍ରତିଭାଶାଳୀ ସ୍ରଷ୍ଟା ଓ ଶ୍ରେଷ୍ଠ ତନ୍ତ୍ରାନାୟକ ଥିଲେ । ଓଡ଼ିଆ ନାଟକ ଲେଖିବା ପାଇଁ ତାଙ୍କର ଯେଉଁ ମାନସିକ ପ୍ରତିକ୍ରିୟା ଦେଖାଦେଇଥିଲା, ଉପନ୍ୟାସ ଲେଖିବା ପାଇଁ ସେପରି ପ୍ରତିକ୍ରିୟା ତାଙ୍କ ମାନସପଟକୁ ଆକ୍ରାନ୍ତ କରିଥିବାର କିଛି ଦେଖାଯାଏ ନାହିଁ । ପୁଣି ତାଙ୍କର ଉପନ୍ୟାସ ରଚନା ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଆଦ୍ୟ ପ୍ରଚେଷ୍ଟା ବୋଲି କୁହା-ଗଲେ ମଧ୍ୟ ସେହି ସାଧନାରେ ତପସ୍ୟା ନିରଳସ କରିପାରିନଥିଲେ । ଏହାର ପରିଚୟ ଦିଏ ତାଙ୍କର ଉପନ୍ୟାସ ରଚନାର କାଳଗତ ବ୍ୟବଧାନ । ତାଙ୍କର ପ୍ରଥମ ଉପନ୍ୟାସ 'ସୌଦାମିନୀ' ୧୮୭୮ ମସିହାରେ ପ୍ରକାଶ ପାଇଥିଲାବେଳେ ତାଙ୍କର ଦ୍ୱିତୀୟ ଉପନ୍ୟାସ 'ବିବାସିନୀ' ଏହାର ଦୀର୍ଘ ୧୩ ବର୍ଷ ପରେ ୧୮୯୧-୯୨ ମସିହାରେ ପ୍ରକାଶ ପାଇଥିଲା । ୧୮୯୩ରେ ସେ 'ଉନ୍ମାଦିନୀ' ନାମକ ଆଉ ଏକ ଉପନ୍ୟାସ ରଚନା କରିଥିଲେ; ମାତ୍ର ଏହା ଥିଲା 'ସୌଦାମିନୀ' ପରି ଅସମ୍ପୂର୍ଣ୍ଣ । ଏତଦ୍‌ଭିନ୍ନ ରାମଶଙ୍କର ୧୦ଟି ନାଟକ ଓ ୪ଟି ପ୍ରହସନ ରଚନାକରି ଆଧୁନିକ ଓଡ଼ିଆ ସାହିତ୍ୟକୁ ଅନେକାଂଶରେ ଦୃଢ଼ ଭିତ୍ତିଭୂମି ଯୋଗାଇ ଯାଇ-ଛନ୍ତି । ଏ କ୍ଷେତ୍ରରେ ତାଙ୍କର ଉପନ୍ୟାସ ମାନ କେବଳ ଆମର ଆଲୋଚ୍ୟ ।

## ସୌଦାମିନୀ (୧୮୭୮)

କାଳଗତ ବ୍ୟବଧାନରେ 'ସୌଦାମିନୀ' ଉପନ୍ୟାସ ଉମେଶଚନ୍ଦ୍ରଙ୍କ 'ପଦ୍ମମାଳୀ (୧୮୮୮) ଉପନ୍ୟାସଠାରୁ ୧୦ ବର୍ଷ ପୂର୍ବର ରଚନା । କିନ୍ତୁ ଏହାର ଅସମ୍ପୂର୍ଣ୍ଣତା ପାଇଁ ଏବଂ ଏହାର ଅନେକ ଦୋଷ ଦୁର୍ବଳତା ସତ୍ତ୍ୱେ ଏହାକୁ ପ୍ରଥମ ଓଡ଼ିଆ ଉପନ୍ୟାସ କୁହାନଯାଇ ବରଂ ଉପନ୍ୟାସ ରଚନାର ଆଦ୍ୟପ୍ରୟାସ କୁହାଯିବା ଅଧିକ ଯୁକ୍ତିଯୁକ୍ତ ।

---

(୧୪) (କ)—ଉମେଶଚନ୍ଦ୍ର ସରକାର ଓଡ଼ିଆରେ ପ୍ରଥମ ଉପନ୍ୟାସ 'ପଦ୍ମମାଳୀ' (୧୮୮୮) ରଚନା କରି ସାହିତ୍ୟରେ ଏକ ନୂତନ ଧାରାର ପ୍ରବର୍ତ୍ତନ କରିଥିଲେ । X X X ଉପନ୍ୟାସ ରଚନାର ପ୍ରାଥମିକ ଉଦ୍ୟମ ରୂପେ ଉମେଶଚନ୍ଦ୍ର ସରକାରଙ୍କ ଔପନ୍ୟାସିକ ମନୋବୃତ୍ତି ଏଥିରେ ସଫଳତାର ସହିତ ଅଙ୍କିତ ହୋଇଛି ।

ଡଃ ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ [ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ, ପୃଷ୍ଠା-୨୧୩]

(ଖ)—ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ୧୮୮୮ ଖ୍ରୀଷ୍ଟାବ୍ଦରେ ଉମେଶଚନ୍ଦ୍ର ସରକାରଙ୍କ ରଚିତ 'ପଦ୍ମମାଳୀ' ଓଡ଼ିଆ ସାହିତ୍ୟର ସର୍ବ ପ୍ରଥମ ଉପନ୍ୟାସ ରୂପେ ପରିଗଣିତ । [ଅଧ୍ୟାପକ ଶ୍ରୀମଦାଶ-'ଛ'ମାଣ ଆଠଗୁଣ୍ଠ' ଆଲୋଚନା-ପୃଷ୍ଠା-୧୦]

ଔପନ୍ୟାସିକ ରାମଶଙ୍କର ରାୟ ରେଭେନ୍‌ସା କଲେଜର ଛାତ୍ର ଥିବାବେଳେ ଏହାର ରଚନା ଆରମ୍ଭ କରିଥିଲେ ଓ ଏହା ଧାରାବାହିକ ଭାବେ 'ଉତ୍କଳମଧୁପ' ପତ୍ରିକାରେ କିଛିକାଳଧରି ପ୍ରକାଶ ପାଉଥିଲା । ମାତ୍ର ୧୮୮୦ ମସିହାରେ ଏହି ପତ୍ରିକାଟି ନାନା କାରଣରୁ ବନ୍ଦ ହୋଇଯିବାରୁ 'ସୌଦାମିନୀ' ରଚନା ମଧ୍ୟ ସେହିଠାରୁ ବନ୍ଦ ରହିଲା । (୧୫)

## 'ସୌଦାମିନୀ ଉପନ୍ୟାସର କଥାବସ୍ତୁ :

'ସୌଦାମିନୀ' ଏକ ଐତିହାସିକ ଉପନ୍ୟାସ । ଇତିହାସର ଘଟଣା ଓ ଚରିତ୍ରକୁ କେନ୍ଦ୍ର କରି ଔପନ୍ୟାସିକ ରାମଶଙ୍କର ଏହା ରଚନା କରିଅଛନ୍ତି । ୧୩୦୩ ମସିହାରୁ ୧୩୦୫ ମସିହା ମଧ୍ୟରେ ଆଲ୍ଲାଉଦ୍ଦୀନ ଖିଲିଜିଙ୍କର ଚିତୋର ଓ ଉଜ୍ଜୟିନୀ ଆକ୍ରମଣ ଏବଂ ଅଧିକାର ବିଷୟ ଏଥିରେ ବର୍ଣ୍ଣିତ । ଉଜ୍ଜୟିନୀ ଆକ୍ରମଣ କରି ଆଲ୍ଲାଉଦ୍ଦୀନ ରାଣା ଓ ତାଙ୍କ ସ୍ତ୍ରୀଙ୍କୁ ହତ୍ୟା କରିଛନ୍ତି । ରାଜପୁତ୍ର ଜୟସିଂହ ଏଥିରେ ବିଚଳିତ ନହୋଇ ଏକାକୀ ସାହସର ସହିତ ଯୁଦ୍ଧ ପରିଚାଳନା କରିଛନ୍ତି । କିନ୍ତୁ ଆସନ୍ନ ପତନ ଜାଣି ସେ ପଳାୟନ କରିଛନ୍ତି ବଣ ମଧ୍ୟକୁ । ଏହି ବଣ ଭୂଇଁରେ ତାଙ୍କର ଆଲୋଚ୍ୟ ଉପନ୍ୟାସର ନାୟିକା ଏବଂ ତାଙ୍କର ବାଲ୍ୟ ସଙ୍ଗିନୀ ଓ ପ୍ରେମିକା 'ସୌଦାମିନୀ' ସହ ସାକ୍ଷାତ ହୋଇଛି । ତାଙ୍କର ଏ ମଧୁର ମିଳନ ବେଶୀ କାଳ ସ୍ଥିତି ରହିପାରି ନାହିଁ । ମୋଗଲ ସେନାମାନେ ସେଠାରେ ପହଞ୍ଚି ସୌଦାମିନୀକୁ ବଳାତ୍କାର କରି ମୋଗଲ ଦରବାରକୁ ପଠାଇ ଦେଇଛନ୍ତି । ଜୟସିଂହ ସୌଦାମିନୀଙ୍କର ଏତାଦୃଶ ଅବସ୍ଥାରେ ମୂର୍ଚ୍ଛିତ ହୋଇପଡ଼ିଛନ୍ତି । ଏହା ପରେ ଆନନ୍ଦମୟୀ ନାମ୍ନୀ ଜଣେ କିଶୋରୀ ସେଠାରେ ପହଞ୍ଚି ଜୟସିଂହଙ୍କୁ ସଂଜ୍ଞାପ୍ରାପ୍ତ କରାଇଛନ୍ତି । ଆନନ୍ଦମୟୀଙ୍କ ସ୍ୱାମୀ ଯୁଦ୍ଧ କରୁଥିଲେ ମୋଗଲମାନଙ୍କ ବିରୁଦ୍ଧରେ । ମାତ୍ର

---

(୧୫) 'ସୌଦାମିନୀ' ଉପନ୍ୟାସ ଶେଷ ନୋହୁଣୁ ପତ୍ରିକାଟିର ଗ୍ରାହକମାନେ ସ୍ୱୀୟମତେ ଦେୟ ଆଦାୟ ନଦେବାରୁ କାଳକବଳରେ ପଡ଼ିଥିଲା । ମୁଁ ତତ୍କାଳୀନ ସ୍କୁଲ-ବିଭାଗୀୟ ଡେପୁଟି ଇନ୍‌ସ୍‌ପେକ୍‌ଟରଙ୍କୁ ଉପନ୍ୟାସ ଖଣ୍ଡିକ ଦେଖାଇଥିଲି— ଆଶା ଥିଲା ଯେ, ତାହା ବିଦ୍ୟାଳୟର ପାଠ୍ୟପୁସ୍ତକ ରୂପେ ଗୃହୀତ ହେଲେ ବ୍ୟୟଭାର ବହନ କରି ପୁସ୍ତକାକାରରେ ଛପାଇବି, କାରଣ ସାଧାରଣ ପାଠକର ଅଭାବ ହେତୁ ଖର୍ଚ୍ଚ କରି ଛପା କରିବା ବୃଥା । ଡେପୁଟି ଇନ୍‌ସ୍‌ପେକ୍ଟର ମହାଶୟ ପୁସ୍ତକ ରଚନାର ଭୂୟସୀ ପ୍ରଶଂସା କରି ଉପନ୍ୟାସ ପାଠ୍ୟପୁସ୍ତକ ହୋଇନପାରେ ବୋଲି କଥନ କରିବାରୁ ମୁଁ ତାହା ପୁସ୍ତକାକାରରେ ଛପା କରିବାକୁ ସାହାସୀ ହୋଇନାହିଁ ଓ ତହିଁର ଶେଷାଂଶ କାଳକ୍ରମେ ହଜିଗଲା । [ରାମଶଙ୍କର ରାୟ, ଗ୍ରନ୍ଥାବଳୀ—ଡଃ କୃଷ୍ଣଚରଣ ବେହେରାଙ୍କ 'ଓଡ଼ିଆ ଉପନ୍ୟାସ' ପୁସ୍ତକରୁ ଅବିକଳ ଭାବେ ଗୃହୀତ—ପୃ-୧୪୧]

ସେ କେଉଁଆଡ଼େ ନିରୁଦ୍ଦିଷ୍ଟ ହୋଇଯାଇଥିବାରୁ ଆନନ୍ଦମୟୀ ତାଙ୍କୁ ଖୋଜୁଥିଲେ । ତାଙ୍କ ଦୁଃଖରେ ସମବେଦନା ପ୍ରକାଶ କରି ଦନଗରପୁରର ରାଜଜେମା କୁସୁମ କୁମାରୀ ପ୍ରତିଜ୍ଞା କରିଥିଲେ ଯେ, ଆନନ୍ଦମୟୀ ଦେବୀ ତାଙ୍କ ସ୍ୱାମୀଙ୍କୁ ଫେରିନପାଇବା ପର୍ଯ୍ୟନ୍ତ ସେ (କୁସୁମ କୁମାରୀ) ବିବାହ କରିବେ ନାହିଁ । ଜୟସିଂହ ଆନନ୍ଦମୟୀଙ୍କଠାରୁ ଏହା ଶୁଣି ତାଙ୍କ ସ୍ୱାମୀଙ୍କୁ ନିଜେ ଖୋଜିବାକୁ ବାହାରିଗଲେ ।

ଆଲୋଚ୍ୟ 'ସୌଦାମିନୀ' ଉପନ୍ୟାସଟି ୩୦ଟି ପରିଚ୍ଛେଦରେ ଅପୂର୍ଣ୍ଣ ରହିଛି । ଜୟସିଂହ ଖୋଜିବାକୁ ଯାଇଛନ୍ତି ଆନନ୍ଦମୟୀଙ୍କ ସ୍ୱାମୀଙ୍କୁ, ଆଉ ଫେରିନାହାନ୍ତି କି ଉପନ୍ୟାସର ପରବର୍ତ୍ତୀ ପର୍ଯ୍ୟାୟ ଆଉ ପ୍ରକାଶ ପାଇନାହିଁ । ତେବେ ପ୍ରାଚୀନ କାହାଣୀର ମିଳନାତ୍ମକ ଭାବ ହିଁ ଯେ, ଏହି ଉପନ୍ୟାସର ପରିଣତିରେ ଘଟି ଥାଆନ୍ତା ତାହା ଏହି ଉପନ୍ୟାସର ଗତିଧାରାରୁ ସ୍ପଷ୍ଟ ଅନୁମିତ ହୁଏ । ଏହି ଉପନ୍ୟାସଟି ଇତିହାସର କାହାଣୀକୁ ନେଇ ଗତିଶୀଳ ସତ୍ୟ; କିନ୍ତୁ ଏହାର ଅନ୍ତରାଳରେ ଔପନ୍ୟାସିକଙ୍କର ଅଭିମୁଖ୍ୟ ଥିଲା ଜୟସିଂହ ଓ ସୌଦାମିନୀଙ୍କର ପ୍ରେମ-ପ୍ରଣୟକୁ ବର୍ଣ୍ଣନା କରିବା । (୧୬) କିନ୍ତୁ ଉପନ୍ୟାସଟି ଅସମ୍ପୂର୍ଣ୍ଣ ହୋଇରହିଯିବାରୁ ଔପନ୍ୟାସିକଙ୍କ ଉଦ୍ଦେଶ୍ୟ ପରିପୂରଣ ହୋଇପାରିଲା ନାହିଁ ।

'ସୌଦାମିନୀ' (୧୮୭୮) ଉପନ୍ୟାସ ପରେ ରାମଶଙ୍କର 'ବିବାସିନୀ' (୧୮୯୧) ଓ 'ଉନ୍ମାଦିନୀ' (୧୮୯୩) ନାମକ ଆଉ ଦୁଇଟି ଉପନ୍ୟାସ ରଚନା କରିଥିଲେ ।

**ବିବାସିନୀ (୧୮୯୧)**

ରାମଶଙ୍କର ରାୟଙ୍କ 'ବିବାସିନୀ' ତାଙ୍କ ଉପନ୍ୟାସ ତ୍ରୟୀ ମଧ୍ୟରୁ ଏକ ପୂର୍ଣ୍ଣାଙ୍ଗ ରୋମାନ୍ସ ଧର୍ମୀ ଉପନ୍ୟାସ । ଏହି ଉପନ୍ୟାସଟି ଧାରାବାହିକ ଭାବେ ୧୮୯୧ରୁ ୧୮୯୫ ମସିହା ପର୍ଯ୍ୟନ୍ତ ମୟୂରଭଞ୍ଜରୁ ପ୍ରକାଶିତ 'ଉତ୍କଳପ୍ରଭା' ପତ୍ରିକାରେ ପ୍ରକାଶ ପାଇଥିଲା । ଏହା ତାଙ୍କର ପ୍ରଥମ ଉପନ୍ୟାସ 'ସୌଦାମିନୀ' ଭଳି ଏକ ଐତିହାସିକ ଉପନ୍ୟାସ । (୧୭)

---

(୧୬) ରାମଶଙ୍କର କଥାବସ୍ତୁର ଐତିହାସିକ ପୃଷ୍ଠଭୂମି ରକ୍ଷା କରିବାକୁ ସଚେଷ୍ଟ ଉଦ୍ୟମ କରିଛନ୍ତି । ସ୍ୱକଳ୍ପନାର କାଉଁରୀକାଠି ଛୁଆଁଇ ଆମ ଆଗରେ ଶୁଷ୍କ-ଇତିହାସ ନୁହେଁ, ଉପନ୍ୟାସଗତ ଇତିହାସ-ରସ ପରିବେଷଣ କରିଛନ୍ତି ।

(ଡଃ କୃଷ୍ଣଚରଣ ବେହେରା—ଓଡ଼ିଆ ଉପନ୍ୟାସ)

(୧୭) "ସେନାପତିଙ୍କ ପ୍ରଥମ ଉପନ୍ୟାସ ପ୍ରକାଶର ବାରବର୍ଷ ପୂର୍ବରୁ ରାମାଶଙ୍କର ଏକ ସାର୍ଥକ ଉପନ୍ୟାସ ସୃଷ୍ଟି କରିସାରିଥିଲେ । ତିନୋଟି ଉପନ୍ୟାସ ସେ ଆରମ୍ଭ କରିଛନ୍ତି ଜୀବନରେ; କିନ୍ତୁ ଯେଉଁ ଗୋଟିକୁ ପୂର୍ଣ୍ଣ କରିପାରିଥିଲେ, ତାର ନାମ ହେଉଛି 'ବିବାସିନୀ' । × × × ଔପନ୍ୟାସିକ ଭାବରେ ରାମଶଙ୍କର ସେନାପତି ପ୍ରତିଭା ଦ୍ୱାରା ଏକାବେଳକେ ଘୋଡ଼ାଇ ହୋଇଯିବା ଫଳରେ ଓଡ଼ିଆ ସମାଲୋଚକ ମାନଙ୍କ ଚକ୍ଷୁରେ ତାହାଙ୍କର ଏହି ଉପନ୍ୟାସଟି ଯେଉଁ ପ୍ରକାର ମୂଲ୍ୟାୟନ ପାଇବାର କଥା, ତାହା ହୋଇପାରିଲା ନାହିଁ ।"

(ଡକ୍ଟର ମାୟାଧର ମାନସିଂହ—ଓଡ଼ିଆ ସାହିତ୍ୟର ଇତିହାସ, ପୃ—୨୬୦/୨୬୧)

ମରହଟ୍ଟା ଶାସନ କାଳର ଓଡ଼ିଶାର ଏକ ଦୁର୍ଭିକ୍ଷ ଜନିତ ଚିତ୍ର ହେଉଛି 'ବିବାସିନୀ' ଉପନ୍ୟାସର କଥାବସ୍ତୁ । କୁଜଙ୍ଗର ଷଣ୍ଢ ରାଜା ଥିଲେ ମରହଟ୍ଟାଶାସନ କାଳରେ ଜଣେ ପ୍ରତିପତ୍ତିଶାଳୀ ନରପତି । ତାଙ୍କ ଅଧୀନରେ ଏକ ଖ୍ୟାତନାମା ଦସ୍ୟୁଦଳ ଥିଲେ । ଏହା ଥିଲା ସେ ସମୟର ଏକ ରାଜକୀୟ ପ୍ରଥା । ଷଣ୍ଢ ରାଜା ମରହଟ୍ଟା ସୁବାଦାରଙ୍କୁ ଅତି ଅବଜ୍ଞା ଦୃଷ୍ଟିରେ ମଧ୍ୟ ଦେଖୁଥିଲେ । ପାରାଦ୍ୱୀପରେ ଏହି ଷଣ୍ଢ ରାଜାଙ୍କର ଏକ ସୁରକ୍ଷିତ ଦୁର୍ଗ ଥିଲା । ସେହି ପାରାଦ୍ୱୀପର ବେଳାଭୂମିଠାରୁ ଜଳପଥ ଓ ସ୍ଥଳପଥ ଉଭୟ ପଥଦେଇ କଟକ ପର୍ଯ୍ୟନ୍ତ ଷଣ୍ଢଙ୍କ ଅଧୀନସ୍ଥ ଏହି ଦସ୍ୟୁଦଳ ବେଶ୍ ପ୍ରଭାବ ବିସ୍ତାର କରିଥିଲେ । ଷଣ୍ଢ ରାଜାଙ୍କ ଇଚ୍ଛାନୁଯାୟୀ ସେହି ଦସ୍ୟୁ ଦଳର ସର୍ଦ୍ଦାର ଥିଲେ ଜଣେ ବିପତ୍ନୀକ ରାଜକର୍ମଚାରୀ । ତାଙ୍କର ତତ୍ତ୍ୱାବଧାନରେ ଏହି ଦସ୍ୟୁଦଳ ବିଭବଶାଳୀ ଲୋକଙ୍କ ସମ୍ପତ୍ତି ଲୁଟି କରି ନେଉଥିଲେ ଓ ତାହା ଗରିବ ଲୋକମାନଙ୍କୁ ଦାନ କରିଦେଉଥିଲେ । ଦଳର ଏହି କାର୍ଯ୍ୟକୁ ସମର୍ଥନ କରି ପ୍ରଥାନୁଯାୟୀ ଜଣେ ସାଧୁ ସନ୍ନ୍ୟାସୀ ଦସ୍ୟୁଦଳକୁ ଆଶୀର୍ବାଦ କରୁଥିଲେ ।

୧୭୭୦ ମସିହାର ଦୁର୍ଭିକ୍ଷ ସମୟରେ ଷଣ୍ଢ ରାଜାଙ୍କ ଅଧୀନସ୍ଥ ଏହି ଡକାୟତ ଦଳ ନବଗ୍ରାମ ନିବାସୀ ରାଧାଗୋବିନ୍ଦ ଶ୍ରୋତ୍ରିୟ ଓ ଗୋବର୍ଦ୍ଧନ ଦାସଙ୍କ ଘରେ ଡକାୟତି କରିଥିଲେ । ଏହି ଦୁଇ ବ୍ୟକ୍ତିଙ୍କ ମଧ୍ୟରୁ ଜଣେ ଥିଲେ ଧନୀ ଓ ଅତ୍ୟନ୍ତ କୃପଣ ଏବଂ ଅନ୍ୟ ଜଣେ ଥିଲେ ମରହଟ୍ଟାଙ୍କ ଅଧୀନରେ କାର୍ଯ୍ୟ କରୁଥିବା ରାଜକର୍ମଚାରୀ । ଏହି ଦୁଇ ବ୍ୟକ୍ତିଙ୍କ ଠାରୁ ପ୍ରତିଶୋଧ ନେବାପାଇଁ ଡକାୟତ ଦଳ ସେମାନଙ୍କ ଘର ଉପରେ ଚଢ଼ାଉ କଲେ । ଡକାୟତମାନେ ଅନେକ ଧନ ସମ୍ପତ୍ତି ଲୁଣ୍ଠନ ପୂର୍ବକ କୃପଣ ଗୃହସ୍ଥ ଶ୍ରୋତ୍ରିୟଙ୍କ ପାଳିତାକନ୍ୟା ବାଳ-ବିଧବା କଳାବତୀ ଓ ମରହଟ୍ଟାଧୀନ କାର୍ଯ୍ୟରତ ଓଡ଼ିଆ କର୍ମଚାରୀ ଗୋବର୍ଦ୍ଧନ ଦାସଙ୍କ ଅନୂଢ଼ା କନ୍ୟା ରସକଳାଙ୍କୁ ଅପହରଣ କରିନେଲେ । ଯେଉଁ ଧନ ସମ୍ପଦ ଏଠାରୁ ଲୁଣ୍ଠିତ ହୋଇଥିଲା, ତାହା ଦରିଦ୍ରମାନଙ୍କ ମଧ୍ୟରେ ଦସ୍ୟୁଦଳ ବାଣ୍ଟି-ଦେଇଥିଲେ ।

ବିପତ୍ନୀକ ଦସ୍ୟୁ ସର୍ଦ୍ଦାର ରଘୁନାଥ ବିଧବା କଳାବତୀକୁ ନିଜ ଘରକୁ ନେଇଗଲେ । ମାତ୍ର ରସକଳା ରହିଲା ଷଣ୍ଢ ରାଜାଙ୍କ ନବରରେ । ଏହି ଦଳର ଅନ୍ୟତମ ଜଣେ ଦସ୍ୟୁ-ନାୟକ ମାୟାଧର ଅପହୃତା ରସକଳା ବା କଳାବତୀ ଯେକୌଣସି ଜଣକୁ ନିଜର ବଶ କରିବାକୁ ଚାହିଁଥିଲେ । ମାତ୍ର ତାଙ୍କର ସେ ଆଶା ଚରିତାର୍ଥ ନହେବାରୁ ସେ ବିଦ୍ରୋହୀ ହୋଇ ମରହଟ୍ଟା ସୁବାଦାରଙ୍କ ଆଗରେ ନବଗ୍ରାମ ଡକାୟତିର ସମସ୍ତ ତଥ୍ୟ ପ୍ରକାଶ କରିଦେଲେ । ମାତ୍ର ନବଗ୍ରାମ ଡକାୟତିରେ ଉପକୃତ ହୋଇଥିବା ଜନତା ରୋଷ-କଷାୟିତ ହୋଇ ସୁବାଦାରଙ୍କ ଘରେ ଅଗ୍ନିସଂଯୋଗ କରିଦେଲେ । ସୁବାଦାର ପ୍ରାଣ

ବିକଳରେ ପଳାୟନ କଲେ; ମାତ୍ର କାଠଯୋଡ଼ି ପାର ହେବା ~~ସମୟରେ~~ ବିଶ୍ୱାସଘାତକ ମାଷ୍ଟ୍ରାଧର କବାଟରେ ବୃଦ୍ଧ ପ୍ରାଣତ୍ୟାଗ କଲା ।

ଏହି ଘଟଣାର ପରେ ପରେ ବିପତ୍ନୀକ ଦସ୍ୟୁ ସର୍ଦ୍ଦାର ରଘୁନାଥ ବିଧବା କଳାବତୀ ପ୍ରତି ଆକୃଷ୍ଟ ହୋଇ ତାକୁ ବିବାହ କରିବାକୁ ଚାହିଁଛି । କିନ୍ତୁ କଳାବତୀ ହିନ୍ଦୁ ବୈଧବ୍ୟର ଯଥାଯୋଗ୍ୟ ସଂଯମ ଆଚରଣ କରି, ନିଜର ପ୍ରେମ ସୂତ୍ରକୁ ବଳପୂର୍ବକ ରଘୁନାଥଙ୍କୁ ପ୍ରବର୍ତ୍ତାଇଛି ତାର ସଖୀ ରସକଳାକୁ ବିବାହ କରିବାପାଇଁ । ଶେଷରେ ଷଣ୍ଢରାଜାଙ୍କ ଅନୁରୋଧରେ କଳାବତୀର ପ୍ରରୋଚନାରେ ରଘୁନାଥଙ୍କ ସହ ରସକଳାର ବିବାହ ସମାପନ ହୋଇଛି । ଏହାପରେ 'କଳାବତୀ' 'ବ୍ରତ ଉଦ୍‌ଯାପନ, ଅନ୍ତରେ ମହାନଦୀରେ ପ୍ରାଣ ବିସର୍ଜନ କରିଛି । ଏହିପରି ଭାବରେ ଆଲୋଚ୍ୟ ଉପନ୍ୟାସର ଆରମ୍ଭ ଇତିହାସକୁ କେନ୍ଦ୍ର କରି ହୋଇଥିଲେହେଁ ଏହାର ସମାପ୍ତି ଘଟିଛି ପ୍ରେମରେ । ପ୍ରେମର ଫଲ୍‌ଗୁରେ ଉପନ୍ୟାସର ଅଧିକାଂଶ ସ୍ଥଳ ବେଶ୍ ପ୍ଲାବିତ ହୋଇପାରିଛି ।

ରାମଶଙ୍କର ରାୟ 'ସୌଦାମିନୀ' ଓ 'ବିବାସିନୀ' ବ୍ୟତୀତ ଅନ୍ୟ ଯେଉଁ ଉପନ୍ୟାସଟି ରଚନା କରିଥିଲେ ତାହାର ନାମ ଥିଲା 'ଉନ୍ମାଦିନୀ' । ରାମଶଙ୍କରଙ୍କ ପ୍ରଥମ ଉପନ୍ୟାସ ଭଳି ଏହି 'ଉନ୍ମାଦିନୀ' ଉପନ୍ୟାସଟି ଥିଲା ଅସମ୍ପୂର୍ଣ୍ଣ । ଏବେ ଏହା ମଧ୍ୟ ଦୁଷ୍ପ୍ରାପ୍ୟ । ଓଡ଼ିଆ ଉପନ୍ୟାସର ଆଦିପର୍ବର ଆଦ୍ୟାଙ୍ଗରେ ରାମଶଙ୍କର ଉପନ୍ୟାସ ରଚନାରେ ଯେଉଁ ମହା-ପ୍ରୟାସ ଆରମ୍ଭ କରିଥିଲେ ତାହା 'ସୌଦାମିନୀ' ଓ ଉନ୍ମାଦିନୀ' ଉପନ୍ୟାସର ଅସମ୍ପୂର୍ଣ୍ଣତା ହେତୁ ଖଣ୍ଡିତ ହୋଇଛି । 'ଉନ୍ମାଦିନୀ', 'ଇନ୍ଦ୍ରଧନୁ' ପତ୍ରିକାରେ ଧାରାବାହିକ ଭାବେ ପ୍ରକାଶ ପାଇଥିଲା । ମାତ୍ର ୧୮୯୬ ମସିହାରେ 'ଇନ୍ଦ୍ରଧନୁ' ପତ୍ରିକାର ଅବ୍ୟବସ୍ଥା ଜନିତ ପ୍ରକାଶନ ବନ୍ଦ ହେତୁ ଏହି ଉପନ୍ୟାସର ପ୍ରକାଶନ ଓ ଲିଖନରେ ମଧ୍ୟ ବାଧା ଆସିଥିଲା ଏବଂ ସର୍ବୋପରି—ପରବର୍ତ୍ତୀ କାଳରେ ରାମଶଙ୍କର ଆଉ ଏହାର ପରିସମାପ୍ତି କରିପାରିନଥିଲେ, ଯେଉଁଥିପାଇଁ ସେ ତାଙ୍କ ଗ୍ରନ୍ଥାବଳୀରେ ଲେଖିଛନ୍ତି—

> "ଇନ୍ଦ୍ରଧନୁ ନାମକ ମାସିକ ପତ୍ରିକାର ପରିଚାଳକମାନେ ଅନୁରୋଧ କରିବାରୁ ମୁଁ 'ଉନ୍ମାଦିନୀ' ନାମରେ ଉପନ୍ୟାସ ଲେଖିବାକୁ ଆରମ୍ଭ କଲି । ତାହା କିୟଦଂଶ ଲେଖାହୋଇ ପ୍ରକାଶିତ ହେଲା ପରେ ପତ୍ରିକାଟି ବିଲୟପ୍ରାପ୍ତ ହେବାରୁ ଉପନ୍ୟାସଟି ଅପୂର୍ଣ୍ଣ ରହିଗଲା ।"

"ଉମେଶଚନ୍ଦ୍ର 'ପଦ୍ମମାଳୀ ଓ 'କେନ୍ଦୁଝର ବିଦ୍ରୋହ' ନାମକ ଦୁଇଟି ଉପନ୍ୟାସ ଲେଖି ଉପନ୍ୟାସ ରଚନାରୁ ବିରତ ହେଲେ । ରାମଶଙ୍କର ତିନୋଟି ଉପନ୍ୟାସ ରଚନାକରି ଦୁଇଟିର ସମାପନରେ ଅସମର୍ଥ ହେଲେବି ଗୋଟିକରେ ଆପଣାର ଔପନ୍ୟାସିକ କଳାର ପରିଚୟ ଦେବାକୁ ସମର୍ଥ ହୋଇଥିଲେ । ମାତ୍ର ସେ ମଧ୍ୟ ଏହାପରେ ନୀରବ ହୋଇଗଲେ ।

ଗୋପାଳ ବଲ୍ଲଭ ଦାସ ୧୮୯୮ ମସିହାରେ 'ଭୀମାଭୂୟାଁ' ନାମକ ଯେଉଁ ଉପନ୍ୟାସ ରଚନା କରିଥିଲେ ତାହା ୧୯୦୮ ମସିହାରେ ପ୍ରକାଶ ହେଲାବେଳକୁ ଓଡ଼ିଆ ଉପନ୍ୟାସ ଜଗତରେ ଏକ ଆଲୋଡ଼ନ ସୃଷ୍ଟି ହୋଇସାରିଥିଲା ଔପନ୍ୟାସିକ ଫକୀରମୋହନ ସେନାପତିଙ୍କ ଉପନ୍ୟାସ ସୃଷ୍ଟିରେ । ରାମଶଙ୍କର ବା ଉମେଶ ଚନ୍ଦ୍ରଙ୍କ ଉପନ୍ୟାସ ଇତିହାସକୁ କେନ୍ଦ୍ର କରି ରଚିତ ହୋଇଥିଲାବେଳେ 'ଭୀମାଭୂୟାଁ' ଉପନ୍ୟାସ ଆଦିବାସୀ ଜୀବନକୁ କେନ୍ଦ୍ର କରି ରଚିତ ହୋଇଥିଲା । ମାତ୍ର ଫକୀରମୋହନ ସେନାପତି ହିଁ ପ୍ରଥମ କରି ଓ ଜନଚେତନାରେ ଆଲୋଡ଼ନ ସୃଷ୍ଟି କରି ଜନଜୀବନର ବିପୁଳ ସମ୍ଭାରକୁ ସମର୍ପି ଦେଇଥିଲେ ଓଡ଼ିଆ ତାଙ୍କର ଉପନ୍ୟାସ ମାଧ୍ୟମରେ । (୧୮)

## ଫକୀରମୋହନ ସେନାପତି (୧୮୪୩ -୧୯୧୮)

ଓଡ଼ିଆ ଉପନ୍ୟାସର ଆଦିପର୍ବର ଅନ୍ତିମ ପର୍ଯ୍ୟାୟରେ ଯୁଗଜନ୍ମା ବ୍ୟାସକବି ଫକୀରମୋହନ ସେନାପତିଙ୍କର ଆବିର୍ଭାବ ଓଡ଼ିଆ ଉପନ୍ୟାସରେ ଏକ ନୂତନ ଦିଗ୍‌ଦର୍ଶନ ପ୍ରଦାନ କଲା । ଫକୀରମୋହନ ସେନାପତି ହିଁ ଯଥାର୍ଥରେ ଓଡ଼ିଆ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପର ପ୍ରାଣପ୍ରତିଷ୍ଠାତା । କାବ୍ୟ କବିତା ଓ ଅନୁବାଦାଦି ରଚନା ପରେ ପ୍ରକୃତ ସେନାପତି ପ୍ରତିଭାର ମୌଳିକ ବିକାଶ ଘଟିଲା—ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ରଚନାରେ । ସମଗ୍ର ବିଶ୍ୱସାହିତ୍ୟ ସହିତ ତାଳଦେଇ ଫକୀରମୋହନଙ୍କ ପ୍ରଚଣ୍ଡ ପ୍ରତିଭାର ଯେଉଁ ଉନ୍ମେଷ ଘଟିଥିଲା, ଉପନ୍ୟାସ ଓ ଗଳ୍ପ ରଚନାରେ ତାହା ଓଡ଼ିଆ ସାହିତ୍ୟରେ ଏକ ନୂତନ ଯୁଗ ଓ ନୂତନ ଚେତନାର ସଙ୍କେତ ପ୍ରଦାନ କରିଥିଲା ।

---

(୧୮) "ରାଧାନାଥ ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତକ ନୁହନ୍ତି କିମ୍ବା ଫକୀରମୋହନ ଓଡ଼ିଆ ଉପନ୍ୟାସର ପ୍ରତିଷ୍ଠାତା ନୁହନ୍ତି । ରାଧାନାଥଙ୍କ ପୂର୍ବରୁ ନାଟ୍ୟକାର ରାମଶଙ୍କର 'କାଞ୍ଚିକାବେରୀ' ନାଟକରେ ଅମିତ୍ରାକ୍ଷର ଛନ୍ଦର ପରୀକ୍ଷା ଓ ପ୍ରବର୍ତ୍ତନ କରିଥିଲେହେଁ, 'ମହାଯାତ୍ରା' କାବ୍ୟରେ ରାଧାନାଥ ଏହି ଛନ୍ଦରୀତିକୁ ଯେଉଁ ଗାମ୍ଭୀର୍ଯ୍ୟ, ସୌନ୍ଦର୍ଯ୍ୟ ଓ ବୈଶିଷ୍ଟ୍ୟ ପ୍ରଦାନ କରିଥିଲେ ତାହା ରାଧାନାଥଙ୍କୁ ଓଡ଼ିଆରେ ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତକ ପ୍ରତିଷ୍ଠାରେ ପ୍ରତିଷ୍ଠିତ କରିଥିଲା । ଫକୀରମୋହନଙ୍କ ପୂର୍ବରୁ ଉମେଶଚନ୍ଦ୍ର ଓ ରାମଶଙ୍କର ଓଡ଼ିଆରେ ଯଥାକ୍ରମେ 'ପଦ୍ମମାଳୀ' ଓ 'ବିବାସିନୀ' ପ୍ରଭୃତି ଉପନ୍ୟାସ ପ୍ରଣୟନ କରିଥିଲେ ସୁଦ୍ଧା ଫକୀରମୋହନଙ୍କ ପ୍ରତିଭା ଓ କାଳାସିଦ୍ଧି, ଉପନ୍ୟାସକୁ ଓଡ଼ିଆ ସାହିତ୍ୟରେ ଏକ ନୂତନ ପ୍ରତିଷ୍ଠା ଓ ମର୍ଯ୍ୟାଦା ପ୍ରଦାନ କରିଥିଲା । ସେଥିପାଇଁ ଐତିହାସିକ ବିଗ୍ଭରରୁ ନହେଲେ ସୁଦ୍ଧା ସାହିତ୍ୟିକ ବିଗ୍ଭରରୁ ଫକୀରମୋହନ ଓଡ଼ିଆ ଉପନ୍ୟାସର ଜନକରୂପେ ସମ୍ମାନିତ ।"
( ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା-ପୃ ୫୨।୫୮ )

ଫକୀରମୋହନ ସେନାପତି ଜଣେ ଜାତୀୟବାଦୀ କବି; ରାଜନୈତିକ ଓ ସମାଜ ସଚେତନ ଔପନ୍ୟାସିକ । ଓଡ଼ିଆ ଜାତିର ଭାଷା ଓ ସାହିତ୍ୟର ଅଧଃପତନରେ ତାଙ୍କର ପ୍ରାଣତନ୍ତ୍ରୀ ହାହା'କାର କରିଉଠିଛି । ଭାଷା ଓ ସାହିତ୍ୟର ଉନ୍ନତି ପାଇଁ ସେ ପ୍ରାଣପାତ ଉଦ୍ୟମ କରିଛନ୍ତି । ଓଡ଼ିଆ ଜାତିକୁ ସଙ୍ଗଠିତ କରିବାପାଇଁ ସେ ଉତ୍କଳ ସମ୍ମିଳନୀରେ ଆବେଗମୟ ଭାଷଣ ପ୍ରଦାନ କରିଅଛନ୍ତି ଜୀବନର ଅନ୍ତିମ ସମୟରେ । ସେନାପତି ପ୍ରତିଭା ଦାରିଦ୍ର୍ୟର କଷାଘାତରେ, ଦୈବଦୁର୍ବିପାକର କରୁଣ ପରିବେଶରେ, ଗୃକର ଜୀବନର ନାନା ଜଞ୍ଜାଳ ଓ ସଂଘର୍ଷ ମଧ୍ୟରେ ଲୁଚି ରହିପାରି ନାହିଁ । ଅଗ୍ନିକଣା ତୁଲ୍ୟ ଜଞ୍ଜାଳଗ୍ରସ୍ତ କର୍ମମୟ ଜୀବନରେ ତାଙ୍କର ପ୍ରତିଭା ଜାଜ୍ଜ୍ୱଲ୍ୟମାନ ହୋଇଉଠିଛି ।

ସେନାପତି ସାହିତ୍ୟର ପୃଷ୍ଠଭୂମି ହେଉଛି ସାର୍ଦ୍ଧ ଦୁଇ ଶତ ବର୍ଷର ଓଡ଼ିଶା ଇତିହାସ । ୧୭୬୧ ଠାରୁ ୧୮୦୦ ମସିହା ପର୍ଯ୍ୟନ୍ତ ମରହଟ୍ଟାମାନଙ୍କର ଅତ୍ୟାଚାର ଓ ତଜ୍ଜନିତ ଦେଶର ଲୋକମାନଙ୍କର କରୁଣ ଚିତ୍କାର, ୧୮୦୩ ଠାରୁ ୧୮୪୦ ପର୍ଯ୍ୟନ୍ତ ସମୟ ମଧ୍ୟରେ ଇଂରେଜମାନଙ୍କର ଓଡ଼ିଶା ଅଧିକାର, ଶାସନ ବିସ୍ତାର ଓ ଶିକ୍ଷା, ଧର୍ମ ପ୍ରଚାର, ପ୍ରସାର ପାଇଁ ପ୍ରଗାଢ଼ ଉଦ୍ୟମ, ନୂତନ ସୃଷ୍ଟ ଜମିଦାର ଓ ପାରମ୍ପରିକ ଜମିଦାରମାନଙ୍କ ମଧ୍ୟରେ ଆଦର୍ଶଗତ ସଂଘର୍ଷ, ନୂତନ ସୃଷ୍ଟ ଜମିଦାରଙ୍କର ଜମି ପ୍ରତି ଲୋଭ, ବଙ୍ଗାଳୀ ଜମିଦାରମାନଙ୍କ ଦ୍ୱାରା ଓଡ଼ିଆଙ୍କର ଜୀବନ ହାହାକାରମୟ, ୧୮୪୧ରୁ ୧୮୮୦ ପର୍ଯ୍ୟନ୍ତ ସମୟ ମଧ୍ୟରେ ଇଂରେଜ ଶିକ୍ଷା ପାଇଁ ଆଗ୍ରହ ଓ ସରକାରୀ ଚାକିରି ପାଇଁ ଲାଳସା, ଅର୍ଥ ପିଶାଚ ହେବାକୁ ନୂତନ କୂଟନୀତି ପ୍ରୟୋଗ, ଇଂରେଜ ଶିକ୍ଷା ଓ ସଭ୍ୟତା ଦ୍ୱାରା ଦେଶରେ ମଦ୍ୟପାନ ଓ ବେଶ୍ୟାବୃତ୍ତିର ବହୁଳ ପ୍ରସାର, ୧୮୬୬ରୁ ୧୮୬୮ ମସିହା ମଧ୍ୟରେ ଓଡ଼ିଆଭାଷା ବିଲୋପ କରିବାକୁ ବଙ୍ଗାଳୀମାନଙ୍କର ହୀନଚକ୍ରାନ୍ତ ଓ ଓଡ଼ିଶାରେ ଭୟଙ୍କର ନ'ଅଙ୍କ ଦୁର୍ଭିକ୍ଷର କରାଳ ଗ୍ରାସ, ୧୮୮୧ଠାରୁ ୧୯୨୦ ମସିହା ମଧ୍ୟରେ ଓଡ଼ିଶାରେ ନୂତନ କଲେଜ ପ୍ରତିଷ୍ଠା, ନୂତନ ଶିକ୍ଷିତ ଯୁବକମାନଙ୍କ ମଧ୍ୟରେ ସଂସ୍କାର ପ୍ରୟାସ, ଆଭିଜାତ୍ୟ ବୃଦ୍ଧି ପାଇଁ ଜମିଦାରୀ ମନୋବୃତ୍ତି ପ୍ରଭୃତି ବିଭିନ୍ନ ଘଟଣା ସେନାପତି ସାହିତ୍ୟ ସୃଷ୍ଟି ପାଇଁ ପ୍ରଧାନ ଉପାଦାନ ଯୋଗାଇଛି ।

ଫକୀରମୋହନ ସେନାପତି ତାଙ୍କ ଜୀବନକାଳ ମଧ୍ୟରେ ସମଗ୍ର ଓଡ଼ିଶା ପ୍ରାୟତଃ ଭ୍ରମଣ କରିବାର ସୁଯୋଗ ପାଇଥିଲେ ଏବଂ ନୀଳଗିରି, ଡମପଡ଼ା, ଢେଙ୍କାନାଳ, କେନ୍ଦୁଝର, ଦଶପଲ୍ଲା ପ୍ରଭୃତି ଗଡ଼ଜାତ ରାଜ୍ୟରେ ଦେଓ୍ୱାନୀ କାର୍ଯ୍ୟ କରିବାର ସୁଯୋଗ ମଧ୍ୟ ପାଇଥିଲେ । ରାଜପୁତଠାରୁ ଆରମ୍ଭକରି ଆଦିବାସୀ ଭୂୟାଁ ମେଳି ପର୍ଯ୍ୟନ୍ତ, ଇଂରେଜ ଲୋକଙ୍କଠାରୁ ଆରମ୍ଭ କରି ବଙ୍ଗାଳୀ ଆଦି ବିଭିନ୍ନ ପ୍ରାଦେଶିକ ଲୋକଙ୍କ ପର୍ଯ୍ୟନ୍ତ ସାଧାରଣ ନଗଣ୍ୟ ସ୍ତରର ଲୋକଙ୍କଠାରୁ ଆରମ୍ଭକରି ଉଚ୍ଚଶିକ୍ଷିତ ଲୋକଙ୍କ ପର୍ଯ୍ୟନ୍ତ ବିଭିନ୍ନ

ଶ୍ରେଣୀର ଲୋକଙ୍କ ସମ୍ପର୍କରେ ଆସି ତାଙ୍କର ଲୋକଚରିତ୍ର ଅଧ୍ୟୟନ କରିବାର ପ୍ରବୃତ୍ତି ଜ୍ଞାନାର୍ଜନ ହୋଇଥିଲା । ନୂତନ ଶୈଳୀ, ସାଧାରଣ ଲୋକଙ୍କ କଥିତ ଭାଷା ଓ ଯୁଗୋପଯୋଗୀ ଆଙ୍ଗିକର ପ୍ରୟୋଗ ଦ୍ୱାରା ସେନାପତି ଉପନ୍ୟାସ ସମୂହ ଗଢମୁଖର ହେଲା । ସାଧାରଣ ଗଣଜୀବନରୁ ଚରିତ୍ର ସଂଗ୍ରହ କରି ସେ ତାଙ୍କ ଉପନ୍ୟାସରେ ସ୍ଥାନ ଦେଲେ । ତାଙ୍କ ପୂର୍ବରୁ ଉମେଶଚନ୍ଦ୍ର ବା ରାମଶଙ୍କର ସାଧାରଣ ଲୋକଭାଷାକୁ ଉପନ୍ୟାସରେ ସ୍ଥାନ ଦେଇନଥିଲେ କିମ୍ବା ଲୋକଚରିତ୍ରର ବାସ୍ତବ ଅନୁଭୂତି ସେମାନଙ୍କ ଉପନ୍ୟାସରେ ଦେଖାଯାଇନଥିଲା । ଇଂରେଜ ଶିକ୍ଷା ଦ୍ୱାରା ସୃଷ୍ଟ ନୂତନ-ମଧ୍ୟବିତ୍ତ ଶ୍ରେଣୀର ଚିତ୍ର ସେମାନଙ୍କ ଉପନ୍ୟାସରେ ମିଳେନାହିଁ; ମାତ୍ର ଫକୀରମୋହନଙ୍କ ମୌଳିକ ପ୍ରତିଭା ମଧ୍ୟବିତ୍ତ ଶ୍ରେଣୀର ଚିତ୍ର ନିଖୁଣ ଭାବରେ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଦରିଦ୍ର ନିରୀହ ଜନତାକୁ ମଧ୍ୟ ଜୀବନ୍ତ ଭାବରେ ରୂପାୟିତ କରିପାରିଛି ।

ଫକୀରମୋହନ ଲୋକଚରିତ୍ର ରୂପାୟନରେ ଥିଲେ ସୁଦକ୍ଷ ଶିଳ୍ପୀ । ତାଙ୍କର ନିବିଡ଼ ଅନୁଭୂତି, ତାଙ୍କ ଜୀବନର ବିଭିନ୍ନ ଦୁଃଖମୟ କାହାଣୀ ତାଙ୍କ ଉପନ୍ୟାସର ବିଭିନ୍ନ ଚରିତ୍ର ମାଧ୍ୟମରେ ସନ୍ନିବେଶିତ ହୋଇଛି । ଫକୀରମୋହନ କର୍ମମୟ ଜୀବନରେ ଯେପରି କୃତୀମାନ ସମ୍ପନ୍ନ ବ୍ୟକ୍ତି ଥିଲେ, ସେହିପରି କୌଶଳୀ ମଧ୍ୟ ଥିଲେ । ସେ ତାଙ୍କର ଉପନ୍ୟାସ ମଧ୍ୟରେ କେତେକ କ୍ଷେତ୍ରରେ ଆପଣାକୁ ରୂପାୟନ କରିଥିବାର ମନେହୁଏ । ସେ ସୁଖକୁ ସୁଖ ଭାବରେ, ଦୁଃଖକୁ ଦୁଃଖ ଭାବରେ ଦେଖିଛନ୍ତି । ମଣିଷର ସ୍ୱରୂପକୁ ପ୍ରକାଶ କରିବାକୁ ସେ ଚେଷ୍ଟା କରିଛନ୍ତି । ସେ ତାଙ୍କ ଉପନ୍ୟାସରେ ଦର୍ଶାଇଛନ୍ତି ଯେ, ଏହି ମଣିଷ ଭିତରେ ଅଛନ୍ତି ଦେବତା, ପୁଣି ଏହି ମଣିଷ ଭିତରେ ଅଛନ୍ତି ରାକ୍ଷସ । ମଣିଷ ବାହାରେ ସାଧୁ, ସନ୍ଥ, ବିନୟର ଅବତାର ସାଜି ଭିତରେ ହଳାହଳମୟ ପରିସ୍ଥିତି ସୃଷ୍ଟି କରେ, ଉପରେ ଅମୃତର ବାରି ସିଞ୍ଚନ କରି ଭିତରେ ବିଷ ପାନ କରାଏ । ମଣିଷ ତା'ର ସ୍ୱାର୍ଥ ସାଧନ ପାଇଁ ଭୟଙ୍କର ହୋଇପାରେ । ଫକୀରମୋହନ ତାଙ୍କର ବ୍ୟାପକ ସୂକ୍ଷ୍ମ ଅନୁଭୂତି ଫଳରେ ସଭ୍ୟତାର ଖୋଳ ଭିତରୁ ବାସ୍ତବ ମଣିଷକୁ ବାହାରକରି ଦେଖାଇବା ଚେଷ୍ଟାକୁ କରିଅଛନ୍ତି । ସେ ବାସ୍ତବ ଜୀବନର ଯଥାର୍ଥ ଚିତ୍ରକର । ସମାଜର ଅତି ଜୀବନ୍ତ ଚିତ୍ର ପ୍ରଦାନ କରିବାରେ ତେଣୁ ସେ ସଫଳ ହୋଇଛନ୍ତି ।

ଫକୀରମୋହନଙ୍କ ତୀକ୍ଷ୍ଣ ଦୃଷ୍ଟି ସୁଦୂରପ୍ରସାରୀ । ସହରଠାରୁ ପଲ୍ଲୀ ପର୍ଯ୍ୟନ୍ତ, ରାଜପ୍ରାସାଦଠାରୁ ଦରିଦ୍ର ପର୍ଣ୍ଣକୁଟୀର ପର୍ଯ୍ୟନ୍ତ ତାଙ୍କ କର୍ମକ୍ଷେତ୍ର ଥିଲା ବିସ୍ତୃତ । ତେଣୁ ଗାଁ ଗାଧୁଆତୁଠ ଠାରୁ ଆରମ୍ଭକରି ଅନ୍ତଃପୁର ପର୍ଯ୍ୟନ୍ତ ନାରୀମହଲର ବିଭିନ୍ନ ରହସ୍ୟ ଉଦ୍‌ଘାଟନ କରିବାରେ ସେ ସିଦ୍ଧହସ୍ତ ହୋଇଛନ୍ତି । ଓଡ଼ିଶାର ପୁରପଲ୍ଲୀରେ, ଗାଧୁଆ-ତୁଠରେ ସ୍ତ୍ରୀଲୋକମାନଙ୍କର ବିଭିନ୍ନ ପ୍ରସଙ୍ଗ ଆଲୋଚନା, ଗାଁ ଗାଧୁଆ ତୁଠର ଦୃଶ୍ୟ ଫକୀରମୋହନ ଅତି ଜୀବନ୍ତ ଭାବରେ ପ୍ରାଣମୟୀ ଭାଷା-ବିନ୍ୟାସରେ ବର୍ଣ୍ଣନା କରିଅଛନ୍ତି ।

ଚରିତ୍ର ଚିତ୍ରଣରେ ଫକୀରମୋହନ ମଧ୍ୟ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଅଦ୍ୱିତୀୟ ଚିତ୍ରକର । ତାଙ୍କର ପ୍ରତ୍ୟେକ ଉପନ୍ୟାସରେ ଚରିତ୍ରମାନଙ୍କର ବର୍ଣ୍ଣନା ବେଶ୍ ଜୀବନ୍ତ ଓ ପ୍ରାଣବନ୍ତ ମନେହୁଏ । ବିଶେଷକରି ଦୁଷ୍ଟ ଚରିତ୍ର ଚିତ୍ରଣ କରିବାରେ ସେନାପତି ପ୍ରତିଭା ଶତମୁଖୀ ହୋଇଉଠିଛି । ଫକୀରମୋହନଙ୍କ ସୃଷ୍ଟ ଚରିତ୍ରମାନଙ୍କ ମଧ୍ୟରେ ଦଳେ ନିର୍ମମ, ସ୍ୱାର୍ଥ-ଲିପ୍ସୁ, ଶୋଷକ, ଦମନକାରୀ ବ୍ୟକ୍ତି ଆଉ ଦଳେ ସହନଶୀଳ, ପ୍ରତିବାଦ ପରାଙ୍ମୁଖ । ଫକୀରମୋହନଙ୍କ ଉପନ୍ୟାସର ସାଧାରଣ ଜନତା ଅତ୍ୟାଚାର ବିରୁଦ୍ଧରେ ବିପ୍ଲବ କରି-ପାରିନାହିଁ କି ସମାଜରେ ମୁଣ୍ଡ ଟେକି ଠିଆ ହୋଇ ପାରିନାହିଁ; ବରଂ ଅତ୍ୟାଚାରୀର ନିର୍ମମ ଅତ୍ୟାଚାରରେ ଛିନ୍ନଭିନ୍ନ ହୋଇଯାଇଛି ।

ଫକୀରମୋହନଙ୍କ ବିଭିନ୍ନ ଉପନ୍ୟାସର, ରାମଚନ୍ଦ୍ର ମଙ୍ଗରାଜ, ନାଜର ନଟବର ଦାସ, ଶଙ୍କର୍ଷଣ ମହାନ୍ତି, ଚମ୍ପା, ଚନ୍ଦ୍ରକଳା, ଆଦି ଚରିତ୍ରମାନେ ଓଡ଼ିଆ ଉପନ୍ୟାସ ଜଗତର ଏକ ଏକ ଅନବଦ୍ୟ ସୃଷ୍ଟି । ବିଭତ୍ସ ଓ ଧ୍ୱଂସର ଲୀଳା ସୃଷ୍ଟି କରିବାପାଇଁ ଏମାନେ କପରି ଭୟଙ୍କର ହୋଇପାରନ୍ତି ତାର ଯଥାର୍ଥ ଚିତ୍ର ଫକୀରମୋହନ ତାଙ୍କ ମାମୁଁ, ଛ'ମାଣ ଆଠଗୁଣ୍ଠ ଆଦି ଉପନ୍ୟାସରେ ପ୍ରଦାନ କରିଅଛନ୍ତି । ଛ'ମାଣ ଆଠଗୁଣ୍ଠ ଉପନ୍ୟାସର ରାମଚନ୍ଦ୍ର ମଙ୍ଗରାଜ ଓ ମାମୁଁ ଉପନ୍ୟାସର ନାଜର ନଟବର ଦାସ ଯେପରି ଅତ୍ୟାଚାରୀ, ଜମିଦାର ଓ ସାମନ୍ତବାଦୀ ଶ୍ରେଣୀର ପ୍ରତିନିଧି ଚରିତ୍ର, ଚମ୍ପା ଓ ଚନ୍ଦ୍ରକଳା ଠିକ୍ ସେହିପରି ଭ୍ରଷ୍ଟା, କୁଳଟା, ଭୟଙ୍କର ଉଦ୍‌ବାସ୍ତୁ ନାରୀ ଚରିତ୍ରର ପ୍ରତିନିଧିତ୍ୱ କରିଅଛନ୍ତି । ଆଜିର ସମାଜ ଏପରି ଚରିତ୍ର ମାନଙ୍କର କୁପ୍ରଭାବରୁ ମଧ୍ୟ ମୁକ୍ତ ନୁହେଁ । ଔପନ୍ୟାସିକ ଫକୀରମୋହନ ଏପରି ଚରିତ୍ର ସୃଷ୍ଟି କରିଥିବା ହେତୁ ସବୁଯୁଗ ପାଇଁ ଅବିସ୍ମରଣୀୟ ହୋଇରହିବେ ।

ଏମାନଙ୍କ ବ୍ୟତୀତ ଶାରିଆ, ଭଗିଆ, ରାଘବ ମହାନ୍ତି, ପ୍ରଭୁ ଦୟାଳ, ଗୋବରା ଜେନା ଗୋବିନ୍ଦା ଭଣ୍ଡାରୀ, ନାକଫୋଡ଼ିଆ ମା', ହରିବୋଲ୍ ବାରିକ, ଗେହ୍ଲେଇ, ରାମଯାତ୍ରୁ ପ୍ରଭୃତି ପ୍ରତ୍ୟେକ ଚରିତ୍ରକୁ ଫକୀରମୋହନ ଅତିଜୀବନ୍ତ ଓ ବାସ୍ତବ ଭାବରେ ଚିତ୍ରଣ କରି-ଅଛନ୍ତି । ଏଇମାନଙ୍କୁ ଉପନ୍ୟାସ ମଧ୍ୟରେ ଦେଖିଲେ ମନେହୁଏ ସତେଯେପରି ରକ୍ତମାଂସ ଦେହଧାରୀ ମଣିଷ ଭାବ ଏମାନେ ବିଚରଣ କରୁଛନ୍ତି । ଫକୀରମୋହନ ଯେତେବେଳେ ଯେଉଁ ଚରିତ୍ରଟିକୁ ତାଙ୍କ ଉପନ୍ୟାସରେ ନେଇଛନ୍ତି, ସେତେବେଳେ ତାକୁ ସେ ଦରଦ ଦେଇ ଅନୁଧ୍ୟାନ କରି ଚିତ୍ରିତ କରିଅଛନ୍ତି । ତେଣୁ ତାଙ୍କ ସୃଷ୍ଟିର ପ୍ରତ୍ୟେକ ଚରିତ୍ର ଆମର ଅତିନିକଟରେ, ଅତି ପରିଚିତ ପରି ମନେହୁଅନ୍ତି । କେଉଁ ଗାଁରେ ନଟବର ଦାସ ବା ମଙ୍ଗରାଜଙ୍କ ପରି ଖଳପ୍ରକୃତିର ବ୍ୟକ୍ତି ନାହାନ୍ତି ? କେଉଁଠି ଚମ୍ପା, ଚନ୍ଦ୍ରକଳା ପରି ଦୁଷ୍ଟା ପ୍ରକୃତିର ସ୍ତ୍ରୀଲୋକଙ୍କର ଅଭାବ ଅଛି ? ପୁଣି କେଉଁ ମଫସଲ ଅଞ୍ଚଳରେ ଶାରିଆ, ଭଗିଆ, ରାମଯାତ୍ରୁ ବା ନାକ-ଫୋଡ଼ିଆ ମା' ବିରଳ ? ଫକୀରମୋହନ ପୁରୁଷ ଚରିତ୍ରକୁ ଯେପରି ସଇତାନ ଓ ଦେବତ୍ୱ ଗୁଣରେ ଦୁଇଭାଗ କରି ଦେଇଅଛନ୍ତି, ନାରୀ ଚରିତ୍ରକୁ ମଧ୍ୟ ଠିକ୍

ସେହିପରି ଜୀବନ୍ତ ଭାବରେ ଦୁଇଭାଗରେ ଚିତ୍ରଣ କରିଛନ୍ତି । ଫକୀରମୋହନଙ୍କ ନାରୀ—ଗୋଟିଏ ସାଧ୍ୱୀ, ନିରୀହା, ପତିପରାୟଣା, ପରଦୁଃଖ କାତରା, ଅନ୍ୟଟି—କୁଟନୀତି ସମ୍ପନ୍ନା କାମୁକା, ସ୍ୱାର୍ଥସାଧିକା, ଭୟଙ୍କରୀ । (୧୯) ଫକୀରମୋହନଙ୍କ ଚରିତ୍ର ଚିତ୍ରଣ ସମ୍ପର୍କରେ ମୋଟାମୋଟି ଭାବେ ଏତିକି କୁହାଯାଇପାରେ ଯେ, ତାଙ୍କ ହାତରେ ମୁଖ୍ୟ ଚରିତ୍ର ଯେପରି ସୁନ୍ଦର ଭାବେ ଫୁଟିଉଠିଛି, ଗୌଣ ଚରିତ୍ର ସମୂହ ମଧ୍ୟ ସେହିପରି ଭାବେ ଚିତ୍ରିତ ହୋଇଛି । ଶାରିଆ, ଭଗିଆ, ପ୍ରଭୁଦୟାଲ୍, ରାଘବ ମହାନ୍ତି, ନାକଫୋଡ଼ିଆ-ମା' ପ୍ରଭୃତି ଗୌଣ ଚରିତ୍ର ମଧ୍ୟ ସେମାନଙ୍କ ସ୍ଥାନରେ ଭାସ୍ୱର ହୋଇଉଠିଛନ୍ତି ।

ଫକୀରମୋହନଙ୍କ ଉପନ୍ୟାସ ସାଧାରଣତଃ ଅର୍ଥନୀତିକ ସମସ୍ୟାକୁ ନେଇ ଗଢ଼ି-ଉଠିଛି । ରାମଚନ୍ଦ୍ର ମଙ୍ଗରାଜ ଜମିଦାରୀ ଲୋଭରେ ଶେଖ୍ ଦିଲ୍‌ଦାର ମିଆଁଙ୍କ ପ୍ରତି ବିଶ୍ୱାସ-ଘାତକତା କରିଛି । ସାମାନ୍ୟ ଛ'ମାଣ ଆଠଗୁଣ୍ଠ ଜମି ଓ ନେତଗାଈ ପାଇଁ ଶାରିଆ-ଭଗିଆ ଭଳି ଗରିବ ଲୋକଙ୍କର ସେ ସର୍ବନାଶ କରିଛି । ନାଜର ନଟବର ଦାସ ଆର୍ଥନୀତିକ ବିକାଶ ପାଇଁ ନିଜର ଭଣଜା ନୁରୁବାବୁଙ୍କର ସର୍ବନାଶ କରିଛି । ଚମ୍ପା ଓ ଚନ୍ଦ୍ରକଳା ଉତ୍କଟ ଆର୍ଥନୀତିକ ସମସ୍ୟା ଯୋଗୁଁ ଭ୍ରଷ୍ଟା ଓ କୁଟିଳ ହୋଇ ସମାଜରେ ଆତ୍ମପ୍ରକାଶ କରିଅଛନ୍ତି ।

ଔପନ୍ୟାସିକ ଫକୀରମୋହନ ଥିଲେ ଭାଗ୍ୟବାଦୀ । ସତ୍ୟ, ଧର୍ମ ଓ ନ୍ୟାୟ ତାଙ୍କ ଜୀବନର ବ୍ରତ ଥିଲା । ଅବଶ୍ୟ ଘଟଣାଚକ୍ରରେ ତାଙ୍କୁ ନାନା କୂଟନୀତି ପ୍ରୟୋଗ କରିବାକୁ ପଡ଼ିଥିଲା । ସେଥିପାଇଁ ତାଙ୍କ ମନରେ ଦାରୁଣ ଆଘାତ ସୃଷ୍ଟି ହୋଇଛି । ମଣିଷ ଅନ୍ୟାୟ କଲେ, ପାପ କଲେ, ଅତ୍ୟାଚାର କଲେ ଅଦୃଶ୍ୟ ଶକ୍ତି ଦ୍ୱାରା ଦଣ୍ଡପାଏ । ଏହା ସେ ବେଶ୍ ହୃଦୟଙ୍ଗମ କରିଥିଲେ । ତେଣୁ ତାଙ୍କ ଉପନ୍ୟାସରେ ଏହି ଆଦର୍ଶ ରୂପାୟିତ ହୋଇଛି । ଫକୀରମୋହନ ତାଙ୍କ ଉପନ୍ୟାସରେ ଆଦର୍ଶ ଓ ବାସ୍ତବତାର ମଧୁର ସମନ୍ୱୟ କରିଅଛନ୍ତି । ତାଙ୍କର ପାର୍ଥିବ ଜଗତ ପ୍ରତି ଥିଲା ପ୍ରଚଣ୍ଡ ବିଶ୍ୱାସ । ଏଇ ସଂସାରରେ ମଣିଷ ନର୍କଭୋଗ କରେ, ଏଇଠି ପୁଣି ସେ ସ୍ୱର୍ଗାରୋହଣ କରେ—ଏହି ଭାବକୁ ସେ ତାଙ୍କର ପ୍ରାୟ ଉପନ୍ୟାସର ଚରିତ୍ରମାନଙ୍କଠାରେ ଆରୋପିତ କରିଅଛନ୍ତି । କର୍ମ ଫଳରେ ଫକୀର-ମୋହନଙ୍କର ଅତୁଟ ତଥା ଅଟଳ ବିଶ୍ୱାସ ଥିଲା, ଯେଉଁଥିପାଇଁ ସେ ତାଙ୍କ ଉପନ୍ୟାସର ଦୁଷ୍ଟ ଚରିତ୍ରମାନଙ୍କୁ ପରିଣତିରେ କର୍ମଫଳ ଭୋଗକରିବା ପାଇଁ ଠେଲିଦେଇଛନ୍ତି ଜୀବନର ଅତଳ ଗହ୍ୱରକୁ । ଫକୀରମୋହନ ତାଙ୍କ ଉପନ୍ୟାସ ମାଧ୍ୟମରେ ସମାଜରେ ଅତ୍ୟାଚାର ଓ ପାପର ପ୍ରତିରୋଧ କରି ଆଦର୍ଶ ପ୍ରତିଷ୍ଠା ପାଇଁ ଚେଷ୍ଟା କରିଅଛନ୍ତି ।

(୧୯) "ଗୋଟିଏ ସର୍ପ-କୁମ୍ଭୀର ସଂକୁଳା ଉତ୍ତାଳ ତରଙ୍ଗମୟୀ, କୂଳ ପ୍ଲାବିନୀ ଚର୍ମଣ୍ୱତୀ ଓ ଆଉ ଗୋଟିଏ ଅନ୍ତଃସ୍ରୋତା-ପୂତ ସଲିଳା-କୂଳପ୍ଲାବିନୀ-ଫଲ୍‌ଗୁ" ।
( ଫକୀରମୋହନ ସେନାପତି )

ଚରିତ୍ର ଚିତ୍ରଣ କରିବାରେ, ଯୁଗଧର୍ମୀ ଚେତନା ଆବାହନରେ, ଘଟଣାର ଘାତ ପ୍ରତିଘାତ ବର୍ଣ୍ଣନା କରିବାରେ, ଯଥାଯଥ ଭାଷା ବ୍ୟବହାରରେ, ଉପନ୍ୟାସର ଶୈଳୀରେ ନୂତନତା ଆନୟନ କରିବାରେ ଫକୀରମୋହନ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଏକ ଯୁଗାନ୍ତକାରୀ ବିପ୍ଳବ ଆଣି ନିଜକୁ ଓଡ଼ିଆ ଉପନ୍ୟାସର ଜନକଭାବେ ପ୍ରତିଷ୍ଠିତ କରିଯାଇ-ଅଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ ।

ଫକୀରମୋହନ ସେନାପତି ତାଙ୍କ ଜୀବଦ୍ଦଶାରେ ମାତ୍ର ୪ଟି ଉପନ୍ୟାସ ରଚନା କରିଛନ୍ତି । ତାଙ୍କର 'ବିଷମଙ୍ଗି'କୁ କେହି କେହି ତାଙ୍କର ଏକ ଅପୂର୍ଣ୍ଣ ଉପନ୍ୟାସ-ଭାବେ ମଧ୍ୟ ଅଭିହିତ କରିଥା'ନ୍ତି । (୨୦) କିନ୍ତୁ ସେ ନିଜେ ଏହାକୁ ଏକ ଗଳ୍ପ ବୋଲି ଉଲ୍ଲେଖ କରିଥିବାରୁ ଏହାକୁ ଉପନ୍ୟାସ କହିବା ସମୀଚୀନ ହେବନାହିଁ । (୨୧) ସେହିପରି ଡକ୍ଟର କୃଷ୍ଣଚରଣ ବେହେରା 'ଅନାଥିନୀ'କୁ ଫକୀରମୋହନଙ୍କର ଅନ୍ୟ ଏକ ଉପନ୍ୟାସ ବୋଲି ମନେକରିଛନ୍ତି (୨୨) । କିନ୍ତୁ ଫକୀରମୋହନଙ୍କ ଉପନ୍ୟାସ କଳାର ଶ୍ରେଷ୍ଠ ମର୍ଯ୍ୟାଦା ତାଙ୍କର 'ଛମାଣ ଆଠଗୁଣ୍ଠ', 'ଲଛମା'' 'ମାମୁଁ' ଓ 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ନିହିତ ଥିବାରୁ ତାଙ୍କର ଏହି ୪ଟି ଉପନ୍ୟାସ ଅମର ଆଲେଚ୍ୟ ।

---

(୨୦) "ପ୍ରାୟଶ୍ଚିତ୍ତ" ଫକୀରମୋହନଙ୍କର ଶେଷ ଉପନ୍ୟାସ ନୁହେଁ । ୧୯୧୭ ସାଲରେ ଫକୀରମୋହନ 'ବିଷମଙ୍ଗି' ନାମରେ ଏକ ଉପନ୍ୟାସ ଲେଖା ଆରମ୍ଭ କରିଥିଲେ ।" ( ସୁରେନ୍ଦ୍ର ମହାନ୍ତି,ଫକୀରମୋହନ, ସମୀକ୍ଷା—ପ୍ରଥମ ସଂସ୍କରଣର ଭୂମିକା, ପୃଷ୍ଠା-୧୨)

(୨୧) "ଆପଣଙ୍କର ଫରମାସ ଆସିବ ଜାଣି ଗୋଟିଏ ଗଳ୍ପ ଲେଖିବାକୁ ଆରମ୍ଭ କରିଅଛୁ —ଗଳ୍ପଟିର ନାମ ବିଷମଙ୍ଗି ।" ('ଉତ୍କଳ ସାହିତ୍ୟ' ପତ୍ରିକାର ସମ୍ପାଦକ ବିଶ୍ୱନାଥ କରଙ୍କୁ ଫକୀରମୋହନଙ୍କ ପତ୍ର—'ଫକୀରମୋହନ ସମୀକ୍ଷାରୁ, ଉଦ୍ଧୃତ)

(୨୨) "ଏହି ଶ୍ରୀ ନାମଧାରୀ ଲେଖକ କଥାକାର ଫକୀରମୋହନ ସେନାପତି ଥିବାର ଅନୁମିତ ହୁଏ । ଏପରି ଅନୁମାନର କେତେକ ଯୁକ୍ତିଯୁକ୍ତ କାରଣ ରହିଛି । 'ଅନାଥିନୀ' ଓ 'ମଠର ସମ୍ବାଦ'ର ଗଦ୍ୟ ଶୈଳୀ ଫକୀରମୋହନଙ୍କ ଗଦ୍ୟ ଶୈଳୀକୁ ସ୍ମରଣ କରାଇଦିଏ । (ଡଃ କୃଷ୍ଣଚରଣ ବେହେରା, ଓଡ଼ିଆ ଉପନ୍ୟାସ, ପୃଷ୍ଠା-୧୪୮)

ପୁଣି—"ଫକୀରମୋହନ ମାତ୍ର ଚାରୋଟି ଉପନ୍ୟାସ ରଚନା କରିଛନ୍ତି । ଯଦି 'ଅନାଥିନୀ'କୁ ଫକୀରମୋହନଙ୍କ ରଚନା ବୋଲି ଗ୍ରହଣ କରାଯାଏ, ତାହାହେଲେ ଏହା ଅସମ୍ପୂର୍ଣ୍ଣ ହେଲେ ମଧ୍ୟ ତାଙ୍କର ଅନ୍ୟଏକ ଉପନ୍ୟାସ ।" (ତଦ୍ରୈବ)

ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଜମିଦାରମାନଙ୍କର ପ୍ରଜାପୀଡ଼ନ ଓ ନୂଆକରି ଗଢ଼ିଉଠୁଥିବା ପରସ୍ୱଗ୍ରାହୀ ଜମିଦାରମାନଙ୍କର କାର୍ଯ୍ୟକଳାପକୁ ନେଇ ରଚିତ । କୃତକର୍ମର ଫଳପ୍ରାପ୍ତି ଏହି ଉପନ୍ୟାସର ପରିଣତିରେ ପରିଲକ୍ଷିତ । ରାମଚନ୍ଦ୍ର ମଙ୍ଗରାଜ ଏହି ପରସ୍ୱଗ୍ରାହୀ ଜମିଦାରଶ୍ରେଣୀର ପ୍ରତୀକ । ତା'ର ସ୍ୱାର୍ଥ ସାଧନ ପାଇଁ ସେ ସବୁକିଛି କରିପାରେ । ତା'ର ଜଟିଳ, କୁଟିଳ, ମାୟାବଧୃତ ସ୍ୱରୂପ 'ଛ'ମାଣ ଆଠଗୁଣ୍ଠ'ରେ ସବୁଠାରେ ବିଦ୍ୟମାନ । ସେ ତା'ର କୁଟିଳତାର ମାୟାଜାଲ ଦ୍ୱାରା ପ୍ରହାର ଦେଇଛି । ତା'ର ଚକ୍ରାନ୍ତରେ ସାରିଆ ଭଗିଆଙ୍କ 'ଛ'ମାଣ ଆଠଗୁଣ୍ଠ' ରାମଚନ୍ଦ୍ର ମଙ୍ଗରାଜଙ୍କ କରଗତ ହୋଇପାରିଛି । ଜମିଦାର ବାଘସିଂହ ଘରେ ନିଆଁ ଲାଗିଛି । କିନ୍ତୁ ଏହାର ପରିଣତି ରାମଚନ୍ଦ୍ର ମଙ୍ଗରାଜଙ୍କୁ ହିଁ ହାଡ଼େ ହାଡ଼େ ଭୋଗ କରିବାକୁ ପଡ଼ିଛି । ଏହାପରେ ରାମଚନ୍ଦ୍ର ମଙ୍ଗରାଜଙ୍କ ପାପାର୍ଜିତ ସମ୍ପତ୍ତି ବଳସ୍ତ ସହ ବେବୁନିଆଦ ଜମିଦାରୀର ପତନ ଘଟିଛି । ଫକୀରମୋହନଙ୍କ ଏହି ଉପନ୍ୟାସଟି ୧୮୯୭ ମସିହାରୁ 'ଉତ୍କଳ ସାହିତ୍ୟ' ପତ୍ରିକାରେ ଧାରାବାହିକ ଭାବରେ ପ୍ରକାଶିତ ହୋଇଥିଲା । ଏହି ଉପନ୍ୟାସ ପାଠକ ମହଲରେ ଏପରି ଆଦୃତ ଲାଭ କରିଥିଲା ଯାହାଦ୍ୱାରା କି 'ଉତ୍କଳ ସାହିତ୍ୟ' ଲେଖିଥିଲା—"ରାମଚନ୍ଦ୍ର ମଙ୍ଗରାଜଙ୍କ ବିଚାର କାହାଣୀ ପତ୍ରିକାରେ ପ୍ରକାଶିତ ହେଲାବେଳେ ମଫସଲର ଅଳ୍ପ ବ୍ୟକ୍ତିମାନେ ମକଦ୍ଦମା ବିଚାର ଦେଖିବା ପାଇଁ କଟକରେ ଆସି ପହଞ୍ଚିଥିଲେ ।" ଫକୀରମୋହନଙ୍କ ସ୍ୱଭାବସୁଲଭ ଭାଷା, ବର୍ଣ୍ଣନା ନୈପୁଣ୍ୟ ଓ କଳାକୁଶଳତା 'ଛ'ମାଣ ଆଠଗୁଣ୍ଠ'ର ଉପନ୍ୟାସକୁ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନ ଦେଇଛି ।

'ଛମାଣ ଆଠଗୁଣ୍ଠ' ଉପନ୍ୟାସ ପରେ ଫକୀରମୋହନଙ୍କର ଦ୍ୱିତୀୟ ଉପନ୍ୟାସ ହେଉଛି 'ଲଛମା' । ୧୯୦୧ ମସିହାରେ ଏହା ପ୍ରକାଶ ପାଇଥିଲା । ଏହା ଏକ ଐତିହାସିକ ଉପନ୍ୟାସ । ଏହି ଉପନ୍ୟାସରେ ଫକୀରମୋହନ ମରହଟ୍ଟା ବର୍ଗୀ ଅତ୍ୟାଚାରର ହୃଦୟ-ବିଦାରକ କାହାଣୀ ପରିବେଷଣ କରିଅଛନ୍ତି । ଓଡ଼ିଶା, ବଙ୍ଗ, ବିହାରରେ ମରହଟ୍ଟା ଶାସନ (୧୭୫୧-୧୮୦୩) କାଳୀନ ଅପଶାସନରେ ନିର୍ମମ ପରିଣତି ଏହାର କୈନ୍ଦ୍ରିକ ଉପଜୀବ୍ୟ ବିଷୟ । ମରହଟ୍ଟାବର୍ଗୀମାନଙ୍କ ରାହାଜାନୀରୁ ଏହି ଉପନ୍ୟାସର ଅଭ୍ୟୁଦୟ । ଉପନ୍ୟାସର ମୁଖ୍ୟନାୟିକା 'ଲଛମା' ଜଣେ ପଶ୍ଚିମା ରମଣୀ । ସ୍ୱାମୀ ଓ ପିତାମାତାଙ୍କ ସହ ଜଗନ୍ନାଥ ଦର୍ଶନ ଉଦ୍ଦେଶ୍ୟରେ ଆସିଥିବା ଏହି ରମଣୀ ବାଲେଶ୍ୱର ଜିଲ୍ଲାର ଗୋଡ଼ଖାଲଠାରେ ମରହଟ୍ଟା ବର୍ଗୀ ଅତ୍ୟାଚାରର ସମ୍ମୁଖୀନ ହୋଇ ପରିବାର ଲୋକଙ୍କଠାରୁ ବିଚ୍ଛିନ୍ନ ହୋଇଛି । ସ୍ୱାମୀ ପରିବାରଠାରୁ ବିଚ୍ଛିନ୍ନ ହୋଇ 'ଲଛମା' ରାଇବଣିଆ ଦୁର୍ଗରେ ଆଶ୍ରୟ ଗ୍ରହଣ କରିଛି । ଏହି ଦୁର୍ଗର ଅଧିପତି ମାନ୍ଧାତା ବୈଷ୍ଣବଚରଣ ଓ ରାଣୀ ମହାଦେବୀ ନିଃସନ୍ତାନ ଥିବାରୁ ଲଛମାକୁ କନ୍ୟାରୂପେ ଗ୍ରହଣ କରିଥିବାନ୍ତି । ମରହଟ୍ଟା ସେନାବାହିନୀ ରାଇବଣିଆ ଦୁର୍ଗକୁ ଆକ୍ରମଣ କରିଛନ୍ତି ଓ ମାନ୍ଧାତା ବର୍ଗୀ ସୁବେଦାର ଭାସ୍କର ପଣ୍ଡିତଙ୍କ ଦ୍ୱାରା ବନ୍ଦୀ-

ହୋଇ ଶେଷରେ ନିହତ ହୋଇଛନ୍ତି । ମାନ୍ଧାତାଙ୍କ ଚକ୍ରାନ୍ତରେ ମହାରାଣୀ ଝାସ ଦେଇ-ଛନ୍ତି । ଲଛମା ମରହଟ୍ଟା ବର୍ଗୀମାନଙ୍କର ପ୍ରତିଶୋଧ ନେବା ସକାଶେ ଛଦ୍ମ ବେଶରେ ବର୍ଗୀମାନଙ୍କ ଗହଣରେ ଆଶ୍ରୟ ନେଇଛି । ଲଛମାର ସ୍ୱାମୀ ବାଦଲସିଂହ ମଧ୍ୟ ପ୍ରତିଶୋଧର ସଂକଳ୍ପ ନେଇ ପୂର୍ବରୁ ଅଲ୍ଲବର୍ଦ୍ଦିଖାଁଙ୍କ ବିଶ୍ୱାସଭାଜନ ହୋଇ ତାଙ୍କର ସେନାବାହିନୀରେ ଆଶ୍ରୟ ନେଇଛନ୍ତି । ଅଲ୍ଲବର୍ଦ୍ଦିଖାଁଙ୍କ କୂଟଚକ୍ରାନ୍ତ ଦ୍ୱାରା ତାଙ୍କ ସହିତ ଭାସ୍କର ପଣ୍ଡିତ ମନ୍ତ୍ରଣା କକ୍ଷକୁ ଆସି ସେଠାରେ ନିହତ ହୋଇଛନ୍ତି । ଲଛମା ଓ ବାଦଲ ସିଂହ ପରି-ଶେଷରେ ଗୟା କ୍ଷେତ୍ରରେ ପିଣ୍ଡଦାନ ଅବସରରେ ଅପୂର୍ବ ଭାବରେ ମିଳିତ ହୋଇଛନ୍ତି । ଏହାହିଁ ଆଲୋଚ୍ୟ ଉପନ୍ୟାସର କଥାବସ୍ତୁ । ଫକୀରମୋହନ 'ଲଛମା' ଉପନ୍ୟାସରେ କେବଳ ମରହଟ୍ଟା ଅତ୍ୟାଚାର ଓ ସେ ସମୟର ଇତିହାସକୁ ଲିପିବଦ୍ଧ କରିନାହାନ୍ତି; ବରଂ ଓଡ଼ିଆ ଜାତିର ଜୀବନ—ନାଟକରେ ଘଟିଥିବା କରୁଣ ମୂର୍ଚ୍ଛନାକୁ ଅଭିବ୍ୟକ୍ତି କରିଛନ୍ତି । ଇତିହାସର ବାସ୍ତବ ଘଟଣା ଉପରେ ରଚିତ ଏ ଉପନ୍ୟାସଟିରେ ସ୍ରଷ୍ଟାର ସ୍ୱାଧୀନ ଚିନ୍ତା-ଧାରା, ଜୀବନ୍ତ ସାମାଜିକ ରୂପକଳ୍ପନା ଏହାକୁ ବାସ୍ତବରେ କାଳୋତ୍ତୀର୍ଣ୍ଣ କରିପାରିଛି ।

'ମାମୁଁ', ଉପନ୍ୟାସରେ ଫକୀରମୋହନ ଅମଲାତନ୍ତ୍ରର ଶୋଷଣ ଦୃଶ୍ୟର ଚିତ୍ର ପ୍ରଦାନ କରିଅଛନ୍ତି । ନାଜର ନଟବର ଦାସ ଏହାର ଜ୍ୱଳନ୍ତ ଉଦାହରଣ । ଭଣଜା ନର-ହରିର ସର୍ବସ୍ୱାନ୍ତ ପାଇଁ ନାଜର ନଟବର ଦଶ୍ଚିକ୍ରଚ୍ଛି ଅଭିନୟ କରିବାକୁ ଅଗ୍ରସର ହୋଇ-ଛନ୍ତି । 'ମାମୁଁ'ର ପରିଣତି କିନ୍ତୁ 'ଛମାଣ ଆଠଗୁଣ୍ଠ' ଠାରୁ ଭିନ୍ନ ହୋଇଛି । 'ଛମାଣ ଆଠଗୁଣ୍ଠ'ରେ ଦୈବିର ଶାସ୍ତି ବିଧାନ 'ମାମୁଁ'ରେ ତୀବ୍ର ଅନୁଶୋଚନାରେ ପରିଣତ ହୋଇଛି । ନଟବର ନିଜର କୃତକର୍ମକୁ ନିଜେ ପରେ ବୁଝିପାରିଛନ୍ତି—କିନ୍ତୁ ସେତେ-ବେଳେ ଅପେରନ୍ତ୍ରା ସମୟ ଘଟଣାକୁ ଆଡ଼େଇବାର ସୀମାପାର ହୋଇ ବହିଯାଇଛି ।

ଫକୀରମୋହନଙ୍କ 'ପ୍ରାୟଶ୍ଚିତ୍ତ' ତାଙ୍କର ଶେଷ ଉପନ୍ୟାସ । ସମାଜର ପୃଷ୍ଠଭୂମି ଉପରେ ଏହା ରଚିତ । ପାଶ୍ଚାତ୍ୟ ଶିକ୍ଷିତ ସୂର୍ଯ୍ୟ, ସ୍ୱାଚ୍ଛନ୍ଦ୍ୟ, ସମ୍ଭ୍ରାନ୍ତ ଶ୍ରେଣୀର ଅନ୍ତର୍ଭୁକ୍ତ ହେବା-ପାଇଁ ଗଭୀର ଅଭିପ୍ସାରେ ଏହି ଉପନ୍ୟାସର କଥାବସ୍ତୁ ଓ ଚରିତ୍ରମାନ ଚିତ୍ରିତ ହୋଇଛି । ଶିକ୍ଷିତ ଯୁବକମାନଙ୍କର ଅଭିଭାବକମାନଙ୍କ ମତ ବିରୁଦ୍ଧରେ କାର୍ଯ୍ୟକଳାପ, ଅତ୍ୟଧିକ ବିଶ୍ୱାସଜନିତ ବନ୍ଧୁପ୍ରୀତି ଓ ତଜ୍ଜନିତ ଶଠତାର ଶୀକାର ହୋଇ ଏହି ଉପନ୍ୟାସର ନାୟକ ଗୋବିନ୍ଦଙ୍କ ଜୀବନଦୀପ ନିର୍ବାପିତ ହୋଇଯାଇଛି । ପରିଣତିରେ ଅଛିଟ୍ଟ ଟ୍ରାଜେଡ଼ି । କୃତକର୍ମ ପାଇଁ ଆଲୋଚ୍ୟ ଉପନ୍ୟାସର ଅନ୍ୟାନ୍ୟ ଚରିତ୍ରବୃନ୍ଦ ପ୍ରାୟଶ୍ଚିତ୍ତ କରିଛନ୍ତି ଅନୁ-ଶୋଚନାର ଅନଳରେ ।

ଏହିପରି ଭାବେ ଫକୀରମୋହନ ସେନାପତି ଦୁଇଶତ ବର୍ଷର ଉତ୍କଳୀୟ ଜନ-ଜୀବନର ଧାରା, ଓଡ଼ିଶାର ସାମାଜିକ ଅବକ୍ଷୟ, ରାଜନୀତିକ ପରିବର୍ତ୍ତନ, ଅନ୍ୟାୟ,

ଅତ୍ୟାଚାର, ଶୋଷଣ, ପେଷଣ ଏବଂ ଏହିପରି ଅନେକ ବାସ୍ତବ ଘଟଣାକୁ କେନ୍ଦ୍ରକରି ତାଙ୍କ ଉପନ୍ୟାସର କଳେବରକୁ ଶ୍ରୀମଣ୍ଡିତ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଉପନ୍ୟାସର ଆଦ୍ୟ-ପର୍ବରେ ନିଜର ସ୍ୱାତନ୍ତ୍ର୍ୟ ଜାହିର—କରିଯାଇଛନ୍ତି । ଏବେ ବି ତାଙ୍କ ପ୍ରଭାବ ଓଡ଼ିଆ ଉପନ୍ୟାସ ଜଗତରେ ଅନତିକ୍ରାନ୍ତ ଓ ଅତୁଳନୀୟ ।

ଓଡ଼ିଆ ସାହିତ୍ୟରେ ଫକୀରମୋହନ ଓ ତାଙ୍କ ସୃଷ୍ଟି ସମ୍ପଦର ଆଲୋଚନା ବହୁ-ଭାବେ ହୋଇସାରିଛି । କେହି କେହି ତାଙ୍କୁ ଅନେକ ସାମ୍ୟ ଓ ନାନାଦି କାରଣରୁ ତାଙ୍କୁ ଇଂରେଜ ଔପନ୍ୟାସିକ ଚାର୍ଲସ୍ ଡିକେନ୍ସ ଓ ଥମାସ୍ ହାର୍ଡ଼ିଙ୍କ ସହ ତୁଳନା କରନ୍ତି । କିନ୍ତୁ ଆମେରିକୀୟ ଉପନ୍ୟାସ ଜଗତର ଅନ୍ୟତମ ପ୍ରଭାବଶାଳୀ ଔପନ୍ୟାସିକ ନାଥ୍‌ନିଏଲ୍ ହଥର୍ଣ୍ଣଙ୍କ ସହ ତାଙ୍କର ଯେ ଅନେକାଂଶରେ ସାମ୍ୟରହିଛି, ତାହା ଅଦ୍ୟାବଧି କେହି ଆଲୋଚନା କରିନାହାନ୍ତି । ଊନବିଂଶ ଶତାବ୍ଦୀର ଆମେରିକୀୟ ଉପନ୍ୟାସ ଜଗତରେ ଔପନ୍ୟାସିକ ହଥର୍ଣ୍ଣ ଜଣେ ପ୍ରଭାବଶାଳୀ ଲେଖକ । ଫକୀରମୋହନଙ୍କ ଜନ୍ମର ମାତ୍ର ୩୯ ବର୍ଷ ପୂର୍ବରୁ ଅର୍ଥାତ୍ ୧୮୦୪ ମସିହାରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପାରିବାରିକ ଅବସ୍ଥା, ଜନ୍ମ ସମୟଠାରୁ ଜୀବନର ଅବସାନ ପର୍ଯ୍ୟନ୍ତ ଦୈନ୍ୟ, ଜନ୍ତ୍ରଣା ଜର୍ଜରିତ ଜୀବନ-ଧାରା, ତାଙ୍କ ଉପନ୍ୟାସ ସୃଷ୍ଟିର ମୂଳପିଣ୍ଡ । ଏସବୁକିଛିର ଅନେକ ସାମ୍ୟ ଫକୀର-ମୋହନଙ୍କ ଠାରେ ପରିଲକ୍ଷିତ ହୁଏ । ଏପରିକି ଉଭୟଙ୍କ ଉପନ୍ୟାସ ସୃଷ୍ଟିର ସମସାମୟିକ ଦେଶଜଚିନ୍ତା ଓ କାଳଗତ ମୂଲ୍ୟବୋଧ ମଧ୍ୟ କେତେକାଂଶରେ ସମଧର୍ମୀ ପରି ମନେହୁଏ ।

ତେଣୁ ପରବର୍ତ୍ତୀ ପର୍ଯ୍ୟାୟରେ ଆମେରିକାର ଏହି ପ୍ରଖ୍ୟାତ ଔପନ୍ୟାସିକ ହଥର୍ଣ୍ଣ ଓ ଆମର ଅମର ଔପନ୍ୟାସିକ ଫକୀରମୋହନଙ୍କ କାଳଗତ ମୂଲ୍ୟବୋଧକୁ ତତ୍ତ୍ୱ ଓ ତଥ୍ୟ-ଭିତ୍ତିକ ଭାବେ ଆଲୋଚନା କରାଯାଇପାରେ । ଏହି ଦୁଇ ସ୍ରଷ୍ଟାଙ୍କ ମଧ୍ୟରେ, ତାଙ୍କ ସୃଷ୍ଟି ସମ୍ପଦ ମଧ୍ୟରେ ତୁଳନାତ୍ମକ ଅଧ୍ୟୟନ କରାଯିବା ପୂର୍ବରୁ ଉଭୟଙ୍କ ସମସାମୟିକ କାଳ ସେମାନଙ୍କୁ ନିଜ ନିଜ ସୃଷ୍ଟି ମଧ୍ୟରେ ନିମ୍ନୋଜିତ ହେବାର କିପରି ପ୍ରେରଣା ଦେଇଥିଲା ଓ ତାହା କିଭଳି ଭାବେ ସେମାନଙ୍କ ସୃଷ୍ଟି ସମ୍ପଦରେ ପ୍ରତିଫଳିତ ହୋଇଛି ତାହା ପ୍ରଥମେ ଆମର ଆଲୋଚନାର ପରିସର ଭୁକ୍ତ ହେବା ଆବଶ୍ୟକ । ଏହି ନ୍ୟାୟରେ "ତୁଳନାତ୍ମକ ବିଚାରଧାରାରେ "ଔପନ୍ୟାସିକ ହଥର୍ଣ୍ଣ ଓ ଫକୀରମୋହନଙ୍କ କାଳଗତ ମୂଲ୍ୟବୋଧ" ପରବର୍ତ୍ତୀ ପର୍ଯ୍ୟାୟରେ ଆମର ଆଲୋଚ୍ୟ ।

# ତୁଳନାତ୍ମକ ବିଚାରଧାରାରେ ଔପନ୍ୟାସିକ ହଥର୍ଣ୍ଣ ଓ ଫକୀରମୋହନଙ୍କ କାଳଗତ ମୂଲ୍ୟବୋଧ

## (କ) ହଥର୍ଣ୍ଣ

ସାହିତ୍ୟ ସମାଜର ପ୍ରତିଛବି । ସମସାମୟିକ ସମାଜର ଶ୍ରେୟ ବା ସମସ୍ୟାର ପ୍ରତିଫଳନ ସାହିତ୍ୟରେ ଘଟିଥାଏ । ଏହା ଦେଶ କାଳାତୀତ । ପ୍ରତ୍ୟେକ ଦେଶ ବା ଜାତିର ସାହିତ୍ୟରେ ଏହି ସତ୍ୟ ଅନୁରଣିତ । ଭାରତ ଠାରୁ ସୁଦୂର ଆମେରିକା ପର୍ଯ୍ୟନ୍ତ ସାହିତ୍ୟରେ ଏହି ସତ୍ୟ ହିଁ ପ୍ରତିଧ୍ୱନିତ ହୋଇଛି । ଆମେରିକା ଦୀର୍ଘ କାଳ ଇଂଲଣ୍ଡର ଶାସନାଧୀନ ଥିଲା । ଇଂରେଜମାନଙ୍କ ଅତ୍ୟାଚାରରେ ଜର୍ଜରିତ ଆମେରିକୀୟମାନେ ନିଜକୁ ସ୍ୱାଧୀନ କରିବା ପାଇଁ ବ୍ୟାକୁଳ ହୋଇ ପଡ଼ିଲେ । ଫଳରେ ଜର୍ଜ ଓ୍ୱାଶିଂଟନ୍‌ଙ୍କ ନେତୃତ୍ୱରେ ଆମେରିକାର ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇଗଲା । ଆମେରିକୀୟମାନଙ୍କର ସ୍ୱାଧୀନତା ଦାବୀକୁ ଇଂରେଜ ସରକାର ମାନି ନେଲେ । ଆମେରିକା ୧୭୮୩ ସନ୍ଧିହାରେ ସ୍ୱାଧୀନ ହେଲା ଏବଂ ୧୭୮୭ରେ ନିଜର ସ୍ୱତନ୍ତ୍ର ସମ୍ବିଧାନ ଗଠନ କରି ଏକ ଯୁକ୍ତରାଷ୍ଟ୍ରଭାବେ ସ୍ୱୟଂ ଶାସିତ ହେବାର ସୌଭାଗ୍ୟ ଲାଭକଲା । ଆମେରିକୀୟ ରାଜନୈତିକ ସ୍ଥିତିରେ ତା'ର ସାହିତ୍ୟର ଅବଦାନ ମଧ୍ୟ ଅନସ୍ୱୀକାର୍ଯ୍ୟ । ସ୍ୱାଧୀନତା ସଂଗ୍ରାମର ଗତିମୁଖର ପରିସରେ ଲୋକମାନଙ୍କୁ ସ୍ୱାଧୀନତାର ସଙ୍କଳ୍ପ କୁଣ୍ଡକୁ ଡେଇଁ ପଡ଼ିବା ପାଇଁ ତତ୍‌କାଳୀନ ଆମେରିକୀୟ ସାହିତ୍ୟକମାନେ ସେମାନଙ୍କ ରଚନାବଳୀ ମାଧ୍ୟମରେ ଯେଉଁ ଆହ୍ୱାନ ଦେଇଥିଲେ ତାହା ଭୁଲିବାର ନୁହେଁ । ଆମେରିକା ସ୍ୱାଧୀନତା ପାଇଲା ସତ୍ୟ କିନ୍ତୁ ସ୍ୱାଧୀନତାର ପ୍ରାକ୍ କାଳରେ ଦାସତ୍ୱ ପ୍ରଥା ବିରୁଦ୍ଧରେ ତତ୍‌କାଳୀନ ଯୁବଗୋଷ୍ଠୀ ଓ ପ୍ରତିକ୍ରିୟାଶୀଳ ଗୋଷ୍ଠୀଙ୍କ ଆହ୍ୱାନ ତତ୍‌କାଳୀନ ଶାସକବର୍ଗଙ୍କଠାରେ ଘୋର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ପୁଣି ଆମେରିକୀୟ ମାନେ ଏପରି ଅନ୍ଧବିଶ୍ୱାସୀ ଓ ରକ୍ଷଣଶୀଳ ତଥା କୁସଂସ୍କାରଧର୍ମୀ ଥିଲେ ଯେ, ତତ୍‌କାଳୀନ ସମାଜପତିମାନେ ଏହାର ସୁବିଧା ନେଇ ନୀତି,ନ୍ୟାୟ, ଧର୍ମର ନାମରେ ବହୁ ଅନର୍ଥ, ଅପ୍ରୀତିକର ସ୍ୱାର୍ଥନ୍ୱେଷୀ କାଣ୍ଡ ମାନ କରି ନିରୀହ ଜନତାଙ୍କୁ ଶୋଷଣ କରୁଥିଲେ । ଏହି ସନ୍ଧିସନ୍ଧ ମୁହୂର୍ତ୍ତରେ ଆମେରିକୀୟ ସାହିତ୍ୟରେ ହଥର୍ଣ୍ଣଙ୍କ ଆବିର୍ଭାବ ଓ ତାଙ୍କ

ଉପନ୍ୟାସରେ ତତ୍କାଳୀନ ଆମେରିକୀୟ ସମାଜର ଏହି ଦୁରାଗ୍ରହର ବର୍ଣ୍ଣନା ଆମେରିକୀୟ ସାହିତ୍ୟରେ ଗମ୍ଭୀର ଆଲୋଡ଼ନ ସୃଷ୍ଟି କରିଥିଲା । ତେଣୁ ହଥର୍ଣ୍ଣଙ୍କ ସମସାମୟିକ ଆମେରିକୀୟ ସମାଜର ପ୍ରତିଫଳନ ଘଟିଛି ତାଙ୍କ ସାହିତ୍ୟରେ । ହଥର୍ଣ୍ଣ ତତ୍କାଳୀନ କାଳ (ସମୟ)ର ନିଚ୍ଛକ ପ୍ରତିନିଧିତ୍ୱ କରିଛନ୍ତି ତାଙ୍କ ସାହିତ୍ୟ ମାଧ୍ୟମରେ । ଅତଏବ ଆମେରିକୀୟ ସାହିତ୍ୟରେ ହଥର୍ଣ୍ଣଙ୍କ ସମସାମୟିକ କାଳଗତ ମୂଲ୍ୟବୋଧ ତାଙ୍କ କଳା-କୃତିର ଏକ ମହାନ୍ ସମ୍ପଦ ଓ କଷଟୀରୂପ ।

ଆମେରିକା ସ୍ୱାଧୀନତା ପାଇବାର ଏକୋଇଶ ବର୍ଷ ପରେ (୧୮୦୪) ହଥର୍ଣ୍ଣ ଜନ୍ମଗ୍ରହଣ କରିଥିଲେ । କିନ୍ତୁ ତାଙ୍କ ଜନ୍ମଠାରୁ ଦୀର୍ଘ ୪୬ ବର୍ଷ ପରେ ତାଙ୍କର ପ୍ରଥମ ଉପନ୍ୟାସ **"The Scarlet Letter" (1850)** ପ୍ରକାଶ ପାଇଥିଲା । ଏହା ପୂର୍ବରୁ ଅବଶ୍ୟ ସେ ଅନେକ ଗଳ୍ପ ରଚନା କରିଥିଲେ କିନ୍ତୁ ତାଙ୍କ ପ୍ରତିଭାର ଚରମ ବିକାଶ ଘଟିଲା ଉପନ୍ୟାସ ରଚନାରେ । ଆମେରିକା ସ୍ୱାଧୀନତା ପାଇବାର ଦୀର୍ଘ ୬୭ ବର୍ଷ ପରେ ତାଙ୍କ ଉପନ୍ୟାସରେ ସେ ଯେଉଁ ଚିତ୍ର ବର୍ଣ୍ଣନା କରିଛନ୍ତି ତାହା ପ୍ରକୃତରେ ଆମେରିକାର ପରାଧୀନ ଜନିତ ଅତ୍ୟାଚାର, ଅନ୍ଧବିଶ୍ୱାସ ଜନିତ ଶୋଷଣ, ପେଷଣ, ସ୍ୱେଚ୍ଛାଚାର ଓ ସ୍ୱୈରାଚାରକୁ ନେଇ । ପୁଣି ତାଙ୍କ ସମସାମୟିକ ସମାଜର ଛାୟା ମଧ୍ୟ ଏଥିରେ ପ୍ରତିଫଳିତ । ଅତଏବ ହଥର୍ଣ୍ଣଙ୍କ ଉପନ୍ୟାସ ଏକ ନିର୍ଦ୍ଦିଷ୍ଟ କାଳର ନୁହେଁ, ଏହା ଆମେରିକୀୟ ଜନଜୀବନର ପରାଧୀନ କାଳଠାରୁ ସ୍ୱାଧୀନତା ପାଇବାପରର ଅବ୍ୟବସ୍ଥିତ ସମାଜର ଦୀର୍ଘ ଦୁଇଶତ ବର୍ଷର ଇତିହାସ ।

ଊନବିଂଶ ଶତାବ୍ଦୀର ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣ ତାଙ୍କର ନୂତନ ଶୈଳୀ, ମାର୍ଜିତ ରୁଚିବୋଧ ଓ ତତ୍କାଳୀନ ଆମେରିକାର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ସମସ୍ୟାକୁ ତାଙ୍କ ଉପନ୍ୟାସରେ ନିଖୁଣଭାବେ ରୂପ ଦେଇ ଆମେରିକୀୟ ଉପନ୍ୟାସ ଜଗତରେ ଅବିସ୍ମରଣୀୟ ହୋଇ ରହିଛନ୍ତି । ସେ ଆମେରିକାର ମାସାଚୁସେଟ୍ସ ସହରରେ ୧୮୦୪ ମସିହାରେ ଜନ୍ମଗ୍ରହଣ କରିଥିଲେ । କୁପର୍ଙ୍କ ପରବର୍ତ୍ତୀ ଔପନ୍ୟାସିକ ଭାବେ ସେ ଆମେରିକୀୟ ଉପନ୍ୟାସ ଜଗତରେ ବେଶ୍ ପ୍ରତିଷ୍ଠିତ ଓ ଖ୍ୟାତିସମ୍ପନ୍ନ । ଅତି ବାଲ୍ୟାବସ୍ଥାରୁ ପିତାଙ୍କୁ ହରାଇ ଏକ ଅନିଶ୍ଚିତ ସାମାଜିକ ପୃଷ୍ଠଭୂମି ଉପରେ ହଥର୍ଣ୍ଣଙ୍କ ବାଲ୍ୟାବସ୍ଥା ଅତି ଶୋଚନୀୟ ହୋଇ ପଡ଼ିଥିଲା । ତଥାପି ଜୀବନ ସଂଗ୍ରାମର ପୃଷ୍ଠଭୂମିରେ ଅଶେଷ ସାହସ ଓ ପ୍ରଚଣ୍ଡ ଧୈର୍ଯ୍ୟରସହ ସେ ନିଜକୁ ଅବତାରଣା କରି ଶିକ୍ଷାପ୍ରାପ୍ତ ଓ ଜଣେ ପ୍ରତିଷ୍ଠିତ ସାହିତ୍ୟିକ ଭାବେ ଖ୍ୟାତି ସମ୍ପନ୍ନ କରାଇ ପାରିଥିଲେ । ନିଜ ଜୀବନର ତଥା ପରିବାରର ବିକଳ—ବିଧ୍ୱସ୍ତ ରୂପ ଓ ତଜ୍ଜନିତ ଅଭିଜ୍ଞତା, ତତ୍କାଳୀନ ଆମେରିକୀୟ ସମାଜର ଅଧଃପତନ, ସାମାଜିକ ନ୍ୟାୟଦାବୀ ତଥା ସଂସ୍କାରବାଦୀ ମନୋବୃତ୍ତି ନେଇ ସେ

ତାଙ୍କ ଉପନ୍ୟାସ ଜଗତକୁ ଋଦ୍ଧିମନ୍ତ କରିଯାଇଛନ୍ତି । ତାଙ୍କ ଜୀବନର ଆଦ୍ୟ ତିରିଶ ବର୍ଷ ପରେ ସେ ଜଣେ ପ୍ରତିଷ୍ଠିତ ଲେଖକ ହେବାର ଗୌରବ ଅର୍ଜନ କରିଥିଲେ । ୧୮୩୦ରୁ ୧୮୫୦ ମସିହା ପର୍ଯ୍ୟନ୍ତ ଦୀର୍ଘ କୋଡ଼ିଏ ବର୍ଷ କାଳ ସେ ଗାଳ୍ପିକ ଭାବେ ଆମେରିକୀୟ ସାହିତ୍ୟରେ ଦେଖା ଦେଇ ପରବର୍ତ୍ତୀ ସମୟରେ ଜଣେ ଉଚ୍ଚକୋଟୀର ଔପନ୍ୟାସିକ ଭାବେ ପରିଚିତ ହୋଇ ପାରିଥିଲେ । ସମୟର ନିର୍ଣ୍ଣୟ ତାଙ୍କୁ ଏ ସମ୍ମାନ ପ୍ରଦାନ କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

ହଥର୍ଣ୍ଣଙ୍କ ସମସାମୟିକ କାଳକୁ ଆମେରିକୀୟ ସମାଜର ଅବକ୍ଷୟ ଆରମ୍ଭ ହୋଇଥାଏ । ରକ୍ଷଣଶୀଳ ତଥା ସଂସ୍କାର ନାମରେ ପୁଞ୍ଜିବାଦୀ ତଥା ରକ୍ଷଣଶୀଳ ସମାଜପତିମାନେ ନାନା କୁକର୍ମରେ ଲିପ୍ତ ରହିଥିଲେ । କୁଳାଚାର ନାମରେ ଏମାନେ ବ୍ୟଭିଚାର ହିଁ ଆରମ୍ଭ କରିଦେଇଥିଲେ । ପାପ-ପୁଣ୍ୟର ସ୍ୱର ଉଠାଇ ଏମାନେ ପୁଣ୍ୟର ଆଦର୍ଶ ଦେଇ ପ୍ରକୃତ ପାପ କର୍ମରେ ହିଁ ଲିପ୍ତ ଥିଲେ । ଏହିପରି ଏକ ଅନାଦର୍ଶ ସମାଜର ଚିତ୍ର ହଥର୍ଣ୍ଣ ତାଙ୍କ ପ୍ରଥମ ଉପନ୍ୟାସ 'The Scarlet Letrer' (1850) ରେ ବର୍ଣ୍ଣିତ କରିଯାଇଛନ୍ତି । ହଥର୍ଣ୍ଣ ତାଙ୍କର ଏହି ଉପନ୍ୟାସ ପ୍ରକାଶନର ମାତ୍ର ଗୋଟିଏ ବର୍ଷ ପରେ ଅର୍ଥାତ୍ ୧୮୫୧ ମସିହାରେ 'The House of the Seven Gables' ନାମକ ଅନ୍ୟ ଏକ ଉପନ୍ୟାସ ପ୍ରକାଶ କରିଥିଲେ । ଆର୍ଥନୀତିକ ସମସ୍ୟା ତଥା ଭୂମି-କୈନ୍ଦ୍ରିକ ଆମେରିକୀୟ ରକ୍ଷଣଶୀଳ ସମାଜ ଓ ବୁନିଆଦର ବଳୟଚିତ୍ର ଏହି ଉପନ୍ୟାସରେ ହଥର୍ଣ୍ଣ ବର୍ଣ୍ଣନା କରିଛନ୍ତି । ଏହା ପରେ ପରେ ହଥର୍ଣ୍ଣ ୧୮୫୨ ମସିହାରେ ତାଙ୍କର ତୃତୀୟ ଉପନ୍ୟାସ 'The Blithedale Romance' ଓ ୧୮୬୦ ମସିହାରେ ତାଙ୍କ ଶେଷ ପୂର୍ଣ୍ଣାଙ୍ଗ ଉପନ୍ୟାସ 'The Marble Faun' ରଚନା କରିଥିଲେ । ଏହି ଚାରୋଟି ଉପନ୍ୟାସ ମଧ୍ୟରୁ ସେ 'The Scarlet Letter' ଓ 'The House of the Seven Gables' ଉପନ୍ୟାସ ଦୁଇଟିରେ ଆଶାତୀତ ସଫଳତା ହାସଲ କରିଥିଲେ । ତେବେ 'The House of the Seven Gables' ଉପନ୍ୟାସ ପରିପ୍ରେକ୍ଷୀରେ ତାଙ୍କର କାଳଗତ ମୂଲ୍ୟବୋଧକୁ ଆଲୋଚନା କରାଯାଇପାରେ । କାରଣ ଏହି ଉପନ୍ୟାସରେ ପ୍ରକୃତରେ ଆମେରିକୀୟ ସମାଜର ଉପରଦେଖାଣିଆ ବିଭବଶାଳୀ ରୂପ ଅଥଚ ଅବକ୍ଷୟିଷ୍ଣୁ ସାମାଜିକ ଧାରା ହିଁ ପ୍ରତିଫଳିତ ହୋଇଛି ।

ଔପନ୍ୟାସିକ ହଥର୍ଣ୍ଣ ମନୁଷ୍ୟ ଯେ ପ୍ରବୃତ୍ତିର ଦାସ ତାହା ବେଶ୍ ହୃଦୟଙ୍ଗମ କରିଥିଲେ । ପୁଣି ସେ ମନୁଷ୍ୟର କର୍ମଫଳରେ ବିଶ୍ୱାସୀ ମଧ୍ୟ ଥିଲେ । ଏଣୁ ତାଙ୍କର ମନୋଭାବକୁ ଲକ୍ଷ୍ୟକରି କୁହାଯାଇପାରେ ଯେ—'ପ୍ରବୃତ୍ତିର ପ୍ରବାହରେ ମନୁଷ୍ୟ ଭାସିଯାଇଁ ପରେ ଯେଉଁ ଅଲଂଘନୀୟ କର୍ମଫଳ ଭୋଗକରେ, ତାହା ବାସ୍ତବିକ କରୁଣଧର୍ମୀ ।" ଔପନ୍ୟାସିକ ହଥର୍ଣ୍ଣ ଏହି କର୍ମଫଳର ପରାକାଷ୍ଠା ତାଙ୍କ ଲିଖିତ 'The House of

the Seven Gables' ଉପନ୍ୟାସରେ ପ୍ରତିପାଦିତ କରିଅଛନ୍ତି, ଯେଉଁଥିରୁ ତାଙ୍କ କାଳରେ ଯେ କର୍ମଫଳ ଉପରେ ଲୋକଙ୍କର ବିଶ୍ୱାସ ଥିଲା ତାହା ବେଶ୍ ଜଣାପଡ଼େ । କିନ୍ତୁ ପ୍ରବୃତ୍ତିର ପ୍ରବାହରେ ମଣିଷ ଏହାକୁ ଉପେକ୍ଷା କରେ ଓ ଜଞ୍ଜାଳ ଜଡ଼ିତ ହୁଏ ଆପେ ଆପେ । ଏହି ଉପନ୍ୟାସରେ ବର୍ଣ୍ଣିତ ପିନ୍‌ଚନ୍ (Pynchon) ପରିବାରର ପ୍ରାୟ ପିନ୍‌ଚନ୍ ଏହି ପ୍ରବୃତ୍ତିର ପ୍ରବାହରେ ଭାସିଯାଇଁ କପରି କର୍ମଫଳର ପରାକାଷ୍ଠାର କଠିନ ଘାତରେ ଜାବୋଡ଼ି ହୋଇଯାଇଛନ୍ତି, ତାହା ପ୍ରାଞ୍ଜଳ ଭାବରେ ଔପନ୍ୟାସିକ ହଥର୍ଣ୍ଣ ଏଥିରେ ବର୍ଣ୍ଣନା କରିଅଛନ୍ତି ।

ପିନ୍‌ଚନ୍ ପରିବାରର କର୍ଣ୍ଣେଲ୍ ପିନ୍‌ଚନ୍ ମାଥିଉମାଉଲେଙ୍କ ଜମି ନେବାକୁ ଷଡ଼ଯନ୍ତ୍ର କରି ତାଙ୍କୁ ଫାଶୀ ଦେବାକୁ ଯାଇଁ ଯେଉଁ ସୁଚିନ୍ତିତ ଯୋଜନା କରିଥିଲେ ଓ ମାଉଲେଙ୍କ ଅଭିଶାପର ପ୍ରଭାବ ଜନିତ ପରିଣତିରେ ସେ ଅଭିଶପ୍ତ ହୋଇଯାଇ ପରବର୍ତ୍ତୀ ବଂଶଧରମାନଙ୍କ ଦେହରେ ଯେପରି ଜଡ଼ିତ କରିପକେ ,ତାହା କର୍ଣ୍ଣେଲ୍ ପିନ୍‌ଚନ୍‌ଙ୍କ ପରିବାରର କଳଙ୍କ ହୋଇପାରେ ସତ୍ୟ ମାତ୍ର ଏଥିରେ ତତ୍‌କାଳୀନ ଆମେରିକୀୟ ସମାଜର ପ୍ରଭାବଶାଳୀ ବ୍ୟକ୍ତିର ପ୍ରଭାବ, ଜମି ପ୍ରତି ମୋହ, ପ୍ରଚୁର ଅର୍ଥପ୍ରବଣତା ସମ୍ପର୍କରେ ସହଜରେ ଧାରଣା କରିହୁଏ । ହଥର୍ଣ୍ଣଙ୍କ କାଳରେ ପୁରୁଷ ପୁରୁଷ ଧରି ଅଭିଶାପର ଚିରନ୍ତନ ମୂଲ୍ୟବୋଧରେ ବିଶ୍ୱାସ କରୁଥିବା କଥା ହିଁ ଏହି ପିନ୍‌ଚନ୍ ପରିବାରର ଅଭିଶାପ୍ରଗ୍ରସ୍ତ ଜୀବନ କାହାଣୀରୁ ଅନୁମିତ ହୁଏ ।

ମାଥିଉ ମାଉଲେଙ୍କ ପରବର୍ତ୍ତୀ ଉତ୍ତରାଧିକାରୀମାନେ ପିନ୍‌ଚନ୍ ପରିବାର ଠାରୁ ଜମି ଫେରାଇ ନେବା ପାଇଁ ନିଜ ମାନବିକତାର ବଳିଦାନ, ପିନ୍‌ଚନ୍ ପରିବାର ଏହି ଜମିକୁ ନେଇ କ୍ରମଶଃ କ୍ଷୟ ହେବାର ଚିତ୍ର, ବୃଦ୍ଧ ଜାଫେରୀଙ୍କ ରହସ୍ୟଜନକ ମୃତ୍ୟୁ, ହେପ୍‌ଜିବାଙ୍କର ଜଣେ ସମ୍ଭ୍ରାନ୍ତ ମହିଳା ହେବା ଅପେକ୍ଷା ଜଣେ ସାଧାରଣ ମହିଳା ହେବାକୁ ବିବେକର ବାଧା ସତ୍ତ୍ୱେ ବାଧ୍ୟବାଧକ ସାଧନ, ପୁଣି କ୍ଲିଫର୍ଡ଼ଙ୍କ ନିରୀହତାର ସୁଯୋଗ ନେଇ ତାଙ୍କୁ ଶୋଷଣ କରି ଜର୍ଜ ପିନ୍‌ଚନ୍‌ଙ୍କର ପ୍ରଚଣ୍ଡ ଅର୍ଥ ଲାଲସା ଜନିତ ଅସହାୟ ମୃତ୍ୟୁ ଏ ସବୁକିଛି କର୍ମଫଳର ପରିଣତି ବ୍ୟତୀତ ଅନ୍ୟକିଛି ନୁହେଁ । ଏହି କର୍ମଫଳ ବିଶ୍ୱାସୀ ହଥର୍ଣ୍ଣ ଆମେରିକାର ନବନିର୍ମିତ ସ୍ୱାର୍ଥାନ୍ୱୋଷୀର ରକ୍ଷଣଶୀଳ ସମାଜର ନଗ୍ନଚିତ୍ରକୁ କର୍ମଫଳ ବର୍ଣ୍ଣନାରେ ଉନ୍ମୋଚିତ ଦେଇ ତତ୍‌କାଳୀନ କାଳର କଳରୋଳକୁ ନିଜ ଉପନ୍ୟାସରେ ମର୍ମରିତ କରିଛନ୍ତି ।

ହଥର୍ଣ୍ଣଙ୍କ ସମୟକୁ ଆମେରିକାର ଅନେକ ପରିବାରର ବୁନିଆଦି ନାନା କାରଣରୁ ଭୁଶୁଡ଼ି ପଡ଼ିଥିଲା । ଏହି ଚିତ୍ର ସେ ତାଙ୍କ ଉପନ୍ୟାସ 'The house of the seven

Gables'ରେ ବର୍ଣ୍ଣନା କରିଛନ୍ତି । ବଳସ୍ପୃଷ୍ଣୀ ପିନ୍‌ଚନ୍ ପରିବାରର ଚରିତ୍ର ମାଧ୍ୟମରେ ସେ ଏହା ଉପସ୍ଥାପିତ କରିଅଛନ୍ତି । ଏହି ବୁର୍ଜୁଆଙ୍କ ବଳସ୍ପୃ କାଳରେ ଯେଉଁ ପୁରାତନ ବୁର୍ଜୁଆଙ୍କ ନୂତନ ଧାରାମାନେ ନିଜର ସାମାଜିକ ସ୍ଥିତି ପାଇଁ ମୋହାନ୍ଧ ହୋଇ-ପଡୁଥିଲେ ସେମାନେ ଅନ୍ୟର ହାନିଲାଭ ପ୍ରତି ଭ୍ରୂକ୍ଷେପ ନକରି ସଙ୍କୀର୍ଣ୍ଣତା, ଲୋଭ, ହିଂସା, ଅସୂୟା, ପର ସ୍ୱତ୍ୱ ଅପହରଣର ହୀନ ପ୍ରବୃତ୍ତିକୁ ସେମାନଙ୍କ ଅଗ୍ରଗତିର ଚରମ ଓ ପରମ ସୋପାନ ଭାବେ ଧରି ନେଇଥିଲେ । 'The house of the Seven Gobles' ଉପନ୍ୟାସଟିରେ ଜର୍ଜ ପିନ୍‌ଚନ୍ ନିଜର କକାପୁଅ ଭାଇ କ୍ଲିଫର୍ଡ଼ ଓ ଭଉଣୀ ହେଫାଜିବାଙ୍କୁ ଏକ ପ୍ରହସନମୂଳକ ତଥା ଜାଲିଆତିରେ ସୁବିଧାସୁଯୋଗର ଥଳ ଦେଖାଇ ନିଜର ବ୍ୟକ୍ତିଗତ ସୁବିଧା ହାସଲ କରିବାକୁ ଚାହିଁଛନ୍ତି । ଯେଉଁଠି ଏ ସୁବିଧାରେ ବାଧା ଆସିଛି ସେଠି ଜର୍ଜ, କ୍ଲିଫର୍ଡଙ୍କୁ ପାଗଳ କରିଦେବାର ଧମକ୍ ଦେଇଛନ୍ତି । ପ୍ରତିପତ୍ତି, କ୍ଷମତାଲୋଭୀ ଜର୍ଜ ଜୀବନର ଶେଷ ପର୍ଯ୍ୟାୟରେ ଯେପରିଭାବେ ଶୋଷଣର ଗଭୀର ଦରଦୀ ଓ ଚରମ ଅନୁରାଗୀ ଭାବେ ଦେଖାଦେଇଛନ୍ତି ତାହା ସର୍ବଦା ଓ ସର୍ବଥା ନିନ୍ଦନୀୟ ଓ ତୀବ୍ର ଜାଲିଆତିର ଏକ ସାଂଘାତିକ ମୋହ ବ୍ୟତୀତ ଅନ୍ୟକିଛି ନୁହେଁ । କ୍ଲିଫର୍ଡ଼ ଓ ହେଫ୍‌ଜିବାଙ୍କ ମର୍ମଭେଦୀ ହାହାକାର ଓ ଅଶ୍ରୁପାତରେ ଜର୍ଜଙ୍କ ଜୀବନ ଯେ, ଅଭିଶପ୍ତ ଓ ଅକାଳ ବିପର୍ଯ୍ୟୟକୁ ଡାକିଆଣିଛି ଏକଥା ଅସ୍ୱୀକାର କରାଯାଇନପାରେ । ଏହିପରି ପାପୀ, ଲୋଭୀ ଲୋକଙ୍କ ପତନ ଯେ ନିଶ୍ଚିତ ଏକଥା ଜର୍ଜ ଚରିତ୍ର ମାଧ୍ୟମରେ ହଥର୍ଣ୍ଣ ଯେପରି ପ୍ରକାଶ କରିଛନ୍ତି, ତାହା ହଥର୍ଣ୍ଣଙ୍କ କାଳଗତ ମୂଲ୍ୟବୋଧର ଅନ୍ୟତମ ବୈଭବ ।

ହଥର୍ଣ୍ଣଙ୍କ ସମସ୍ତର ସମାଜଉଦ୍‌ଭବ ଅନ୍ଧବିଶ୍ୱାସ, ସଂସ୍କାରଗତ ଅସ୍ପୃଶ୍ୟତାକୁ ମଧ୍ୟ ହଥର୍ଣ୍ଣ ତାଙ୍କର 'The Scarlet Letter' ଓ The house of the Seven Gables' ଉପନ୍ୟାସରେ ଦର୍ଶାଇଛନ୍ତି । ତାଙ୍କର 'The house of the Seven Gables' ଉପନ୍ୟାସ ଅନୁଯାୟୀ ଆମେରିକୀୟ ସମାଜରେ ରକ୍ଷଣଶୀଳ ଗୋଷ୍ଠୀର ପ୍ରତିନିଧି ଭାବେ ପିନ୍‌ଚନ୍ ପରିବାର ନିଜର ଅହଂ, ଗର୍ବ, ଲୋଭ ଓ କ୍ଷମତାରେ ବେଶ୍ ଉନ୍ମତ୍ତ ଥିଲେ । ସେଥିପାଇଁ ସେମାନଙ୍କ ଘରର ସ୍ତ୍ରୀଲୋକମାନେ କିଛି କାମ କରିବାକୁ ନିଜର ପଦ-ମର୍ଯ୍ୟାଦା ହାନି ବୋଲି ମନେକରୁଥିଲେ । ଆଲୋଚ୍ୟ ଉପନ୍ୟାସରେ ହେଫ୍‌ଜିବା ଏହିପରି ଏକ ନାରୀ-ଚରିତ୍ର । ନିଜ ପରିବାରର ଅବକ୍ଷୟ ହେତୁ ଗଭୀର ଦୁଃଖ ଓ ଅନୁଶୋଚନା ସହ ଆର୍ଥିକ ଦୁରବସ୍ଥାକୁ ଏଡ଼ାଇ ଜୀବନ ପୋଷଣ କରିବାକୁ ଚାହିଁଲେ ହେଫ୍‌ଜିବା ନିଜର ଏହି ପଦମର୍ଯ୍ୟାଦା, ବଂଶଗତ ମର୍ଯ୍ୟାଦା କ୍ଷୁଣ୍ଣ ଆଶଙ୍କାରେ ବେଶ୍ କିଛିଟା ଆହତ ଓ ବିଚଳିତ ହୋଇପଡ଼ିଛନ୍ତି । ଏହିପରି ଏକ ରକ୍ଷଣଶୀଳ ପରିବାରରେ ଜନ୍ମ ହୋଇ ହେଫ୍‌ଜିବା ସବୁଓ ପରିସ୍ଥିତିର ତାଡ଼ନାରେ ପଡ଼ି ରକ୍ଷଣଶୀଳତାର ଘଣ୍ଟାଟୋପ୍‌କୁ ଭାଙ୍ଗି-ବାକୁ ବାଧ୍ୟ ହୋଇଛନ୍ତି । ତେବେ ଏହି ବାଧ୍ୟ ବାଧକତା, ପରିସ୍ଥିତିର ଚାପ ଅପେକ୍ଷା

ହଥର୍ଣ୍ଣଙ୍କ ସଂସ୍କାରଧର୍ମୀ ଲେଖନୀର ସ୍ୱରରେ ଅଧିକଭାବେ ପ୍ରତିଫଳିତ । ହଥର୍ଣ୍ଣ ସ୍ୱକାଳର କୁଳାଗ୍ରର ରକ୍ଷା ଦିଗରେ ଏପରି ସଂସ୍କାର କରିବାର ପ୍ରୟାସ ଯେ କରିଥିଲେ, ତାହା ଅସ୍ୱୀକାର କରିହେବ ନାହିଁ ।

କେବଳ ଏତିକ ନୁହେଁ ପରସ୍ୱତ୍ୱ ଅପହରଣ ଓ ଶୋଷଣକାରୀମାନଙ୍କର ଅତ୍ୟାଚାରରେ ହଥର୍ଣ୍ଣଙ୍କ କାଳ ଯେ, ଅତିଷ୍ଠ ହୋଇଉଠିଥିଲା, ତାହା ତାଙ୍କର ବିଭିନ୍ନ ଉପନ୍ୟାସରୁ ସ୍ପଷ୍ଟ ଭାବେ ଜଣାପଡ଼େ । 'The house of the Seven Gables' ଉପନ୍ୟାସରେ ମାଥିଉ ମାଉଲେଙ୍କ ଶ୍ରେଷ୍ଠ ଜମି ଖଣ୍ଡିକୁ ଚକ୍ରାନ୍ତ କରିନେଇ ଏବଂ ତାଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇ କର୍ଣ୍ଣେଲ୍ ପିନ୍‌ଚନ୍ ଯେପରି ଏକ ନିରୀହ ପରିବାରକୁ ସର୍ବସ୍ୱାନ୍ତ କରିଦେଇ ଗଲେ ତାର ଫଳ ସ୍ୱରୂପ ଅନେକକାଳରୁ ପିନ୍‌ଚନ୍ ପରିବାରକୁ ହରାଇବାକୁ ପଡ଼ିଛି । ସେହି ଅପହୃତ ଜମି ଉପରେ ତିଆରି ହୋଇଥିବା ଘରଟିରେ ପୁରୁଷ ପୁରୁଷଧରି 'ସାତପୁରୁଷ' ପର୍ଯ୍ୟନ୍ତ କେହି ଶାନ୍ତିରେ ରହିପାରି ନାହାନ୍ତି । ନିରୀହ, ସରଳ, ମାଉଲେର ଅତୃପ୍ତ ଅଥଚ ପ୍ରତିଶୋଧପରାୟଣ ଆତ୍ମା ସେମାନଙ୍କୁ ଗୋଟି ଗୋଟି କରି ଅକାଳମୃତ୍ୟୁ ଆଡ଼କୁ ଟାଣିନେଇଛି । ନିରୀହ ସରଳ ବ୍ୟକ୍ତିମାନଙ୍କ ଉପରେ ଅତ୍ୟାଚାରର ପରିଣତି ଯେ ଭୟଙ୍କର, ତାହା ହଥର୍ଣ୍ଣ 'ଅତୃପ୍ତ ମାଉଲେ ଆତ୍ମା'ର ଅବତାରଣାରେ ଦର୍ଶାଇ ଦେଇ ତାଙ୍କ କାଳର ଚକ୍ରାନ୍ତକାରୀ ବ୍ୟକ୍ତିମାନଙ୍କୁ ସଚେତନ କରାଇ ଦେଇଛନ୍ତି । ହଥର୍ଣ୍ଣଙ୍କ କାଳରେ ଯେ 'ଆତ୍ମା'କୁ ବିଶ୍ୱାସ କରାଯାଉଥିଲା, ଏହା ହଥର୍ଣ୍ଣଙ୍କ କାଳର ଅନ୍ୟତମ ମୂଲ୍ୟବୋଧ ।

ପରିସର ଓ ପରିବେଶ ନେଇ ହଥର୍ଣ୍ଣ ଥିଲେ ଜଣେ ଭିନ୍ନ ମଣିଷ ଏବଂ ଏହି ଭିନ୍ନ ମଣିଷର ଭିନ୍ନ ଚିନ୍ତାଧାରା ତାଙ୍କ ସାହିତ୍ୟର ପ୍ରତ୍ୟେକ ପୃଷ୍ଠାରେ ଲକ୍ଷ୍ୟଣୀୟ । ଜଣେ ଚରମ ପ୍ରଗତିବାଦୀ ସଂସ୍କାରକ ଭାବେ ସେ ତାଙ୍କ ଉପନ୍ୟାସ ଜଗତରେ ସହଜରେ ପଡ଼ି ହୋଇଯାଆନ୍ତି । ତାଙ୍କ ସାହିତ୍ୟ ସୃଷ୍ଟି ପାଇଁ ତାଙ୍କ ଆଗରେ ଥିଲା ଗୋଟିଏ କୁସଂସ୍କାର ଭ୍ରଷ୍ଟ, ଜରାଜୀର୍ଣ୍ଣ ଓ ପତନଶୀଳ ସମାଜ । ଯୁଗ ଯୁଗର ପରାଧୀନତା, କୂପ-ମଣ୍ଡୂକତା, ଅଜ୍ଞତା, ଅବସାଦ ଓ ଜଡ଼ତାର ପାଷାଣ ପାଚେରୀ ତଳେ ଚାପି ହୋଇ ଏ ସମାଜରେ ଯାହାକିଛି କଲ୍ୟାଣମୟୀ ଏବଂ ସୃଷ୍ଟିଧର୍ମୀ, ତାହା ବିସ୍ମୃତିର ଅତଳ ଗହ୍ୱରରେ ବିଲୟ ଭଜିଥିଲା । ସମାଜର ରଥଚକ୍ରତଳେ ଶୋଷିତ ମଣିଷ ଜୀବନର ମୋହ ଛାଡ଼ିନପାରି ତାହି ତାହି ଡାକ ଛାଡୁଥିଲା । ଏହିପରି ଏକ ଅଧୋଗତି ସମାଜ ଓ ମାନବିକତାର ପରାଜୟ ହଥର୍ଣ୍ଣଙ୍କ କାଳରେ ଅତି ନିର୍ମମ ଭାବରେ ଘଟିଥିଲା, ଯେଉଁଥିରେ ହଥର୍ଣ୍ଣ ତାଙ୍କ କାଳର ଏହି ସନ୍ଧିସନ୍ଧି ମୁହୂର୍ତ୍ତକୁ ଏଡ଼ାଇବା ସମ୍ଭବପର ନଥିଲା । ତେଣୁ ଏକ ସନ୍ଧିସନ୍ଧି ମୁହୂର୍ତ୍ତର ଅନୁକ୍ଷଣରେ ହଥର୍ଣ୍ଣଙ୍କ କାଳଗତ ମୂଲ୍ୟବୋଧ ହିଁ ଆମେରିକୀୟ ସାହିତ୍ୟର ମୂଲ୍ୟବୋଧ ହୋଇପଡ଼ିଛି ।

ହ୍ୱର୍ଥର୍ନ୍ଙ୍କ କାଳ ଯେପରି ଉତ୍ତପ୍ତ, ସଭ୍ୟତା ଯେପରି ଅନିଶ୍ଚିତ, ସାମାଜିକ ପରମ୍ପରା ଯେପରି ଧ୍ୱଂସ୍ତବିଧ୍ୱସ୍ତ ଏପରିସ୍ଥଳେ ହ୍ୱର୍ଥର୍ନ୍ଙ୍କ ସାହିତ୍ୟ ସୃଷ୍ଟି ଯେ ଏକ ଯୁଗାନ୍ତକାରୀ ଆହ୍ୱାନ ଏହା ଅସ୍ୱୀକାର କରାଯାଇ ନପାରେ । ତେଣୁ ତାଙ୍କର ଏହି କାଳଗତ ମୂଲ୍ୟବୋଧ ସହ ଆମ ଉପନ୍ୟାସ ସାହିତ୍ୟର ଜନକ ଫକୀରମୋହନଙ୍କ କାଳଗତ ମୂଲ୍ୟବୋଧକୁ ତୁଳନା କଲାବେଳେ ଅନେକ ସାମ୍ୟ ଏଥିରେ ଥିବାର ଲକ୍ଷ୍ୟକରି ହ୍ୱର୍ଥର୍ନ୍ ଯେଉଁପରି ଏକ ଅନିଶ୍ଚିତ ସାମାଜିକ ପଟ୍ଟଭୂମିରେ ପାଦଦେଇ ଜୀବନର ସମସ୍ତ ପ୍ରାଚୁର୍ଯ୍ୟ, ସୁଖ-ସ୍ୱଚ୍ଛନ୍ଦ୍ୟକୁ ହରେଇ ତତ୍କାଳୀନ କାଳର ନିଖୁଣ ଚିତ୍ର ପ୍ରଦାନ କରିଛନ୍ତି, ଆମ ସାହିତ୍ୟର ଔପନ୍ୟାସିକ ଫକୀରମୋହନ ମଧ୍ୟ ସେହିପରି ଏକ ବିଳୟମୁଖୀ ସମାଜ ଓ ସଂସ୍କୃତିର ପୃଷ୍ଠଭୂମିରେ ଠିଆହୋଇ ତାଙ୍କ କାଳର ଅବକ୍ଷୟକାରୀ ମୂଲ୍ୟବୋଧକୁ ନିଖୁଣ ଭାବରେ ବର୍ଣ୍ଣନା କରିଅଛନ୍ତି । ତେଣୁ ତାଙ୍କର କାଳଗତ ମୂଲ୍ୟବୋଧ ଓ ଏହି ଆଲୋଚନାର ପରିଶେଷରେ ଉଭୟ ଔପନ୍ୟାସିକଙ୍କ କାଳଗତ ମୂଲ୍ୟବୋଧର ତୁଳନା ଏହି ପରିପ୍ରେକ୍ଷୀରେ ଆମର ଆଲୋଚ୍ୟ ।

## (ଖ) ଫକୀରମୋହନ

ପୂର୍ବରୁ କୁହାଯାଇଛି ଯେ, ସମାଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ—"ଫକୀର-ମୋହନଙ୍କ ଉପନ୍ୟାସ ଓଡ଼ିଆ ସାହିତ୍ୟରେ ଏକ ଅଭିନବ ସାଧନ, ଏକ ଅଭୂତପୂର୍ବ କୃତିତ୍ୱ, ଏକ ଅମଳିନ କୀର୍ତ୍ତି । (୨୩) ଏହି ଉପନ୍ୟାସଗୁଡ଼ିକ ପ୍ରକାଶିତ ହେବାରେ ଫକୀରମୋହନ ଯେତିକି କଳ୍ପନାଭିମୁଖୀ ହୋଇଛନ୍ତି, ତତୋଽଧିକ କାଳ ସଚେତନ ଓ ବାସ୍ତବଧର୍ମୀ ହୋଇଛନ୍ତି । ତେଣୁ ଫକୀରମୋହନଙ୍କ କାଳଗତ ମୂଲ୍ୟବୋଧ ଅନ୍ୟ କେଉଁଠାରେ ଥାଉନଥାଉ ଏହା ଯେ ତାଙ୍କ ଉପନ୍ୟାସରେ ଅନୁରଣିତ ହୋଇଛି, ଏକଥା ଆଲୋଚ୍ୟ ଆଲୋଚନାରେ ଦର୍ଶାଯାଇପାରେ । ସମାଲୋଚକମାନଙ୍କ ମତରେ ଫକୀର-ମୋହନଙ୍କ ଉପନ୍ୟାସ ସାର୍ଦ୍ଧ ଦୁଇଶତ ବର୍ଷ ଓଡ଼ିଶାର ଇତିହାସ । ତେଣୁ ତାଙ୍କ ଉପନ୍ୟାସରୁ ଅତୀତ ଓଡ଼ିଶାର କେବଳ ଚିତ୍ର ଯେ ମିଳିବ ତା' ନୁହେଁ ତାଙ୍କ ସମସାମୟିକ ଉତ୍କଳର ଚିତ୍ର ମଧ୍ୟ ଏଥିରେ ଉଦ୍ଭାସିତ ହୋଇଉଠିଛି । ସେଥିପାଇଁ ତାଙ୍କର କାଳଗତ ମୂଲ୍ୟବୋଧ ହିଁ ତାଙ୍କ ଉପନ୍ୟାସ ଜଗତ ।

ଔପନ୍ୟାସିକ ଫକୀରମୋହନ ୧୮୪୩ ମସିହାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଜନ୍ମର ୪୦ ବର୍ଷ ପୂର୍ବରୁ ଇଂରେଜମାନେ ଓଡ଼ିଶା ଅଧିକାର କରିସାରିଥିଲେ ।

---

(୨୩) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପ୍ରକାଶନ—୧୯୭୨ ପୃଷ୍ଠା-୫

ସାର୍ବଜନ ମୋଗଲ ଓ ମରହଟ୍ଟା ଶାସନଚକ୍ର ତଳେ ରହି ଓଡ଼ିଶାର ସାମାଜିକ, ସାଂସ୍କୃତିକ ଜୀବନ ଯେପରି ଧ୍ୱଂସୋନ୍ମୁଖ ହୋଇଉଠିଥିଲା, ଇଂରେଜ ଶାସନ କାଳରୁ ତାହା ଏକପ୍ରକାର ରୁଦ୍ଧ ହୋଇଆସିଲା । ଇଂରେଜ ଶାସନରେ ମୋଗଲର ଅତ୍ୟାଗ୍ରହ ବା ବର୍ଗୀର ଲୁଣ୍ଠନ ନଥିଲା ସତ୍ୟ; କିନ୍ତୁ ତା'ର କୌଶଳର ଜାଲରେ ଯେ ଏ ଜାତି ବାନ୍ଧି ହୋଇ ଯାଇ ଯାହା ଡାକ ଶୁଣୁଥିଲା, ଏକଥା ଅସ୍ୱୀକାର କରି ହେବନାହିଁ । ଜାତିର ଏପରି ଏକ ସନ୍ତ୍ରସ୍ତ ମୁହୂର୍ତ୍ତରେ ଫକୀରମୋହନଙ୍କ ଜନ୍ମ ଘଟଣା ଓ ତାଙ୍କ ନିଷ୍ଠାପର ସେବା, ସାଧନା ଓଡ଼ିଆ ଜନଜୀବନକୁ ଯେପରି ମୁଗ୍ଧ ଚକିତ କରିଥିଲା ଓଡ଼ିଆ ସାହିତ୍ୟକୁ ସେହିପରି ବଳିଷ୍ଠ ଭିତ୍ତିଭୂମି ମଧ୍ୟ ଯୋଗାଇପାରିଥିଲା । ଅତଏବ ଫକୀରମୋହନଙ୍କ କାଳର ଦୁଃସହ ଜ୍ୱାଳା, ପେଷଣ-କଷଣର ଇତିହାସ ହେଉଛି ତାଙ୍କ ସାହିତ୍ୟ ସୃଷ୍ଟି ।

ଜୀବନର ଅନ୍ତିମ ଭାଗରେ ଫକୀରମୋହନ ତାଙ୍କ ସୃଷ୍ଟି ସମ୍ପଦର ଚରମ ତଥା ପରମ ବିଭବ 'ଉପନ୍ୟାସ'କୁ ସୃଷ୍ଟି କରିଛନ୍ତି । ୧୮୯୭ ମସିହାରେ ତାଙ୍କର ପ୍ରଥମ ଉପନ୍ୟାସ 'ଛ' ମାଣ ଆଠଗୁଣ୍ଠ' ପ୍ରକାଶ ପାଏ ଯାହାର କାହାଣୀର ଘଟଣାକ୍ରମ ୧୮୦୧ ରୁ ୧୮୪୦ ସାଲ ବୋଲି ସମାଲୋଚକ ଡକ୍ଟର ନଟବର ସାମନ୍ତରାୟ ମତ ପ୍ରକାଶ କରିଛନ୍ତି । ଅନୁରୂପ ଭାବେ ତାଙ୍କ ମତରେ—

୨ । ଲଛମା :

(କ) ରଚନାର ସମୟ—ବିଂଶ ଶତାବ୍ଦୀର ପ୍ରଥମ ଦଶବର୍ଷ

(ଖ) ଘଟଣାର ସମୟ—୧୭୨୦-୧୮୦୦ ସାଲ ।

୩ । ମାମୁଁ :

(କ) ରଚନାର ସମୟ—୧୯୧୩ ସାଲ ପ୍ରଥମାର୍ଦ୍ଧ

(ଖ) ଘଟଣାର ସମୟ—୧୦୮୧ ରୁ ୧୮୮୦

୪ । ପ୍ରାୟଶ୍ଚିତ୍ତ :

(କ) ରଚନାର ସମୟ—୧୯୧୫ ସାଲ ସେପ୍ଟେମ୍ବର

(ଖ) ଘଟଣାର ସମୟ—୧୮୮୧ ରୁ ୧୯୨୦ ସାଲ ।

ଶ୍ରୀଯୁକ୍ତ ସାମନ୍ତ ରାୟଙ୍କ ମତକୁ ପରୀକ୍ଷା କଲେ 'ଲଛମା' ଉପନ୍ୟାସର ଘଟଣାର ସମୟ ଯାହା (୧୭୬୦-୮୦୦) ସେଥିରେ ଫକୀରମୋହନଙ୍କ ସମସାମୟିକ କାଳର ଚିତ୍ର ଅବହେଳିତ; କାରଣ ମରହଟ୍ଟାମାନେ ଓଡ଼ିଶାର ଶାସନ କରୁଥିଲେ ସେ ସମୟରେ । ମରହଟ୍ଟା ଓ ମୋଗଲ ଗୋଲରେ ଓଡ଼ିଶାର ଇତିହାସ ସେତେବେଳେ କ୍ରୋଡ଼ୀକୃତା 'ଲଛମା' ଉପନ୍ୟାସ ସେହି ଇତିହାସର କଥାହିଁ ପ୍ରକାଶ କରିଛି । (୨୪) ତେବେ ଏଥିରେ ଫକୀରମୋହନଙ୍କ କାଳର ପୃଷ୍ଠଭୂମିକୁ ହିଁ ଲକ୍ଷ୍ୟ କରାଯାଇପାରେ । ଏ ସମ୍ପର୍କରେ ଡଃ ନଟବର ସାମନ୍ତ ରାୟ ଲେଖିଛନ୍ତି—"ଇତିହାସର ଘଟଣା ଗୁଡ଼ିକୁ ଅବଲମ୍ବନ କରି ଏକ କରୁଣ ଚିତ୍ର ଅଙ୍କନ କରିବା 'ଲଛମା'କାରଙ୍କର ଥିଲା ପ୍ରଧାନ ଉଦ୍ଦେଶ୍ୟ । ଅଷ୍ଟାଦଶ ଶତାବ୍ଦୀର ରାଜନୈତିକ ତଥା ସାମାଜିକ ଜୀବନର ଦୁଇଟି ସୁସ୍ପଷ୍ଟ ଦିଗ ଏଥିରେ ଚିତ୍ରିତ ହୋଇଛି । ପ୍ରଥମ—ଓଡ଼ିଆ ସାମନ୍ତବାଦୀ ସଭ୍ୟତାର ରୂପରେଖ ଓ ସେହି ସଭ୍ୟତାର ଧ୍ୱଂସ ସାଧନ, ଦ୍ୱିତୀୟ—ବର୍ଗୀମାନଙ୍କର ଅତ୍ୟାଚାର ଓ ଓଡ଼ିଶାରେ ରାଜଶାସନ ନାମରେ ଘୋର ଅରାଜକତାର ରାଜତ୍ୱ, (୨୫) । ବର୍ଗୀମାନେ ଓଡ଼ିଶା ଅଧିକାର କଲାବେଳକୁ ଓଡ଼ିଶାର ସାମନ୍ତବାଦୀ ସଭ୍ୟତା ଉପରେ ମୁସଲମାନମାନେ କମ୍ ଆଘାତ ଦେଇନଥିଲେ । ହିନ୍ଦୁ ଧର୍ମର ବିନାଶ, ହିନ୍ଦୁ ସ୍ଥାପତ୍ୟ, ମନ୍ଦିର ଆଦିର ବିନାଶ ପର୍ବ ସେମାନେ ଅନୁଷ୍ଠିତ କରିଯାଇଥିଲେ; ମାତ୍ର ପରବର୍ତ୍ତୀ ଏଥିରେ ହସ୍ତକ୍ଷେପ ନକରି ଅର୍ଥଲିପ୍ସୁ ହୋଇଛନ୍ତି ଉତ୍କଳକୁ ନାନା ଭାବେ ଲୁଣ୍ଠନ କରି ବଞ୍ଚିଥିଲେ । ସେମାନଙ୍କ ଶାସକ ଲୁଣ୍ଠନକାରୀଙ୍କ ପ୍ରତି-ନିଧି ମାତ୍ର । ସେମାନଙ୍କର ଉଦ୍ଦେଶ୍ୟ ନଥିଲା ଓଡ଼ିଶାରେ ସାମ୍ରାଜ୍ୟବାଦ ସ୍ଥାପନ କରିବା, କେବଳ ଲୁଣ୍ଠନ କରି ପଳାୟନ ଥିଲା ସେମାନଙ୍କ ଓଡ଼ିଶା ଅଧିକାର ଓ ଶାସନର ମୂଳ-ମନ୍ତ୍ର । ତେଣୁ ବର୍ଗୀର ଅପଶାସନ ଓ ଏହି ଅପରାଜେୟ ଶାସନଚକ୍ର ତଳେ ରହି ଓଡ଼ିଶା ଏକାନ୍ତଭାବେ ଦୁର୍ବଳ ହୋଇପଡ଼ିଥିଲା, ତାର ଅର୍ଥନୀତି କ୍ଷେତ୍ରରେ । କେବଳ ଏତିକି

(୨୪) "ଫକୀରମୋହନଙ୍କ ଠାରୁ ଝଣ୍ଡେ 'ଲଛମା' ପାଇଅଛୁ । ପଢ଼ି ସାରିଅଛୁ । 'ମାମୁଁ' ପରି ଏହା ସୁଖ୍ୟପାଠ୍ୟ ବୋଧ ହେଲାନାହିଁ—ସେ ଯୁଗର ବର୍ଗୀ ଅତ୍ୟାଚାର ଅନେକ ଗୁଡ଼ାଏ ପରିଚ୍ଛେଦ ଅଧିକାର କରି ବହିଟାକୁ ଇତିହାସ ପରି ନୀରସ କରିଦେଇ-ଅଛି—'ଲଛମା' 'Historical Romance' ପରି ସ୍ଥାନେ ସ୍ଥାନେ ଦେଖା-ଯାଇଅଛି ।" (ଏହା ୧୬ । ୫ । ୧୪ ତାରିଖରେ 'ନନ୍ଦୀ' ଛଦ୍ମ ନାମଧାରୀ ଜଣେ ସମାଲୋଚକଙ୍କ ଦ୍ୱାରା 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶ ପାଇଥିଲା; ଯାହାକୁ ସମାଲୋଚକ ସୁରେନ୍ଦ୍ର ମହାନ୍ତି ତାଙ୍କ 'ଫକୀରମୋହନ ସମୀକ୍ଷା'' ପୁସ୍ତକ ୧୯୭୨ ସଂସ୍କରଣର ୯ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି ।)

(୨୫) ଡଃ ନଟବର ସାମନ୍ତରାୟ—ବ୍ୟାସକବି ଫକୀରମୋହନ, ପୃଷ୍ଠା–୬୩

ନୁହେଁ—"ମରହଟ୍ଟାମାନଙ୍କ ଓଡ଼ିଶା ଅଧିକାର (୧୭୫୧) ପୂର୍ବରୁ ଓ ତା'ପରେ ୫୨ ବର୍ଷ ପର୍ଯ୍ୟନ୍ତ ଏ ଦେଶରେ ଯେଉଁ ଅପଶାସନର ତାଣ୍ଡବଲୀଳା ଲାଗିଥିଲା ସେଥିରେ ଏଇ ସାମନ୍ତ-ବାଦୀ ସଭ୍ୟତାର ସୌଧ ଆମୂଳଚୂଳ ପ୍ରକମ୍ପିତ ହୋଇସାରିଥିଲା । ସପ୍ତବଣିଆ ଦୁର୍ଗର ପତନ ବୈଷ୍ଣବଜନ ମାନ୍ଧାତାଙ୍କ ପତନ ନୁହେଁ, ଏହା ଓଡ଼ିଆ ସାମନ୍ତବାଦୀ ସଭ୍ୟତା ବିଲୋପର ପ୍ରଥମ ସଙ୍କେତ ମାତ୍ର । ପ୍ରାକ୍-ମରହଟ୍ଟା ଶାସନ ସମୟରେତ ଏ ଘଟଣା, ସେମାନଙ୍କ ପ୍ରକୃତ ଶାସନ ସମୟରେ (୧୭୫୨-୧୮୦୩) ଏ ସଭ୍ୟତାର କେଉଁ ଗତି ହୋଇଥିବ ତା' ସହଜରେ ଅନୁମେୟ । 'ଛମାଣ ଆଠଗୁଣ୍ଠ'ର ବାସସିଂହ ବଂଶ କିମ୍ବା 'ମାମୁଁ' ଉପନ୍ୟାସର 'ଉତ୍ତରରାୟ ବଂଶ' ଊନବିଂଶ ଶତାବ୍ଦୀର ଏଇ ସାମନ୍ତବାଦୀ ସଭ୍ୟତାର ଏକ ଅନ୍ତଃସାରଶୂନ୍ୟ ନକଲି ଅନୁକରଣ ମାତ୍ର । (୨୨)

ଫକୀରମୋହନ ସେନାପତି 'ଲଛମା' ଉପନ୍ୟାସରେ ଅଷ୍ଟାଦଶ ଶତାବ୍ଦୀର ଓଡ଼ିଆ ସାମନ୍ତବାଦୀ ସଭ୍ୟତା ବିଲୋପର ଇତିବୃତ୍ତ ହିଁ ପ୍ରଦାନ କରିଛନ୍ତି । କିନ୍ତୁ ତାଙ୍କର ପ୍ରଥମ ଉପନ୍ୟାସ ଯାହାକୁ ସେ ୧୮୯୭ ମସିହାରେ ରଚନା କରିଥିଲେ (ଛମାଣ ଆଠଗୁଣ୍ଠ) ସେଥିରେ ତାଙ୍କର ସମସାମୟିକ କାଳର ମୂଲ୍ୟବୋଧହିଁ ପ୍ରତିଫଳିତ ହୋଇଛି । ବର୍ଗୀ-ଶାସନ କାଳର କୁପରିଣାମ ଓ ଇଂରେଜ ଶାସନର ଫଳ କିପରି ଆମ ସମାଜରେ ପ୍ରତିଫଳିତ ହୋଇଛି ତାହା ସେ ଏହି ଉପନ୍ୟାସରେ ବର୍ଣ୍ଣନା କରିଛନ୍ତି ।

ଊନବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ଓଡ଼ିଶାର ରାଜନୀତି କ୍ଷେତ୍ରରେ ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା । ଇଂରେଜମାନେ ୧୮୦୩ ମସିହାରେ ଓଡ଼ିଶା ଅଧିକାର କଲେ । ସେମାନେ ବର୍ଗୀର ଲୁଣ୍ଠନ କିମ୍ବା ମୁସଲମାନଙ୍କ ଶାସନ କୌଶଳର ପକ୍ଷପାତି ନଥିଲେ । ତେଣୁ ସୁଚତୁର କୌଶଳ ପ୍ରୟୋଗ କରି ସେମାନେ ପ୍ରଥମେ ଶାନ୍ତି ପ୍ରତିଷ୍ଠା ଓ ଜମିଜମାର ବନ୍ଦୋବସ୍ତ କରିବାର ପ୍ରୟାସ ଆରମ୍ଭ କରିଦେଲେ । ଜମିଜମା ବନ୍ଦୋ-ବସ୍ତର କୌଶଳରେ ଓଡ଼ିଶାର ଜମିଦାରୀ ହସ୍ତାନ୍ତ ହୋଇଗଲା ପଡ଼ୋଶୀ ବଙ୍ଗବାସୀଙ୍କ ହାତକୁ ଏବଂ ଅନ୍ୟକେତେକ ଅଣଓଡ଼ିଆମାନଙ୍କ ନିକଟକୁ । ଫକୀରମୋହନ ସେନାପତି ଓଡ଼ିଶାର ଏହି ଚରମ ଦୁର୍ଯୋଗର ଚିତ୍ରକୁ ପ୍ରକାଶ କରିଛନ୍ତି 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ । ଏହା ତାଙ୍କ ସମସାମୟିକ କାଳର ଚିତ୍ର ବ୍ୟତୀତ ଅନ୍ୟକିଛି ନୁହେଁ । ଅତଏବ ଫକୀରମୋହନଙ୍କ କାଳରେ ପରମ୍ପରାଧାରୀ ଜମିଦାର ଗୋଷ୍ଠୀର ବିଲୟ ଘଟିଲା-ବେଳେ ଏକ ନବ୍ୟ ଜମିଦାର ଶ୍ରେଣୀର ଆବିର୍ଭାବ ଘଟିଥିଲା । କିନ୍ତୁ ଜମିଦାରୀ କ୍ଷେତ୍ରରେ ସେମାନେ ନୂଆ ହୋଇଥିବାରୁ ତାହାକୁ ମଧ୍ୟ ଦୀର୍ଘକାଳ ସମ୍ଭାଳି ରଖିବା ସେମାନଙ୍କ ପକ୍ଷେ ସମ୍ଭବ ହୋଇନଥିଲା; ଯେଉଁଥିପାଇଁ 'ଛମାଣ ଆଠଗୁଣ୍ଠ' ଉପନ୍ୟାସର ପରମ୍ପରାଧାରୀ ଜମିଦାର କେଶମତି ଅଲ୍ଲୀଙ୍କ ଫତେପୁର ସରସଣ୍ଡ ଜମିଦାରୀପାଇବା ହେଉଛି ନୂତନ

(୨୨) ଡକ୍ଟର ନଟବର ସାମନ୍ତରାୟ—ବ୍ୟାସକବି ଫକୀରମୋହନ, ପୃଷ୍ଠା-୩୩/୩୪

ଜମିଜମା ବନ୍ଦୋବସ୍ତ ଫଳରେ ଓଡ଼ିଶାର ଜମିଦାରୀ ଅଣଓଡ଼ିଆଙ୍କ ହାତକୁ ଚାଲିଯିବାର ଏକ ଘଟଣା ଓ ତାହା ସେ ରାମଚନ୍ଦ୍ର ମଙ୍ଗରାଜଙ୍କ ବକଳ କେଉଁଛୁ ଏକ ନୂତନ ଶ୍ରେଣୀ ଜମିଦାର ଗୋଷ୍ଠୀର ଆବିର୍ଭାବର ସଙ୍କେତ । କେମିତ ଅଳ୍ପୀ କମ୍ପା ରାମଚନ୍ଦ୍ର ମଙ୍ଗରାଜଙ୍କ ହାତରେ ପ୍ରକୃତରେ ଜମିଦାରୀର ସୁପରଚାଳନା ନହୋଇ ପାରିବା ତତ୍କାଳୀନ (ଫକୀରମୋହନଙ୍କ କାଳର) ଓଡ଼ିଶା ଜମିଦାରୀର ଅବକ୍ଷୟ ଚିତ୍ର ବ୍ୟତୀତ ଅନ୍ୟକିଛି ନୁହେଁ ।

ଫକୀରମୋହନଙ୍କ କାଳଗତ ମୂଲ୍ୟବୋଧର ସମ୍ପର୍କରେ ଦୃଷ୍ଟି ଦେଲେ ଏକଥା ସତ୍ୟ ଯେ ସେତେବେଳେ ଓଡ଼ିଶାର ସହର ସମ୍ପର୍କଶୂନ୍ୟ ଜୀବନଯାପନ ପ୍ରଣାଳୀରେ ଉତ୍କଳୀୟ ଜନତା ପକ୍ଷପାତୀ ଥିଲେ । "ସେତେବେଳେ ଆଧୁନିକ ସମୟର ସହର ଅଭ୍ୟୁଦୟ ଲାଭ କରିନଥିବାରୁ ସାଧାରଣତଃ ଓଡ଼ିଆ ଜୀବନ କେବଳ ପଲ୍ଲୀ ମଧ୍ୟରେ ସୀମିତ ଥିଲା । କଟକ ସରକାରୀ ଜୀବନର କେନ୍ଦ୍ର ଥିବାରୁ ଲୋକେ ଆବଶ୍ୟକାନୁସାରେ କେବଳ ସମୟ ସମୟରେ ଯେଉଁ ସହରକୁ ଯାଉଥିଲେ । ତେଣୁ 'ଛମାଣ ଆଠଗୁଣ୍ଠ'ର ବିଷୟବସ୍ତୁ ପଲ୍ଲୀ ଭିତରେ ଆବଦ୍ଧ । ଜମିଦାରୀ ନିଲାମରେ କିଣିବା, ସାରିଆ ଭଉଣୀର ସମ୍ପତ୍ତି କଣ୍ଟକବଳରେ ଅପହରଣ କରିବା, କମ୍ପା ଜେଲ୍ ଭୋଗ କରିବା ପ୍ରଭୃତି ଘଟଣା ପରମ୍ପରାରେ ମଙ୍ଗରାଜ କଟକକୁ ଯିବାକୁ ବାଧ୍ୟ ହୋଇଛନ୍ତି । ତା'ନହେଲେ ମଙ୍ଗରାଜଙ୍କ ଜୀବନ-ତନ୍ତ୍ରୀ ସହିତ କଟକ ସହରର କୌଣସି ସମ୍ପର୍କ ନଥିଲା ।" (୬୭) ମୋଟଉପରେ କୁହାଯାଇପାରେ ଯେ, ପଲ୍ଲୀ ଜୀବନର ପଟ୍ଟଭୂମିରେ 'ଛମାଣ ଆଠଗୁଣ୍ଠ'ର କାହାଣୀ ପର୍ଯ୍ୟବସିତ ଥିଲେହେଁ ଏହାର ମଧ୍ୟରେ ପଲ୍ଲୀଭିମୁଖୀ ସଂଗ୍ରାମ, ଶୋଷଣ, ଅତ୍ୟାଚାରହିଁ ପ୍ରତିଫଳିତ ହୋଇଛି, ଯାହାକି ଫକୀରମୋହନଙ୍କ କାଳର ଓଡ଼ିଶାର ଏକ ଦୁର୍ଯୋଗ ।

ଫକୀରମୋହନ ବହୁବାର ବହୁ ଗଡ଼ଜାତ ରାଜ୍ୟର ଦେଉ଼ୟାନୀ ଗ୍ରହଣ କରିଛନ୍ତି । ତତ୍କାଳୀନ ରାଜାଙ୍କର ଅତ୍ୟାଚାର, ଦୁର୍ବଳ ମନ ଓ ତଜ୍ଜନିତ ପ୍ରଜାଆନ୍ଦୋଳନ ଏବଂ ସେଥିରେ ଇଂରେଜ ସରକାରଙ୍କ ହସ୍ତକ୍ଷେପ ପ୍ରଭୃତିରେ ଓଡ଼ିଶାରେ ଇଂରେଜ ଶାସନର କ୍ରମବିକାଶର ସୂତ୍ରପାତହିଁ ଦର୍ଶାଇଛି । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କଲାପରେ ଯେଉଁ ଅବସ୍ଥାରେ ଓଡ଼ିଶାକୁ ଦେଖିବାକୁ ମିଳିଥିଲା, ତାହା ୧୮୪୦ ମସିହା ବେଳକୁ ଅନେକାଂଶରେ ପରିବର୍ତ୍ତିତ ହୋଇସାରିଥିଲା । ଇଂରେଜମାନେ ଓଡ଼ିଆ ମାନଙ୍କର ଦୁର୍ବଳତାର ସୁଯୋଗ ନେଇ ତାଙ୍କ ଶାସନ କାଳର ଚେରକୁ ଓଡ଼ିଶାର ପାଣିପବନରେ ବେଶ୍ ସର୍ବାଙ୍ଗପୁଷ୍ଟ କରିନେଇଥିଲେ । ପୁଣି ଓଡ଼ିଆମାନେ ଇଂରେଜ ଶିକ୍ଷାରେ ସେତେ ଅଗ୍ରଗତି କରିପାରୁନଥିବାରୁ ଓଡ଼ିଶାର ଅଧିକାଂଶ ଅଫିସରେ ଶାସନ

(୬୭) ଡକ୍ଟର ନଟବର ସାମନ୍ତରାୟ—ବ୍ୟାସକବି ଫକୀରମୋହନ ।

କ୍ଷେତ୍ରରେ ଇଂରେଜ ଓ ବଙ୍ଗାଳୀ କର୍ମଚାରୀ ନିଯୁକ୍ତ ପାଇଥିଲେ । "ବିରାଟ ଓଡ଼ିଆ ଜନତାର ସାମାଜିକ ଜୀବନ ଏଇ କର୍ମଚାରୀ ଗୋଷ୍ଠୀର ଦୟା ଓ ଖିଆଲରେ ନିୟନ୍ତ୍ରିତ ହେଉଥିଲା । ବିରାଟ ମୂକ ଜନତାକୁ ଦଳିତ ଲାଞ୍ଛିତ ଓ ପଦଦଳିତ କରିବାପାଇଁ ଏଇ ମୁଷ୍ଟିମେୟ ଲୋକେ ଆଦୌ ପଶ୍ଚାତ୍‌ପଦ ହେଉନଥିଲେ । ସାରିଆ, ଭଗିଆ ଥିଲେ ଏଇ ଶୋଷିତ ଜନତାର ପ୍ରତୀକ । ଶୋଷକ ରାମଚନ୍ଦ୍ର ମଙ୍ଗରାଜ ଶୋଷଣ ସନ୍ତପାତ—ଏକାଦଶୀ ଡ ପାଳନ, ଗୃହ ଭିତରଖରେ ସସ୍ନେହ ସହାନୁଭୂତି ପ୍ରଦର୍ଶନ, କରଜଦାନ ପ୍ରଭୃତି —ଏଇ ନିପୀଡ଼ିତ ଜନତା ପ୍ରତି ପରିଚାଳିତ ହୋଇଥିଲା । ଫଳରେ ମୂକ ଜନତା ସାରିଆ, ଭଗିଆ ପରି ନୀରବରେ ଏସବୁ ଅତ୍ୟାଚାର ସହ୍ୟ କରିବାକୁ ବାଧ୍ୟ ହୋଇଥିଲା । ପ୍ରତିବାଦ କରିବା କିମ୍ବା ରୁଣ୍ଡ ହିଁଠାଇ ପେଟର ସତକଥା କହିବାର କୌଣସି ସୁବିଧା ବା ସୌଭାଗ୍ୟ ଏ ଜନତା କପାଳରେ ସେତେବେଳେ ନଥିଲା । ୧୮୭୧ ସାଲ ପରେ ଓଡ଼ିଆ ଯୁବକଙ୍କର ଯେଉଁ ଜୀବନ୍ତ ପରିଚୟ ଆମ୍ଭେମାନେ ଦେଖିବାକୁ ପାଉଁ, ତାର କୌଣସି ସତ୍ତା ଆଲୋଚ୍ୟ କାଳରେ ଓଡ଼ିଶାରେ ନଥିଲା ।" (୨୮) ତେଣୁ "ଛମାଣ ଆଠଗୁଣ୍ଠ" ର ପଟଭୂମିରେ ଯେଉଁସବୁ ଅନ୍ୟାଚାର, ଅତ୍ୟାଚାର, ଶୋଷଣ, ପେଷଣର ଚିତ୍ର ଫକୀରମୋହନ ପ୍ରଦାନ କରିଛନ୍ତି, ତାହା ତାଙ୍କ ସମସାମୟିକ କାଳର ଏକ ନଗ୍ନ ଚିତ୍ର ଓ ବିରାଟ ସତ୍ୟ ବ୍ୟତୀତ ଅନ୍ୟକିଛି ନୁହେଁ ।

ଫକୀର ମୋହନ ତାଙ୍କ 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ ତତ୍କାଳୀନ ଓଡ଼ିଶାର ଯେଉଁ ଚିତ୍ର ପ୍ରଦାନ କରିଛନ୍ତି, ତାହା 'ମାମୁଁ' ଉପନ୍ୟାସ ରଚନା କାଳକୁ (୧୯୧୩) ଅନେକାଂଶରେ ବଦଳିଯାଇଛି । 'ମାମୁଁ' ଉପନ୍ୟାସ ରଚନାକାଳକୁ ଇଂରେଜ ଶାସନ ତଥା ତା'ର ପ୍ରଭାବ ଓଡ଼ିଶାର ସାଂସ୍କୃତିକ, ସାମାଜିକ ତଥା ଅର୍ଥନୀତି କ୍ଷେତ୍ରରେ ବେଶ୍ କାଯ୍ୟା ବିସ୍ତାର କରିସାରିଥିଲା । ଅଶିକ୍ଷିତ ଓଡ଼ିଆ ଜନ ଜୀବନରେ ଇଂରେଜୀ ଶିକ୍ଷା ପ୍ରତି ବେଶ୍ ଆଗ୍ରହ ସୃଷ୍ଟି ହୋଇସାରିଥିଲା । ଅତଏବ 'ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଆ ଜୀବନ ଏକ ନୂତନପର୍ଯ୍ୟାୟରେ ପ୍ରବେଶକରେ । ଏହାର ପ୍ରଥମାର୍ଦ୍ଧରେ ଦେଖା-ଦେଇଥିବା ପଲ୍ଲୀଜୀବନ ଧୀରେ ଧୀରେ ସହର ପ୍ରତି ଆକୃଷ୍ଟ ହୋଇଥିବାର ଦେଖିବାକୁ ମିଳେ । ୧୮୬୦ ସାଲରେ ସାମାନ୍ୟ ଦଶ ଟଙ୍କା ବେତନରେ ମୋହରିର ଚାକିରିପାଇଁ କୌଣସି ଉପଯୁକ୍ତ ଓଡ଼ିଆ ଏ ଦେଶରେ ମିଳୁ ନଥିବାର ସମ୍ବାଦ ଆମେ ଶୁଣିବାକୁ ପାଉଁ । କିନ୍ତୁ ପରବର୍ତ୍ତୀ ସମୟରେ ଦେଶରେ ବିଭିନ୍ନ ଶିକ୍ଷାନୁଷ୍ଠାନ ସ୍ଥାପନ ଓ ଇଂରେଜ ଶିକ୍ଷା ଚାକିରି ଲଭର ଏକମାତ୍ର ନିର୍ଭରପଦ ମାନଦଣ୍ଡ ବୋଲି ଆଦେଶ ପ୍ରଚାର ଫଳରେ ସେ ଅବସ୍ଥା ଅଳ୍ପ ବେଶିଦିନ ଏ ଦେଶରେ ରହିନାହିଁ । କଟକ ହାଇସ୍କୁଲ (୧୮୬୧),

(୨୮) ଉତ୍କଳର ନଟବର ସାମନ୍ତରାୟ,—ବ୍ୟାସକବି ଫକୀର ମୋହନ ପୃଷ୍ଠା—୩୭

ବାଲେଶ୍ବର ଓ ପୁରୀ ହାଇସ୍କୁଲ (ଉଭୟ ୧୮୫୩) ଓ ଅନ୍ୟାନ୍ୟ ମଧ୍ୟଇଂରେଜୀ ଶିକ୍ଷାଳୟ—ଓଡ଼ିଶାରେ ପ୍ରତିଷ୍ଠିତ ହେବାରୁ ଏ ଦେଶର ଲୋକଙ୍କ ମନୋବୃତ୍ତିରେ ପାଶ୍ଚାତ୍ୟଶିକ୍ଷାଲାଭ ପ୍ରତି ଥିବା ଗୋଟାଏ କୁସଂସ୍କାର ଦୂର ହୋଇଥିଲା । ୧୮୪୪ ସାଲରେ ଲର୍ଡ଼ ହାର୍ଡ଼ିଞ୍ଜ ଏକ ଆଦେଶରେ ପ୍ରଚାର କଲେ ଯେ, ସରକାରୀ ଚାକିରୀ ପାଇବାକୁ ହେଲେ ଇଂରେଜୀ ଶିକ୍ଷା ଏକାନ୍ତ ଆବଶ୍ୟକ । ଏଇ ସମସ୍ତ ପରିସ୍ଥିତି ପଲ୍ଲୀର ଲୋକଙ୍କୁ ସହର ପ୍ରତି ଧୀରେ ଧୀରେ ଆକୃଷ୍ଟ କରିଥିଲା । ତଥାପି ଏ ଦେଶର ଲୋକମାନେ ଏକ ନୂତନ ଶିକ୍ଷାପ୍ରତି ସମଧିକ ଆଦର ଯେ ଦେଖାଇନଥିଲେ, ତାହା ସତ୍ୟ କଥା ।" (୨୯)

ଅତଏବ ଫକୀରମୋହନଙ୍କ କାଳର ମଧ୍ୟପର୍ଯ୍ୟାୟଠାରୁ ତାଙ୍କ ଜୀବନର ଅନ୍ତିମ ପର୍ଯ୍ୟାୟ ଆଡ଼କୁ ଏ ଦେଶରେ ଇଂରେଜୀ ଶିକ୍ଷା ଓ ସହରୀ ସଭ୍ୟତାର ଆକର୍ଷଣ ବେଶ୍ ପ୍ରଭାବ ପକାଇପାରିଥିଲା । ଏପରିକି ସ୍ୱୟଂ ଫକୀରମୋହନ କଟକ ପରି ସହରରେ ରହିବାର ଅଭିଳାଷକୁ ମଧ୍ୟ ଦମନ କରିପାରି ନଥିଲେ । (୩୦) କେବଳ ଏତିକି ନୁହେଁ ସହରୀ ସଭ୍ୟତା ପ୍ରତି 'ମାମୁଁ' ଉପନ୍ୟାସର ଅନେକ ଚରିତ୍ରଙ୍କର ଦୁର୍ବଳତା ଓ ଇଂରେଜୀ ଶିକ୍ଷାପ୍ରତି ନଟୁ ବାବୁଙ୍କ ଜିଦ୍ ଯେ, ତତ୍କାଳୀନ କାଳର ପ୍ରକୃତ ସ୍ୱରୂପକୁ ଦର୍ଶାଇଛୁ, ଏହା ଅସ୍ୱୀକାର କରିହେବ ନାହିଁ । ଫକୀରମୋହନଙ୍କ କାଳ ସମ୍ପର୍କରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ତାଙ୍କ ସମୟର ଓଡ଼ିଶା ଏକ ବ୍ୟଥା ଜର୍ଜରିତ ବୈପ୍ଳବିକ ଚିନ୍ତା, ଉଦ୍‌ବେଳିତ ମନ ଓ ସମୟେ ସମୟେ କିଂକର୍ତ୍ତବ୍ୟବିମୂଢ଼ ଚିତ୍ତବୃତ୍ତିର ପରିଚାୟକ ମାତ୍ର । ତାଙ୍କ ସମୟରେ ଓଡ଼ିଶାର ଦୁର୍ଭାଗ୍ୟ ଯେପରି ଅକଳନ । ଓଡ଼ିଶାର ସୌଭାଗ୍ୟ ରବିର ଆଭା ସେହିଭଳି ଉଜ୍ଜ୍ୱଳ । ଅର୍ଥାତ୍ ଏକ ପ୍ରଦେଶହୀନ ପ୍ରଦେଶ (ଓଡ଼ିଶା ସେତେବେଳେ ସ୍ୱତନ୍ତ୍ର ପ୍ରଦେଶ ହୋଇନଥିଲା) ଭାବରେ ଓଡ଼ିଶାର ଅପମାନ ଜର୍ଜରିତ ଛିନ୍ନ କଳେବର ସାଙ୍ଗକୁ ଇଂରେଜ ସଭ୍ୟତାର ପ୍ରଭାବ ତାକୁ ଏକ ପଟେ ଦୁଃଖ, ନିର୍ଯ୍ୟାତନା ଦେବା ସଙ୍ଗେ ସଙ୍ଗେ ଅନ୍ୟ ପଟେ ତାର ସୌଭାଗ୍ୟର ଇଙ୍ଗିତ ମାତ୍ର ଦେଇଥିଲା । ଏହି ପରି-ପ୍ରେକ୍ଷୀରେ ଡଃ ନଟବର ସାମନ୍ତରାୟ ଲେଖିଛନ୍ତି—"ସେନାପତିଙ୍କ ଗୃହୋଟି ଉପନ୍ୟାସ

---

(୨୯) ଡଃ ନଟବର ସାମନ୍ତରାୟ—ବ୍ୟାସକବି ଫକୀରମୋହନ, ପୃଷ୍ଠା-୩୮/୩୯ ।

(୩୦) "ମୋର କଟକରେ ବାସ ସକାଶେ ବହୁଦିନରୁ ଅଭିଳାଷ ଥିଲା । ଗୋଟିଏ ଘର ପ୍ରସ୍ତୁତ କରାଇବା ନିମନ୍ତେ ଖଣ୍ଡିଏ ଉପଯୁକ୍ତ ସ୍ଥାନ ଖୋଜୁଥିଲୁ-ଥାଏ । ଦୈବାତ୍ ମିଳିଯିବାରୁ ବକ୍‌ସି ବଜାର ନିକଟରେ ଗୋଟିଏ ବଙ୍ଗଳା ଘର କିଣିପକାଇଲି ।"

(ଆତ୍ମଜୀବନ ଚରିତ—ଫକୀର ମୋହନ)

ଓଡ଼ିଆ ସାମାଜିକ ଜୀବନର ଦୀର୍ଘ ୨୦୦ ବର୍ଷର ଇତିହାସ । ଏମାନେ ପ୍ରତ୍ୟେକ ସ୍ୱତନ୍ତ୍ର ରୂପେ ଆମ ଆଗରେ ଦେଖାଦେଉଥିଲେହେଁ ଏମାନଙ୍କ ଅନ୍ତର୍ନିହିତ ଚିନ୍ତାଧାରା ଭିତରେ ଏକ ସମଷ୍ଟି ଐକ୍ୟ ପାଇଁ ଏମାନଙ୍କୁ ଗୋଟିଏ ବୃହତ୍ ଉପନ୍ୟାସର ଗୁଡ଼ିଏ ବିଶିଷ୍ଟ ବିଭାଗ ରୂପେ ଗ୍ରହଣ କରିବାକୁ ଇଚ୍ଛା ହୁଏ । ଓଡ଼ିଆର ସାମାଜିକ ଜୀବନ ଦୀର୍ଘ ୨୦୦ ବର୍ଷ ଧରି ଯେଉଁ 'ପତନ-ଅଭ୍ୟୁଦୟ-ବନ୍ଧୁର-ପନ୍ଥା' ମଧ୍ୟ ଦେଇ ଗତି କରିଛି, ତାର ସୁସ୍ପଷ୍ଟ ଚିତ୍ର ଆମେ ଏ ଉପନ୍ୟାସମାନଙ୍କ ଭିତରେ ଦେଖିବାକୁ ପାଉଁ । ଏ ସାମାଜିକ ଜୀବନର ପରିଧି ସମସ୍ତ ବିଶେଷରେ ବିଭିନ୍ନ କେନ୍ଦ୍ରାଭିମୁଖୀ ହୋଇଉଠିଛି—ପତନ ପରେ ଏହାର ଅଭ୍ୟୁଦୟ ହୋଇଛି ନୂତନ ବେଶରେ । କିନ୍ତୁ ଏ ଅଭ୍ୟୁଦୟର କେବଳ କାଳିମାମୟ ହିଁଗଟିକୁ ଦେଖି ସେନାପତି ଚରିତନ ପାଇଁ ଚକ୍ଷୁବୁଜିଦେଇ ଗ୍ଲୁଲଯାଇଛନ୍ତି । ତେଣୁ ଏ ଜାତିର ଅନ୍ତର ତଳେ ଥିବା ଯେଉଁ ବିପ୍ଳବ ଭବିଷ୍ୟତ ୧୯୬୦ ସାଲ ପରେ ନିଜର ରୂପ ପ୍ରକାଶ କରୁଥିବାର ଆମେ ଦେଖୁ, ତାହା ସେନାପତିଙ୍କ ଲେଖନୀରେ ସ୍ଥାନ ପାଇପାରି ନାହିଁ ।" (୩୧)

ଫକୀରମୋହନ ସେନାପତି ଜନ୍ମଗ୍ରହଣ କଲାବେଳକୁ ଓଡ଼ିଶା ଏକ ସନ୍ଧିକ୍ଷଣ ମୁହୂର୍ତ୍ତରେ ଉପନୀତ । ସେହିପରି ଫକୀରମୋହନଙ୍କ ଦୁଃଖଦ ଜୀବନଯାତ୍ରା ତାଙ୍କୁ ଓଡ଼ିଶାର ବିପର୍ଯ୍ୟୟ ମଧ୍ୟ ଲାଗିରହିଥିଲା । ଚିରଅବହେଳିତ ଉତ୍କଳର ପରାଧୀନତା, ଇଂରେଜମାନଙ୍କ ମନମୁଖୀ ଶାସନ ତାଙ୍କୁ ପଡ଼ୋଶୀ ବଙ୍ଗବାସୀମାନଙ୍କର ଓଡ଼ିଆଭାଷା ପ୍ରତି ବୈମାତୃକ ମନୋଭାବ, ଅରାଜକତା, ନଅଙ୍କ ଦୁର୍ଭିକ୍ଷ ଆଦି ଯେପରି ଫକୀରମୋହନଙ୍କ କାଳର ସବୁତନିଆ ସାଥୀ ହୋଇଯାଇଥିଲେ । ଓଡ଼ିଶାର ଅବସ୍ଥାପରି ଫକୀରମୋହନଙ୍କ ଅବସ୍ଥା ମଧ୍ୟ ଥିଲା ସଂଘର୍ଷ-ସଂଘାତମୟ । ତେଣୁ ନିଜ ଜୀବନର ବ୍ୟଥାଦେଇ ସେ ଉତ୍କଳର ଯେଉଁ ବ୍ୟଥାତୁର ଇତିହାସକୁ ତାଙ୍କ ଉପନ୍ୟାସମାନଙ୍କରେ ପ୍ରକାଶ କରିଗଲେ ତାହାହିଁ ତାଙ୍କ କାଳର ମୁକ୍ତ ଚିତ୍ର ପ୍ରକାଶ କରିଛି ।"

ଏଣୁ ଏହି ପରିପ୍ରେକ୍ଷୀରେ ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣ ଓ ଓଡ଼ିଆ ଔପନ୍ୟାସିକ ଫକୀରମୋହନଙ୍କ କାଳଗତ ମୂଲ୍ୟବୋଧର ତୁଳନାତ୍ମକ ବିଚାର କରାଯାଇପାରେ ।

**ତୁଳନାତ୍ମକ ବିଚାର :**

ହଥର୍ଣ୍ଣ ଜନ୍ମଗ୍ରହଣ କରିଥିଲେ ଏକ ସ୍ୱାଧୀନ ରାଷ୍ଟ୍ରରେ । କିନ୍ତୁ ଫକୀରମୋହନ ଜନ୍ମଗ୍ରହଣ କରିଥିଲେ ଏକ ଚିର ଅବହେଳିତ, ଦୁର୍ଦ୍ଦଶାଗ୍ରସ୍ତ, ପରାଧୀନତାର ଶୃଙ୍ଖଳରେ ଆବଦ୍ଧ ଏକ ପ୍ରଦେଶହୀନ ପ୍ରଦେଶରେ । ଆମେରିକା ପରି ଏକ ସ୍ୱାଧୀନ ରାଷ୍ଟ୍ରରେ ହଥର୍ଣ୍ଣ

---

(୩୧) ଉତ୍କଳର ନଶ୍ୱର ସାମନ୍ତସ୍ୱ—ବ୍ୟାସକବି ଫକୀରମୋହନ ।

ଜନ୍ମଗ୍ରହଣ କରିଥିଲେ ସତ୍ୟ; କିନ୍ତୁ ତାଙ୍କ ଜନ୍ମ ସମୟ (୧୮୦୪)କୁ ଆମେରିକା ସ୍ୱାଧୀନତା ପାଇବାର ମାତ୍ର ଅଳ୍ପ ବର୍ଷ ହୋଇଥାଏ । ତେଣୁ ପରାଧୀନତା ଗ୍ଳାନି ସେତେବେଳେ ପର୍ଯ୍ୟନ୍ତ ମଧ୍ୟ ଆମେରିକୀୟ ସମାଜରୁ ଦୂର ହୋଇନଥାଏ । ପୁଣି ତତ୍ ସଙ୍ଗେ ସଙ୍ଗେ ଆମେରିକାର ଗୃହଯୁଦ୍ଧ ତାର ନୂତନ ସ୍ୱାଧୀନତାର ସକଳ ମର୍ଯ୍ୟାଦାକୁ ମଳିନ କରିଦେଇ ସମାଜକୁ ଆଶଙ୍କାଗ୍ରସ୍ତ ତଥା ଉଦ୍‌ଭ୍ରାନ୍ତ କରିଦେଇଥାଏ । ଏହା ସାଙ୍ଗକୁ ଦାସତ୍ୱ ପ୍ରଥାର ବିଲୋପ ଏବଂ ନାନାପ୍ରକାର କୁସଂସ୍କାରରେ ଆମେରିକୀୟ ସମାଜର ମାନ ଅତି ନିମ୍ନସ୍ତରକୁ ଖସିଯାଇଥାଏ । ଏହିଭଳି ଏକ ବିପର୍ଯ୍ୟସ୍ତ କାଳରେ ହଥର୍ଣ୍ଣଙ୍କ ଆବିର୍ଭାବକୁ ଫକୀରମୋହନ କାଳସହ ତୁଳନା କରାଗଲେ ଲକ୍ଷ୍ୟ କରାଯାଏ ଯେ, ଉଭୟ ଔପନ୍ୟାସିକ ଏକ ସଂଘାତ । ସଂକୁଳ ସମୟ ମଧ୍ୟରେ ଜନ୍ମଗ୍ରହଣ କରି ସ୍ୱ ସ୍ୱ ପ୍ରତିଭାର ପରାକାଷ୍ଠା ଦେଖାଇଯାଇଛନ୍ତି । ହଥର୍ଣ୍ଣଙ୍କ ଜନ୍ମର ୩୯ ବର୍ଷ ପରେ ( ୧୮୪୩ ମସିହାରେ ) ଫକୀରମୋହନ ସେନାପତି ପରାଧୀନ ଭାରତବର୍ଷର ଏକ ପ୍ରଦେଶହୀନ ଉତ୍କଳ ପ୍ରଦେଶରେ ଜନ୍ମଗ୍ରହଣ କରିଥିଲେ । ତେବେ ଉଭୟଙ୍କ ଜନ୍ମରେ ଏହି ସାମାନ୍ୟ ବ୍ୟବଧାନ ଦେଖାଗଲେ ବି ଉଭୟେ ଯେ ଊନବିଂଶ ଶତାବ୍ଦୀର ଔପନ୍ୟାସିକ ଅଥଚ ସମସାମୟିକ ଏକଥା ଅସ୍ୱୀକାର କରିହୁଏ ନାହିଁ । ହଥର୍ଣ୍ଣଙ୍କ ତାଳପରି ଫକୀରମୋହନଙ୍କ କାଳ ଥିଲା ନାନା ଦୁର୍ଯ୍ୟୋଗ ଜଡ଼ିତ । ସେତେବେଳେ ଓଡ଼ିଶାରେ ଇଂରେଜ ଶାସନ, ବଙ୍ଗଭାଷୀମାନଙ୍କର ଓଡ଼ିଆଭାଷା ପ୍ରତି ବିଦ୍ୱେଷ ଭାବ, ତତ୍‌ସଙ୍ଗକୁ ଓଡ଼ିଶାର ଅର୍ଥନୀତି ତଥା ସମାଜନୀତିର ପତନ ସ୍ୱରୂପ ନଅଙ୍କ ଦୁର୍ଭିକ୍ଷର ଆବିର୍ଭାବ ଫକୀରମୋହନଙ୍କ ସମୟର ଓଡ଼ିଶାକୁ ବେଶ୍ ଦୁର୍ବଳ କରିଦେଇଥିଲା । ଏଭଳି ଏକ ସନ୍ଦିଗ୍ଧ ମୁହୂର୍ତ୍ତରେ ଫକୀରମୋହନ ଜନ୍ମହୋଇ ଓଡ଼ିଶାର ସର୍ବବିଧ ଉନ୍ନତିକଳ୍ପେ ନିଜକୁ ଉତ୍ସର୍ଗ କରିଦେଇଥିଲେ । କିନ୍ତୁ ହଥର୍ଣ୍ଣଙ୍କ ସ୍ୱରାଜ୍ୟର ଆଭ୍ୟନ୍ତରୀଣ ପରିସ୍ଥିତି ସହ ପ୍ରତ୍ୟକ୍ଷ ଜଡ଼ିତ ହେବାର ଦେଖାଯାଏ ନାହିଁ । ଯେପରିକି ଫକୀରମୋହନ ଜଡ଼ିତ ଥିଲେ । କିନ୍ତୁ ଏହା ଫକୀରମୋହନଙ୍କ କ୍ଷେତ୍ରରେ ହେବାର ଥିଲା । କାରଣ ସେତେବେଳେ ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ ହୋଇନଥିଲା କିମ୍ବା ଭାରତ ସ୍ୱାଧୀନତା ଲାଭ କରିନଥିଲା । ଏହି ଦୃଷ୍ଟିରୁ ଦେଖିବାକୁ ଗଲେ ଫକୀରମୋହନଙ୍କ ସ୍ୱରାଷ୍ଟ୍ରର କ୍ରିୟାକଳାପରେ ପ୍ରତ୍ୟକ୍ଷ ଜଡ଼ିତ ହେବାର ନାନା ଉପାଦାନ ଓ ସୁଯୋଗ ଥିଲାବେଳେ ହଥର୍ଣ୍ଣ ତାହା ପାଇନଥିଲେ । ତେଣୁ ଏ କ୍ଷେତ୍ରରେ ହଥର୍ଣ୍ଣ ଯେ ଫକୀରମୋହନଙ୍କ ପରି ଦେଶପ୍ରେମୀ ନଥିଲେ, ତାହା କହିହେବ ନାହିଁ । ତେବେ ଏକଥା ଅସ୍ୱୀକାର କରାଯାଇ ପାରିବ ନାହିଁ ଯେ, ଉଭୟ ଔପନ୍ୟାସିକଙ୍କ ଦେଶ ଏକ ଶାସକ ଜାତି ( ଇଂରେଜ ) ଦ୍ୱାରା ଶାସିତ ହୋଇଥିଲା ଏବଂ ସେଇଥିପାଇଁ ଉଭୟଙ୍କ ସାହିତ୍ୟ ସୃଷ୍ଟିରେ ଏହି ଶାସକ ଜାତିର ଅଭାବ ଦେଖିବାକୁ ମିଳେ ।

ହଥର୍ଣ୍ଣଙ୍କ ପୂର୍ବର ପରାଧୀନ ଆମେରିକା ଇଂରେଜ ଶାସନ କବଳିତ ଥିଲାବେଳେ ଫକୀରମୋହନଙ୍କ ସମୟର ଓଡ଼ିଶା ଇଂରେଜମାନଙ୍କ ଦ୍ୱାରା ଶାସିତ ହୋଇଥିଲା । ହଥର୍ଣ୍ଣ ଅତୀତ ପରାଧୀନତାର ଗ୍ଳାନିରେ ଜର୍ଜରିତ ହୋଇଥିଲାବେଳେ ଫକୀରମୋହନଙ୍କର

ପରାଧୀନତାର ଯନ୍ତ୍ରଣା ସମ୍ପର୍କରେ ପ୍ରତ୍ୟକ୍ଷ ଅନୁଭୂତ ଥିଲା । ତେଣୁ ଫକୀରମୋହନଙ୍କ କାଳର ପରାଧୀନତା ଚିତ୍ର ତାଙ୍କ ଲେଖନୀରେ ଯେତେ ସ୍ପଷ୍ଟ ଓ ଉତ୍କଟ ରୂପ ନେଇଛି, ତାହା ହଥର୍ଣ୍ଣଙ୍କ ଲେଖନୀରେ ଅବଶ୍ୟ ସେଭଳି ରୂପ ପ୍ରକାଶ କରିପାରିନାହିଁ; କିନ୍ତୁ ତାର ପ୍ରତିଫଳିତ ହୋଇଛି ମାତ୍ର ।

ଉଭୟ ଔପନ୍ୟାସିକ ସ୍ୱ ସ୍ୱ କାଳର ପ୍ରଭାବକୁ ସେମାନଙ୍କ ଉପନ୍ୟାସର ଚରିତ୍ର ଓ ଘଟଣାରେ ଆରୋପ କରିଯାଇଛନ୍ତି । ତେଣୁ କାଳଗତ ମୂଲ୍ୟବୋଧ ହେତୁ ସେମାନଙ୍କ ଉପନ୍ୟାସର ଘଟଣା ଅନେକ ସମୟରେ ଓ ଅନେକସ୍ଥଳେ ସମଧର୍ମୀ ହୋଇଉଠିଛି ।

ଫକୀରମୋହନ ୧୮୪୩ରୁ ୧୯୧୮ ମସିହା ପର୍ଯ୍ୟନ୍ତ ଜୀବିତ ଥିଲେ । ଜୀବନର ୭୫ ବର୍ଷର ଅଭିଜ୍ଞତା ଭିତରେ ସେ ପ୍ରକାଶ କରିଯାଇଛନ୍ତି ପ୍ରକୃତରେ ସମସାମୟିକ କାଳର ଚିତ୍ରକୁ । ସେହିପରି ୧୮୦୪ରୁ ୧୮୬୪ ମସିହା ପର୍ଯ୍ୟନ୍ତ ଜୀବିତ ଥିଲେ ହଥର୍ଣ୍ଣ । ସେ ୬୦ ବର୍ଷ କାଳର ଆମେରିକୀୟ ସମାଜର ଚିତ୍ରକୁ ଚିତ୍ରିତ କରିଛନ୍ତି ନିଖୁଣଭାବେ ତାଙ୍କ ଉପନ୍ୟାସ ମଧ୍ୟରେ । ହଥର୍ଣ୍ଣ ଊନବିଂଶ ଶତାବ୍ଦୀରେ ଜନ୍ମହୋଇ ସେହି ଶତାବ୍ଦୀରେ ମୃତ୍ୟୁବରଣ କରିଥିଲାବେଳେ ଫକୀରମୋହନ ଦୁଇଟି ଶତାବ୍ଦୀ ମଧ୍ୟ ଦେଇ ନିଜ ଜୀବନର ଗତିଧାରାକୁ ପ୍ରବାହିତ କରିଛନ୍ତି । ଏହା ସତ୍ତ୍ୱେ ସମସାମୟିକ କାଳର ପ୍ରଭାବରୁ ଏ ଦୁଇ ଔପନ୍ୟାସିକ ଆଦୌ ମୁକ୍ତ ନୁହନ୍ତି । ଉଭୟ ଔପନ୍ୟାସିକଙ୍କ କାଳ ଥିଲା ଉଭୟଙ୍କ ଦେଶ, ସମାଜ ଓ ଜୀବନ ଜୀବିକା ପାଇଁ ଏକ ସନ୍ଦିଗ୍ଧ ମୁହୂର୍ତ୍ତ । ତେଣୁ ଜୀବନର ସଂଘର୍ଷ ବୋଧ ଏ ଦୁହିଁଙ୍କର ପ୍ରାୟ ସମାନ ପରି ମନେହୁଏ । ଉଭୟ ଔପନ୍ୟାସିକଙ୍କ କାଳଗତ ବ୍ୟବଧାନ ସେତେ ଅଧିକ ନୁହେଁ, ପୁଣି ଏମାନଙ୍କ କାଳର ଅବସ୍ଥା ସମଧର୍ମୀ ହୋଇଥିବାରୁ ଓ ଉଭୟ ଔପନ୍ୟାସିକଙ୍କ ସୃଷ୍ଟି ତାଙ୍କ ସମସାମୟିକ କାଳ ମାଧ୍ୟମରେ ଚିତ୍ରିତ ହୋଇଥିବାରୁ ଏହି ଦୁଇ ଔପନ୍ୟାସିକଙ୍କ କାଳଗତ ମୂଲ୍ୟବୋଧ ଭିତରେ ଯେ ଯଥେଷ୍ଟ ସାମ୍ୟ ରହିଛି, ତାହା ସ୍ପଷ୍ଟ ପ୍ରତିଭାତ ହୁଏ ।

ତେଣୁ ଔପନ୍ୟାସିକ ହଥର୍ଣ୍ଣ ଓ ଔପନ୍ୟାସିକ ଫକୀରମୋହନଙ୍କ କାଳଗତ ମୂଲ୍ୟବୋଧର ସମଧର୍ମିତା ହେତୁ ଉଭୟ ଔପନ୍ୟାସିକଙ୍କ ପ୍ରତିଭା, ସୃଷ୍ଟି ସମ୍ଭାର ଓ ଜୀବନ ଚର୍ଯ୍ୟାରେ ଯେ ଏହାର ପ୍ରଭାବ ପଡ଼ିଛି, ତାହା ଅସ୍ୱୀକାର କରିହେବ ନାହିଁ । ଏଥିପାଇଁ କୁହାଯାଇପାରେ ଯେ, ଏକ ସମକାଳରେ (ଊନବିଂଶ ଶତାବ୍ଦୀରେ) ଆବିର୍ଭାବ ହୋଇ ଖ୍ୟାତି ଅର୍ଜନ କରିଥିବା ଏହି ଦୁଇ ଔପନ୍ୟାସିକଙ୍କ ପ୍ରତିଭା ହେଉଛି ସମଧର୍ମୀ । ସେମାନଙ୍କ ଜୀବନଚର୍ଯ୍ୟା ଓ ସାହିତ୍ୟିକ ମୂଲ୍ୟବୋଧରେ ଏହା ଅଧିକ ପ୍ରାଞ୍ଜଳ । କିନ୍ତୁ ଏ ସବୁଥିରେ ସେମାନଙ୍କ କାଳଗତ ମୂଲ୍ୟବୋଧର ସମଧର୍ମୀ ଭାବ ଯେ, ଏକାନ୍ତ ଭାବେ ପ୍ରତିଫଳିତ, ତାହା ଅସ୍ୱୀକାର କରିହେବ ନାହିଁ । ପରବର୍ତ୍ତୀ ଅଧ୍ୟାୟରେ ଏହା ଆମର ଆଲୋଚ୍ୟ ।

□□

# ଜନ୍ମଜାତକ ବିଶ୍ବରଠାରୁ ସଙ୍ଘର୍ଷମୟ କର୍ମଜୀବନରେ ଔପନ୍ୟାସିକ ହଥର୍ଣ୍ଣ ଓ ଫକୀରମୋହନଙ୍କ ତୁଳନାତ୍ମକ ଅଧ୍ୟୟନ

କାଳର କରାଳ ଗତିକୁ ଅତିକ୍ରମ କରିପାରିବା ମଣିଷର ସାଧ୍ୟାତୀତ । ମଣିଷର ମରଣଶୀଳର ଏହାକୁ ଅତିକ୍ରମ ସିନା କରିପାରେ ନାହିଁ; ମାତ୍ର ତାର କାଳଜୟୀ ପ୍ରତିଭା କାଳର କରାଳ ଗତିକୁ ପ୍ରତିହତ କରିପାରେ । ବିଶ୍ୱର ଦୁଇ ଖ୍ୟାତନାମା ଔପନ୍ୟାସିକ ହଥର୍ଣ୍ଣ ଓ ଫକୀରମୋହନ ସେମାନଙ୍କ ପ୍ରତିଭାଜନିତ ପ୍ରତିଷ୍ଠାରେ କାଳକୁ ମଧ୍ୟ ଉପହସିତ କରିଯାଇଛନ୍ତି; କିନ୍ତୁ ଏମାନଙ୍କ ଜୀବନ ଉପରେ କାଳର ଯେଉଁ ଅପ୍ରତିହତ ପ୍ରଭାବ ପଡ଼ିଛି, ସେଥିରୁ ସେମାନେ ନିଜକୁ ରକ୍ଷାକରି ପାରି ନାହାନ୍ତି । କାଳଗତ ଦୃଷ୍ଟିରୁ ବିଚାର କରାଗଲେ ହଥର୍ଣ୍ଣ ଓ ଫକୀରମୋହନଙ୍କ ମଧ୍ୟରେ ସେପରି ଦୀର୍ଘ ବ୍ୟବଧାନ ପରିଲକ୍ଷିତ ହୁଏନାହିଁ । କାରଣ ଏହି ଉଭୟ ଔପନ୍ୟାସିକ ଊନବିଂଶ ଶତାବ୍ଦୀର ଆଦ୍ୟଭାଗରେ ହିଁ ଆବିର୍ଭାବ ହୋଇଥିଲେ । ସେ ସମୟର ରାଜନୈତିକ, ସାମାଜିକ ମୂଲ୍ୟବୋଧଜନିତ ପ୍ରଭାବ ମଧ୍ୟ ଏ ଦୁହିଁଙ୍କ ଜୀବନରେ ସାମ୍ୟ ଦର୍ଶାଇଛି, ଯାହାକି ପୂର୍ବବର୍ତ୍ତୀ ଅଧ୍ୟାୟ (ଦ୍ୱିତୀୟ ଅଧ୍ୟାୟ)ରେ ଆଲୋଚନା କରାଯାଇଛି । କିନ୍ତୁ ଏମାନଙ୍କ ଜୀବନ ଚର୍ଯ୍ୟାରେ କର୍ମମୟ ଜୀବନର ସଂଘର୍ଷବୋଧରେ କେତେ ସାମ୍ୟ ରହିଛି ତାହା ଏହି ପର୍ଯ୍ୟାୟରେ ଆମର ବିଚାର ଯୋଗ୍ୟ ।

ଫକୀରମୋହନ ଓ ହଥର୍ଣ୍ଣ ସେମାନଙ୍କ ନୈତିକ ମୂଲ୍ୟବୋଧ ପାଇଁ ଯେପରି ଅନେକ ଦୃଷ୍ଟିରୁ ସାମ୍ୟ ଦର୍ଶାଇଛନ୍ତି, ସେହିପରି ସାମ୍ୟ ମଧ୍ୟ ସେମାନଙ୍କ କର୍ମମୟ ଜୀବନରେ ଲକ୍ଷ୍ୟ କରାଯାଏ । ଉଭୟ ଔପନ୍ୟାସିକ ଏକ ବିପର୍ଯ୍ୟସ୍ତ ପାରିବାରିକ ଭିତ୍ତିଭୂମିରେ ନିଜର ଶୈଶବ ଆରମ୍ଭ କରି ଏକ ଅସହାୟ ମୁହୂର୍ତ୍ତରେ ଆପଣା ଆପଣାର ଜୀବନ ପ୍ରଦୀପ ନିର୍ବାପିତ କରିଥିଲେ । ଶିକ୍ଷା, ଦୀକ୍ଷା, ସାହିତ୍ୟ ସୃଷ୍ଟିରେ ଏମାନଙ୍କ ଜୀବନରେ ଯେଉଁ ଝଡ଼ ବହିଛି,

ତାହା କେବଳ ଏମାନଙ୍କ ବ୍ୟକ୍ତିଗତ ଜୀବନ ଚରିତ୍ରର ପ୍ରତିଫଳନ ମାତ୍ର । ଏ କ୍ଷେତ୍ରରେ ବି ଉଭୟ ଔପନ୍ୟାସିକଙ୍କ ଜୀବନରେ ସାମ୍ୟ ଲକ୍ଷ୍ୟ କରାଯାଇପାରେ । ଉଭୟଙ୍କ ଜୀବନୀ ଆଲୋଚନାରେ ଓ ସଙ୍ଘର୍ଷମୟ କର୍ମଜୀବନ ଆଲୋଚନାରେ ଏହା ସ୍ପଷ୍ଟ ହୋଇଉଠିବ । ଏହି ପରିପ୍ରେକ୍ଷୀରେ ପ୍ରଥମେ ହଥର୍ଣ୍ଣ ଓ ପରେ ଫକୀରମୋହନଙ୍କ ଆଲୋଚନା କରାଯାଇ ପରିଶେଷରେ ସେମାନଙ୍କ ଜୀବନଚର୍ଯ୍ୟାଜନିତ ସାମ୍ୟକୁ ଅନୁଧ୍ୟାନ କରାଯାଇପାରେ ।

## (କ) ହଥର୍ଣ୍ଣ :

ଆମେରିକୀୟ ଉପନ୍ୟାସ ସାହିତ୍ୟର ଆଦ୍ୟ ପର୍ଯ୍ୟାୟରେ ଯେଉଁ କେତେଜଣ ଔପନ୍ୟାସିକ ସ୍ୱ-କଳାକୃତିର ବଳିଷ୍ଠ ସ୍ୱାକ୍ଷର ପ୍ରଦାନ କରିଯାଇଥିଲେ । ସେମାନଙ୍କ ମଧ୍ୟରେ ନାଥାନିଏଲ୍ ହଥର୍ଣ୍ଣ ଥିଲେ ଅନ୍ୟତମ ପ୍ରଭାବଶାଳୀ ଔପନ୍ୟାସିକ । ଏହି ଖ୍ୟାତନାମା ଔପନ୍ୟାସିକଙ୍କର ଜନ୍ମ ହୋଇଥିଲା ୧୮୦୪ ମସିହା ଜୁଲାଇ ଚାରି ତାରିଖରେ, ଆମେରିକାର ମାସାଚୁସେଟ୍ ଷ୍ଟେଟ୍‌ର ସାଲେମ୍ ସହରରେ । ତାଙ୍କ ପିତାଙ୍କ ନାମ ଥିଲା କ୍ୟାପ୍‌ଟେନ୍ ନାଥାନିଏଲ୍ ହଥର୍ଣ୍ଣ ଓ ମାତାଙ୍କ ନାମ ଥିଲା ଏଲିଜାବେଥ୍ ମାନିଂ ହଥର୍ଣ୍ଣ । ଉପନିବେଶିକ ଶାସନକାଳରେ ହଥର୍ଣ୍ଣ ପରିବାର ସାଲେମ୍ ସହରର ଏକ ପ୍ରତିପତ୍ତିଶାଳୀ; ସମ୍ଭ୍ରାନ୍ତ ପରିବାରଭାବେ ବେଶ୍ ଖ୍ୟାତିସମ୍ପନ୍ନ ଥିଲେ । ସାଲେମ୍ ଥିଲା । ସେ ସମୟରେ ଆମେରିକାର ଏକ ପୁରୁଣା ସହର । ଏଠାରେ ଏକ ବନ୍ଦର ଥିବାରୁ ଏହାକୁ ବନ୍ଦର ସହର ମଧ୍ୟ କୁହାଯାଏ । ହଥର୍ଣ୍ଣଙ୍କ ପୂର୍ବପୁରୁଷ ଏହି ପ୍ରାଚୀନ ସାଲେମ୍ ସହରରେ ବେଶ୍ ମର୍ଯ୍ୟାଦା ସମ୍ପନ୍ନ ପରିବାର ଭାବରେ ବହୁ ପୁରୁଷ ଧରି ବସବାସ କରି ଆସିଥିଲେ । ସେ ସମୟରେ ଏକ ଅନ୍ଧବିଶ୍ୱାସ ଆମେରିକା ସମାଜରେ ପ୍ରଚଳିତ ଥିଲା ଯେ, ଯେଉଁ ଲୋକ ଯାଦୁକର ସେ ଜଣେ ଖରାପ ଲୋକ । ତା' ପ୍ରତି ଜନସାଧାରଣ ତଥା ରକ୍ଷଣଶୀଳ ଗୋଷ୍ଠୀର ବହୁ ବିଦ୍ୱେଷ ମନୋଭାବ ଥିଲା । ଏହି ରକ୍ଷଣଶୀଳ ଗୋଷ୍ଠୀ ଯାହାକୁ ଏହି ଯାଦୁକରୀ କାର୍ଯ୍ୟରେ ଲିପ୍ତ ଥିବାର ଅନୁମାନ କରୁଥିଲେ, ଆଇନାନୁଯାୟୀ ଫାଶୀଖୁଣ୍ଟରେ ଝୁଲାଇ ଦେଉଥିଲେ । ଏଥିପାଇଁ ଯେଉଁ ବିଚାରପତିଙ୍କର ଆବଶ୍ୟକତା ଥିଲା । ୧୬୯୦ ଖ୍ରୀଷ୍ଟାବ୍ଦରେ ହଥର୍ଣ୍ଣଙ୍କ ପରି- ବାରରୁ ଜଣେ ବ୍ୟକ୍ତି ସେହି କାର୍ଯ୍ୟ ତୁଲାଇଥିଲେ । ହଥର୍ଣ୍ଣ କଷ୍ଟମ୍ ହାଉସରେ ଥିବା- ବେଳେ ତାଙ୍କର ଯେଉଁ ପ୍ରଥମ ଉପନ୍ୟାସ 'The Scarlet Letter' ପ୍ରକାଶ ପାଇଥିଲା, ତାର ମୁଖବନ୍ଧରେ ସେ ଏହି କଥା ସ୍ପଷ୍ଟ ଭାବେ ଉଲ୍ଲେଖ କରିଛନ୍ତି ଏବଂ ଏହି ନିର୍ମମ ରାୟ ବିରୁଦ୍ଧରେ ପ୍ରତିବାଦ କରି ସେ ତାଙ୍କର ଦ୍ୱିତୀୟ ଉପନ୍ୟାସ **'The House of the Seven Gables'**ରେ ଯେଉଁ ବିକଳ୍ପ ପ୍ରଦାନ କରିଛନ୍ତି, ତାହା ବାସ୍ତ- ବିକ ହୃଦୟସ୍ପର୍ଶୀ ଓ କରୁଣଧର୍ମୀ ହୋଇପଡ଼ିଛି । ଏହି ଉପନ୍ୟାସ ରଚନା କରିବା ପୂର୍ବରୁ ହଥର୍ଣ୍ଣ ପରିବାରର ଜଣେ ଉତ୍ତରଦାୟାଦ ଭାବେ ନିଜକୁ ଏଥିପାଇଁ ସେ ଖୁବ୍ ଅଭିଶପ୍ତ

ମନେକରୁଥିଲେ, ଯାହାର ସମ୍ପୂର୍ଣ୍ଣ ପ୍ରତିଫଳନ ରହିଛି । ତାଙ୍କର ଦ୍ୱିତୀୟ ଉପନ୍ୟାସ 'The House of the Seven Gables'ରେ । (୧)

ସମୟର ବିବର୍ତ୍ତନରେ ସବୁକିଛି ବଦଳିଯାଏ । ସମୟର ଚକ୍ର, କର୍ମ ଓ ଅଦୃଷ୍ଟ, ଭାଗ୍ୟର ଚରମ ବିପର୍ଯ୍ୟୟ ହଥର୍ଣ୍ଣ ପରିବାରର ସମସ୍ତ ସୁଖ ସୌଭାଗ୍ୟକୁ ଧୋଇ ନେଇଥିଲା । ସେଥିସହ ତାଙ୍କ ବଂଶର ସାମାଜିକ ମର୍ଯ୍ୟାଦାର ମଧ୍ୟ ହାନି ଘଟିଥିଲା । ଏହାପରେ ଅନ୍ୟ ଏକ ଅଭିଶାପ ସ୍ୱରୂପ ନାଥାନିଏଲ୍‌ଙ୍କ ପିତାଙ୍କ ଅକାଳ ମୃତ୍ୟୁ ତାଙ୍କ ପାରିବାରିକ ଜୀବନକୁ ଆହୁରି ବିପର୍ଯ୍ୟସ୍ତ କରିପକାଇଲା । ନାଥାନିଏଲ୍‌ଙ୍କ ପିତା ଥିଲେ ଜଣେ କ୍ୟାପ୍‌ଟେନ୍ । ହଥର୍ଣ୍ଣ ଯେତେବେଳେ ମାତ୍ର ଚାରିବର୍ଷର ଜଣେ ଅବୋଧ ବାଳକ ସେତେବେଳେ ତାଙ୍କର ପିତା 'କାହାଲ' ଦୂରରେ ଅନ୍ଧାନ୍ଧ ହୋଇ 'ସୁରିନାମ୍'ର 'ଗୁଇନା' ବନ୍ଦରଠାରେ ପ୍ରାଣତ୍ୟାଗ କଲେ ।

---

(୧) "When Hawthorne was born in Salen, Massachusetts in 1804 the town is already very old by American standard. The Hathornes had been there from the begining. (Hawthorne added the 'W' to the family name when he began to sign his stories). By the 1690's one of them was prominent enough to be a Judge in the which craft trials. His discendant's remarks on him in the 'Custom House'. Introduction to the 'Scarlet Letter' mix pride in his prominence and a sense of inherited quilt for his deeds as Judge".

[ 'Six American novelists of the nineteenth century —Edited by : Richard Forster, Page-45 ]

ପିତାଙ୍କ ମୃତ୍ୟୁ ପରେ ହଥର୍ଣ୍ଣଙ୍କ ବିଧବାମାତା ତାଙ୍କର ଅନ୍ୟ ତିନି ସନ୍ତାନ ସନ୍ତତିଙ୍କ ସହିତ ହଥର୍ଣ୍ଣଙ୍କ ସାଙ୍ଗରେ ଧରି ଦୀର୍ଘ ଅଠବର୍ଷ ପାଇଁ ସାଲେମ୍ ସହର ଗ୍ରାମ ନିଜ ବାପ ଘରକୁ ଚାଲିଯାଇଥିଲେ । (୨)

ହଥର୍ଣ୍ଣଙ୍କ ମାମୁଁଘର ଥିଲା ମାନିଂସ୍ ସହରରେ । ମାନିଂସ୍ ଠାରେ ଅବସ୍ଥିତ ମାମୁଁ ଘରେ ଏହି ଶିଶୁଟି ପ୍ରତିଭାଧର ହଥର୍ଣ୍ଣଙ୍କର ଚଞ୍ଚଳ ପ୍ରକୃତି ତାଙ୍କୁ ଭବିଷ୍ୟତରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତିଭାବେ ପରିଚିତ କରାଇବାର ଏକ ନିର୍ଭର ପ୍ରତିଶ୍ରୁତି ଯେପରି ଦେଉଥିବାର ଅନୁମାନ କରାଯାଉଥିଲା । ନଅ ବର୍ଷ ପର୍ଯ୍ୟନ୍ତ ହଥର୍ଣ୍ଣ ଖୁବ୍ ଚଞ୍ଚଳ ପ୍ରକୃତିର ଥିଲେ । ଏହି ଚପଳତା ହେତୁ ଥରେ ସେ ଅସାବଧାନ ହୋଇ ଫୁଟ୍‌ବଲ୍ ଖେଳି ଖେଳୁ ତାଙ୍କ ଗୋଡ଼ରେ ଖୁବ୍ ଆଘାତ ପାଇଥିଲେ ଓ ବହୁଦିନ ପର୍ଯ୍ୟନ୍ତ ସେ ଚଳପ୍ରଚଳ ହେବାକୁ ସକ୍ଷମ ହୋଇପାରିନଥିଲେ । ଏହି ଅଚଳ ଅବସ୍ଥାରେ ଘରେ ବସି ସେ ବହି ପଢ଼ିବାରେ ଏପରି ଅଭ୍ୟସ୍ତ ହୋଇଯାଇଥିଲେ ଯେ, ଯାହାଦ୍ୱାରା ବହି ପ୍ରତି ତାଙ୍କର ଏକ ଅସାଧାରଣ ଅନୁରାଗ ସୃଷ୍ଟି ହୋଇଥିଲା । ଏହି ଆଗ୍ରହ ଓ ଅଭିଜ୍ଞତାକୁ ନେଇ ସେ ଭବିଷ୍ୟତରେ ଜଣେ ଲେଖକ ହେବାର ସ୍ୱପ୍ନ ଦେଖୁଥିଲେ ।

ହଥର୍ଣ୍ଣଙ୍କ ଯେତେବେଳେ ବାରବର୍ଷ ହେଲାବେଳେ ତାଙ୍କ ମା' ତାଙ୍କର ଅନ୍ୟ ସନ୍ତାନ ସନ୍ତତିଙ୍କ ଧରି ହଥର୍ଣ୍ଣଙ୍କ ସହ 'ରେମଣ୍ଡ'ର 'ମାଇନେ' ଗ୍ରାମଠାରେ ଥିବା ତାଙ୍କର ପୈତୃକ ସମ୍ପତ୍ତି ଉପରେ ନିର୍ମିତ ଏକ ଘରକୁ ରହିବା ପାଇଁ ଚାଲିଆସିଥିଲେ । ସେଠାରେ ହଥର୍ଣ୍ଣ ଦୀର୍ଘ ତିନିବର୍ଷ କଟାଇଥିଲେ । ତାଙ୍କ ଅଳ୍ପାୟୁ ଜୀବନରେ ଏହି ସମୟ ଥିଲା ସବୁଠାରୁ ବେଶ୍ ଉପଭୋଗ୍ୟ ଓ ଆନନ୍ଦଦାୟକ । 'ରେମଣ୍ଡ'ର ସେହି ମଫସଲ ଗାଁ ଟିର ସୌନ୍ଦର୍ଯ୍ୟ ତାଙ୍କ ଶିଳ୍ପୀ ପ୍ରାଣକୁ ବେଶ୍ ଆକୃଷ୍ଟ କରିପାରିଥିଲା । ସେହି ଆକର୍ଷଣ ଜନିତ ପ୍ରଭାବ ତାଙ୍କୁ ସେ ସମୟରେ ଶ୍ରେଷ୍ଠ ଶ୍ରେଷ୍ଠ ଗଳ୍ପ ଲେଖିବାକୁ ପ୍ରେରଣା ଯୋଗାଇଥିଲା । ଏହିଠାରେ ଥିବା ସମୟରେ ସେ ଅନୁଭବ କରିଥିବା ନିଜଙ୍କ ଜୀବନ, ଅପ୍ରତିହତ ଦୃଶ୍ୟ ଓ ପ୍ରକୃତିର ମନମୁଗ୍ଧକର ସୌନ୍ଦର୍ଯ୍ୟକୁ ସେ ତାଙ୍କର ପ୍ରାୟ ଉପନ୍ୟାସରେ ରୂପ ଦେଇଛନ୍ତି ।

---

(୨) when Captain Nathniel Hathorne, a ship master died on one of his voyages the year that young Nathniel was four, the family decline was complete left with out resources, Elizabeth manning Hathorne moved with her three children into the near by home of her brother· (Six. Ame, Nov Page 45-46)

ପନ୍ଦର ବର୍ଷ ବୟସରେ ହଥର୍ଣ୍ଣ ସ୍କୁଲଶିକ୍ଷା ପାଇଁ ପୁଣି ଥରେ ତାଙ୍କ ଜନ୍ମସ୍ଥାନ ସାଲେମ୍ ସହରକୁ ଫେରିଯାଇଥିଲେ । ୧୮୧୨ ମସିହାର ଯୁଦ୍ଧରେ ସାଲେମ୍‌ର ସମସ୍ତ ଗୌରବ ଓ ପ୍ରତିପତ୍ତି ଲୋପପାଇଯାଇଥିଲା । ଯୁଦ୍ଧର ଶେଷ ପରେ ବି ବନ୍ଦର ସହର ସାଲେମ୍ ସହରର ହୃତ ଗୌରବ ଆଉ ଫେରିଆସି ନଥିଲା । ତଥାପି ଏହି ସହରର ଭଗ୍ନ ପ୍ରାଣନେଇ ହଥର୍ଣ୍ଣ ଓ ହଥର୍ଣ୍ଣଙ୍କ ବୃଦ୍ଧ ଶାପୂର୍ଣ୍ଣ ପରିବାରକୁ ନେଇ ସାଲେମ୍ ସହର ଯେପରି ପରସ୍ପର ପ୍ରତି ଆକୃଷ୍ଟ ଥିବା ପରି ମନେହୋଇଥିଲା । ଏହି ସମୟର ଅନୁଭୂତିକୁ ନେଇ ହଥର୍ଣ୍ଣଙ୍କ ଯୁବସୁଲଭ ଚପଳତାରେ ପ୍ରୌଢ଼ର ବିଜ୍ଞତା ପରିସ୍ଫୁଟ ହୋଇଥିଲା । ତାଙ୍କର ଏହି ଚିନ୍ତାଧାରାକୁ ସେ 'The scarlet Letter' ଓ 'The House of the Seven Gables' ଉପନ୍ୟାସର ଚରିତ୍ରମାନଙ୍କ ମାଧ୍ୟମରେ ପରିପ୍ରକାଶ କରିଅଛନ୍ତି । ଜୀବନର ଆଦ୍ୟ ଯୌବନରେ ସାଂସାରିକ ଅଭିଜ୍ଞ ବହୁଳ ଜଟିଳ ତାକୁ ଉପଲବ୍ଧି କରି ହଥର୍ଣ୍ଣ ସେହି ସୁନେଲ, ରୋମାଣ୍ଟିକ ମୁହୂର୍ତ୍ତରେ ମଧ୍ୟ ମୃତ୍ୟୁର ପାଦ ଶବ୍ଦ ତାଙ୍କ ମନ ଓ ହୃଦୟରେ ସ୍ପଷ୍ଟଭାବେ ଶୁଣି ପାରୁଥିଲେ । ତେଣୁ ଯୌବନରେ ବାର୍ଦ୍ଧକ୍ୟର ଚିନ୍ତାଧାରା କ୍ରମଶଃ ଭାରାକ୍ରାନ୍ତ ହୋଇ ଅକାଳରେ ଯୌବନକୁ ତାଙ୍କର ବିଦାୟ ଦେଇଥିଲା । କିନ୍ତୁ ଅତିକ୍ରାନ୍ତ ଯୌବନରେ ହଥର୍ଣ୍ଣ ରୋମାଣ୍ଟିକ ଚେତନା ପ୍ରବାହ ଉପନ୍ୟାସ ଓ ଗଳ୍ପ ଲେଖିବାର ପ୍ରୟାସ କରିଥିଲେ । ତାଙ୍କର ପ୍ରଥମ ଉପନ୍ୟାସ 'The scarlet letter' ରେ ସେ ସାଲେମ୍ ସହରର ଶିବ ଓ ନଗର ପାରିବାରିକ ଜୀବନର ଧ୍ୱସ୍ତ ବିଧ୍ୱସ୍ତ ରୂପକୁ ଅତି ନିଖୁଣ ଭାବରେ ଚିତ୍ରିତ କରି ଆପଣା ଜୀବନର ଅପ୍ରତିହତ ଦୁଃଖକୁ ସାମାନ୍ୟ ପ୍ରତିହତ କରିବାର ଚେଷ୍ଟା କରିଛନ୍ତି ମାତ୍ର ।

ସ୍କୁଲ ଶିକ୍ଷା ପରେ ସେ ସାଲେମ୍ ଛାଡ଼ିବାକୁ ବାଧ୍ୟହେଲେ । କାରଣ ସେ ଉଚ୍ଚଶିକ୍ଷା ପାଇଁ ସ୍କୁଲ ଶିକ୍ଷାର ଦୁଇବର୍ଷ ପରେ ୧୮୨୧ ମସିହାରେ 'ବୋଡ଼ନ୍ କଲେଜ'ରେ ନାମ ଲେଖାଇଥିଲେ । 'ବୋଡ଼ନ୍' ସେଠାକାର ଗୋଟିଏ ଶ୍ରେଷ୍ଠ କଲେଜ । କିନ୍ତୁ ଏଠାରେ ପଢୁଥିବା ବହୁ ଛାତ୍ର ପରେ ଆମେରିକାର ଜଣେ ଜଣେ ବିଶିଷ୍ଟ ବ୍ୟକ୍ତି ଭାବେ ପରିଚିତ ହୋଇପାରିଥିଲେ । ହଥର୍ଣ୍ଣଙ୍କ କଲେଜ ବନ୍ଧୁମାନେ ସାହିତ୍ୟ ପ୍ରତି ବିଶେଷ ଆଗ୍ରହୀ ନଥିଲେ । କାରଣ ଆମେରିକାର ତତ୍କାଳୀନ ରାଜନୈତିକ ସମସ୍ୟା ସେମାନଙ୍କୁ ଅନେକାଂଶରେ ପ୍ରଭାବିତ କରିପାରିଥିଲା । ତେଣୁ ସେମାନେ ସାହିତ୍ୟ ସୃଷ୍ଟି ଅପେକ୍ଷା ରାଜନୀତି ପ୍ରତି ବିଶେଷଭାବେ ଆକୃଷ୍ଟ ହୋଇପଡ଼ିଥିବାର ଲକ୍ଷ୍ୟ କରାଯାଏ । ଆମେରିକାର ଅନ୍ୟତମ ଖ୍ୟାତନାମା ଲେଖକ ଲଙ୍ଗଫେଲୋ (Longfellow) ହଥର୍ଣ୍ଣଙ୍କ ସହପାଠୀ ଥିଲେ । କିନ୍ତୁ ତାଙ୍କ ସହ ହଥର୍ଣ୍ଣଙ୍କର ସେପରି ଘନିଷ୍ଠ ସମ୍ପର୍କ ନଥିଲା । ଆମେରିକାର ଜଣେ ପ୍ରସିଦ୍ଧ ଜନନେତା ଭାବେ ପରେ ପରିଚିତ ହୋଇଥିବା ଫ୍ରାଙ୍କ୍‌ଲିନ୍ ପିଅର୍‌ସ ସେତେବେଳେ

ହୃଥର୍ଣ୍ଣଙ୍କର ଜଣେ ପଜଷ୍ଟ ବନ୍ଧୁ ଭାବେ ପରିଚିତ ଥିଲେ ଏବଂ ତାଙ୍କ ସଂସ୍ପର୍ଶରେ ଆସି ହୃଥର୍ଣ୍ଣଙ୍କ ସାହିତ୍ୟିକ ଜୀବନ ଅନେକାଂଶରେ ପ୍ରେରଣା ଲାଭକରିଥିବାର ଲକ୍ଷ୍ୟ କରାଯାଏ ।

କଲେଜ ଜୀବନରେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ସାହିତ୍ୟିକଭାବେ ହୃଥର୍ଣ୍ଣ ତାଙ୍କ ବନ୍ଧୁ ମହଲରେ ବେଶ୍ ପରିଚିତ ଥିଲେ । ଏହି ସମୟରେ ସ୍ନାତକ ଛାତ୍ର ଥିବା ବେଳେ ସେ 'Fanshawe' ନାମକ ଏକ ଗଳ୍ପ ରଚନା କରିଥିଲେ । ୧୮୨୫ ମସିହାରେ ସ୍ନାତକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେ ନିଜ ମା', ଭାଇ, ଭଉଣୀ ରହୁଥିବା ସାଲେମ୍ ସହରକୁ ଫେରିଆସିଥିଲେ । କଲେଜ ଜୀବନରେ ପ୍ରବନ୍ଧ ଲେଖିବାରେ ସେ ବେଶ୍ ପାରଦର୍ଶିତା ଦେଖାଇ ପାରିଥିଲେ । ଏହା ପରେ ସେ ବହୁ କ୍ଷୁଦ୍ର ଗଳ୍ପ ଓ ଉପନ୍ୟାସର ସ୍ରଷ୍ଟା ଭାବେ ଆମେରିକୀୟ ସାହିତ୍ୟରେ ହେଲେ ପ୍ରତିଷ୍ଠିତ ।

କଲେଜ ଶିକ୍ଷା ସମାପ୍ତି ପରେ ବାରବର୍ଷ ସାଧନା କରି ଅପ୍ରାଣ ଉଦ୍ୟମରେ ସାହିତ୍ୟ କ୍ଷେତ୍ରରେ ନିଜକୁ ପ୍ରତିଷ୍ଠା କରିବା ପାଇଁ ସେ ଏକାନ୍ତଭାବେ ସାହିତ୍ୟ ସୃଷ୍ଟିରେ ନିଜକୁ ନିୟୋଜିତ କରିଦେଇଥିଲେ । ଏହି ସମୟରେ ଉପନ୍ୟାସ ଜଗତରେ ଜଣେ ବରିଷ୍ଠ ଲେଖକ ହେବାର ସ୍ୱପ୍ନକୁ 'ମାନଂସ୍ ହାଉସ୍'ଠାରେ ଅବସ୍ଥାନ କରୁଥିବା ସମୟରେ ସଫଳ କରିବାକୁ ସେ ଉଦ୍ୟମ କରିଥିଲେ । କିନ୍ତୁ ତାଙ୍କର ଏହି ସାହିତ୍ୟ ସାଧନା ଜନିତ ମାନସିକ ପ୍ରସ୍ତୁତି ତାଙ୍କ ପଡ଼ୋଶୀ ଓ ବନ୍ଧୁମାନଙ୍କ ପାଇଁ ଆଦୌ ସହନୀୟ ନଥିଲା, କାରଣ ସେମାନେ ବୁଝୁଥିଲେ ହୃଥର୍ଣ୍ଣ କିଛିଟା ଅର୍ଥ ଉପାର୍ଜନ କଲାପରି ପନ୍ଥା ଧରିବା ଆବଶ୍ୟକ । ତେଣୁ ହୃଥର୍ଣ୍ଣଙ୍କର ଏହି ଚିନ୍ତାଧାରାକୁ ସେମାନେ ପସନ୍ଦ ନକରିବା ସ୍ୱାଭାବିକ । 'ମାନଂସ୍'ର ଏହି ପଡ଼ୋଶୀ ବନ୍ଧୁମାନେ ମୁଖ୍ୟତଃ ବ୍ୟବସାୟୀ ସମ୍ପ୍ରଦାୟର ଥିବା ହେତୁ ତାଙ୍କ ପାଇଁ ଖ୍ୟାତିର କୌଣସି ଆବଶ୍ୟକତା ନଥିଲା; ବରଂ ଅର୍ଥ ଥିଲା ସେମାନଙ୍କ ଜୀବନର ସର୍ବସ୍ୱ । କିନ୍ତୁ ହୃଥର୍ଣ୍ଣ ଜାଣିଥିଲେ ଜୀବନରେ ପ୍ରତିଷ୍ଠିତ ହେବାକୁ ହେଲେ ଅର୍ଥର ଆବଶ୍ୟକତା ସେତେ ନୁହେଁ; ବରଂ ଜଣେ ଲେଖକ ଭାବେ ଖ୍ୟାତିସମ୍ପନ୍ନ ହେବାର ଆବଶ୍ୟକତା ବହୁତ ଅଛି । ସେଥିପାଇଁ ତାଙ୍କ ପଡ଼ୋଶୀମାନଙ୍କର କୌଣସି ଉପଦେଶ ବା ସମାଲୋଚନାକୁ ନଶୁଣି, ଏକ ଶୋଚନୀୟ ଅର୍ଥନୈତିକ, ଦୁଃସ୍ଥ ସାମାଜିକ ଦୁର୍ଗତିକୁ ବରଣ କରିନେଇ ଆମେରିକୀୟ ଉପନ୍ୟାସ ଜଗତକୁ ବଳିଷ୍ଠ କରିବା ପାଇଁ ଜୀବନର ସକଳ ମୁହୂର୍ତ୍ତକୁ ସେ ସାହିତ୍ୟ ସୃଷ୍ଟି ପାଇଁ ନିୟୋଜିତ କରିଦେଇଥିଲେ । (୩)

---

(୩) After his (Hawthornes) Graduation in 1825 he returned to salem, where his mother and sisters had mean while resumed residence, during the next-dozen years, after referred to as the 'Lonely

ହଥର୍ଣ୍ଣ ଏହି ଦୀର୍ଘ ବାରବର୍ଷ ଭିତରେ ଅସଂଖ୍ୟ କ୍ଷୁଦ୍ର ଗଳ୍ପ ଶିଶୁ ସାହିତ୍ୟ ପ୍ରଭୃତି ରଚନା କରିଥିଲେ । ମାତ୍ର ଅର୍ଥ ଲିପ୍ସୁ ପ୍ରକାଶକ ସଂସ୍ଥା ତାଙ୍କର ଏହି ଆତ୍ମିୟ ସାପେକ୍ଷ ସୃଷ୍ଟି ସମୂହକୁ ପ୍ରକାଶ କରିବାକୁ ମନା କରିଦେଇଥିଲେ । ବାଲ୍ୟକାଳରୁ ହଥର୍ଣ୍ଣଙ୍କ ଚିରସହଚର ଦୁଃଖ, ଦୈନ୍ୟତା ଯେପରି ତାଙ୍କ ପଛେ ପଛେ ଗ୍ରହ ପରି ଲାଗିରହିଥିଲା । ତଥାପି ଏସବୁ ଜଞ୍ଜାଳମୟ ପରିସ୍ଥିତିରେ ଏପରି ଏକ ପ୍ରତିଭାର ଧ୍ୱଂସ ଘଟିନାହିଁ; ବରଂ ତା'ର ଜ୍ୟୋତି ସଙ୍ଘର୍ଷର ଉତ୍ତପ୍ତ ଗର୍ଭରେ ପ୍ରଜ୍ଜ୍ୱଳିତ ହୋଇଉଠିଛି ।

'Seven Tales of my native land' ନାମରେ ସେ ପ୍ରଥମେ ଗୋଟିଏ କ୍ଷୁଦ୍ର ଗଳ୍ପ ସଙ୍କଳନ ପ୍ରକାଶ କରିବାର ପ୍ରଚେଷ୍ଟା କରିଥିଲେ । ସମ୍ଭବତଃ ସେ 'Seven Tales'କୁ ତାଙ୍କ କଲେଜ ପଢ଼ା ସମୟରେ ରଚନା କରିଥିଲେ । ୧୮୨୫ ମସିହାରେ କଲେଜ ପାଠର ପରିସମାପ୍ତି ପରେ ସେ ଏ ସବୁକୁ ଏକତ୍ରିତ କରି ଶିଘ୍ର ପ୍ରକାଶ କରିବାକୁ ଇଚ୍ଛାପୋଷଣ କରିଥିଲେ । ତାଙ୍କର ଏହି ପ୍ରାଥମିକ ଉଦ୍ୟମକୁ କୌଣସି ପ୍ରକାଶକ ସଂସ୍ଥା ସୁଫଳ ରୂପ ଦେବାକୁ ରାଜି ହୋଇନଥିଲେ । ଯାହାଦ୍ୱାରା ସେ ତାଙ୍କ ମନରେ ଖୁବ୍ ଗୋଟାଏ ଆଘାତ ପାଇଥିଲେ । ଏହାର ପ୍ରତିକ୍ରିୟା ସ୍ୱରୂପ ସେ ଏହି 'Seven Tales'ର ପାଣ୍ଡୁଲିପିକୁ ଜାଳିଦେଇଥିଲେ । ଏଥିରେ ସଙ୍କଳିତ କେତୋଟି ଗଳ୍ପ ପୂର୍ବରୁ ପତ୍ର-ପତ୍ରିକାରେ ପ୍ରକାଶିତ ହୋଇଥିବାରୁ ପରେ ଏଥିରୁ କେତେକ ଗଳ୍ପ ମିଳିପାରିବା ସମ୍ଭବପର ହୋଇଥିଲା ।

ହଥର୍ଣ୍ଣଙ୍କ ପାଇଁ ସାମାଜିକ ଅବକ୍ଷୟତା, ଆର୍ଥିକ ଦୁରବସ୍ଥା ଏବଂ ଜଣେ ଲେଖକ ହିସାବରେ ତତ୍କାଳୀନ ପ୍ରକାଶକମାନଙ୍କର ତାଙ୍କ ସାହିତ୍ୟକୃତି ପ୍ରକାଶନ ପାଇଁ ଉଦାସୀନତା ତାଙ୍କୁ ବହୁଭାବେ ବିଚଳିତ କରିଦେଇଥିଲା । ବାଲ୍ୟାବସ୍ଥାରେ ପିତାଙ୍କୁ ହରାଇ ସେ ତାଙ୍କ ମନରେ ଦାରୁଣ ଆଘାତ ପାଇଥିଲେ । ପିଲାବେଳେ ଫୁଟ୍‌ବଲ୍ ଖେଳରେ ଗୋଡ଼ରେ ପାଇଥିବା ଆଘାତ ଏବଂ ଏକୁଟିଆ ଘରେ ବସି ଅଧ୍ୟୟନ କରିବାର ସୁଯୋଗ ତାଙ୍କ ଲେଖକ ଜୀବନ ପାଇଁ ବେଶ୍ ଖୋରାକ ଯୋଗାଇପାରିଥିଲା । ସେ ତାଙ୍କ ଲେଖକ

---

Chamber' period of his career, he lived a secluded life in the manning house, trying to establish himself as a writer of fiction. These was considered a foolish ambition by his manning relatives. prosperous businessmen who thought Howthorne sheuld enter a more lucrative profession.

[American lit, vol-2, by Darrel Abel, page-190]

ଜୀବନର ଆରମ୍ଭରେ 'ମାନ୍‌ସ୍'ଠାରେ ଅବସ୍ଥାନ କରୁଥିବା ସମୟରେ ସେଠାକାର ପଡ଼ୋଶୀମାନଙ୍କଠାରୁ କୌଣସି ପ୍ରକାର ସହୃଦୟତା ନପାଇ ବରଂ ବହୁଭାବେ ସମାଲୋଚିତ ହୋଇଥିଲେ । ଅଯଥାସ୍ତ ଜନ୍ମଦାୟୀ ଉପରେ ନିଜେ ବୋଝ ହେବା ଏବଂ ଅନ୍ୟ ଭାଇ-ଭଉଣୀମାନଙ୍କ ବୋଝ କରାଉଥିବା ହେତୁ ସେ ନିଜକୁ ଖୁବ୍ ଲଜ୍ଜିତ ଓ ବିଚଳିତ ମନେକରୁଥିଲେ । ପରିଶେଷରେ ଏହିପରି ଏକ ସାମାଜିକ ଅନିଶ୍ଚିତତା ଭିତରେ ଗତି କରୁଥିବା ବେଳେ ଲେଖକ ହିସାବରେ ପାଠକମାନଙ୍କ ସମ୍ମୁଖକୁ ଆସିବା ପାଇଁ ପ୍ରକାଶକଙ୍କର ଯେଉଁ ମାଧ୍ୟମ ଆବଶ୍ୟକ, ସେଥିରୁ ସେ ପ୍ରଥମଥର ପାଇଁ ବଞ୍ଚିତ ହୋଇଥିଲେ । ଏହିସବୁ ଅବସ୍ଥା ମଧ୍ୟଦେଇ ହଥର୍ଣ୍ଣ ଜଣେ ଲେଖକ ହିସାବରେ ଆମେରିକୀୟ ସାହିତ୍ୟରେ ନିଜକୁ ପରିଚିତ ତଥା ପ୍ରତିଷ୍ଠିତ କରାଇବା ଯେପରି ଆଶ୍ଚର୍ଯ୍ୟଜନକ ମନେହୁଏ, ସେହିପରି ବିସ୍ମୟ ମଧ୍ୟ ମନରେ ଜାଗ୍ରତ କରେ । ବୋଧେ ତାଙ୍କ ଜୀବନର ଏହି ଦାରୁଣାଘାତ ତାଙ୍କୁ ଜଣେ ସହନଶୀଳ ବ୍ୟକ୍ତି ଓ ବଳିଷ୍ଠ ଲେଖକ ହେବାର ସୁଯୋଗ ଯୋଗାଇ ଦେଇଥିଲା ।

**'Seven Tales'** ପରେ ହଥର୍ଣ୍ଣ **'Fanshawe'** ନାମକ ଏକ କ୍ଷୁଦ୍ର ଉପନ୍ୟାସ ପ୍ରକାଶନ କରିଥିଲେ । ଏହାକୁ କ୍ଷୁଦ୍ର ଉପନ୍ୟାସ ନକହି ବରଂ ଦୀର୍ଘ ଗଳ୍ପ କହିବା ଅଧିକ ଯୁକ୍ତିଯୁକ୍ତ । କାରଣ ଏଥିରେ ସେ ସିଧାସଳଖ ଭାବେ ଏକ ନିଃସଙ୍ଗ ଯୁବକର ଦୁଃଖଦ କାହାଣୀ ଓ ତଜ୍ଜନିତ ମୃତ୍ୟୁ ସମ୍ପର୍କରେ ବର୍ଣ୍ଣନା କରିଥିଲେ । ଘଟଣାର ବିଭିନ୍ନ ବିକାଶ, ଅନେକ ଚରିତ୍ରର ସମାବେଶ, ଦ୍ୱନ୍ଦ୍ୱ ବା ଉତ୍କଣ୍ଠା ଏହି ଉପନ୍ୟାସରେ ସେପରି କିଛି ସାର୍ଥକତା ନଥିବା ହେତୁ ଏହାକୁ ଏକ ଦୀର୍ଘ ଗଳ୍ପ ବୋଲି କୁହାଯିବା ବେଶ୍ ସମୀଚୀନ ହେବ । ଏହାକୁ ୧୮୨୮ ମସିହାରେ 'ବୋଷ୍ଟନ ପ୍ରିଣ୍ଟର୍ସ' ନାମକ ଏକ ପ୍ରକାଶନ ସଂସ୍ଥା ପ୍ରକାଶ କରିଥିଲେ । ଏହାପରେ ହଥର୍ଣ୍ଣ ପ୍ରକାଶକ 'ସାମୁଏଲ୍ ଜି. ଗଡ୍‌ରିଜ୍'ଙ୍କ ପ୍ରକାଶନ ସଂସ୍ଥାର ସାହାଯ୍ୟ ପାଇ **'Provincial Tales'** ନାମକ ଏକ ଗଳ୍ପ ସଙ୍କଳନର ପ୍ରକାଶ କରିବାର ସୁଯୋଗ ପାଇଥିଲେ ।

ଏହାପରେ ୧୮୩୭ ମସିହାରେ ତାଙ୍କର ଜଣେ ସହୃଦୟ ବନ୍ଧୁଙ୍କ ସାହାଯ୍ୟରେ ସେ **'Twice told Tale'**ର ପ୍ରକାଶନ କରାଇଥିଲେ । ଏଥିରେ ସେ ଏକ ଉତ୍ତମ ପାଠକ ଜଗତ ସୃଷ୍ଟି କରିବାକୁ କ୍ଷମଶୀଳ ହୋଇପାରିଥିଲେ । କିନ୍ତୁ ସେ ଏଥିରୁ ସେପରି କିଛି ଆଶାଜନକ ଆୟ କରିପାରିନଥିଲେ । ତେଣୁ ସେ ପରବର୍ତ୍ତୀ ସମୟରେ ଚାକିରି କରିବାକୁ ଇଚ୍ଛାପୋଷଣ କରିଥିଲେ । ଏହିପରି ଏକ ଆର୍ଥିକ ଅସ୍ୱଚ୍ଛଳ ପରିସ୍ଥିତିରେ ସେ **'Boston'** ସହରର 'କଷ୍ଟମ ହାଉସ୍'ରେ ଚାକିରି କରିବାକୁ ବାଧ୍ୟ ହେଲେ । ସେ ଏହି ଚାକିରି ଖଣ୍ଡିକ ଜଣେ ରାଜନୈତିକ ବନ୍ଧୁଙ୍କ ସୌଜନ୍ୟରୁ ପ୍ରାପ୍ତ ହୋଇଥିଲେ । ଏହି ଚାକିରି ଖଣ୍ଡିକ ତାଙ୍କୁ ରାଜନୈତିକ ଗ୍ରୁପରୁ ମିଳିଥିବାରୁ ଏହାର ସ୍ଥିତିରେ ହଥର୍ଣ୍ଣ ଅନିଶ୍ଚିତତା ଅନୁଭବ

କରିଥିଲେ । ଯେତେବେଳେ ରାଜନୈତିକ ପାଣିପାଗ ବଦଳିବାକୁ ଲାଗିଲା, ତାହା ସଙ୍ଗେ ସଙ୍ଗେ ହଥର୍ଣ୍ଣଙ୍କର ଭାଗ୍ୟ ବିପର୍ଯ୍ୟୟ ଘଟିଲା । 'Hitling Party' ଶାସନକୁ ଆସିବା ପରେ ପରେ ସେ ସରକାରୀ ଜୀବନରେ ନାନା ଅସୁବିଧାର ସମ୍ମୁଖୀନ ହୋଇ ଚାକିରି ଛାଡ଼ିବାକୁ ବାଧ୍ୟ ହେଲେ । ଏହା ପରେ ସେ ୧୦୦୦ ଡଲାରରେ 'Brook Firm'ର ଜଣେ ଅଂଶୀଦାର ହେଲେ । ଏହି କଥା ସେ ତାଙ୍କ 'Blithedale Romance' ଉପନ୍ୟାସରେ ଲେଖିଯାଇଛନ୍ତି । 'Brook Firm'ରେ ଯୋଗଦେଲେ ତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ଓ ନିଜର ନିର୍ଜନଶୀଳ ପ୍ରତିଭାର ପରିଚୟ ଦେବାପାଇଁ ପଥ ସୁଗମ ହେବ ବୋଲି ସେ ଭାବି ନେଇଥିଲେ; ମାତ୍ର କଠିନ ପରିଶ୍ରମ ତାଙ୍କର ସମସ୍ତ ଆଶା ଭରସାକୁ ଲୋପ କରିଦେଇଥିଲା । 'Brook Farm'ରେ ଗୋଟିଏ ବର୍ଷ ଅଂଶୀଦାର ହୋଇ ରହିବା ପରେ ସେ ଏହାକୁ ମଧ୍ୟ ଛାଡ଼ିବାକୁ ବାଧ୍ୟ ହୋଇଥିଲେ ।

ଏହିପରି ଏକ ଅନିଶ୍ଚିତ ସାମାଜିକ ଜୀବନ ଭିତରେ ଗତି କରୁଥିବା ହଥର୍ଣ୍ଣ 'ଗୃହପ୍ରବେଶ' ଆରମ୍ଭ କଲେ ୧୮୪୨ ମସିହାରେ, ଅର୍ଥାତ୍ ତାଙ୍କ ୩୮ ବର୍ଷ ବେଳେ ସେ ଦାମ୍ପତ୍ୟ ଜୀବନ ବରଣ କଲେ । 'ସାଲେମ୍' ସହରର ଗୋଟିଏ ସଂଭ୍ରାନ୍ତ ପରିବାରର କନ୍ୟା କୁମାରୀ ସୋଫିଆ ପୋବେଡ଼ଙ୍କୁ ସେ ବିବାହ କରିଥିଲେ । ବିବାହ ପରେ ସେ 'Concord' ଷ୍ଟେଟ୍‌ର 'Old Manse' ସହରକୁ ଜୀବନନିର୍ବାହ କରିବା ପାଇଁ ଚାଲିଯାଇଥିଲେ । ତାଙ୍କ ଜୀବନରେ ଏହି ସମୟ ଥିଲା ତାଙ୍କ ପାଇଁ ବେଶ୍ ସୁଖପ୍ରଦ ଓ ଆମୋଦଦାୟକ । ତାଙ୍କ ବିଷାଦଗ୍ରସ୍ତ ତଥା ନିଃସଙ୍ଗ ଜୀବନକୁ ତାଙ୍କ ବିବାହ ଏକ ଭିନ୍ନ ମୋଡ଼ ପ୍ରଦାନ କରିଥିଲା । ସେ ସୋଫିଆଙ୍କୁ ବିବାହ କରି ବେଶ୍ ଖୁସି ହୋଇପାରିଥିଲେ ଏବଂ ଏହାକୁ ଈଶ୍ୱରଙ୍କ ଆଶୀର୍ବାଦ ବୋଲି ଧରିନେଇଥିଲେ । ସୋଫିଅଙ୍କ ଗଭୀର ପ୍ରେମ ତାଙ୍କ ଲେଖକ ଜୀବନକୁ ବେଶ୍ ପ୍ରଭାବିତ କରିଥିଲା, ଯେଉଁଥିପାଇଁ ସେ 'Old Manse'ରେ କେତେକ ସଫଳ ଗଳ୍ପ ରଚନା କରିପାରିଥିଲେ ବୋଲି କୁହାଯାଇଥାଏ । ଏହିଠାରେ ସେ ପୂର୍ବବର୍ତ୍ତୀ ଜୀବନରେ ପ୍ରକାଶିତ କେତେକ ଲେଖାକୁ ପତ୍ର-ପତ୍ରିକାରୁ ସଂଗ୍ରହ କରି ୧୮୪୬ ମସିହାରେ 'Mosses from an Old Manse' ନାମକ ଏକ ଗଳ୍ପ ସଂକଳନ ପ୍ରକାଶ କରିଥିଲେ । ଏହିଠାରେ ମଧ୍ୟ ସେ କେତେକ ବିଖ୍ୟାତ ଲେଖକ, ଯଥା—ଇମର୍ସନ୍, ଥୋରେ, କ୍ୟାନିଂ ଆଦିଙ୍କ ସହଗୁଣ ଲାଭକରିଥିଲେ । ଏହିଠାରେ କ୍ୟାନିଂଙ୍କ ସହିତ ତାଙ୍କର ବେଶ୍ ଘନିଷ୍ଠତା ହୋଇଯାଇଥିଲା । ସମୟେ ସମୟେ ସେ, ସୋଫିଆ ଓ କ୍ୟାନିଂ ନୌ-ଭ୍ରମଣରେ ବାହାରୁଥିଲେ । ଏହି କଥା ସେ ତାଙ୍କ 'Old Manse' ଗଳ୍ପ ସଂକଳନରେ ପ୍ରକାଶ କରିଅଛନ୍ତି । ବାସ୍ତବିକ ଏହି ସମୟ ଥିଲା ତାଙ୍କ ଜୀବନର ସବୁଠାରୁ ଆକାଂକ୍ଷିତ ଭାବେ ଏକ ମଧୁର ସମୟ । ବୋଧେ ଏହାକୁ ଲକ୍ଷ୍ୟକରି ଆମେରିକୀୟ ସାହିତ୍ୟର ସମାଲୋଚକ 'Waggoner' କହିଛନ୍ତି—"It Seemed,

for while not unfitting to play with the nation, that he and Sophia were a 'New Adam and Eve." (୪) ।

କୌଣସିଥିରେ ପ୍ରତିଷ୍ଠା ଅର୍ଜନ କରିବା ପୂର୍ବରୁ ହଥର୍ଣ୍ଣଙ୍କ ସମ୍ମୁଖରେ କଛିନା କଛି ସମସ୍ୟା ଉପସ୍ଥିତ ହେଉଥିଲା । 'Old Manse'ରେ ଏହି ସୁଖପ୍ରଦ ଜୀବନଟି ଅତିବାହିତ କରୁଥିବା ବେଳେ ସାଲେମ୍‌ରେ ଥିବା ତାଙ୍କ ପରିବାରର ବାରମ୍ବାର ଡାକରା ଦ୍ୱାରା ସେ ପୁଣି ସାଲେମ୍ ପ୍ରତ୍ୟାବର୍ତ୍ତନ କଲେ । ଏହି ସମୟର କଥାକୁ ସେ ତାଙ୍କର ପ୍ରଖ୍ୟାତ ଉପନ୍ୟାସ 'The Scarlet Letter'ର ମୁଖବନ୍ଧରେ ବର୍ଣ୍ଣନା କରିଅଛନ୍ତି । ସାଲେମ୍ ଫେରିଆସିବା ପରେ ସେ ପୁଣି 'କଷ୍ଟମ୍ ହାଉସ୍'ରେ ନଯୁକ୍ତ ହୋଇଥିଲେ । ଏହି ସମୟରେ (୧୮୫୦) ସେ ତାଙ୍କ ପ୍ରସିଦ୍ଧ ଉପନ୍ୟାସ 'The Scarlet Letter' ରଚନା କରିଥିଲେ । ଏଭଳି ଏକ ବହୁ ଆକାଂକ୍ଷିତ ତଥା ପ୍ରତୀକ୍ଷିତ ସମୟରେ ହଥର୍ଣ୍ଣଙ୍କ ପାଇଁ ପୁଣି ଏକ ଦୁର୍ଯୋଗ ଉପସ୍ଥିତ ହେଲା । ବାଲ୍ୟାବସ୍ଥାରୁ ପିତାଙ୍କୁ ହରାଇ ହଥର୍ଣ୍ଣ ସର୍ବଦା ମା' ସ୍ନେହରେ ବଞ୍ଚି ରହିଥିଲେ । କିନ୍ତୁ ଏବେ ତାଙ୍କୁ ସେହି ସ୍ନେହରୁ ବଞ୍ଚିତ ହେବାକୁ ପଡ଼ିଲା । ତଥାପି ଏପରି ଅବସ୍ଥାରେ ସେ ଭାଙ୍ଗି ପଡ଼ିନଥିଲେ କିମ୍ବା ତାଙ୍କ ପ୍ରତିଭାର ବିନାଶ ଘଟିନଥିଲା । ବୋଧେ ହଥର୍ଣ୍ଣଙ୍କ ଜୀବନରେ ବାରମ୍ବାର ଦୁର୍ଯୋଗର ପ୍ରବେଶ ହେତୁ ଏପରି ଏକ ଦୁର୍ଯୋଗର ଉପସ୍ଥିତିରେ ହଥର୍ଣ୍ଣଙ୍କୁ ତାହା ସେପରି ବିଚଳିତ କରିପାରିନଥିଲା । ସେଥିରେ ସେ ପ୍ରାୟ ଏକପ୍ରକାର ଅଭ୍ୟସ୍ତ ହୋଇଯାଇଥିଲେ କହିଲେ ଚଳେ ।

୧୮୫୦ ମସିହାରେ ହଥର୍ଣ୍ଣଙ୍କ ପ୍ରଥମ ଉପନ୍ୟାସ 'The Scarlet Letter' ପ୍ରକାଶିତ ହେବା ପରେ ସେ ପାଠକ ମହଲରେ ବେଶ୍ ଖ୍ୟାତିସମ୍ପନ୍ନ ହେବା ସଙ୍ଗେ ସଙ୍ଗେ ଜଣେ ଖ୍ୟାତିସମ୍ପନ୍ନ ଔପନ୍ୟାସିକ ଭାବେ ମଧ୍ୟ ଆମେରିକୀୟ ଉପନ୍ୟାସ ଜଗତରେ ମଧ୍ୟ ସ୍ୱୀକୃତି ଲାଭ କରିବାର ସୌଭାଗ୍ୟ ପାଇଲେ । 'ବେର୍କସର୍'ର ଲେନକ୍ସଠାରେ ଅବସ୍ଥାପିତ ଥିବା ବେଳେ ୧୮୫୧ ମସିହାରେ ସେ ତାଙ୍କର ଦ୍ୱିତୀୟ ଉପନ୍ୟାସ 'The House of the Seven Gables'କୁ ପ୍ରକାଶ କରିଥିଲେ । ଏଥିରେ ବର୍ଣ୍ଣିତ ଅଭିଶପ୍ତ ପିନ୍‌ଚନ୍ ପରିବାର ଭିତରେ ବାସ୍ତବିକ ହଥର୍ଣ୍ଣଙ୍କ ଅଭିଶପ୍ତ ପରିବାରର ବିପର୍ଯ୍ୟସ୍ତ ଚିତ୍ର ହିଁ ଦେଖିବାକୁ ମିଳେ । ଏହି ସମୟରେ ହଥର୍ଣ୍ଣ କେତେକ 'ଶିଶୁ ଉପଯୋଗୀ ଲେଖା' ମଧ୍ୟ ଲେଖିଥିଲେ ଏବଂ ତାହା ପ୍ରକାଶିତ ହୋଇଥିଲା । ଏଠାରେ ସେ ତାଙ୍କର ସମସାମୟିକ ଔପନ୍ୟାସିକ 'ମେଲ୍‌ଭିଲେ'ଙ୍କ ସହ ଖୁବ୍ ଘନିଷ୍ଠ ହୋଇପଡ଼ିଥିଲେ । ଇତ୍ୟବସରରେ

---

(୪) "Six American Novelists of nineteenth Century" Edited by—Richard Foster, Page—47.

ମେଲ୍‌ଭିଲେ ତାଙ୍କର ଖ୍ୟାତସମ୍ପନ୍ନ 'ମୋବେଡ଼ିକ୍' ଉପନ୍ୟାସ ରଚନାରେ ବ୍ୟସ୍ତ ଥିଲେ ଏବଂ ଏହାର ସମାପ୍ତି ପରେ ସେ ଏହାକୁ ହଥର୍ଣ୍ଣଙ୍କୁ ହିଁ ଉତ୍ସର୍ଗ କରିଥିଲେ । ଏତେବେଳକୁ ହଥର୍ଣ୍ଣଙ୍କ ଆର୍ଥିକ ଅବସ୍ଥାର କେତେକ ଉନ୍ନତ ଘଟିଥିଲା ଓ ସେ ତନୋଟି ସନ୍ତାନର ଜନକ ହୋଇସାରିଥିଲେ ।

୧୮୫୨ ମସିହାରେ ସେ ବ୍ରୁକ୍ ଫାର୍ମ (Brook Firm)ର ଅଭିଜ୍ଞତାକୁ ନେଇ ତାଙ୍କର ତୃତୀୟ ଉପନ୍ୟାସ 'The Blithedale Romance' ରଚନା କରିଥିଲେ । ଏହା ପ୍ରକାଶିତ ହେବାର ଛ' ବର୍ଷ ପର୍ଯ୍ୟନ୍ତ ସେ ଆଉ କିଛି ଲେଖି ପାରି ନଥିଲେ । କାରଣ ତାଙ୍କ କଲେଜବନ୍ଧୁ ଫ୍ରାଙ୍କ୍‌ଲିନ୍ ପିଅର୍‌ସଙ୍କ ନିର୍ବାଚନ ନେଇ ସେ ବ୍ୟସ୍ତ ଥିଲେ; ଯାହାଦ୍ୱାରା କି ସେ ପରେ 'Lever pool' ଠାରେ ଏକ ରାଜନୈତିକ ଯାଚକ ଚାକିରିରେ ନିଯୁକ୍ତି ପାଇଥିଲେ । ଏହିପରି କର୍ମତତ୍ପରତା ହେତୁ ତାଙ୍କ ପକ୍ଷେ ଏ ସମୟରେ ଅଉ କିଛି ଲେଖିବା ସମ୍ଭବପର ହୋଇନଥିଲା । ଏହାପରେ ୧୮୬୦ ରେ ସେ ତାଙ୍କ ଶେଷ ଉପନ୍ୟାସ 'The Marble Faun' କୁ ରୂପ ଦେଇଥିଲେ ।

୧୮୬୦ରେ ସେ 'Lever pool' ଠାରୁ ଆମେରିକାର ତାଙ୍କ ଜନ୍ମସ୍ଥାନକୁ ଫେରି-ଆସିଥିଲେ । ଆମେରିକା ଫେରିଆସିବାର ଗୋଟିଏ ବର୍ଷ ପରେ ସେ ବହୁ ମାନସିକ ଓ ଦୈହିକ ଅସୁବିଧାର ସମ୍ମୁଖୀନ ହୋଇଥିଲେ । ଇଉରୋପରେ ସେ ଯେଉଁ କେତେକ ସମୟ ଅତିବାହିତ କରିଥିଲେ, ତାହା ଥିଲା ତାଙ୍କ ପାଇଁ ବେଶ୍ ମୂଲ୍ୟବାନ୍ ଏବଂ ସେଠାରେ ସେ ସୁଖ ଶାନ୍ତିରେ ଦିନଗୁଡ଼ିକ ମଧ୍ୟ ଅତିବାହିତ କରିଥିଲେ । ଆମେରିକା ଫେରିବା ପରେ ତାଙ୍କର ଅତୀତର କେତେକ ଘଟଣା ବାରମ୍ବାର ମନେପଡ଼ି ତାଙ୍କୁ ବିଚଳିତ କରି-ଦେଇଥିଲା । ସେ ତାଙ୍କର ପୂର୍ବର ରହଣିସ୍ଥାନର ବନ୍ଧୁମାନଙ୍କୁ ମନେପକାଉଥିଲେ ଏବଂ ଆମେରିକାର ଜଳବାୟୁ ତାଙ୍କ ଦେହ ପକ୍ଷେ ମଧ୍ୟ ଆଉ ଅନୁକୂଳ ହେଉନାହିଁ । ତେଣୁ ତାଙ୍କ ରହଣି ସ୍ଥାନର ପରିବେଶ ତାଙ୍କ ଚିନ୍ତାଧାରାକୁ ଖୁବ୍ ଦୁର୍ବଳ କରିପକାଇଲା; ଯହିଁରେ ତାଙ୍କ ଲେଖକ ଜୀବନରେ ଅବକ୍ଷୟିତା ଆସିଗଲା । ନାନା ଦୁର୍ଭାବନା ଓ ଚିନ୍ତାରେ ହଥର୍ଣ୍ଣ ଦୁର୍ବଳ ହୋଇପଡ଼ିଲେ । ପରିଶେଷରେ ସେ ରୁଗ୍ଣ ଓ ବିବ୍ରତମନା ହୋଇ ମୃତ୍ୟୁର ପଦଧ୍ୱନି ଶୁଣିବା ପରି ଆତଙ୍କିତ ହୋଇପଡ଼ୁଥିଲେ । ହଥର୍ଣ୍ଣ ନିଜ ପରିବାର ପାଇଁ ଜୀବନର ଶେଷ ମୂହୂର୍ତ୍ତରେ ମଧ୍ୟ ଲେଖନୀ ଚାଳନା କରିବାର ପ୍ରୟାସ କରିଥିଲେ । ସେ ଚିନ୍ତା କରିଥିଲେ, ଯଦି ତାଙ୍କ ମୃତ୍ୟୁ ପରେ ତାଙ୍କ ପରିବାର ତାଙ୍କ ଲେଖା ପ୍ରକାଶନରୁ କିଛି ଆର୍ଥିକ ସାହାଯ୍ୟ ପାଇପାଆନ୍ତି, ତେବେ ତାଙ୍କ ପାଇଁ ତାହାହିଁ ହେବ ମହାନ୍ ଦାନ । ଏହି ଚିନ୍ତାରେ ସେ ଯେଉଁ ଲେଖାମାନ ଜୀବନର ଅନ୍ତିମ କାଳରେ ଆରମ୍ଭ କରିଥିଲେ ଇହଧାମ ଛାଡ଼ିବା ପୂର୍ବରୁ ତନ୍ମଧ୍ୟରୁ ଅଧିକାଂଶ ଅପୂର୍ଣ୍ଣ ଭାବରେ ରହିଯାଇଥିଲା ।

୧୮୬୩ ମସିହାରେ ସେ 'Our Old home' ନାମକ ଏକଭିନ୍ନ ଧରଣର ଅସମାପ୍ତ ଉପନ୍ୟାସକୁ ପ୍ରକାଶ କରିଥିଲେ; ମାତ୍ର ଏହା ଠିକ୍‌ଭାବେ ଏକ ଉପନ୍ୟାସ ନୁହେଁ, ଏକ ସ୍ମୃତିକୃତ ଗଳ୍ପ ମାତ୍ର। ଏଥିରେ ସେ ତାଙ୍କ ଅତୀତ ଜୀବନର ସାଲେମ୍ ସହର ଓ ଏକୁଟିଆ ଜୀବନ କଥା ଭୁଲିଯାଇ ସମାଜରେ ପ୍ରତିଷ୍ଠିତ ହେବାର ମୋହ ଓ ସ୍ୱପ୍ନକୁ ଜୀବଦଶାର ଅନ୍ତିମ ଭାଗରେ ମଧ୍ୟ ପ୍ରକାଶ କରିଯାଇଛନ୍ତି। ହଥର୍ଣ୍ଣ ତାଙ୍କ ଜୀବନର ଅନ୍ତିମ କାଳକୁ ଆମେରିକୀୟ ସାହିତ୍ୟର ଜଣେ ସର୍ବଶ୍ରେଷ୍ଠ, ଖ୍ୟାତ ସମ୍ପନ୍ନ ତଥା ପ୍ରତିବନ୍ଧମୂଳକ ଲେଖକଭାବେ ସମ୍ମାନିତ ହୋଇ ସାରିଥିବାରୁ ପ୍ରକାଶକମାନେ ତାଙ୍କର ଦ୍ୱାରସ୍ଥ ହେବାକୁ ଅତି ସଙ୍କୋଚ ମନେକରୁଥିଲେ। ଏହି ସମୟରେ ହଥର୍ଣ୍ଣ ଜୀବନର ନୂତନ ସଫଳତା ଓ ଅତୀତର ବହୁ ପ୍ରୟାସ ଜନିତ ଅସଫଳତା କଥା ଚିନ୍ତା କରୁଥିବା ବେଳେ ମୃତ୍ୟୁର କଠୋର ହାତର ଶୀକାର ହୋଇପଡ଼ିଥିଲେ।

ହଥର୍ଣ୍ଣଙ୍କ ମୃତ୍ୟୁ ଅତି ଆଶ୍ଚର୍ଯ୍ୟଜନକଭାବେ ସଂଘଟିତ ହୋଇଥିଲା। ତାଙ୍କର ମୃତ୍ୟୁ ରହସ୍ୟ ଭେଦ କରିବାକୁ ଅନେକ ଗବେଷକ ଓ ସମାଲୋଚକ ଏବେବି ଅକ୍ଷମ ହୋଇ ରହିଛନ୍ତି। ତାଙ୍କର ମୃତ୍ୟୁ ହୃଦ୍‌ରୋଗରେ କି ମାନସିକ ରୋଗରେ (ଦୁଶ୍ଚିନ୍ତାରୁ) ହେଲା ତାହା ଡାକ୍ତରମାନଙ୍କ ପକ୍ଷେ ଜାଣିବା କଷ୍ଟକର ହୋଇଥିଲେ ବି ତାଙ୍କ ଜୀବନ କାହାଣୀ ଅନୁଧ୍ୟାନରୁ ଯାହା ଜଣାପଡ଼େ ଜୀବନର ଅନ୍ତିମ କାଳରେ ସେ ନାନା ଅଶାନ୍ତି ହେତୁ ମାନସିକ ଭାରସାମ୍ୟ ହରାଇ ପ୍ରାଣତ୍ୟାଗ କରିଥିଲେ। ମାତ୍ର ୪୦ ବର୍ଷ ବୟସରେ ୧୮୬୪ ମସିହାରେ ଏହି ମହାନ୍ ଔପନ୍ୟାସିକ ଆମେରିକୀୟ ସାହିତ୍ୟ ଜଗତରେ ଏକ ଅପୂରଣୀୟ କ୍ଷତି ସୃଷ୍ଟି କରି ଇହଧାମ ତ୍ୟାଗ କରିଥିଲେ। ମୃତ୍ୟୁ ବେଳକୁ ସେ ଅତି ଆଶ୍ଚର୍ଯ୍ୟଜନକ ଭାବେ ଜୀବନ ଓ ସଂସାର ଏ ଉଭୟ ପ୍ରତି ବୀତସ୍ପୃହ ହୋଇପଡ଼ିଥିଲେ। ବୋଧେ ସେଥିପାଇଁ ସେ ତାଙ୍କର ଅନେକ ଅସମାପ୍ତ ରଚନାବଳୀରେ ଜୀବନର ଅର୍ଥ କ'ଣ ବୋଲି ଲେଖି ପ୍ରଶ୍ନବାଚୀ ଦେଇଯାଇଥିବା କଥା ତାଙ୍କ ସମାଲୋଚକମାନେ ଉଲ୍ଲେଖ କରିଅଛନ୍ତି। (*)

---

(*) We don't even know, for instance, what doses he was suffering from, whether Physical or Psychophysical. Oliver wendell Hotmes examined him but could arrive at no sure diagnosis. The evidence for any conclusion is largely missing, but what there is of it seems to me to point to Psychosomatic changes.

One thing seems clear, though, if not the disease that aged him so suddenly and brought death at the age of sixty. The Manuscripts of the Romances he could not complete suggest that the convictions that had once sustained him.

ଆମେରିକୀୟ ଉପନ୍ୟାସ ଜଗତରେ ହଥର୍ଣ୍ଣ ବିପୁଳ ଉପନ୍ୟାସର ସ୍ରଷ୍ଟା ନହୋଇ ପାରନ୍ତି; ମାତ୍ର ମୌଳିକ ଉପନ୍ୟାସର ସ୍ରଷ୍ଟା ନିଶ୍ଚୟ। ସେଇ ଗୁଟିଏ ଉପନ୍ୟାସ ସେ ସମ୍ପୂର୍ଣ୍ଣଭାବେ ରଚନା କରିଯାଇଛନ୍ତି ତାହା ଆମେରିକୀୟ ଉପନ୍ୟାସ ଜଗତରେ ଅନନ୍ୟ ଓ କାଳଜୟୀ ହେବାର ଗୌରବ ଅର୍ଜନ କରିପାରିଛି। ରହସ୍ୟମୟ ଜୀବନଧାରା ଯାଙ୍କୁ ମୌଳିକ ସଂଗ୍ରାମର ପ୍ରତିଫଳନ ରୂପେ ତାଙ୍କ ଉପନ୍ୟାସ ସୃଷ୍ଟି ଆମେରିକୀୟ ସାହିତ୍ୟରେ ଯେପରି ବିସ୍ମୟକର, ସେହିପରି ଗର୍ବର ବିଷୟ ମଧ୍ୟ।

ଏହିପରି ବର୍ଣ୍ଣିତ ହେବାକୁ ପଡ଼େ ଆମ ସାହିତ୍ୟର ଯୁଗସ୍ରଷ୍ଟା ଔପନ୍ୟାସିକ ଫକୀରମୋହନଙ୍କ ଜୀବନୀ ଓ ତାଙ୍କ ପ୍ରତିଭାକୁ ଅନୁଶୀଳନ କଲେ। ଫକୀରମୋହନଙ୍କ ଜୀବନ ହଥର୍ଣ୍ଣଙ୍କ ପରି ଥିଲା ସଂଗ୍ରାମ, ସଙ୍ଘର୍ଷପୂର୍ଣ୍ଣ ଓ ସେହିପରି ତାଙ୍କ ପ୍ରତିଭାର ଦ୍ୟୁତି ମଧ୍ୟ ଏହି ସଙ୍ଘର୍ଷରୁ ପ୍ରକଟିତ ହୋଇଥିଲା। ତେଣୁ ଏହି ପରିପ୍ରେକ୍ଷୀରେ ତାଙ୍କର ଜନ୍ମଜାତକ ବିବୃତ ଓ ସଙ୍ଘର୍ଷମୟ କର୍ମଜୀବନର ବିପୁଳାୟତନ ଆମର ଆଲୋଚ୍ୟ।

## [ଖ] ଫକୀରମୋହନ :

**(ଫକୀରମୋହନ ବଂଶ ଲତା)**

ମୂଳସ୍ରଷ୍ଟା—ହନୁମନ୍ତ (ସେନାପତି)
|
ଗୋବିନ୍ଦ ମଲ୍ଲ (ସେନାପତି
|
କୁଶ ମଲ୍ଲ (ସେନାପତି)
|
ପୁରୁଷୋତ୍ତମ ସେନାପତି — ଲକ୍ଷ୍ମଣ ଚରଣ ସେନାପତି
|
ଫକୀରମୋହନ ସେନାପତି

---

Providing a tolerable margin of clarity and meaning in a dark and ambiguous world, were now no longer operative, even if, in some sence, still held, "What meaning ?"

When he died in 1864 in Plymouth, New Hampshire, on a trip with former President—Pierce intended to

ଫକୀରମୋହନ ସେନାପତି ଓଡ଼ିଆ ଉପନ୍ୟାସ ସାହିତ୍ୟର ଜନକ । ତାଙ୍କ ପୂର୍ବରୁ ଉମେଶ ଚନ୍ଦ୍ର ଓ ରାମଶଙ୍କର ଉପନ୍ୟାସ ରଚନା ଆରମ୍ଭ କରିଥିଲେ; କିନ୍ତୁ ସେ ସବୁକୁ ଓଡ଼ିଆ ଉପନ୍ୟାସର ଆଦ୍ୟରୂପ କୁହାଯାଇ ପାରେ, ମାତ୍ର ସଫଳତା ଦୃଷ୍ଟିରୁ ବିଚାର କଲେ ଔପନ୍ୟାସିକ ଫକୀରମୋହନ ହେବେ ଓଡ଼ିଆ ଉପନ୍ୟାସର ଯଥାର୍ଥ ସ୍ରଷ୍ଟା ଓ ଜନକର ଗୌରବରେ ଗୌରବାନ୍ୱିତ ଜୀବନର ନାନା ଦୁର୍ଦ୍ଦଶା ଓ ଦୁର୍ବିପାକ ସତ୍ତ୍ୱେ ସେ ଯେଉଁ ଅସୀମ ଧୈର୍ଯ୍ୟ ଓ ସାହସର ସହିତ ଜୀବନ ମଞ୍ଚ ଓ ସାହିତ୍ୟ ମଞ୍ଚରେ ଅଭିନୟ କରିଯାଇଛନ୍ତି, ତାର ପଟାନ୍ତର ନାହିଁ । ଏହି କୁଶଳୀ ଶିଳ୍ପୀ, ଉତ୍କଳ ଜନନୀର ବରପୁତ୍ର ଫକୀର ମୋହନ ବାଲେଶ୍ୱର ଜିଲ୍ଲାର ମଲ୍ଲିକାଶପୁର ଠାରେ ୧୮୪୩ ମସିହା ଜାନୁୟାରୀ ମାସ ମକର ସଙ୍କ୍ରାନ୍ତି ଦିନ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଲକ୍ଷ୍ମଣ ଚରଣ ସେନାପତି ଓ ମାତାଙ୍କ ନାମ ଥିଲା ତୁଳସୀ ଦେଈ ।

ଫକୀର ମୋହନଙ୍କ ଜନ୍ମ ସମୟକୁ ତାଙ୍କ ପରିବାରର ଅତୀତ ଗୌରବ ବିଲୟ ଘଟିଥିଲା । ଫକୀର ମୋହନ ଓଡ଼ିଶାର ବିଖ୍ୟାତ ସମ୍ଭ୍ରାନ୍ତ ତଥା ଜମିଦାର 'ମଲ୍ଲ' ପରିବାରର ସନ୍ତାନ ଥିଲେ । ଏହି ମଲ୍ଲ ପରିବାର ପ୍ରଥମେ କେନ୍ଦ୍ରାପଡ଼ା ଅନ୍ତର୍ଗତ କୁଶିଦା ନାମକ ଗ୍ରାମରେ ନିଜର ବସତି ସ୍ଥାପନ କରିଥିଲେ । କେବଳ ଏକ ସାଧାରଣ ପରିବାର ଭାବରେ 'ମଲ୍ଲ' ପରିବାର ପରିଚିତ ନଥିଲେ, ସେ ଥିଲେ ତତ୍‌କାଳୀନ ଖଣ୍ଡାୟତ ମାନଙ୍କର ଅଧୀଶ୍ୱର । ତେଣୁ ଉତ୍କଳର ସ୍ୱାଧୀନ ମହାରାଜା ମାନଙ୍କର ସେ ଥିଲେ ପ୍ରିୟ ଭାଜନ । ସେଥିପାଇଁ ରାଜା ମହାରାଜାଙ୍କ ଠାରୁ ସେମାନେ ନିଷ୍କର ଜମି ପାଇଥିଲେ । ଏହି 'ମଲ୍ଲ' ପରିବାରର ଯୋଗ୍ୟତମ ଦାୟାଦ ଥିଲେ 'ହନୁମଲ୍ଲ' । ଫକୀର ମୋହନ ତାଙ୍କ 'ଆତ୍ମଜୀବନ ଚରିତ' ରେ ଲେଖିଅଛନ୍ତି—(ଉତ୍କଳର) "ମହାରାଷ୍ଟ୍ର ଅଧିକାର ସମୟରେ ଉକ୍ତ ଖଣ୍ଡାୟତ ବଂଶଧର ହନୁମଲ୍ଲ ନାମକ ଜଣେ ଯୁବକ ମହାରାଷ୍ଟ୍ର ସେନାପତି ଅଧୀନରେ ପାଇକ ପଦରେ ନିଯୁକ୍ତ ହୋଇ ପ୍ରଥମେ ବାଲେଶ୍ୱର ଆସିଥିଲେ । ପଠାଣ ସେମାନଙ୍କୁ ଆଗୁଳି ରଖିବା ନିମନ୍ତେ ଫୁଲ୍‌ବାର୍ ଘାଟଠାରେ ଜଗୁଆଳି ହୋଇ ରହିବା ତାହାଙ୍କର କାର୍ଯ୍ୟ ଥିଲା । ଏକାର୍ଯ୍ୟ କାର୍ଯ୍ୟର ବେତନ ସ୍ୱରୂପ ପଚିଶ୍‌ବାଟି ବାଟି ଭୂମି ନିଷ୍କର ସ୍ୱରୂପ ପ୍ରାପ୍ତ ହୋଇଥିଲେ । ଦଳପତି ହନୁମଲ୍ଲଙ୍କ ଅଧୀନରେ ଅନେକ ପାଇକ ନିଯୁକ୍ତ ଥିଲେ । ସେମାନଙ୍କ ପାଇଁ ସ୍ୱତନ୍ତ୍ର ରୂପେ ଦାୟକାଳୀ ନିଷ୍କର ଭୂମି ଦିଆ ଥିଲା । ଗତ ୧୮୫୦ ସାଲ

benifit his health, he was far from home both literary and symbolically—far, in those days, from the way side in Concord, and father still from that home of the hearts desire, the Eden that had been lost so long ago.

[Six American Novelist's of Nineteenth Century, Pape —49-50]

ପ୍ରଥମ ବନ୍ଦୋବସ୍ତ ସମୟ ପର୍ଯ୍ୟନ୍ତ ପାଇକ ବଂଶଧର ମାନେ ନିର୍ବିବାଦରେ ଉକ୍ତ ଜମିମାନ ଭୋଗ ଦଖଲ କରିଆସୁଥିଲେ । ବନ୍ଦୋବସ୍ତ ସମୟକୁ ଯୋକେ ପାଇକ ବଂଶ ବିଲୁପ୍ତ ହୋଇଯାଇଥିଲେ । ଯେଉଁମାନେ ସନନ୍ଦ ଦେଖାଇ ପାରିଲେ, ସେମାନଙ୍କ ଜମି ବାହାଲ ରହିଲା ଓ ସନନ୍ଦହୀନ ପାଇକଙ୍କ ଜମି ନିଷ୍କିବାଜେୟାପ୍ତ ତାଲିକାଭୁକ୍ତ ହୋଇ ଯାଇଥିଲା ।" (୭)

ଏହିପରି ଭାବେ ଫକୀର ମୋହନଙ୍କ ନିଷ୍କର ଜମି ମଧ୍ୟ ବାଜେୟାପ୍ତ ତାଲିକାଭୁକ୍ତ ହୋଇଯାଇଥିଲା । ଏ ସମ୍ପର୍କରେ ଫକୀରମୋହନ ଏକ ରହସ୍ୟକର କାହାଣୀ ତାଙ୍କ ଜୀବନ ଚରିତରେ ଉଲ୍ଲେଖ କରିଯାଇଛନ୍ତି—

"ଠାକୁରମା' ଗଳ୍ପ କରୁଥା'ନ୍ତି କୋମ୍ପାନୀ ଫୌଜ ଦକ୍ଷିଣ ଏବଂ ପୂର୍ବ ଦୁଇ ଦିଗରୁ ବାଲେଶ୍ୱରକୁ ଆସିଥିଲେ । ଫୌଜଗଣ ବାଲେଶ୍ୱର ପୂର୍ବାଞ୍ଚଳ ନଦୀମୁହାଣ ବଲରାମ ଗଡ଼ ନାମକ ସ୍ଥାନରେ ଉପସ୍ଥିତ ସମ୍ବାଦ ଶୁଣିବା ମାତ୍ରକେ ଗ୍ରାମବାସୀଗଣ ପ୍ରାଣ ଭୟରେ ଘରର ସମସ୍ତ ଦ୍ରବ୍ୟ ପରିତ୍ୟାଗ କରି କେବଳ ପରିବାର ମାନଙ୍କୁ ଘେନି ବଣ ମଧ୍ୟକୁ ପଳାଇ ଯାଇଥିଲେ । ଅଳ୍ପଦିନ ମଧ୍ୟରେ ଦେଶରେ ଶାନ୍ତି ସ୍ଥାପିତ ହେଲା । କୋମ୍ପାନୀ ବାହାଦୂରଙ୍କ ଅଭୟ ଘୋଷଣା ଶୁଣି ଗ୍ରାମବାସୀମାନେ ଆପଣା ଆପଣା ଗୃହକୁ ବାହୁଡ଼ି ଆଇଲେ । ଅନେକ ଲୋକ ଏପରି ତ୍ରସ୍ତ ଭାବରେ ପଳାଇଯାଇଥିଲେ ଯେ, ଆପଣା ଘରର କପାଟଟି ମଧ୍ୟ ଆଉଜି ନେବାକୁ ସମୟ ପାଇନଥିଲେ । ଲୋକେ ଘରକୁ ବାହୁଡ଼ି ଆସି ଦେଖିଲେ, ଆପଣା ଆପଣା ବାଡ଼ିରେ ଫଳମାନ ପାଚି ପଡ଼ିରହିଥିଲା । ସମସ୍ତେ ଆପଣା ଆପଣା ପ୍ରାଣ ରକ୍ଷାରେ ବ୍ୟସ୍ତ; ଦ୍ରବ୍ୟ ଚୋରି କରିବାକୁ ଚୋର କାହାନ୍ତି ?"

"ଇଷ୍ଟ ଇଣ୍ଡିଆ କୋମ୍ପାନୀଙ୍କ ସୁଶାସନ ଓଡ଼ିଶା ବା ବାଲେଶ୍ୱରରେ ସ୍ଥାପିତ ହେବାର କେତେ ମାସ ଉତ୍ତାରେ ସରକାର ବାହାଦୂର ଦେଶ ମଧ୍ୟରେ ଘୋଷଣା କରିଦେଲେ ଯେ, ମରହଟ୍ଟା ଅଧିକାର ସମୟରେ ଯାହାର ଯେପରି ବୃତ୍ତି-ବିଧାନ ଥିଲା, ଠିକ୍ ସେହିପରି ରହିବ । କାହାରି ସମ୍ପତ୍ତିରେ ହସ୍ତକ୍ଷେପ କରାଯିବ ନାହିଁ । ବୃତ୍ତିଧାରୀମାନେ ନିରୂପିତ ତାରିଖରେ ଆପଣା ଆପଣା ସନନ୍ଦ ସହିତ କଚେରୀରେ ହାଜର ହୋଇ କଲେକ୍ଟର ସାହେବଙ୍କ ସମ୍ମୁଖରେ ନାମ ଲେଖାଇ ଦେଇଯିବେ । ରାଜକୀୟ ଘୋଷଣାର ମର୍ମ ବୁଝି ନପାରି ଅଥବା ଆଶଙ୍କା ପ୍ରଯୁକ୍ତ ଅଧିକାଂଶ ବୃତ୍ତିଧାରୀ କଚେରୀରେ ହାଜର ହୋଇ-ନଥିଲେ । ସେମାନଙ୍କୁ ହାଜର କରାଇବା ନିମନ୍ତେ ପରବାନା ଧରି କଚେରୀରୁ ପାଇକ ମାନେ ବାହାରିଲେ । ଗୋଟିଏ ପାଇକ ପରବାନା ଧରି ଆମ୍ଭମାନଙ୍କ ଘରଠାରେ ଉପସ୍ଥିତ ହେଲା । ସେ ସମୟରେ ଠାକୁର ମା' ଅଳ୍ପ ବୟସ୍କା ବିଧବା । ସରକାରୀ ପାଇକକୁ

(୭) ଆତ୍ମଜୀବନ ଚରିତ—ଫକୀର ମୋହନ ସେନାପତି, ପୃଷ୍ଠା—୧

ଉପସ୍ଥିତ ଦେଖି ଠାକୁର ମା' ଗ୍ରାମବାସୀ ମାନଙ୍କ ଶରଣାପନ୍ନ ହେଲେ । ଶେଷୋକ୍ତ ଗ୍ରାମବାସୀ ମାନଙ୍କ ମତରେ ସ୍ଥିର ହେଲା ମରହଟ୍ଟା ତରଫର ଲୋକଙ୍କୁ ମାରି ପକାଇବା ପାଇଁ କୋମ୍ପାନୀ ଡାକଛନ୍ତି । ଠାକୁର ମା' ପିଲା ଯୋଡ଼ିକୁ ପର କଣରେ ଶୁଆଇ ସେମାନଙ୍କୁ ମଶିଣାରେ ଘୋଡ଼ାଇ ପକାଇ କପାଟ ଫାଙ୍କରେ ଜବାବ୍ ଦେଲେ "ଏ ଘରେ ଅଣ୍ଡିରା ପିଲା କେହିନାହିଁ—ଅସ୍ତ୍ରର ଜମି ଦରକାର ନାହିଁ ।" ଉପସ୍ଥିତ ଗ୍ରାମବାସୀମାନେ ଠାକୁର ମା' ଉକ୍ତିକୁ ସମର୍ଥନ କରିବାରୁ, ପାଇକ ବାହୁଡ଼ି ଗଲା ଏବଂ ଅସ୍ତ୍ର ବଦଳରୁ ଜମି ବାଜ୍ୟାପ୍ତ ହେଲା ।"

"ସ୍ରାଗ୍ୟାନୁସନ୍ଧାନରେ ହିଁ ପୂର୍ବତନ କଟକ ଜିଲ୍ଲାର 'କୁଶିଦା' ଗ୍ରାମରୁ ଆସି ବର୍ତ୍ତମାନ ବାଲେଶ୍ୱର ନଗରୋପକଣ୍ଠସ୍ଥ ମଲ୍ଲିକାସ ପୁର ଗ୍ରାମରେ ବସତି ସ୍ଥାପନ କରିଥିବା ମଲ୍ଲ ପରିବାରର ସର୍ବାଦ୍ୟ ସେନାପତି ସଙ୍ଗାଧାରୀ ହନୁମଲ୍ଲ ହେଲେ ଫକୀର ମୋହନଙ୍କର ପଞ୍ଚମ ପୂର୍ବପୁରୁଷ । ସେନାପତି ଶ୍ରୀ ହନୁମଲ୍ଲଙ୍କ ପୁଅ ହେଲେ ଗୋବିନ୍ଦ ମଲ୍ଲସେନାପତି ଏବଂ ତାଙ୍କ ପୁଅ ଓ ଉତ୍ତରାଧିକାରୀ ହେଲେ କୃଷ୍ଣମଲ୍ଲ ସେନାପତି । କୃଷ୍ଣମଲ୍ଲଙ୍କ ପର୍ଯ୍ୟନ୍ତ ମଲ୍ଲିକାଶ ପୁରର ମଲ୍ଲ ପରିବାର ବିସ୍ତୀର୍ଣ୍ଣ ଜାଗିରି ଭୋଗକରି ବେଶ୍ ସ୍ୱଚ୍ଛଳ ଅବସ୍ଥାରେ ପଲ୍ଲୀ-ସାମନ୍ତ ବାସୁଦେବପୀଯୁ କର୍ଣ୍ଣି—ସ୍ତୋଯ୍ବାର ମାନଙ୍କ ପରି ମାନ୍ୟ ଜୀବନ ଯାପନ କରୁଥିଲେ । 'ମଲ୍ଲ' ମାନଙ୍କର ଦୁର୍ଭାଗ୍ୟ ଆରମ୍ଭ ହେଲା । ଫକୀର ମୋହନଙ୍କ ଜେଜେବାପ ଏହି ବିସ୍ମୃତ କୃଷ୍ଣମଲ୍ଲଙ୍କର ଅକାଳ ବିୟୋଗ ହେତୁ । ଫକୀର ମୋହନ କହିଛନ୍ତି ଯେ—"ଠାକୁର ବାବା କୃଷ୍ଣ ସେନାପତି ମୁର୍ଶିଦାବାଦ ନବାବ୍ ସରକାରରେ ଦରୁଆନ, କି ଜମାଦାର ଏହିପରି ଗୋଟାଏ କିଛି ସାମାନ୍ୟ କାର୍ଯ୍ୟରେ ନିଯୁକ୍ତଥିଲେ । ସେହି ବିଦେଶ ଭୂମିରେ ତାଙ୍କର ମୃତ୍ୟୁ ହେଲା । ସେ ସମୟରେ ଠାକୁର ମା' ଅସହାୟ—ଦୁଇଗୋଟି ଅପ୍ରାପ୍ତ ବୟସ୍କ ପୁତ୍ର ସନ୍ତାନ ବର୍ତ୍ତମାନ ଥିଲେ ।" (ଆତ୍ମ-ଜୀବନ ଚରିତ—ପୃ, ୧୪) ଅକାଳ ଗତ କୃଷ୍ଣମଲ୍ଲଙ୍କ ପତ୍ନୀ ହେଉଛନ୍ତି ଶ୍ରୀମତୀ କୁଚିଲା ଦେବୀ; ଫକୀର ମୋହନଙ୍କ ପ୍ରିୟତମା ଠାକୁର ମା', ଯାହାଙ୍କର ନିଷ୍ପାପ, କର୍ମଠ ଓ ନିରୀହ କର୍ମକ୍ଳାନ୍ତ ଜୀବନକୁ ଆଦର୍ଶ ରୂପେ ଧରିହିଁ, ପରେ ତାଙ୍କର ଅସାଧାରଣ ପ୍ରତିଭାସମ୍ପନ୍ନ ନାତି 'ଫକୀର' ସମଗ୍ର ଓଡ଼ିଆ ସାହିତ୍ୟରେ ଜନୋପକାର ସର୍ବସ୍ୱା, ପରିବାର ବତ୍ସଳା, ମା' ଓ ଗୋସେଇଁ ମା' ମାନଙ୍କର ଅନନ୍ୟ ଓ ଅପୂର୍ବ ଚରିତ୍ର ସୃଷ୍ଟି ଯାଇଛନ୍ତି ।

ମରହଟ୍ଟାଯାଇ ୧୮୦୩ରେ ଇଂରେଜ ଆସିଲା ବେଳକୁ ଦୁଇଟି ସନ୍ତାନର ଜନନୀ ତରୁଣୀ କୁଚିଲା ସ୍ତ୍ରିରବର୍ଷ ହେବ ବୈଧବ୍ୟ ଭୋଗ କରି ସାରିଥିଲେ । ବିସ୍ମୃତ କୃଷ୍ଣମଲ୍ଲ ଅକାଳରେ ନମରି ବ୍ରିଟିଶ୍ ଆସିଲା ବେଳକୁ ସେ ଯଦି ବଞ୍ଚି ଥାଆନ୍ତେ, ତେବେ ମଲ୍ଲିକାଶ ପୁରର ମଲ୍ଲମାନେ ହୁଏତ ତାଙ୍କର ମୌରସୀ ଜମି—ଜମିଦାରୀ ଏପର୍ଯ୍ୟନ୍ତ ହରାଇ

(୭) ଆତ୍ମଜୀବନ ଚରିତ—ଫକୀରମୋହନ ସେନାପତି, ପୃଷ୍ଠା—୨।୩

ନଥାନ୍ତେ । କାରଣ୍ଡା ସରଳା କୁଚଳାଙ୍କର ସରଳ ଅଜ୍ଞତା ଓ ବାପଛେଉଣ୍ଡ ପିଲା ଦୁଇଟି ପାଇଁ ଅକାରଣ ଅଥଚ ଏକାନ୍ତ ସ୍ୱାଭାବିକ ଆଶଙ୍କା ଯୋଗୁଁହିଁ ମଲ୍ଲିକାଶପୁରର ମଲ୍ଲ ପରିବାର ଏକାଦିନକେ ସାଧାରଣ ଦରିଦ୍ର ନାଗରିକ ମାତ୍ର ହୋଇପଡ଼ିଲେ; କିନ୍ତୁ ମନେହୁଏ ଏ ପ୍ରକାର ଅପ୍ରାପଟିକ ଟ୍ରାଜେଡ଼ିର ପଶ୍ଚାତ୍ପଟ ନଥିଲେ ଓଡ଼ିଆଜାତି ହୁଏତ ସରସ୍ୱତୀ ଫକୀରମୋହନଙ୍କୁ ପାଇନଥାନ୍ତା । ସେ ଖୁବ୍ ସମ୍ଭବତଃ ଏକ ଶ୍ରେଷ୍ଠ ଜମିଦାରୀର ଇତର ଶ୍ରେଣୀସ୍ଥ ଗ୍ରାମ୍ୟ-ସାମନ୍ତୀ-ଜୀବନ ଯାପନରେ ହିଁ ସନ୍ତୁଷ୍ଟ ରହି ସମ୍ପୂର୍ଣ୍ଣ ନାମହୀନ ହୋଇ ଅନ୍ତର୍ହିତ ହୋଇଯାଇଥା'ନ୍ତେ ।" (୮)

କୃଷ୍ଣ ମଲ୍ଲ—କୁଚଳା ଦେଈଙ୍କର ଦୁଇଟି ସନ୍ତାନ ଥିଲେ । ଅକାଳରେ କୃଷ୍ଣ ମଲ୍ଲଙ୍କ ବିୟୋଗରେ ବିଧବା କୁଚଳା ଏହି ଦୁଇ ସନ୍ତାନ ପୁରୁଷୋତ୍ତମ ଓ ଲକ୍ଷ୍ମଣ ଚରଣଙ୍କୁ ମଣିଷ କରିବା ପାଇଁ କମ୍ ଆୟାସ କରିନାହାନ୍ତି । କନିଷ୍ଠ ଲକ୍ଷ୍ମଣ ଚରଣ ହେଉଛନ୍ତି ଆମର ଖ୍ୟାତନାମା, ଅନନ୍ୟ ପ୍ରତିଭାସମ୍ପନ୍ନ ଔପନ୍ୟାସିକ ଫକୀରମୋହନ ସେନାପତିଙ୍କର ଭାଗ୍ୟଶାଳୀ ପିତା । ଫକୀରମୋହନଙ୍କର ବଡ଼ବାପା ପୁରୁଷୋତ୍ତମ ଥିଲେ କୃପଣ, ପରଶ୍ରୀକାତର ଓ ନିଷ୍ଠୁର ପ୍ରକୃତର ବ୍ୟକ୍ତି; କିନ୍ତୁ ଏହାର ବୈପରୀତ୍ୟରେ ଫକୀରମୋହନଙ୍କ ପିତା ଲକ୍ଷ୍ମଣ ଚରଣ ଥିଲେ ସାଧୁ ଓ ଧର୍ମପ୍ରାଣ ତଥା ଉଦାର ଚରିତର । ଏହାର ପ୍ରତିଫଳନ ଅବଶ୍ୟ ଫକୀରମୋହନଙ୍କ ଚରିତ୍ରରେ ଲକ୍ଷ୍ୟ କରାଯାଇପାରେ । ଲକ୍ଷ୍ମଣ ଚରଣ ରଥଯାତ୍ରା ଦର୍ଶନ ନିମିତ୍ତ ଏକଦା ପୁରୀ ଯାତ୍ରା କରିଥିଲେ । ସାଙ୍ଗରେ ଥିଲେ ଫକୀରମୋହନଙ୍କ ଠାକୁରମାତା କୁଚଳା ଦେଈ । ପୁରୀରୁ ପ୍ରତ୍ୟାବର୍ତ୍ତନ ସମୟରେ ସେ ଭୁବନେଶ୍ୱରଠାରେ ହଠାତ୍ ହଇଜାରେ ଆକ୍ରାନ୍ତ ହୋଇ ପ୍ରାଣ ହରାଇଲେ । (୯) ଏତେବେଳକୁ ଫକୀରମୋହନ ମାତ୍ର ଏକବର୍ଷ ପାଞ୍ଚମାସର ଅବୋଧ ଶିଶୁ ।

---

(୮) ସରସ୍ୱତୀ ଡକ୍ଟର ମାୟାଧର ମାନସିଂହ—ଫକୀର ମୋହନ, ପୃଷ୍ଠା—୭/୮

(୯)-କ) ମୋହର ଏକବର୍ଷ ପାଞ୍ଚମାସ ବୟସ ସମୟରେ ପିତୃଦେବ ଜଗନ୍ନାଥ ଦେବଙ୍କ ରଥଯାତ୍ରା ଦର୍ଶନ ସକାଶେ ପୁରୀ ଯାତ୍ରା କରିଥିଲେ । ବାହୁଡ଼ା ସମୟରେ ଭୁବନେଶ୍ୱରଠାରେ ଓଲାଉଠା ରୋଗରେ ଲୋକାନ୍ତର ପ୍ରାପ୍ତ ହେଲେ । ସାଙ୍ଗୀ ଯାତ୍ରୀ ଥିଲେ ଗ୍ରାମସ୍ଥ କେତେଜଣ ଲୋକ ଓ **ତାହାଙ୍କର ଜନନୀ** (ମୋର— ଠାକୁର ମା') [ଫକୀରମୋହନ ଆତ୍ମଜୀବନ ଚରିତ—ପୃଷ୍ଠା-୫]

ଖ) ସ୍ୱାଭାବିକ ଭାବରେ ଧର୍ମଭାବାପନ୍ନ ଥିବାରୁ ହିଁ ଲକ୍ଷ୍ମଣ ଚରଣ ସେନାପତି ରଥଯାତ୍ରା ଓ ଜଗନ୍ନାଥ ଦର୍ଶନ ପାଇଁ **ସସ୍ତ୍ରୀକ** ପୁରୀ ଯାଇଥିଲେ । ବାଲେଶ୍ୱରରୁ ପୁରୀ ହୁଏତ କେବଳ ଚାଲି ଚାଲି ଯାଇ ଓ ସେହିପରି ଚାଲି ଚାଲି ଫେରିବା ବାଟରେ

ଡଃ ମାନସିଂହ ତାଙ୍କ 'ସରସ୍ୱତୀ ଫକୀରମୋହନ' ଗ୍ରନ୍ଥରେ ଲେଖିଛନ୍ତି ଯେ, ଲକ୍ଷ୍ମଣ ଚରଣ ସସ୍ତ୍ରୀକ ପୁରୀଧାମ ଯାତ୍ରା କରିଥିଲେ ଓ ତାଙ୍କର ଭୁବନେଶ୍ୱରଠାରେ ମୃତ୍ୟୁ ହେଲା । କିନ୍ତୁ ଫକୀରମୋହନଙ୍କ 'ଆତ୍ମଜୀବନ ଚରିତ'ରେ ଉଲ୍ଲେଖ ଅଛି ଯେ, ଲକ୍ଷ୍ମଣ ଚରଣ ସେନାପତିଙ୍କ ସାଙ୍ଗରେ ତାଙ୍କର କେତେକ ଗ୍ରାମବାସୀ ଓ କୁଚଳା ଦେବୀ ପୁରୀଧାମ ଯାତ୍ରା କରିଥିଲେ ଓ ତାଙ୍କ ମୃତ୍ୟୁ ବେଳେ ସେମାନେ ସେଠାରେ ଉପସ୍ଥିତ ଥିଲେ ଏବଂ ଏକଥା ଫକୀରମୋହନ ପୁଣି ଉଲ୍ଲେଖ କରିଛନ୍ତି ଯେ,—"ବାବାଙ୍କର ମୃତ୍ୟୁ ସମ୍ବାଦ ଶୁଣି, ମାଆ ଯେଉଁ ଶଯ୍ୟା ଗ୍ରହଣ କଲେ, ସେଥିରୁ ଯେ ଆଉ ଉଠିନାହାନ୍ତି । ଚଉଦ ମାସ ପର୍ଯ୍ୟନ୍ତ ଶାରୀରିକ ଏବଂ ମାନସିକ ଘୋର ଯନ୍ତ୍ରଣା ଭୋଗକରି ସନ ୧୨୫୨ ସାଲ ଭାଦ୍ର ଅଷ୍ଟମୀ ଦିବସରେ ସେ ପ୍ରାଣତ୍ୟାଗ କଲେ ।" (ଆ, ଜୀ, ଚ-୫) ଏଥିରୁ ଅନୁମିତ ହୁଏ ଯେ, ଡଃ ମାନସିଂହ କେବଳ ଅନୁମାନ ଉପରେ ଲକ୍ଷ୍ମଣ ଚରଣଙ୍କ ମୃତ୍ୟୁ ବେଳେ ତାଙ୍କର ସ୍ତ୍ରୀ କୁଚଳା ଦେଇ ଉପସ୍ଥିତ ଥିଲେ ବୋଲି 'ସରସ୍ୱତୀ ଫକୀରମୋହନ' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ।

ଫକୀରମୋହନଙ୍କ ପିତା ମୃତ୍ୟୁବରଣ କଲେ ଯେତେବେଳେ ଫକୀରମୋହନଙ୍କୁ ମାତ୍ର ଏକବର୍ଷ ପାଞ୍ଚମାସ ଅର୍ଥାତ୍ ୧୮୪୫ ଜୁନ୍ ମାସରେ ଫକୀରମୋହନ ପିତାଙ୍କର ମୃତ୍ୟୁର ଚଉଦମାସ ପରେ ତାଙ୍କ ମାତା ସ୍ୱର୍ଗାରୋହଣ କଲେ । ଅର୍ଥାତ୍ ୧୮୪୬ ମସିହା ଅଗଷ୍ଟ ମାସରେ ତାଙ୍କ ମାତାଙ୍କର ହେଲା ମୃତ୍ୟୁ । ବର୍ଷେ ପାଞ୍ଚମାସ ସମୟରେ ପିତାଙ୍କୁ ଏବଂ ଦୁଇ ବର୍ଷ ସାତମାସ ବେଳେ ମାତାଙ୍କୁ ହରାଇ ଫକୀରମୋହନ ପିତୃ-ମାତୃ ସ୍ନେହରୁ ବଞ୍ଚିତ ହୋଇପଡ଼ିଲେ । (୧୦)

---

ଫକୀରମୋହନଙ୍କ ଯୁବକ ଜନ୍ମଦାତା ଲକ୍ଷ୍ମଣ ଚରଣ, ଭୁବନେଶ୍ୱରଠାରେ ହଇଜା ରୋଗାକ୍ରାନ୍ତ ହୋଇ ବିନ୍ଦୁସାଗରର ପାହାଚ ଉପରେ ହିଁ ଶେଷନିଃଶ୍ୱାସ ତ୍ୟାଗ କଲେ ।" [ଡକ୍ଟର ମାୟାଧର ମାନସିଂହ—ସରସ୍ୱତୀ ଫକୀରମୋହନ, ପୃଷ୍ଠା-୮]

(୧୦) "ମୁଁ ସେହିଦିନଠାରୁ ନିତାନ୍ତ ଅସହାୟ ହେଲି । ମୋର ସମବୟସ୍କ, ସହାୟ ସଙ୍ଗୀ ବହୁ ପରିମାଣରେ ସୁସ୍ଥ ଶରୀର, ବଳିଷ୍ଠ ଓ ସୌଭାଗ୍ୟବାନ୍ ଅନେକ ପୁରୁଷ ପୃଥିବୀ ତ୍ୟାଗକରି ଚାଲିଯାଇଛନ୍ତି । ଅଥଚ ପିତୃ-ମାତୃହୀନ, ଚିରରୋଗୀ ମୁଁ, ଜୀବନ-କାଳରେ ବିବିଧ ପ୍ରକାର ଭୟଙ୍କର ବିପଦ-ସଙ୍କୁଳ ଅବସ୍ଥା ଅତିକ୍ରମ କରି ସପ୍ତତି ଜରାଜୀର୍ଣ୍ଣ ଦୁର୍ବଳ ହସ୍ତରେ ମୋର ଦୀର୍ଘ ଜୀବନର ଅସାର ଚରିତ ଲେଖିବାକୁ ବସିଛି ।" XXX ।

ପିତା-ମାତାଙ୍କ ବିୟୋଗ ଉତ୍ତାରେ ଯେମନ୍ତ ପ୍ରଭୁଙ୍କ ଆଦେଶରେ ପିତାମହୀ କୁଚଳା ଦେଇ ମୋତେ କୋଳାକୁ ଉଠାଇନେଲେ । ଦେଶରେ ପ୍ରବାଦ ଅଛି—"ପାଳେ ତ

ଫକୀରମୋହନ ପିତୃ-ମାତୃହୀନ ହୋଇଯିବା ପରେ ତାଙ୍କ ଠାକୁର ମା' କୁଚଳା ଦେବୀ ତାଙ୍କର ଲାଳନ ପାଳନ ଭାର ବହନ କରିଥିଲେ । ପୁତ୍ର ତଥା ପୁତ୍ରବଧୂଙ୍କ ବୟୋଗାନ୍ତ ଦୁଃଖରେ ଭାଙ୍ଗି ପଡ଼ି ମୁଏତ କୁଚଳା ଦେବୀ ମଧ୍ୟ ସେହିପରି ଚାଲିଯାଇଥା'ନ୍ତେ, କିନ୍ତୁ ତାଙ୍କ ଜୀବନର ସୂତ୍ରଟିକୁ ଭିଡ଼ିଧରିଲେ ବାପ 'ମା' ହେଉଣ୍ଡ ଅଢ଼େଇ ବର୍ଷର ନାତି ବ୍ରଜମୋହନ ।

ଫକୀରମୋହନଙ୍କ ପିଲାବେଳର ପ୍ରକୃତ ନାମ ଥିଲା ବ୍ରଜମୋହନ । ବ୍ରଜମୋହନରୁ ସେ କିପରି ଫକୀରମୋହନ ହେଲେ ସେ ସମ୍ପର୍କରେ ଯେ ତାଙ୍କ 'ଆତ୍ମଜୀବନ ଚରିତ'ରେ ଉଲ୍ଲେଖ କରିଛନ୍ତି ଯେ—"ଜନନୀଙ୍କ ପରଲୋକ ଗମନ ଉତ୍ତାରେ ସାତ ଆଠ ବର୍ଷ ପର୍ଯ୍ୟନ୍ତ ଗ୍ରହଣୀ, ଅର୍ଶ ପ୍ରଭୃତି ଯନ୍ତ୍ରଣାଦାୟକ ରୋଗରେ ଶଯ୍ୟାଗତ ହୋଇପଡ଼ିଲି । ଠାକୁରମା' ଦିବାନିଶି ମୋ ଶଯ୍ୟା ପାଖରେ ଜଗି ବସିଥା'ନ୍ତି । ମାସକ ଉତ୍ତାରେ ମାସ, ବର୍ଷକ ଉତ୍ତାରେ ବର୍ଷ କେତେକାଳ ଏହି ଭାବରେ ବହିଯାଇଛି । ଅନିଦ୍ରା, ଅନାହାରରେ ଠାକୁର ମା' ଯେ ସମୟରେ କେତେ ଦିବାନିଶି କାଟିଛନ୍ତି; ଯେମନ୍ତ ମୃତ୍ୟୁ ମୋହର ଗୋଟାଏ ହାତ ଏବଂ ଠାକୁର ମା' ଅନ୍ୟହାତ ଧରି ଟାଣୁଥା'ନ୍ତି । ଶେଷରେ ଠାକୁର ମା' ଜୟୀ ହେଲେ ଏବଂ ମୁଁ ନିରାମୟ ହେବାକୁ ଲାଗିଲି ।

ମୋହର ପୀଡ଼ା ସମୟରେ ଠାକୁର ମା' ଶଯ୍ୟାରେ ବସି କରଯୋଡ଼ି ଜଗତର ଯାବତୀୟ ଦେବ ଦେବୀଙ୍କଠାରେ ମୋହର ପ୍ରାଣଭିକ୍ଷା କରୁଥିଲେ । ବାଲେଶ୍ୱରରେ ଦୁଇ ପୀର ଥିଲେ । ଶେଷରେ ଠାକୁର ମା' ସେଇ ଦୁଇ ପୀରଙ୍କୁ ଧରିବସିଲେ । ସେମାନଙ୍କ-ଠାରେ ସେ ମାନସିକ କଲେ—"ମୋ ପିଲା ବ୍ରଜ ଭଲ ହୋଇଗଲେ ମୁଁ ତାହାକୁ ତୁମ୍ଭମାନଙ୍କର ଫକୀର ବା ଗୋଲାମ କରିଦେବି ।" ପ୍ରଥମେ ମୋହର ନାମ ରଖାଯାଇଥିଲା ବ୍ରଜମୋହନ । ଠାକୁର ମା' ମୋ ନାମ ରଖିଲେ—ଫକୀର । ପୀରମାନଙ୍କର ମନତୁଷ୍ଟି ସକାଶେ ଠାକୁର ମା' ଏହି ପଠାଣିଆ ନାମ ରଖିଥିଲେ ।" (୧୧) କିନ୍ତୁ ଫକୀରମୋହନ ପରବର୍ତ୍ତୀ କାଳରେ ଏହି ନାମ ଧରି ଓଡ଼ିଶାର ଅସଂଖ୍ୟ ଲୋକଙ୍କ ମନ ନାନା ଭାବେ ତୁଷ୍ଟି କରିସାରି ତାଙ୍କ ନାମର ଯଥାର୍ଥତା ପ୍ରତିପାଦନ କରିଅଛନ୍ତି ।

---

ବାପର ମା', ପାଳେ ତ ମା'ର ମା' । ମୋ ଜୀବନ ରକ୍ଷା ନିମନ୍ତେ ଠାକୁର ମା' ଯେତେ ଯତ୍ନ, ଯେତେ ଦାରୁଣ ଯନ୍ତ୍ରଣା ଭୋଗ କରିଛନ୍ତି, ବର୍ତ୍ତମାନ ଶୁଶ୍ରୂଷାରୂପେ ସେ ସବୁକଥା ମୋ ମନରେ ଉଦିତ ହେଲେ ପ୍ରାଣ ଆକୁଳ ହୋଇଉଠେ । ହାୟ ! ସେ ଉପକାରର ମୁଁ କିଛି ହିଁ ପ୍ରତିଦାନ କରିପାରିନାହିଁ ।"

[ଫକୀରମୋହନ, ଆତ୍ମଜୀବନ ଚରିତ—ପୃଷ୍ଠା-୫]

(୧୧) ଫକୀରମୋହନ 'ଆତ୍ମଜୀବନ ଚରିତ', ପୃଷ୍ଠା—୬

ଫକୀରମୋହନଙ୍କ ବାଲ୍ୟଜୀବନ ନାନା ଦୁର୍ଭିକ୍ଷ୍ୟ ବ୍ୟାଧି ତଥା ଦୁର୍ଯୋଗରେ ପରିପୂର୍ଣ୍ଣ ଥିଲା । ଏହା ତାଙ୍କୁ ଫକୀରମୋହନଙ୍କ ବଡ଼ବାପା ପୁରୁଷୋତ୍ତମ ଓ ବଡ଼ମା'ଙ୍କ ଈର୍ଷା ବିଦ୍ୱେଷ ତାଙ୍କର ବାଲ୍ୟକାଳ ପାଇଁ ଅନ୍ୟତମ ବିପଦ ହୋଇ ମଧ୍ୟ ରହିଥିଲା । କିନ୍ତୁ ଭଗବାନଙ୍କ ଆଶୀର୍ବାଦରୁ ହେଉ, ଭାଗ୍ୟର ପ୍ରସନ୍ନତାରୁ ହେଉ ବା ମାତାମହୀ କୁଚିଲା ଦେବୀଙ୍କ ଏକନିଷ୍ଠ ଯତ୍ନରୁ ହେଉ ଫକୀରମୋହନ ରକ୍ଷା ପାଇଗଲେ ସେହି ଦୁର୍ଯୋଗ ଦୁର୍ବିପାକରୁ । ଜୀବନର ନବମ ବର୍ଷରେ ପଦାର୍ପଣ ବେଳେ ସେ ପାଠପଢ଼ା ଆରମ୍ଭ କଲେ ଗ୍ରାମ୍ୟ ଚାଟଶାଳୀରେ । ସେ ଭଲ ପାଠ ପଢ଼ୁଥିଲେ, ମାତ୍ର—ବଡ଼ବାପା ପୁରୁଷୋତ୍ତମଙ୍କ ପୁଅ ବାରମ୍ବାର ଫେଲ୍ ହେଉଥିବାରୁ ପଢ଼ା କ୍ଷେତ୍ରରେ ଫକୀରମୋହନ ଏଥର ମଧ୍ୟ ବଡ଼ବାପାଙ୍କ ଈର୍ଷାର ଶୀକାର ହେଲେ । ବଡ଼ବାପା ପୁରୁଷୋତ୍ତମ ତାଙ୍କ ପାଠପଢ଼ା ବାବଦକୁ ପୂରା ଫିସ୍ ଦେବାକୁ ରାଜି ନହୋଇ ଲୋକଦେଖାଣିଆ ଭାବରେ ଏହାର ଆଂଶିକ ମାତ୍ର ଦେଉଥିଲେ । କେବଳ ଏତିକ ନୁହେଁ ଅବଧାନଙ୍କୁ ସେ କଡ଼ା ନିର୍ଦ୍ଦେଶ ମଧ୍ୟ ଦେଇଥିଲେ ଫକୀରମୋହନଙ୍କୁ ଯଥାଯଥ ଶାସନ କରିବା ପାଇଁ । ସେତେବେଳେ ଶାସନ କହିଲେ ପ୍ରଚୁର ମାଡ଼କୁ ହିଁ ବୁଝାଉଥିଲା । ତେଣୁ ରୁଗ୍ଣ ଫକୀରମୋହନ ବଡ଼ବାପାଙ୍କ କୁ-ଦୃଷ୍ଟିର ଶୀକାର ହୋଇ ବିଦ୍ୟାଳୟରୁ କେବଳ ଗୁଳ୍ପିଏ ମାଡ଼ ଅର୍ଜନ କରୁଥିଲେ । (୧୬) ଅବଶ୍ୟ ଏ କ୍ଷେତ୍ରରେ ତାଙ୍କର ଠାକୁର ମା' ପ୍ରତିବନ୍ଧକ ନ ହୋଇଥିଲେ ସେହି ବିଦ୍ୟାଳୟରେ ଯେ କେତେବେଳେ ରୁଗ୍ଣ ଫକୀରମୋହନଙ୍କ ଜୀବନ ଦୀପ ନିର୍ବାପିତ ହୋଇଯାଇଥାଆନ୍ତା, ତାହା କିଏ କହିବ ? କିନ୍ତୁ ଫକୀରମୋହନ ରକ୍ଷା ପାଇଗଲେ । ବଡ଼ବାପାଙ୍କ ପ୍ରରୋଚନାରେ ତାଙ୍କୁ ମାଡ଼ ଦେଉଥିବା ଅବଧାନ ବୈଷ୍ଣବ ଚରଣ ମହାନ୍ତ

---

(୧୬)" ମୋର ବଡ଼ବାପା ପୁରୁଷୋତ୍ତମ ସେନାପତି ବଡ଼ ନିଷ୍ଠୁର ଥିଲେ । ମାସ ଶେଷରେ ଅବଧାନ ଦରମା ମାଗିବାକୁ ଗଲେ ବଡ଼ବାପା କହନ୍ତି, "ତୁମ୍ଭେ ତ ଫକୀରକୁ ପାଠ ପଢ଼ାଉ ନାହଁ, ଦରମା ମାଗୁଛ କ'ଣ ? ଅବଧାନେ ଜବାବ୍ ଦିଅନ୍ତି, ମୁଁ ତ ଦିନସାରା ତାହାକୁ ପାଖରେ ବସାଇଛି, ଦଣ୍ଡେ ହେଲେ ଖେଳିବାକୁ ଛାଡୁନାହିଁ । ବଡ଼ବାପା କହନ୍ତି କାହିଁ ତା' ପିଠିରେ ତ ଚିହ୍ନ ନାହିଁ । ଅବଧାନେ ବଡ଼ବାପାଙ୍କ ମନକଥା ଭଲକରି ବୁଝିଥିଲେ, ଗୃହାଳୀରେ ମୁଁ ବସିଥିଲି । ଅକାରଣେ ବେତଟା ଧରି ମୋ ପିଠିରେ ଦଶ-ବାର ପାହାର ବାଡ଼େଇଲେ । ମାଡ଼ର ଶବ୍ଦ ଓ ମୋ ଚିତ୍କାର ଶୁଣି ବଡ଼ବାପା ଓ ବଡ଼ ମା' ଭାରି ଖୁସି । କିନ୍ତୁ ଠାକୁରମା' ଦଉଡ଼ି ଆସି କହନ୍ତି—"ଅବଧାନେ ତୁମ୍ଭର କି ପୁଅ ଝିଅ କେହି ନାହାନ୍ତି ? ଅକାରଣେ ପିଲାଟାକୁ ବାଡ଼େଉଛ ।" ପ୍ରତ୍ୟେକ ଥର ଅବଧାନଙ୍କ ଦରମା ଦେବାବେଳେ ଏହିପରି ଅଭିନୟ ହୋଇଥାଏ ।'

[ଫକୀରମୋହନ 'ଆତ୍ମଜୀବନ ଚରିତ"—ପୃଷ୍ଠା-୧୧]

କିଛୁକାଳ ପରେ ସ୍ୱଗ୍ରାମକୁ ବାହୁଡ଼ିଗଲେ । ତେଣୁ ଏହି ଚାଟଶାଳୀରୁ ଫକୀରମୋହନ ଗାଁର ଗ୍ରାମର ଅନ୍ୟତ୍ର ଥିବା 'ନଣ୍ଡା ବୋହାଉ ମଠ ଚାଟଶାଳୀ'ରେ ବିଦ୍ୟାଧ୍ୟୟନ ଆରମ୍ଭ କଲେ ।

ଚାଟଶାଳୀ ପାଠର ସମାପ୍ତି ପରେ ଫକୀରମୋହନ ବାଲେଶ୍ୱରର ପାର୍ଶି ଅବୈତନିକ ସ୍କୁଲରେ ନିଜେ ନିଜର ନାମ ଲେଖାଇଲେ । ଏହିଠାରେ ଫକୀରମୋହନଙ୍କ କିଶୋର ପ୍ରାଣରେ ପ୍ରଥମଥର ହୋମାଗ୍ନି ସ୍ଫୁରଣ ହେବାର ପ୍ରୟାସ କରିଥିଲା । ସେହିଠାରୁ ଫକୀର-ମୋହନ ଯେଉଁ ପାର୍ଶି ଶିକ୍ଷା କଲେ ତା'ର ପ୍ରକୃଷ୍ଟ ପରିଚୟ ଆମେ ତାଙ୍କ ସାହିତ୍ୟିକ ଜୀବନରେ, ତାଙ୍କ ସୃଷ୍ଟି ସମ୍ଭାରରେ ଭେଟିବାକୁ ପାଉଛୁ ମଧ୍ୟ । ପାର୍ଶିସ୍କୁଲରୁ ଫକୀର-ମୋହନଙ୍କ ଶିକ୍ଷା ସରୁ ନସରୁଣୁ ତାଙ୍କ ଜୀବନ ଗତି ପୁଣି ଏକ ଭିନ୍ନ ମୋଡ଼ନେଲା । ବାଲକ ଜୀବନରେ ସେ କର୍ମମୟ ଜୀବନକୁ କିଛିକାଳ ପାଇଁ ପ୍ରବେଶ କଲେ । ଫକୀମୋହନଙ୍କ ଜନ୍ମସ୍ଥାନ ବାଲେଶ୍ୱର ଓଡ଼ିଶାର ଏକ ବନ୍ଦର ସହର ରୂପରେ ପରିଚିତ ଥିଲା । ସେଠାରେ ଫକୀରମୋହନ ତାଙ୍କ ବଡ଼ବାପାଙ୍କ ସହାୟତାରେ ଅଟାଳ ସିଲଇ କାମ ତଦାରଖ କରିବାରେ ନିୟୋଜିତ ହେଲେ । କିନ୍ତୁ ଜାହାଜର ଅଟାଳ ସିଲଇ କାମ କାଳକ୍ରମେ ବନ୍ଦହେବାକୁ ବସିଲା । ତେଣୁ ଫକୀରମୋହନଙ୍କୁ ଲୁଣମାହାଲ କାର୍ଯ୍ୟ ଶିଖିବା ପାଇଁ ତାଙ୍କ ବଡ଼ବାପା ଜଣେ ସେରସ୍ତାଦାର ବିଶ୍ୱନାଥ ଦାସଙ୍କ ତତ୍ତ୍ୱାବଧାନରେ ଛାଡ଼ିଦେଲେ । କିନ୍ତୁ ଭାଗ୍ୟବଳରୁ ହେଉ ବା ଇଂରେଜ ସରକାରଙ୍କ କୌଶଳରୁ ହେଉ ବା ଫକୀର-ମୋହନଙ୍କ ପାଇଁ ଏହା ବିଧି ନିର୍ଦ୍ଦେଶ ହେଉ ଏହି ଲୁଣମକ ମାହାଲ, ମଧ୍ୟ ଉଠିଗଲା । ଲୁଣମକ୍ ମାହାଲ, ଉଠିଯିବାରୁ ସେଥିରେ ନିଯୁକ୍ତ ବଙ୍ଗାଳୀ ଅମଲାମାନେ ବଙ୍ଗ ଦେଶକୁ ଚାଲିଗଲେ ଏବଂ ଓଡ଼ିଆ ଅମଲାମାନେ ଅନ୍ୟାନ୍ୟ ମହକୁମାରେ ନିଯୁକ୍ତ ହୋଇଗଲେ । ଖ୍ୟାତି-ସମ୍ପନ୍ନ ବାଲେଶ୍ୱର ବନ୍ଦରର କୋଳାହଳମୟ ବନ୍ଦରଗୁଡ଼ିକ ଶ୍ମଶାନ ତୁଲ୍ୟ ନୀରବ ହୋଇ-ପଡ଼ିଲା । ଫକୀରମୋହନ ଏହି ସାମୟିକ କର୍ମମୟ ଜୀବନରୁ ଅବ୍ୟାହତି ନେଇ ପୁଣି ଶିକ୍ଷା-ଲାଭ ନିମିତ୍ତ ସ୍ୱଲକ୍ଷ୍ୟକୁ ଫେରିଆସିଲେ ।

୧୮୬୨ ମସିହାରେ ଅଟାଳ ସିଲଇ ଓ ଲୁଣମକ ମାହାଲ କାର୍ଯ୍ୟ ତ୍ୟାଗକରି କିଶୋର ଫକୀରମୋହନ ବାରବାଟୀ ସ୍କୁଲରେ ପ୍ରବେଶ କଲେ । ବାର୍ଷିକ ପରୀକ୍ଷାର ଫଳ ପ୍ରକାଶ ପାଇଲା । ଫକୀର ମୋହନ ପ୍ରଥମସ୍ଥାନ ଅଧିକାର କରି ପରବର୍ତ୍ତୀ ଶ୍ରେଣୀକୁ ଉନ୍ନୀତ ହେଲେ । କିନ୍ତୁ ଶେଷୋକ୍ତ ଶ୍ରେଣୀରେ ଚାରି ପାଞ୍ଚମାସ ପଢ଼ିବା ପରେ ସ୍କୁଲର ବେତନ ମାସିକ ମାତ୍ର ଚାରିଅଣା ଦେଇ ନପାରିବାରୁ ତାଙ୍କର ସେଠାରୁ ପଢ଼ା ଶେଷ ହୋଇଗଲା । ସେ ଆଉ ସ୍କୁଲକୁ ଗଲେ ନାହିଁ । କିନ୍ତୁ ଏତେବେଳକୁ ଫକୀରମୋହନ ପାର୍ଶି, ଅଭିଧାନ ଓ ବ୍ୟାକରଣ ଆଦି ଆୟତ୍ତ କରିସାରିଥିଲେ ।

ଶିକ୍ଷା କ୍ଷେତ୍ରରେ ଫକୀରମୋହନ ଆଉ ଅଧିକ ଅଗ୍ରସର ହୋଇପାରିଲେ ନାହିଁ । ନାନାଦିଗରୁ ବିଶେଷକରି ଅର୍ଥନୈତିକ ଦିଗରୁ ତାଙ୍କର ଶିକ୍ଷାରେ ଡୋରି ବନ୍ଧାହେଲା ।

କିନ୍ତୁ ତାଙ୍କ ପ୍ରତିଭା ତଥା ଗୁଣଗ୍ରାହିତାରେ ମୁଗ୍ଧ ହୋଇ ବାରବାଟୀ ସ୍କୁଲର ସେକ୍ରେଟେରୀ ବାବୁ ଶିବଚନ୍ଦ୍ର ସୋମ ତାଙ୍କୁ ସେହି ସ୍କୁଲରେ ତୃତୀୟ ଶିକ୍ଷକ ପଦରେ ନିଯୁକ୍ତ କଲେ । ସେତେବେଳେ ତାଙ୍କର ଦରମା ଥିଲା ମାସିକ ଅଢ଼େଇଟଙ୍କା । କିନ୍ତୁ ସେ ଯୁଗର ତାଙ୍କରି ପାଇଁ ଏହା ଯେ ଏକ ସମ୍ମାନସୂଚକ ବେତନ ଥିଲା ଏକଥା ଅସ୍ୱୀକାର କରିହେବ ନାହିଁ ।

ଏକ ଦୁର୍ଦ୍ଦଶାଗ୍ରସ୍ତ ଜୀବନରୁ ଫକୀରମୋହନ ସୌଭାଗ୍ୟର ସୋପାନ ଆଡ଼କୁ ଆଗେଇ ଚାଲିଲେ । ୧୮୬୩ ମସିହାରେ ତାଙ୍କର ବାରବାଟୀ ସ୍କୁଲରେ ୩ୟ ଶିକ୍ଷକ ଭାବରେ ନିଯୁକ୍ତି ତାଙ୍କ ପାଇଁ ଭାଗ୍ୟର ପ୍ରସନ୍ନତା ବୋଲି ବୋଲିବାକୁ ହେବ । ଏଥିରେ ତାଙ୍କ ଠାକୁର ମା' ସବୁଠାରୁ ବେଶି ଆନନ୍ଦିତ ହୋଇଥିଲେ; ତେଣୁ ସେ ଫକୀରମୋହନଙ୍କ ଆଗରେ ନିଜ ଚିତ୍ତ ଗହନରେ ସଞ୍ଚିତ ବହୁ ଦିନର ଅବ୍ୟକ୍ତ ଭାବନାକୁ ବ୍ୟକ୍ତ କରିଥିଲେ । ଏହି ପ୍ରକାରେ ଯେ—

'ତୁ ଯେ ରୋଜଗାର କରିପାରିଲୁ, ଏବେ ରକ୍ଷା ପାଇଗଲୁ ।" ପୁଣି,—"ମାହାକୁ ଅଢ଼େଇଟଙ୍କା ଦରମା ! କ'ଣ କହୁଛୁ ତେବେ ତୁ ବଡ଼ହୋଇଗଲେ ଆହୁରି ତେର୍ ଟଙ୍କା ରୋଜଗାର କରିବୁରେ ।" (ଆତ୍ମଜୀବନ ଚରିତ)

ଠାକୁରମାନଙ୍କ ଏହି କଲ୍ୟାଣମୟ ଶୁଭେଚ୍ଛା ମଧ୍ୟ ତୁରନ୍ତ ଫଳିଲା ଏବଂ ଫଳିଚାଲିଲା କ୍ରମାଗତ ଭାବରେ ନାତିଟିର ଜୀବନଯାକ ।

ଫକୀରମୋହନ ବାରବାଟୀ ସ୍କୁଲରେ ଅଢ଼େଇଟଙ୍କାରୁ ଟ ୪.୦୦ ପର୍ଯ୍ୟନ୍ତ ଦରମା ପାଇଥିଲେ । ତାଙ୍କ ନିଯୁକ୍ତିର ମାତ୍ର ତିନିମାସ ମଧ୍ୟରେ ଫକୀରମୋହନ ବାରବାଟୀ ସ୍କୁଲରେ ଶିକ୍ଷକ ଭାବରେ ନିଜର କର୍ମମୟ ଜୀବନ ମଧ୍ୟକୁ ଅନୁପ୍ରବେଶ କଲେ । କିନ୍ତୁ ତାଙ୍କର ନିଷ୍ଠା ଓ ବିଚକ୍ଷଣ ବୁଦ୍ଧିରେ ସେ ଅନେକଙ୍କ ପ୍ରିୟ ଓ ପ୍ରଶଂସାଭାଜନ ହୋଇପାରିଥିଲେ । ଆପଣାର ବିଚକ୍ଷଣ ଧୀଶକ୍ତି ଅଧ୍ୟବସାୟ ଓ ଏକନିଷ୍ଠ ଶିକ୍ଷାଦାନର ଅନୁରାଗରେ ବାରବାଟୀ ସ୍କୁଲରେ ସେ ବେଶ୍ ଖ୍ୟାତିସମ୍ପନ୍ନ ହୋଇପାରିଥିଲେ ।

ଚଳଚଞ୍ଚଳ ମତିର ଅନୁଗାମୀ ଯୁବକ ଫକୀରମୋହନ ଦୀର୍ଘଦିନ ଧରି ବାରବାଟୀ ସ୍କୁଲରେ ରହିପାରିଲେ ନାହିଁ । ୧୮୬୪ ମସିହାରେ ବାଲେଶ୍ୱର ମିଶନ୍ ସ୍କୁଲର ପ୍ରଧାନଶିକ୍ଷକ ପଦ ଖାଲି ହେଲା । ଏହି ସ୍କୁଲର ସମ୍ପାଦକ (Secretary) ରେଭେରେଣ୍ଡ ଏ.ମିଲର୍ ଫକୀରମୋହନଙ୍କୁ ସେହି ପଦରେ ନିଯୁକ୍ତ କଲେ । ଏତେବେଳକୁ ତାଙ୍କର ଦରମା ମାସିକ ଦଶଟଙ୍କା । ଏହି ସ୍କୁଲର ସମ୍ପାଦକ ମିଲର୍ ସାହେବ ପରେ ଡେପୁଟି କଲେକ୍ଟର ହୋଇଯିବାରୁ ସ୍କୁଲର ଦାୟିତ୍ୱ ମିଶନ୍ ସୋସାଇଟି ହାତକୁ ନେଲେ । ଏତିକିବେଳେ ଫକୀରମୋହନ ବାଲେଶ୍ୱର ଜିଲ୍ଲାର ଅସ୍ଥାୟୀ କଲେକ୍ଟର ଆର୍. ଏଚ୍. ପଣି ଓ ଜଏଣ୍ଟ

ମ୍ୟାକମ୍ରୋଡ଼ି ଉଭୟଙ୍କୁ ସେମାନେ ଏକାଠି ରହୁଥିବା କୋଠିରେ ବଙ୍ଗଳା ପଢ଼ାଉଥା'ନ୍ତି । ଫକୀରମୋହନଙ୍କ ନମ୍ର, ବିନୟୀ ଭାବ ଦେଖି ଓ ଫକୀରମୋହନଙ୍କ କଥା ଶୁଣି କରି କଲେକ୍ଟର ପଣି ମହୋଦୟ ତାଙ୍କୁ ବାଲେଶ୍ୱର କଲେକ୍ଟର ସିରସ୍ତାର ମୁନ୍‌ସି ରୂପେ ନିଯୁକ୍ତ କଲେ । କିନ୍ତୁ ପରେ ବାଲେଶ୍ୱର ମିଶନ୍ ସ୍କୁଲରେ ରେଭେରେଣ୍ଡ ଇ. ସି. ବି. ହାଲମ୍ ସମ୍ପାଦକ ଭାବେ ନିଯୁକ୍ତ ହେବାରୁ ଫକୀରମୋହନ ତାଙ୍କର ପୂର୍ବୋକ୍ତ ପଦକୁ ଫେରି ଆସିଥିଲେ । ଏହି ସମୟରେ ଫକୀରମୋହନଙ୍କ ସହାୟତାରେ ହାଲମ୍ ସାହେବ୍ ଏକ ଓଡ଼ିଆ ବ୍ୟାକରଣ, ରଚନା କରିଥିଲେ । ହାଲମ୍ ସାହେବ ଫକୀରମୋହନଙ୍କ କାର୍ଯ୍ୟ ଦକ୍ଷତାରେ ଏପରି ମୁଗ୍‌ଧ ହୋଇଥିଲେ ଯେ, ତାଙ୍କର ଦରମା ମାସିକ ପଚିଶ ଟଙ୍କା ମଞ୍ଜୁର କରିଦେଇଥିଲେ ।

ଫକୀରମୋହନଙ୍କ ଭାଗ୍ୟର କ୍ରମୋନ୍ନତି ଘଟୁଥିଲା । ବାଲେଶ୍ୱରରେ ଶିକ୍ଷକତା କରୁଥିବା ସମୟରେ ସେଠାକୁ କଲେକ୍ଟର ଭାବରେ ଆସିଲେ ଜନ୍‌ବୀମ୍‌ସ ସାହେବ । ଫକୀର ମୋହନଙ୍କ ସହ ତାଙ୍କର ଘନିଷ୍ଠତା ଏପରି ଅନ୍ତରଙ୍ଗ ହୋଇଉଠିଥିଲା ଯେ, ଫକୀରମୋହନଙ୍କ ଭବିଷ୍ୟତ କାଳରେ, ନାନା ସଙ୍କଟମୟ ମୁହୂର୍ତ୍ତରେ ସେ ତାଙ୍କୁ ଅନେକ ସାହାଯ୍ୟ କରିଥିଲେ । ଏପରିକି ଓଡ଼ିଆଭାଷା ଓ ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ ହେବା ଉପରେ ତାଙ୍କର ସୌହାର୍ଦ୍ଦ୍ୟ ଭାବ ଏ ଜାତି ପାଇଁ ଏକ ଗୌରବମୟ କାହାଣୀ ହୋଇ ରହିବ । ଫକୀରମୋହନ ବୀମ୍‌ସ ସାହେବଙ୍କ ସମ୍ପର୍କରେ ତାଙ୍କ ଆତ୍ମଚରିତରେ ଲେଖି ଲେଖିଛନ୍ତି— "ବାଲେଶ୍ୱରରେ ସ୍ତ୍ରୀ ଶିକ୍ଷା ପ୍ରଚାର ଏବଂ ଉତ୍କଳ-ଭାଷାର ରକ୍ଷା ଓ ପୁଷ୍ଟି ସାଧନ ବିଷୟରେ ମୁଁ ବୀମ୍‌ସ ସାହେବଙ୍କ ଠାରୁ ଯଥେଷ୍ଟ ସାହାଯ୍ୟପ୍ରାପ୍ତ ହୋଇଛି । ସାହେବ ମହୋଦୟ ମୋତେ ଅନେକଥର ଅନେକ ପ୍ରକାର ବିପଦରୁ ରକ୍ଷା କରିଅଛନ୍ତି । ମୋର ସାଂସାରିକ ସବୁ ପ୍ରକାର ଉନ୍ନତିର ଏକମାତ୍ର ମୂଳାଧାର ମହାତ୍ମା ଜନ୍‌ବୀମ୍‌ସ । ମୋର ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କର ପବିତ୍ର ନାମ ସ୍ମରଣ କରିବି ।"

ଫକୀରମୋହନ ୧୮୬୪ରୁ ୧୮୭୧ ମସିହା ପର୍ଯ୍ୟନ୍ତ ଦୀର୍ଘ ୭ ବର୍ଷ ଧରି ବାଲେଶ୍ୱର ମିଶନ୍ ସ୍କୁଲର ପ୍ରଧାନ ଶିକ୍ଷକ ଭାବରେ କାର୍ଯ୍ୟ କରିଥିଲେ । ଏହି ସମୟ ଥିଲା ତାଙ୍କ ଜୀବନର ସମ୍ଭବତଃ ବେଶ୍ ମଧୁରତର ସମୟ । କିନ୍ତୁ ଉତ୍କଳର କ୍ରମାଗତ ଦୁର୍ଦ୍ଦଶାରେ ତାଙ୍କର ଯୁବପ୍ରାଣ ପରମୁହୂର୍ତ୍ତରେ ଆନ୍ଦୋଳିତ ହୋଇଉଠିଥିଲା । ତାଙ୍କର ଜୀବଦଶାରେ ୧୮୬୬ ମସିହାରେ ଓଡ଼ିଶାରେ ପଡ଼ିଥିଲା ସର୍ବଗ୍ରାସୀ ନଅଙ୍କ ଦୁର୍ଭିକ୍ଷ । ଏହି ସମୟ ତାଙ୍କ ଜୀବନର ଏକ ଅଭୁଲା ତଥା ଅଗ୍ନିଲ କାହାଣୀ । ଓଡ଼ିଶାରେ ସେତେବେଳେ ଇଂରେଜଶାସନ ଆରମ୍ଭ ହେବାର ଦୀର୍ଘ ୬୩ ବର୍ଷ ହୋଇସାରିଥାଏ । ଫକୀରମୋହନ ମଧ୍ୟ ସେତେବେଳକୁ ୨୩ ବର୍ଷର ଯୁବକ । ଓଡ଼ିଶାରେ ନ'ଅଙ୍କ ଦୁର୍ଭିକ୍ଷର ତାଣ୍ଡବଲୀଳା ଆରମ୍ଭ ହୋଇଗଲା । ଦୀର୍ଘଦିନ ଧରି ବର୍ଷା ନହେବାରୁ ଲୋକମାନେ କୀଟପରି ପୋକମାଛି ପରି ମରୁଥିଲେ ଓ

ତାହା ଯୁବକ ଫକୀରମୋହନଙ୍କ ପ୍ରାଣକୁ କିପରି ଆଲୋଡ଼ିତ କରିଥିଲା ତାହା ତାଙ୍କ 'ଆତ୍ମ-ଜୀବନ ଚରିତ'ରୁ ବେଶ୍ ଜଣାପଡ଼େ । ୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷ ପରେ ପରେ ୧୮୬୮ ମସିହାରେ ଓଡ଼ିଶା ଉପରକୁ ଅନ୍ୟ ଏକ ଭୟଙ୍କର ଦୁର୍ଯୋଗ ମଧ୍ୟ ମାଡ଼ିଆସିଲା । ତାହା ହେଲା 'ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ ।'' ପଡ଼ୋଶୀ ବଙ୍ଗାଳୀମାନଙ୍କର ହୀନଚକ୍ରାନ୍ତରେ 'ଓଡ଼ିଆ ଏକ୍‌ଟି ସ୍ୱତନ୍ତ୍ର ଭାଷା ନୟ' ବୋଲି ଯେଉଁ ସ୍ୱର ଉତ୍ତୋଳନ କରାଗଲା ସେଥିରେ ଓଡ଼ିଆଭାଷା ଯେ ନିଶ୍ଚୟ ବିଲୁପ୍ତ ହୋଇଥା'ନ୍ତା ଏହା ନିଃସନ୍ଦେହ । ମାତ୍ର ଫକୀରମୋହନ ଓ ତାଙ୍କର କେତେକ ବିଶ୍ୱସ୍ତ ଅନୁଗାମୀ ଏବଂ ଜନ୍‌ବିମ୍‌ସ ସାହେବଙ୍କ ଯୁକ୍ତି ଓ ଦୃଢ଼ ମତ ଉପରେ ଏହି ଭାଷାର ଭାଗ୍ୟ ଉପରେ ନଇଁ ଆସିଥିବା କାଦମ୍ବ ଦୂରେଇଗଲା । ଓଡ଼ିଶା ଓ ଓଡ଼ିଆ ଭାଷା ମଧ୍ୟ ବଞ୍ଚିଗଲା ।

ପୁଣି ଅପର ପକ୍ଷରେ ଓଡ଼ିଆଭାଷା ତଥା ସାହିତ୍ୟକୁ ଅନ୍ୟମାନଙ୍କ ନିକଟରେ ପରିଚିତ କରାଇବା ପାଇଁ ସେତେବେଳେ ଓଡ଼ିଶାରେ ପ୍ରେସ୍‌ଟିଏ ମଧ୍ୟ ନଥାଏ । ଫକୀରମୋହନଙ୍କ ପ୍ରଚେଷ୍ଟାରେ ବାଲେଶ୍ୱରରେ ପ୍ରଥମକରି ଏକ ପ୍ରେସ୍ ବା ଛାପାଖାନା ନାନା ଦୁର୍ଘଟଣା ଓ ଦୁର୍ବିପାକ ସତ୍ତ୍ୱେ ପ୍ରତିଷ୍ଠା ହୋଇପାରିଥିଲା । ଓଡ଼ିଆଜାତି ତଥା ଭାଷା ଓ ସାହିତ୍ୟ ପାଇଁ ଚିର ଦୁଃଖଗ୍ରସ୍ତ ଫକୀରମୋହନଙ୍କର ଏହା କମ୍ ଶ୍ରମସ୍ୱୀକାର ଓ ତ୍ୟାଗର ପରିଚୟ ହଏ ନାହିଁ । କେବଳ ଏତିକି ନୁହେଁ, ଫକୀରମୋହନ ଏହିଠାରୁ 'ବୋଧଦାୟିନୀ' ଓ ବାଲେଶ୍ୱର ସମ୍ବାଦ ବାହିକା' ନାମକ ପତ୍ରିକା ଓ ସମ୍ବାଦପତ୍ର ପ୍ରକାଶ କରି ଓଡ଼ିଆଭାଷା ଓ ସାହିତ୍ୟର ବିକାଶ ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । ଏ ସମ୍ପର୍କରେ ସେ ଲେଖିଛନ୍ତି— "ମୁଁ ଦିନଯାକ ସ୍କୁଲ ଓ ପ୍ରେସ୍ କାର୍ଯ୍ୟ କରି ଥକିପଡ଼େ । ରାତିରେ ବିଶେଷ କିଛି କାର୍ଯ୍ୟ କରିବାକୁ ବଳ ଅଣ୍ଟେ ନାହିଁ । ସେଥିପାଇଁ ପତ୍ରିକା ଅନିୟମିତ ଭାବେ ବାହାରେ । ପ୍ରାୟ ଚାଳିଶ ଜଣ ପତ୍ରିକାର ଗ୍ରାହକ ଥିଲେ । ଆଠ-ଦଶ ଜଣ ଠାରୁ ମୂଲ୍ୟ ଆଦାୟ ହେଉଥିଲା ।'' ଫକୀରମୋହନ ସ୍ୱଳ୍ପବିତ୍ତଶାରେ ନାନା ଅସୁବିଧାର ସମ୍ମୁଖୀନ ହୋଇ ବି ଜାତି ପାଇଁ କି ପ୍ରକାର କଷ୍ଟ ସ୍ୱୀକାର କରିଥିଲେ, ତାହା ଏଥିରୁ ବେଶ୍ ଅନୁମେୟ ।

ବାଲେଶ୍ୱରରେ ଫକୀରମୋହନଙ୍କ ସହିତ ରାଧାନାଥ ଓ ମଧୁସୂଦନଙ୍କର ମଧ୍ୟ ଘନିଷ୍ଠତା ଜମିଉଠିଥିଲା ଓ ପରେ ଏହି ତ୍ରୟୀ ସାଧକଙ୍କ ମାଧ୍ୟମରେ ଓଡ଼ିଆ ସାହିତ୍ୟର ଆଧୁନିକ ପର୍ବ ଅନୁଷ୍ଠିତ ହୋଇପାରିଥିଲା ।

ଓଡ଼ିଆଭାଷା ଓ ସାହିତ୍ୟର ଉନ୍ନତି, ଜାତିର ସମ୍ମାନ ରକ୍ଷା କରିବା ପାଇଁ ଫକୀରମୋହନ ଶିକ୍ଷକ ତଥା ଲେଖକ ଭାବରେ ଯେଉଁ ବିଚକ୍ଷଣତା ଦେଖାଇ ଚାଲିଥିଲେ, ତାର ଅନ୍ତରାଳରେ ତାଙ୍କର ପାରିବାରିକ ଜୀବନ ପୁଣି ଥରେ ଭିନ୍ନ ମୋଡ଼ ନେବାକୁ ବସିଲା । ଫକୀରମୋହନ କେବଳ ବାଲ୍ୟକାଳର ନିଃସଙ୍ଗ ନଥିଲେ, ଜୀବନସାରା ଏହି ନିଃସଙ୍ଗତା ତାଙ୍କର ଜଣେ

ବିଶ୍ୱସ୍ତ ସହଚର ହୋଇଯାଇଥିଲା କହିଲେ ଚଳେ । ୧୮୫୬ ମସିହାରେ ଯେତେବେଳେ ସେ ନିମକ ମାହାଲ ଓ ଅଷ୍ଟାଲ ପିଲାଇ କାର୍ଯ୍ୟ ତଦାରଖରେ ନିଯୁକ୍ତ ଥିଲେ, ସେତିକିବେଳେ ମାତ୍ର ୧୩ ବର୍ଷ ବୟସରେ ତାଙ୍କର ବିବାହ ସଂପନ୍ନ ହୋଇଥିଲା ମାଣିକ-ପଟ୍ଟ ନିବାସୀ ନାରାୟଣ ପଣ୍ଡାଙ୍କ କନ୍ୟା ଲୀଳାବତୀଙ୍କ ସହିତ । ଲୀଳାବତୀ ଥିଲେ ନିତାନ୍ତ ଦାମ୍ଭିକା, ନିଷ୍ଠୁରା, କର୍କଶଭାଷିଣୀ ଏବଂ ଫକୀରମୋହନଙ୍କର ବିରୁଦ୍ଧାଚାରିଣୀ । ଉଭୟଙ୍କ ମଧ୍ୟରେ ଯେପରି ମତାନ୍ତର ନ ଘଟେ ସେଥିପାଇଁ ଠାକୁର ମା' ଅବଶ୍ୟ ନାନା ଯତ୍ନ କରିଥିଲେ; କିନ୍ତୁ ୧୮୭୧ ମସିହାରେ ଲୀଳାବତୀଙ୍କ ମୃତ୍ୟୁ ଫକୀର-ମୋହନଙ୍କ ଜୀବନରେ ଯେପରି ଏକ ନୂତନ ଆଶା ଓ ଉଦ୍ଦୀପନାର ଆଲୋକ ଖେଳାଇ ଦେଇଥିଲା । ସେ ଜୀବନର ଏକ ଗୁରୁଭାରରୁ ମୁକ୍ତ ପାଇବାର ଆନନ୍ଦ ଯେପରି ଅନୁଭବ କଲେ । ଫକୀରମୋହନଙ୍କ ପ୍ରଥମ ସ୍ତ୍ରୀଙ୍କ ମୃତ୍ୟୁର ପାଞ୍ଚବର୍ଷ ପୂର୍ବରୁ ଅର୍ଥାତ୍ ୧୮୬୬ ମସିହାରୁ ତାଙ୍କ ଠାକୁର ମା'ଙ୍କ ପରଲୋକ ହୋଇସାରିଥିଲା । ଜୀବନର ଏହି ଦୀର୍ଘ ପାଞ୍ଚବର୍ଷ ଚରମ ଯନ୍ତ୍ରଣାର ଦାବାନଳରୁ ରକ୍ଷାପାଇବା ପାଇଁ ଫକୀରମୋହନ ନାନା କାର୍ଯ୍ୟରେ ବ୍ୟସ୍ତ ଥିଲେ । ତାଙ୍କ ପ୍ରଥମ ସ୍ତ୍ରୀଙ୍କ ମୃତ୍ୟୁ ହେଲା ତାଙ୍କ ଶ୍ୱଶୁରାଳୟରେ । ସେତେବେଳକୁ ଫକୀରମୋହନଙ୍କର ଏକ କନ୍ୟାସନ୍ତାନ ଜାତ ହୋଇସାରିଥିଲା । ୧୮୭୧ ମସିହାରେ ଫକୀରମୋହନ ଦ୍ୱିତୀୟ ଥର ପାଇଁ ଶିବପ୍ରସାଦ ଚୌଧୁରୀଙ୍କ କନ୍ୟା କୃଷ୍ଣାକୁମାରୀଙ୍କୁ ବିବାହ କଲେ । କୃଷ୍ଣା କୁମାରୀଙ୍କ ପ୍ରେମ ଫକୀରମୋହନଙ୍କ ଜୀବନକୁ ବେଶ୍ ଆନନ୍ଦମୟ କରିପାରିଥିଲା (୧୩) । ୧୮୬୬ ମସିହାଠାରୁ ୧୮୭୨ ମସିହା ପର୍ଯ୍ୟନ୍ତ ଫକୀରମୋହନ ଯେପରି ଶିକ୍ଷକତା, ପ୍ରେସ୍, ଜାତି ଓ ଦେଶ ସେବାରେ ନିଜକୁ ନିୟୋଜିତ କରି ଅସାଧାରଣ ଦକ୍ଷତା ତଥା ସଫଳତା ହାସଲ କରିଥିଲେ । ଠିକ୍ ସେହିପରି ସମକାଳରେ ଠାକୁର ମା'ଙ୍କ ମୃତ୍ୟୁ, ପ୍ରଥମା ପତ୍ନୀଙ୍କ ଅକାଳବିୟୋଗ ଓ ଦ୍ୱିତୀୟ ଥର ବିବାହ ତାଙ୍କ

(୧୩) ସାଂସାରିକ ସମସ୍ତ ପ୍ରକାର ଦୁଃଖ ଦୁର୍ଦ୍ଦଶା ମୋଚନ, ସୌଭାଗ୍ୟ, ସୁଖସମୃଦ୍ଧି ବର୍ଦ୍ଧନ ନିମନ୍ତେ ଦୟାମୟ ପରମେଶ୍ୱର କୃଷ୍ଣାକୁମାରୀଙ୍କୁ ଭାର୍ଯ୍ୟାରୂପେ ମୋହ ନିକଟକୁ ପଠାଇଥିଲେ । ସତ୍ୟନିଷ୍ଠା, ପତିପରାୟଣତା, ଧାର୍ମିକତା ସମସ୍ତ ପ୍ରକାର ସଦ୍‌ଗୁଣ ତାଙ୍କଠାରେ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ଥିଲା । ମୋର ସେବା-ଶୁଶ୍ରୂଷା କରିବା ମୋର ଆଜ୍ଞାନୁବର୍ତ୍ତୀ ହୋଇରହିବା, ସେ ତାଙ୍କର ପରମ କର୍ତ୍ତବ୍ୟ ମଣୁଥିଲେ । ମୋ ସହିତ ବିବାହ ସମୟରେ ତାଙ୍କର ବୟସ ହୋଇଥିଲା; ମାତ୍ର ୧୧ ବର୍ଷ । ୧୮୯୪ ମସିହାରେ ଗୋଟିଏ ପୁତ୍ର ଏବଂ ଗୋଟିଏ କନ୍ୟା ରଖି ସେ ଯେତେବେଳେ ଇହଧାମ ପରିତ୍ୟାଗ କରି ଚାଲିଗଲେ, ସେହିଦିନଠାରୁ ପୃଥିବୀରୁ ମୋହର ସହାନୁଭୂତି ପ୍ରାପ୍ତି ଶେଷ ହୋଇଅଛି । ବର୍ତ୍ତମାନ ମୋ ଜୀବନ ଶୂନ୍ୟମୟ ।

[ ଆତ୍ମ-ଜୀବନ-ଚରିତ—ପୃଷ୍ଠା-୫୦ ]

ଜୀବନକୁ ନାନାଭାବେ ବିପର୍ଯ୍ୟସ୍ତ ତଥା ମଧ୍ୟ ମଧ୍ୟ କରିପାରିଥିଲା । ଏକ ବ୍ୟକ୍ତି ଜୀବନରେ ସମକାଳୀନ ଏ ଦୁଃଖ ସୁଖକୁ ଫକୀରମୋହନ ଯେପରି ଧୈର୍ଯ୍ୟର ସହ ମୁକାବିଲା କରିଥିଲେ ତାହା ତାଙ୍କ ପୁରୁଷାକାରର ଯଥାର୍ଥ ପରିଚୟ ।

୧୮୪୩ରୁ ୧୮୬୨ ମସିହା ପର୍ଯ୍ୟନ୍ତ (ବାଲ୍ୟକାଳରୁ କମବର୍ଦ୍ଧିଷ୍ଣୁ ଫକୀରମୋହନ) ତାଙ୍କର ଶିକ୍ଷା ତଥା ନାନାଳକ ଶ୍ରମିକଭାବେ ବାଲେଶ୍ୱର ବନ୍ଦରରେ କାର୍ଯ୍ୟ ଇତ୍ୟାଦି ଅନେକ ଘଟଣା ଫକୀରମୋହନଙ୍କ ଜୀବନର ଅର୍ଦ୍ଧ ପର୍ଯ୍ୟାୟକୁ କଷ୍ଟସ୍ଥ ଅଶୂଳ କରିଥିଲା; ମାତ୍ର ୧୮୬୨ରୁ ୧୮୭୧ ମସିହା ପର୍ଯ୍ୟନ୍ତ ସେ ସମୟକରେ ନାନା ସୁଖ ଦୁଃଖର ସମ୍ମୁଖୀନ ହୋଇଥିଲେ । ଇତ୍ୟବସରରେ ସେ ଆର୍ଥିକ ସଙ୍କଟକୁ ସୁଧାରିବା ପାଇଁ କାରବାରୀ ସ୍କୁଲ ତଥା ମିଶନ୍ ସ୍କୁଲରେ ଶିକ୍ଷକତା, ପ୍ରେସ୍ ମାଲିକ ଆଦି ଭାବେ କାର୍ଯ୍ୟ କରିଥିଲେ ବି ଅନ୍ୟ ପକ୍ଷରେ ତାଙ୍କର ଠାକୁର ମା' ଓ ପ୍ରଥମା ପତ୍ନୀଙ୍କ ବିୟୋଗରେ ସେ ପାରିବାରିକ ଜଞ୍ଜାଳ ଜନିତ ଦୁଃଖରେ ନିମଗ୍ନ ହୋଇଥିଲେ । ଏହି ସମୟରେ ତାଙ୍କ ସାହିତ୍ୟିକ ପ୍ରତିଭା ବିକାଶ ହେବାକୁ ଉପାୟମାନ ଖୋଜୁଥିଲା । ସେ ଓଡ଼ିଆଭାଷା ଓ ସାହିତ୍ୟର ଉନ୍ନତି ସକାଶେ ନାନା କାର୍ଯ୍ୟମାନ ମଧ୍ୟ କରିପାରିଥିଲେ । କିନ୍ତୁ ୧୮୭୧ ମସିହା ପରର ସମୟକୁ ଫକୀରମୋହନଙ୍କ ଜୀବନ ତଥା ପ୍ରତିଭା ବିକାଶର ଉତ୍ତରଣ ସମୟ ବୋଲି କହିବାକୁ ହେବ । ତାଙ୍କ ଜୀବନର ସମସ୍ତ ସଫଳତା ଓ ତାଙ୍କ ବିଚକ୍ଷଣ ବୁଦ୍ଧି ପ୍ରୟୋଗଜନିତ ଦେୱାନୀ କୌଶଳ ତଥା ତାଙ୍କ ସାହିତ୍ୟିକ ଜୀବନର ପ୍ରତିଷ୍ଠା ଏହି ସମୟରେ ହିଁ ବିକଶିତ ହୋଇଉଠିଥିଲା । ପୁଣି ଏହି ସମୟରୁ ୧୮୯୪ ମସିହା ପର୍ଯ୍ୟନ୍ତ ସେ କୃଷ୍ଣାକୁମାରୀଙ୍କ ସହିତ ଏକ ମଧ୍ୟମ ପାରିବାରିକ ଜୀବନ ଅତିବାହିତ କରିଥିଲେ ।

ଫକୀରମୋହନ ନାନା କାରଣରୁ ବାଲେଶ୍ୱର ମିଶନ୍ ସ୍କୁଲ୍‌ର ଶିକ୍ଷକତା ପରିତ୍ୟାଗ କଲେ ୧୮୭୧ ମସିହାରେ । ଏ ସମୟରେ ତାଙ୍କୁ ଜନ୍‌ବାମ୍‌ସ ସାହେବ ନାନାଭାବେ ସାହାଯ୍ୟ କରିଥିଲେ । ସେ ତାଙ୍କୁ ୧୮୭୧ ମସିହାରେ ମାସିକ ଶହେଟଙ୍କା ବେତନରେ ନୀଳଗିରିର ଦେୱାନ୍ କରି ପଠାଇଲେ । ଫକୀରମୋହନଙ୍କ ଭାଗ୍ୟର ଚରମ ସଫଳତାର ଦିନ ଉପସ୍ଥିତ ହେଲା । ଏତେ ଟଙ୍କା, ଏତେ କ୍ଷମତାରେ ସେ ଏପରି ମଜ୍ଜି ରହିଲେ ଯେ, ଭବିଷ୍ୟତର କଳ୍ପନା କରିବାକୁ ମଧ୍ୟ ସେ ଭୁଲିଗଲେ । ନୀଳଗିରିରେ ୪ ବର୍ଷ କର୍ମ କଲା ପରେ ତାଙ୍କର ରାଜାଙ୍କ ସହିତ ମତାନ୍ତର ହେଲା । ୧୮୭୫ ମସିହାରେ ସେ ନୀଳଗିରି ପରିତ୍ୟାଗ କରି ବାଲେଶ୍ୱର ଫେରିଆସିଲେ ।

ଏତେବେଳେ ବାଲେଶ୍ୱରରେ ବସିରହି ସେ ଏକାନ୍ତଭାବେ ନିଃସ୍ୱ ହୋଇପଡ଼ିଥିଲେ । ଜନ୍‌ବାମ୍‌ସ ମଧ୍ୟ ସେତେବେଳେ ବାଲେଶ୍ୱରରୁ ଯାଇଁ କଟକର କଲେକ୍ଟର ହେଲେଣି । ତେଣୁ ଫକୀରମୋହନ ଏଥର ଚିନ୍ତା କଲେ କଟକ ଯାଇଁ ପୁଣି ଥରେ ତାଙ୍କର ଶରଣାପନ୍ନ ହେବେ । ସେ କଟକ ଯାଇଁ ବାମ୍‌ସ ସାହେବଙ୍କୁ ଦେଖାକଲେ । ବାମ୍‌ସ

ସାହେବଙ୍କ କୃପାରୁ ୧୮୭୬ ମସିହାରେ ତାଙ୍କ ଡୋମପଡ଼ାରେ ଦେଓ୍ୱାନୀ ଗ୍ରହଣ ମିଳିଲା । କିନ୍ତୁ ସେ ୧୮୭୭ ମସିହାରେ ତାହା ମଧ୍ୟ ପରିତ୍ୟାଗ କଲେ ଏବଂ ସେହି ମସିହାର ନଭେମ୍ବର ୧ ତାରିଖରେ ଢେଙ୍କାନାଳରେ ଆସିଷ୍ଟାଣ୍ଟ ମେନେଜର ପଦରେ ମାସିକ ଶହେଟଙ୍କା ବେତନରେ ନିଯୁକ୍ତ ହେଲେ । ଏହି ସମୟରେ ଫକୀରମୋହନ କୃଷ୍ଣାକୁମାରୀ ଓ ତାଙ୍କର ନବଜାତ କନ୍ୟାଙ୍କୁ ସାଙ୍ଗରେ ଢେଙ୍କାନାଳ ନେଇଯାଇଥିଲେ । ଏହିଠାରେ ଫକୀରମୋହନଙ୍କର ପୁତ୍ର ସନ୍ତାନଟିଏ ମଧ୍ୟ ଜନ୍ମ ହୋଇଥିଲା; ମାତ୍ର ଏହି ପୁତ୍ରଟି ଅଳ୍ପ ଦିନ ପରେ ମରିଯିବାରୁ କୃଷ୍ଣାକୁମାରୀ ଅତୀବ ମାନସିକ ଯନ୍ତ୍ରଣାରେ ଛଟପଟ ହୋଇଉଠିଲେ । ତାଙ୍କ ମନରେ ସାନ୍ତ୍ୱନା ଦେବା ପାଇଁ ଫକୀରମୋହନ ପୁରାଣପାଠର ଆୟୋଜନ କରିଥିଲେ । ଇତ୍ୟବସରରେ ସେ ରାମାୟଣ ଅନୁବାଦ କରିବାର ସୁଯୋଗ ମଧ୍ୟ ପାଇଥିଲେ । (୧୪) ଏହି "ରାମାୟଣ ବାଲକାଣ୍ଡ"ର ମୁଦ୍ରଣ ସମୟରେ ସେଥିରେ ଫକୀରମୋହନ ଜନ୍ ବାମ୍ସ ସାହେବଙ୍କୁ ଏହାକୁ ଉତ୍ସର୍ଗ କରିଥିବାର ନମୁନା ସ୍ୱରୂପ ଏକ ପୃଷ୍ଠା ସଂଯୋଗ କରିଥିଲେ । ତାହା ହେଲା—

To.

John Beams Esauire, B. C. S

Honoured Sir,

**I beg most respect fully to dedicate this work to you atokew of the affectionate gratitude which Orissa has always felt towards you for the intelligent and heart-felt interest you have evinced in the improvement of the oriya language and in the welfare of her people.**

---

(୧୪) ପୁତ୍ରଟି ମରିଯିବାରୁ ଜଗତ ସଂସାରଟା ମୋତେ ଅନ୍ଧକାରମୟ ଜଣାଗଲା । ମୋ ସ୍ତ୍ରୀଙ୍କ ଅବସ୍ଥା ଅଧିକତର ଶୋଚନୀୟ ହୋଇଥିଲା । ତାଙ୍କ ମନରେ ସାନ୍ତ୍ୱନା ଦେବାପାଇଁ ବଳରାମ ଦାସ ରାମାୟଣ ପାଠ ଆରମ୍ଭ କରାଇଲି । ପ୍ରତିଦିନ ସନ୍ଧ୍ୟା ସମୟରେ ଜଣେ ବ୍ରାହ୍ମଣ ଆସି ପୋଥି ପାଠ କରନ୍ତି । ମୋ ସ୍ତ୍ରୀ ତ ଦୂରର କଥା, ମୁଁ ମଧ୍ୟ ସେ ପାଠ କିଛି ବୁଝିପାରେ ନାହିଁ । ପୁସ୍ତକ ପାଠ ବନ୍ଦ କରାଇଦେଲି । ଢେଙ୍କାନାଳ ମହାରାଜଙ୍କ ପୁସ୍ତକାଳୟରୁ ସଂସ୍କୃତ ବାଲ୍ମୀକି ରାମାୟଣ ଆଣି ପଦ୍ୟାନୁବାଦ କଲି । ଦିନବେଳେ ଅନୁବାଦ କରେ, ସନ୍ଧ୍ୟାବେଳେ ସ୍ତ୍ରୀଙ୍କୁ ଶୁଣାଏ । ××× ସେ କ୍ରମଶଃ ପୁତ୍ରଶୋକ ପାସୋରିବାକୁ ଲାଗିଲେ ।

( ଆତ୍ମ-ଜୀବନ-ଚରିତ, ପୃଷ୍ଠା ୭୬ । ୭୭ )

I am
Honoured Sir
Your most obedient Servant
Phakirmohan Senapati

Dhenkanal
1880

ଏଥିରୁ ଫକୀରମୋହନଙ୍କର ଜନ୍‌ବାମ୍‌ସଙ୍କ ପ୍ରତି ଥିବା ଶ୍ରଦ୍ଧା, ଭକ୍ତି ଓ ଅନୁରାଗ ତଥା ତାଙ୍କର ଇଂରାଜୀ ଜ୍ଞାନ ସମ୍ବନ୍ଧରେ ବେଶ୍ ଧାରଣା ହୁଏ । ଫକୀରମୋହନ ଶିକ୍ଷକ ଥିବା ସମୟରେ ଆପଣାର ଅଧ୍ୟବସାୟ ବଳରେ ଇଂରାଜୀ ଓ ବଙ୍ଗଳା ଭାଷାକୁ ବେଶ୍ ଅଭ୍ୟାସ କରିପାରିଥିଲେ—ଯାହା ମାଧ୍ୟମରେ ସେ ଇଂରେଜ ଶାସକମାନଙ୍କର ଅନେକ-ସ୍ଥଳେ ପ୍ରିୟଭାଜନ ହୋଇଥିବାର ଲକ୍ଷ୍ୟ କରାଯାଏ ।

ଫକୀରମୋହନ ଢେଙ୍କାନାଳର ଅସିଷ୍ଟାଣ୍ଟ ମ୍ୟାନେଜର ଭାବେ ୧୮୭୭ ମସିହାରୁ ୧୮୮୩ ମସିହା ପର୍ଯ୍ୟନ୍ତ ପ୍ରାୟ ୭ ବର୍ଷଧରି ଅବସ୍ଥାପିତ ହୋଇଥିଲେ । ୧୮୮୧ ମସିହାରେ ଫକୀରମୋହନଙ୍କର ସେହି ଢେଙ୍କାନାଳରେ ପୁଣି ଗୋଟିଏ ପୁତ୍ର ଜାତ ହୋଇଥିଲା । ପରବର୍ତ୍ତୀ କାଳରେ ଏହି ପୁତ୍ର ଓଡ଼ିଆ ପ୍ରବନ୍ଧ ସାହିତ୍ୟରେ ମୋହିନୀମୋହନ ସେନାପତି ଭାବରେ ପରିଚିତ ହୋଇଛନ୍ତି ।

ଫକୀରମୋହନ ଢେଙ୍କାନାଳରେ ଅସିଷ୍ଟାଣ୍ଟ ମ୍ୟାନେଜର ଥିବା ସମୟରେ ତାଙ୍କ ଜୀବନରେ ପୁଣି ଏକ ଦୁର୍ଯୋଗ ଉପସ୍ଥିତ ହେଲା । ଏହି ସମୟରେ—"ରେଭେନ୍‌ସା ବର୍ଦ୍ଧମାନର କମିଶନର୍ ପଦରେ ଓ ଜନ୍‌ବାମ୍‌ସ ଶ୍ରୀହଟ୍ଟର ଜଜ୍ ଓ କମିଶନର୍ ପଦରେ ନିଯୁକ୍ତ ହୋଇ ଚାଲିଗଲେ । ଓଡ଼ିଶାର କମିଶନର୍ ପଦରେ ନିଯୁକ୍ତ ହୋଇ ଆସିଲେ ସ୍ମିଥ୍ ।" ଜନ୍‌ବାମ୍‌ସଙ୍କ ବିଦାୟକୁ ଲକ୍ଷ୍ୟ କରି ଫକୀରମୋହନ ଆତ୍ମଚରିତରେ ଲେଖିଛନ୍ତି —'ବାମ୍‌ସ ମୋର ପରମବନ୍ଧୁ ଓ ସହାୟକ ଥିଲେ । ସେ ଓଡ଼ିଶାରୁ ସ୍ଥାନାନ୍ତରିତ ହେବାରୁ ମୋର—ଭାଗ୍ୟାକାଶ ପରିବର୍ତ୍ତିତ ହେବାକୁ ଲାଗିଲା ।"

ବାମ୍‌ସ ସାହେବଙ୍କ ସ୍ଥାନାନ୍ତରର ସୁଯୋଗ ନେଇ ଫକୀରମୋହନଙ୍କ ନାମରେ କେତେକ ବିପକ୍ଷ ଲୋକ ମିଥ୍ୟାଭିଯୋଗମାନ କମିଶନରଙ୍କ ଆଗରେ ପେଶ୍ କଲେ । ଏହାର ତଦନ୍ତ କରିବାକୁ ଆସିଲେ ରାୟ ନନ୍ଦକିଶୋର ବାହାଦୂର । ତଦନ୍ତରେ ଫକୀର-ମୋହନଙ୍କ ବିରୋଧରେ କରାଯାଇଥିବା ଅଭିଯୋଗ ମିଥ୍ୟା ପ୍ରମାଣିତ ହେଲା । କିନ୍ତୁ କମିଶନରଙ୍କ ଶୁଭଦୃଷ୍ଟି ଫକୀରମୋହନଙ୍କ ଉପରେ ନଥିବାରୁ ୧୮୮୩ ସେପ୍‌ଟେମ୍ବର ୩୦ ତାରିଖରେ ସେ ଢେଙ୍କାନାଳ ଚାକିରିରୁ ଇସ୍ତଫା ଦେଇଦେଲେ ।

ଢେଙ୍କାନାଳରୁ ଖୁରିଦା ଗ୍ରାନ୍ତି ଆସିବା ପରେ ଫକୀରମୋହନ ବାଲେଶ୍ୱରରେ ଯେଉଁ କେତେଦିନ ବ୍ୟର୍ଥମନୋରଥ ହୋଇ ବସିରହିଥିଲେ ସେହି ସମୟରେ ସେ ରାମାୟଣ ସାତକାଣ୍ଡ ଲେଖିସାରି ମହାଭାରତ ଲେଖା ଆରମ୍ଭ କରି ଦେଇଥିଲେ । ଏହି ସମୟରେ ଫକୀରମୋହନ ଅର୍ଥାଭାବର ସମ୍ମୁଖୀନ ହୋଇଥିଲେ । ଇତ୍ୟବସରରେ ତାଙ୍କର ପରମ ହିତୈଷୀବନ୍ଧୁ ରାୟବାହାଦୂର ନନ୍ଦକିଶୋର ଦାସଙ୍କ ସହାୟତାରେ ସେ ୧୮୮୪ ମସିହାରେ ଦଶପଲ୍ଲାର ଦେଓ୍ୱାନ ଭାବରେ ନିଯୁକ୍ତ ପାଇଲେ । କିନ୍ତୁ ଏଠାରେ ନିର୍ବୋଧ, ଅଜ୍ଞ ରାଜାଙ୍କ ସହିତ ବିଜ୍ଞ ଫକୀରମୋହନଙ୍କର ମତାନ୍ତର ହେବାରୁ ତାଙ୍କୁ ଏଠାରୁ ୧୮୮୬ ମସିହା ଜାନୁଆରୀ ମାସରେ ବିଦାୟ ନେବାକୁ ପଡ଼ିଥିଲା ।

ଫକୀରମୋହନଙ୍କ ଭାଗ୍ୟ ଏବେ ଉତ୍ଥାନ ପତନ ଦେଇ ପୁଣି କେତେବେଳେ ସଫଳ ପଥରେ ଯେ ଗତିକରୁଥିଲା, ତାହା ତାଙ୍କ ବିଭିନ୍ନ ସ୍ଥାନରେ ଦେଓ୍ୱାନୀ ପ୍ରାପ୍ତି ଓ ନାନା କାରଣରୁ ଦେଓ୍ୱାନୀ ଚ୍ୟୁତିରୁ ସ୍ପଷ୍ଟ ଜଣାପଡ଼ୁଥିଲା । ତେବେ ଫକୀରମୋହନଙ୍କ ଭାଗ୍ୟ ଯେ ଏତେବେଳେ ତାଙ୍କର ଅନୁକୂଳ ଥିଲା, ଏକଥା ଅସ୍ୱୀକାର କରିହେବ ନାହିଁ । ଗୋଟିଏ ସ୍ଥାନରୁ ଦେଓ୍ୱାନୀ ଗ୍ରାନ୍ତି ସାମାନ୍ୟ କେତେଦିନ ବେକାର ହୋଇ ବସିବା ପରେ ସେ ପୁଣି ଦେଓ୍ୱାନୀ ପାଇଯାଉଥିଲେ । ସେହିପରି ୧୮୮୬ ମସିହା ଜାନୁଆରୀରେ, ଦଶପଲ୍ଲା ଦେଓ୍ୱାନୀ ଗ୍ରାନ୍ତିବାର କିଛୁଦିନ ପରେ ସେ 'ପାଲଲହଡ଼ା'ରେ ସୁପରିଣ୍ଟେଣ୍ଡେଣ୍ଟଙ୍କ ଦ୍ୱାରା ପ୍ରଥମଶ୍ରେଣୀର ମାଜିଷ୍ଟ୍ରେଟଙ୍କ କ୍ଷମତା ସହି ଶହେଟଙ୍କା ବେତନରେ ଦେଓ୍ୱାନ ଭାବରେ ନିଯୁକ୍ତ ହେଲେ । 'ପାଲଲହଡ଼ା'ରେ ଫକୀରମୋହନଙ୍କର ସେପରି କିଛି ଗୁରୁତର କର୍ମ ନଥାଏ । ତେଣୁ ସକାଳୁ ସନ୍ଧ୍ୟାଏଁ ହାତଗୋଡ଼ ଛନ୍ଦି ବେକାର ହୋଇ ବସି-ରହିବାହିଁ ସାରହୁଏ । ଏହି ସମୟରେ ଫକୀରମୋହନ କେବଳ ମହାଭାରତ ଅନୁବାଦ ଓ ଚୌପଟ ଖେଳ ସମୟ ବ୍ୟୟ କରୁଥିଲେ । ଏପରି ଅବସ୍ଥାରେ ତାଙ୍କୁ ବେଶୀଦିନ ଭଲ ଲାଗିଲା ନାହିଁ । ତେଣୁ ସେ କର୍ମତ୍ୟାଗ ପାଇଁ ଦରଖାସ୍ତ କଲେ ଓ ତାଙ୍କ ଦରଖାସ୍ତ ମଞ୍ଜୁର୍ ହୋଇଗଲା । ୧୮୮୭ ମସିହାରେ 'ପାଲଲହଡ଼ା'ର ଦେଓ୍ୱାନୀ ଗ୍ରାନ୍ତି ଫକୀର-ମୋହନ ବାଲେଶ୍ୱର ଫେରିଆସିଲେ ।

ଏହା ଆଗରୁ କୁହାଯାଇଛି ଯେ, ଫକୀରମୋହନଙ୍କ ଭାଗ୍ୟ ଏବେ ତାଙ୍କର ଯଥେଷ୍ଟ ଅନୁକୂଳ ଥିଲା । ତେଣୁ ୧୮୮୭ ମସିହାରେ ସେ 'ପାଲଲହଡ଼ା' ଦେଓ୍ୱାନୀ ଗ୍ରାନ୍ତିବାପରେ ତାଙ୍କୁ କେନ୍ଦୁଝରର ମେନେଜର ପଦ ମିଳିଗଲା । ସେ ସମୟରେ କେନ୍ଦୁଝରର ମହାରାଜା ଥିଲେ ଧନଞ୍ଜୟଭଞ୍ଜ । ସେ ସବୁ ବିଷୟରେ ଥିଲେ ବିଚକ୍ଷଣ । ଏକଦା ଏକ ମକଦ୍ଦମାରେ ରାଜାଙ୍କ ସପକ୍ଷରେ ଫକୀରମୋହନ ଲଢ଼ି ମକଦ୍ଦମା ଜୟ କରାଇଦେବାରୁ ମହାରାଜ ପ୍ରୀତ ହୋଇ ତାଙ୍କ ଦରମା ୧୮୮୯ ଜୁନ୍‌ଠାରୁ ମାସିକ ଟ ୧୫୦-୦୦ କରି-ଦେଇଥିଲେ । ଫକୀରମୋହନ ୧୮୮୭ରୁ ୧୮୯୨ ଯାଏ ପାଞ୍ଚବର୍ଷ ଧରି କେଉଁଝରରେ

ମ୍ୟାନେଜରୀ କରିଥିଲେ । କିନ୍ତୁ ତାଙ୍କ ମ୍ୟାନେଜରୀର ଚତୁର୍ଥ ବର୍ଷରେ ଅର୍ଥାତ୍ ୧୮୯୧ ମସିହାରେ କେନ୍ଦୁଝରରେ ଏକ ଭୟଙ୍କର ପ୍ରଜା ବିଦ୍ରୋହ ଆରମ୍ଭ ହୋଇଥିଲା । ଫକୀର-ମୋହନ ଏହି ସମୟରେ ନିଜକୁ ଏବଂ ରାଜପରିବାରକୁ ଯେପରି ଭାବରେ ରକ୍ଷା କରିଥିଲେ, ତା'ର ପଟାନ୍ତର ନାହିଁ । ନିଜେ ଫକୀରମୋହନ ଭୂୟାଁଙ୍କ ଦ୍ଵାରା ବନ୍ଦୀ ହୋଇଥିଲେ । ଭୂୟାଁ ନେତା'ର ଧରଣୀଧରଙ୍କ ଆଦେଶ ନେଇ ସେ ତାଙ୍କ ପରିଚିତ ବନ୍ଧୁ (ଆନନ୍ଦପୁର ଅଫିସର୍'ସର୍ଭେୟର'ଙ୍କୁ ଯେଉଁ ବୈଚିତ୍ର୍ୟପୂର୍ଣ୍ଣ ପତ୍ର ଲେଖିଥିଲେ ତାହା ବାସ୍ତବିକ ଏକ କାଳଜୟୀ ସନନ୍ଦ । ଏହି ପତ୍ରରେ ଲେଖାଥିଲା,

"ଭୋଳାନାଥ କ୍ଷମାଣେ‌ଆ ଜାଣିବୁ—

'ମହାରାଣୀ ପୁତ୍ରଙ୍କ ସକାଶେ ନିତାନ୍ତ ଦରକାର—ଅତଏବ ଶହେ ହେଲେ ପାନ, ଦୁଇ ଶହ ଗୁଆ ପଠାଇବୁ । ଉତ୍ତରପଛ ମାହାରାକର ଅଖୁବାଡ଼ିକୁ ପାଣି ବୁହାଇବୁ, ନୋହିଲେ ଅଖୁବାଡ଼ି ବିନାଶ ହୋଇଯିବ ବୋଲି ଜାଣିବୁ ।

ଇତି

ଫକୀରମୋହନ ସେନାପତି

ପରେ ଏହାର ବିହିତ ଅର୍ଥ କରାଯାଇ ପ୍ରତିକାର କରାଯାଇଥିଲା ଓ ଫକୀରମୋହନ ରକ୍ଷା ପାଇଥିଲେ । କେଉଁଝରର ପ୍ରଜାମେଳି ଆନ୍ଦୋଳନର ବିଳୟ ଘଟିଥିଲା । (୧୫)

---

(୧୫) ପରଲୋକଗତ ପଣ୍ଡିତ ମୃତ୍ୟୁଞ୍ଜୟ ରଥ 'ଉତ୍କଳ ସାହିତ୍ୟ'ର ୨୨ଶ ଭାଗ ୫ମ ସଂଖ୍ୟାରେ ମେଳିର ଯେଉଁ କାରଣ ଦର୍ଶାଇଛନ୍ତି, ତାହା ନିମ୍ନରେ ପ୍ରଦତ୍ତ ହେଲା— "ଏ ବିଦ୍ରୋହର ପ୍ରଧାନ କାରଣ ଏହି ଯେ, କେଉଁଝରର ଭୂତପୂର୍ବ ମହାରାଜା ଧନୁର୍ଜୟ ନାରାୟଣ ଭଞ୍ଜଦେବ ବଡ଼ ପ୍ରଜାପୀଡ଼କ ଥିଲେ । ତାଙ୍କର ଅତ୍ୟାଗ୍ରହରେ ପ୍ରଜାମାନେ ବିଶେଷତଃ ଭୂୟାଁମାନେ ଅତ୍ୟନ୍ତ ଉତ୍ତେଜିତ ହୋଇ ମେଳି ବାନ୍ଧି-ଥିଲେ । ଧରଣୀଧର ନାୟକ ନାମକ ଜଣେ ଭୂୟାଁ ଯୁବକ ଏହି ବିଦ୍ରୋହର ଦଳପତି ହୋଇଥିଲା । ବିଦ୍ରୋହର ସୂତ୍ରପାତ ଏହିରୂପେ ହୋଇଥିଲା । ଧରଣୀଧର ରାଜଦତ୍ତ ବୃତ୍ତିରେ କଟକ ସର୍ଭେ ସ୍କୁଲରେ ଶିକ୍ଷାକରି, ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଉତ୍ତାରେ ବିନା ବେତନରେ କେଉଁଝରରେ ସର୍ଭେୟାର୍ କାର୍ଯ୍ୟ କରୁଥିଲେ । ଏହି ସମୟରେ କେଉଁଝର ଓ ସିଂହଭୂମିର ସୀମାବିବାଦ ଉପସ୍ଥିତ ହୁଅନ୍ତେ କେଉଁଝର ମହାରାଜାଙ୍କ ପକ୍ଷରୁ ଉକ୍ତ ଧରଣୀଧର ବିବାଦସ୍ଥଳୀକୁ ପ୍ରେରିତ ହୋଇଥିଲା । ସେଠାକୁ ଯାଇ ସେ ଶୁଣିଲା ଯେ, ବିନା ଦୋଷରେ ତାହାର ଭାଇ ଏବଂ କେତେଜଣ ଭୂୟାଁ ମହାରାଜାଙ୍କ ଆଦେଶରେ କାରାରୁଦ୍ଧ ହୋଇଛନ୍ତି ଏବଂ ସେ ମଧ୍ୟ ଫେରିଲେ ଏହି ଦୁର୍ଦ୍ଦଶା ଭୋଗ କରିବ । ଧରଣୀଧର ଏହା ଶୁଣିଲାକ୍ଷଣି ରାଜକାର୍ଯ୍ୟ ଛାଡ଼ି

ଫକୀରମୋହନ ଅତି ଦକ୍ଷତାର ସହିତ ପ୍ରଜାମେଳି ଆନ୍ଦୋଳନର ସମ୍ମୁଖୀନ ହୋଇ ତା'ର ଏକ କୌଶଳପୂର୍ଣ୍ଣ ସମାଧାନ କରି ନିଜର ପ୍ରଶାସନିକ ଦକ୍ଷତାର ଯେଉଁ ନମୁନା ଦେଇଯାଇଛନ୍ତି, ତାହା ଅନ୍ୟ କୌଣସି ବ୍ୟକ୍ତିପକ୍ଷେ ବିଶେଷତଃ ଜଣେ ସଫଳ ସାହିତ୍ୟ ସ୍ରଷ୍ଟାପକ୍ଷେ ଏକାନ୍ତ ଆୟାସ ସାପେକ୍ଷ । ଫକୀରମୋହନ ୧୮୯୨ ମସିହାରେ କେନ୍ଦୁଝରର ମ୍ୟାନେଜରର ପଦତ୍ୟାଗ କରିଥିଲେ । ଏହାର କାରଣ ହେଲା ତାଙ୍କର ରାଜାଙ୍କ ସହ କେତେକ ଘଟଣାରେ ମତାନ୍ତର ଘଟିଲା ।

ଫକୀରମୋହନ କେନ୍ଦୁଝରର ଆନନ୍ଦପୁର ଲୋକମାନଙ୍କ ନିକଟରେ ଏକାନ୍ତ ପ୍ରିୟଭାଜନ ହୋଇପାରିଥିଲେ । ତାଙ୍କର ବିଦାୟକାଳୀନ ଘଟଣା ସଂପର୍କରେ ସେ ଲେଖିଛନ୍ତି—" ଆନନ୍ଦପୁର ବିଭାଗରେ ସର୍ବଶ୍ରେଣୀ ଲୋକେ ମୋତେ ଅତ୍ୟନ୍ତ ସ୍ନେହ କରୁଥିଲେ । ମହାରାଜାଙ୍କ ଭୟରେ ମୋତେ ମେଲାଣି ଦେବା ସକାଶେ ମୋ ନିକଟକୁ ଆସିପାରିଲେ ନାହିଁ । ମାତ୍ର ଦୂରବର୍ତ୍ତୀ ଗ୍ରାମମାନଙ୍କରୁ ଦଳକୁ ଦଳ ରାସ୍ତା ଧାର ବଣ ମଧ୍ୟରେ ସେହି ଅନ୍ଧକାର ନିଶୀଥ ସମୟରେ ମୋ ଅପେକ୍ଷାରେ ଲୁଚି ବସିଥିଲେ । ମୋ ହାତୀ ଉପସ୍ଥିତ ମାତ୍ରେ ବଣ ଦୁଇ ପାଖରୁ ଲୋକମାନେ ବଣରୁ ବାହାରି ମୋତେ ନମସ୍କାର କଲେ; କିଛିମାତ୍ର କଥା କହିଲେ ନାହିଁ, ଦୀର୍ଘଶ୍ୱାସ ପକାଇ ଏକ ଦୃଷ୍ଟିରେ ମୋତେ ଅନାଇ ରହିଥାନ୍ତି । X X X ସେମାନଙ୍କ ସ୍ନେହ ଓ ସହାନୁଭୂତି ଜୀବନର ଶେଷ

---

ତାହାର ଶାଳକ ନରେନ୍ଦ୍ର ମହାପାତ୍ର ଗୃହରେ ଆଶ୍ରୟ ନେଲେ ଏବଂ ଅତ୍ୟାଚାର ନିବାରଣ ଉପାୟବିଧାନ ନିମିତ୍ତ ଭୂୟାଁମାନଙ୍କୁ ମତାଇ ଭେଟା ସଂଗ୍ରହ କଲା । ୧୮୯୧ ମସିହାର ଜାନୁଆରୀ ମାସରେ ସେମାନେ କମିଶନର୍ ସାହେବଙ୍କ ନିକଟକୁ ଏକ ବିବରଣ ପତ୍ର ଏବଂ ତାହାର ଗୋଟିଏ ପ୍ରତିଲିପି ମୟୂରଭଞ୍ଜ ମ୍ୟାନେଜରଙ୍କ ନିକଟକୁ ପ୍ରେରଣ କରିଥିଲେ । କିନ୍ତୁ ସେଥିରେ କିଛି ଫଳ ନହେବାର ଦେଖି, ଅତ୍ୟାଚାର ନିବାରଣ ନିମିତ୍ତ ଧରଣୀଧର ଭୂୟାଁମାନଙ୍କ 'ନାୟକ' ପଦରେ ଅଭିଷିକ୍ତ ହୋଇ ଗୁପ୍ତଭାବରେ ଗ୍ରାମଆଡ଼କୁ ସମ୍ବାଦ ପଠାଇଲା । ଅଳ୍ପକାଳ ମଧ୍ୟରେ ପାଞ୍ଚଶତ ଭୂୟାଁ ତା' ନିକଟରେ ଭୁକ୍ତ ହୋଇଥିଲେ ଏବଂ ଅନେକ ଗ୍ରାମରୁ ବହୁଲୋକ ସ୍ୱାକ୍ଷରିତ ଅତ୍ୟାଚାର କାହାଣୀ ତା' ନିକଟରେ ଉପସ୍ଥିତ ହୋଇଥିଲା । ଧରଣୀଧର ନିଜ ଦଳବଳ ସେନା ସେମାନଙ୍କ ଆହାରାଦି ବ୍ୟୟ ନିର୍ବାହ ନିମିତ୍ତ ମହାରାଜାଙ୍କ ମୋହରାଦି ଲୁଣ୍ଠନ କରାଇଥିଲା । ଯୁଦ୍ଧ ଲାଗି ତିନିଗୋଟି ତୋପ ଓ ଅନ୍ୟ କେତେକ ଅସ୍ତ୍ରଶସ୍ତ୍ର ସଂଗୃହୀତ ହୋଇଥିଲା । ମହାରାଜା ଏସବୁ ଦେଖି, ରାଜ୍ୟ ଛାଡ଼ି କଟକ ପଳାଇ ଆସିଲେ ।"

[ ଉତ୍କଳ ସାହିତ୍ୟ—୨୨ଶ ଭାଗ—ପଞ୍ଚମ ସଂଖ୍ୟା ]

ମୁହୂର୍ତ୍ତି ପର୍ଯ୍ୟନ୍ତ ଭୁଲିପାରିବ ନାହିଁ ।'' (୧୬)

କେନ୍ଦୁଝରରୁ ବିଦାୟ ନେଇ ଆସିବା ପରେ ଫକୀରମୋହନଙ୍କ ପରିବାର ଧନ-ଭାଗରେ ବିଭକ୍ତ ହୋଇଯାଇଥିଲା । ଆତ୍ମଜୀବନ ଚରିତରେ ସେ ଲେଖିଛନ୍ତି—' ମୁଁ ଆନନ୍ଦପୁର ଥିବା ସମୟରେ ମୋର ଦେଡ଼ଭାପୁଅ ଭାଇ ନିତ୍ୟାନନ୍ଦ ସେନାପତି ସ୍ତ୍ରୀକ ତୀର୍ଥାଟନକୁ ଯାଇ ଅଯୋଧ୍ୟା ସ୍ୱର୍ଗ ଦ୍ୱାରରେ ଶରୀର ରକ୍ଷାକଲେ । ତାଙ୍କର ବିଧବା ସ୍ତ୍ରୀ ଘରକୁ ଫେରି ଆସିଲେ । ଏକ ଅନ୍ନରେ ନରହି ପୃଥକ୍ ଭାବରେ ରହିବା ତାଙ୍କର ବଡ଼ ଇଚ୍ଛା । ଆମ୍ଭମାନଙ୍କର ଏକାନ୍ନବର୍ତ୍ତୀଯୁକ୍ତ ପରିବାର ବର୍ତ୍ତମାନ ତିନୋଟି ସ୍ୱତନ୍ତ୍ର ପରିବାରରେ ବିଭକ୍ତ ହେଲା । ମୋର ଦେଡ଼ୁଭା ପୁଅ ଭାଇ ରାଧାମୋହନ ସେନ ପତି ଏବଂ ଭ୍ରାତୃଷ୍ପୁତ୍ର ଲାଲମୋହନ ସେନାପତି ମୋ'ଠାରୁ ସ୍ୱତନ୍ତ୍ର ହୋଇଗଲେ । ଆମ୍ଭମାନଙ୍କର ସଂପତ୍ତି ମଧ୍ୟ ଭାଗ ହୋଇଗଲା । ଆମ୍ଭମାନଙ୍କ ବାସଗୃହ ତିନି ସମାନ ଭାଗରେ ବିଭକ୍ତ ହେଲା ।'' (୧୭)

୧୮୯୨ରେ କେନ୍ଦୁଝରର ଦେଓ୍ୱାନୀ ପରିତ୍ୟାଗ କରି ଦୀର୍ଘ ଦୁଇବର୍ଷ ଫକୀର-ମୋହନ ନାନା ଅଭାବ ଅସୁବିଧାରେ ଚଳିବା ପରେ ୧୮୯୪ ମସିହାରେ ଡୋମପଡ଼ାରେ ରାଜାସାହେବଙ୍କ ଅନୁରୋଧକ୍ରମେ ସେ ପୁଣି ଦ୍ୱିତୀୟଥର ପାଇଁ ଡୋମପଡ଼ାର ଦେଓ୍ୱାନ ଭାବରେ ଯୋଗଦେଲେ । ସେତେବେଳେ ତାଙ୍କର ମାସିକ ବେତନ ହେଲା ଟ ୧୨୦-୦୦ । ଡୋମପଡ଼ାରେ ଦେଓ୍ୱାନୀ କରୁଥିଲା ବେଳେ ଫକୀରମୋହନଙ୍କ ଜୀବନରେ ଏକ ଚରମ ଦୁର୍ବିପାକ ଉପସ୍ଥିତ ହେଲା । ଆତ୍ମଜୀବନ ଚରିତରେ ସେ ଲେଖିଛନ୍ତି—''ଜ୍ୟୋତିଷ ଗଣନା କରି କହିଲେ ଯେ, ମୋ ସହଧର୍ମିଣୀ କୃଷ୍ଣାକୁମାରୀ ଦେବୀଙ୍କ କୋଷ୍ଠୀରେ ନିଧନାଧିପତି ବଳବତ୍ତର ଭାବରେ କେନ୍ଦ୍ରୀଭୂତ ହୋଇଥିବାରୁ ତାଙ୍କର ପରମାୟୁ ୩୪ ବର୍ଷ । ପ୍ରକୃତରେ ତାଙ୍କର ୩୦ ବର୍ଷ ଆରମ୍ଭରେ ଅଜୀର୍ଣ୍ଣ ରୋଗ ଆରମ୍ଭ ହେଲା । କୌଣସି ଉପଚାରରେ ଉପଶମ ହେଲା ନାହିଁ । ଯେତେ ଲଘୁ ଆହାର କଲେ ମଧ୍ୟ ପରିପାକ ହୁଏ ନାହିଁ । ଶେଷରେ ସେ ଶଯ୍ୟାଗତ ହେଲେ । ୧୮୯୪ ମସିହା ଭାଦ୍ର ଶୁକ୍ଳ ଦଶମୀ ଅପରାହ୍ନ ୩ଘଣ୍ଟା ସମୟରେ ସମସ୍ତ ଶେଷ ହୋଇଗଲା ।'' (୧୮) କୃଷ୍ଣା-କୁମାରୀଙ୍କ ମୃତ୍ୟୁରେ ଫକୀରମୋହନଙ୍କ ପରି ଧୈର୍ଯ୍ୟଶୀଳ ବ୍ୟକ୍ତି ଯେପରି ବିଚଳିତ ହୋଇ-ଛନ୍ତି । ତାଙ୍କ ଜୀବନର ଏତେ ଦୁଃଖଦ ସମୟରେ କୌଣସିଥିରେ ସେ ଏପରି ବିଚଳିତ ହେବାର ଦେଖାଯାଇ ନାହିଁ । (୧୯)

---

(୧୬) ଫକୀରମୋହନ ଆତ୍ମଚରିତ-ପୃଷ୍ଠା, ୧୨୧ ।

(୧୭) ଆତ୍ମଜୀବନ ଚରିତ, ପୃଷ୍ଠା-୧୨୨ ।

(୧୮) ତତ୍ରୈବ ପୃଷ୍ଠା-୧୨୫ ।

(୧୯) ''ମୋହର ଶୈଶବାବସ୍ଥାରେ ମାତାପିତା ଖସିଯାଇଥିଲେ । ମୋ ଜୀବନ ଧାରିଣୀ, ରକ୍ଷାକାରିଣୀ ଠାକୁରମା' ମଧ୍ୟ ମୋତେ ପରିତ୍ୟାଗକରି ଚାଲିଯାଇଥିଲେ । ଜୀବନବନ୍ଧୁ

କୃଷ୍ଣାକୁମାରୀଙ୍କ ବିୟୋଗରେ ଫକୀରମୋହନ ସ୍ୱର୍ଗିପତ୍ନୀଲେ ସତ୍ୟ; କିନ୍ତୁ ତାଙ୍କର ପ୍ରଥମ ପୁତ୍ରର ମୃତ୍ୟୁରେ ଯେଉଁ ପ୍ରତିଭା ଅନୁବାଦ ମାଧ୍ୟମରେ ପ୍ରକାଶିତ ହୋଇଥିଲା ତାହା କୃଷ୍ଣାକୁମାରୀଙ୍କ ମୃତ୍ୟୁରେ ମୌଳିକ ରୂପ ନେଇ ପ୍ରକାଶ ଲାଭକଲା । ସେ ତାଙ୍କ ସ୍ତ୍ରୀଙ୍କ ବିୟୋଗରେ କବିତାମାନ ଲେଖିବାକୁ ଆରମ୍ଭ କଲେ । ତାଙ୍କର ସ୍ୱପ୍ନାରେ ମୁଁ ଯେ କବିତାକୁ ଲେଖିବା ଶିଖିଛୁ, ସେଥିରେ ଅନ୍ୟତମ କାରଣ ମୋ' ସ୍ତ୍ରୀ । ସେ ମୋ କବିତା ଶୁଣିବାକୁ ବଡ଼ ଭଲ ପାଉଥିଲେ । ପ୍ରଥମେ ତାଙ୍କର ମନୋରଞ୍ଜନ ସକାଶେ ମୁଁ କବିତା ଲେଖୁଥିଲି । ତାଙ୍କର ମୃତ୍ୟୁପରେ ମୋ ମନର ବ୍ୟାକୁଳତା ନିବାରଣ ନିମନ୍ତେ ମୁଁ କବିତା ଲେଖେଁ । ମୋର ଅଧିକାଂଶ କବିତା ଦାରୁଣ ପୀଡ଼ା, ବିପଦ ଓ ମନର ଅସ୍ଥିରତା ସମୟରେ ଲେଖା ।" (୨୦)

ଫକୀରମୋହନଙ୍କ ଦ୍ୱିତୀୟ ପତ୍ନୀ କୃଷ୍ଣାକୁମାରୀଙ୍କ ମୃତ୍ୟୁ ବେଳକୁ ତାଙ୍କ ପୁତ୍ର ମୋହନୀମୋହନଙ୍କ ବୟସ ମାତ୍ର ୧୩ ବର୍ଷ ଓ କନ୍ୟାଟିର ବୟସ ମାତ୍ର ଏଗାର ବର୍ଷ । ମାତୃଶୂନ୍ୟ ହେବାପରେ ଫକୀରମୋହନ କଟକରେ ରଖି ଏମାନଙ୍କୁ ପଢ଼ାଇବାର ଇଚ୍ଛା ପୋଷଣ କରିଥିଲେ ଓ ତାଙ୍କର ପରମ ବନ୍ଧୁ ତଥା ସାହିତ୍ୟିକ ମଧୁସୂଦନ ରାଓ ତାଙ୍କୁ ଏହି ସୁଯୋଗ ଦେଇଥିଲେ । ତାଙ୍କର ଘରେ ଫକୀରମୋହନଙ୍କ ସନ୍ତାନ, ସନ୍ତତି ଦ୍ୱୟ କିଛୁକାଳ ରହି ଅଧ୍ୟୟନ କରିଥିଲେ ।

ଫକୀରମୋହନ ୧୮୯୬ ମସିହାରେ ଡୋମପଡ଼ାରୁ ଦ୍ୱିତୀୟ ଥର ପାଇଁ ଦେଓ୍ୱାନୀ ଛାଡ଼ି କଟକରେ ଅବସ୍ଥାନ କଲେ । କଟକର ବାଙ୍କାବାଜାର ଠାରେ ସେ ଜାଗା କିଣି ଘର ନିର୍ମାଣ କଲେ ଓ ସେଠାରେ ୧୯୦୫ ମସିହା ପର୍ଯ୍ୟନ୍ତ ଅବସ୍ଥାନ କରୁଥିଲେ । ଏହି କଟକରେ ରହିଣି ସମୟରେ ସେ ପୁଣି ଆର୍ଥିକ ସମସ୍ୟାର ସମ୍ମୁଖୀନ ହୋଇ କାଠ ବ୍ୟବସାୟ

---

ମାନଙ୍କର ମୋ ପ୍ରତି କିଛିମାତ୍ର ସହାନୁଭୂତି ନଥିଲା । ମୋର ଦ୍ୱିତୀୟ ବିବାହ ସମୟରେ ମୋର ବୟସ ଊନତ୍ରିଂଶ ଏବଂ କୃଷ୍ଣାକୁମାରୀଙ୍କ ବୟସ ମାତ୍ର ବାରବର୍ଷ । ସେହି ଅଳ୍ପ ବୟସରୁ ସେ ମନପ୍ରାଣ ଦେଇ ମୋର ମଙ୍ଗଳ କାମନା ଏବଂ ମଙ୍ଗଳ ସାଧନା କରିଆସୁଥିଲେ । ତାଙ୍କର ପୁଣ୍ୟ ସ୍ମୃତି ମୁଁ ଅଦ୍ୟାବଧି ହୃଦୟରେ ପୋଷଣ କରି ରଖିଅଛି । ମୋର ସ୍ତ୍ରୀ ବିୟୋଗ ଆଜକୁ ପ୍ରାୟ ଚବିଶ ବର୍ଷ ଗତ ହୋଇଅଛି । ବର୍ତ୍ତମାନ ମୁଁ ଦେଖୁଛି ମୋର ହୃଦୟ ଶୂନ୍ୟମୟ । ମୋ ମନ ବେଦନା ଜଣାଇବାକୁ ଆଉ କେହି ନାହାନ୍ତି । ମୋ ହୃଦୟରେ କେବେ ଦାରୁଣ କଷ୍ଟ ଜାତହେଲେ ଉଦ୍ୟାନସ୍ଥ ତାଙ୍କ ସମାଧି ନିକଟରେ ବସି ମୁଁ ସାନ୍ତ୍ୱନା ଲାଭକରେ ।"

(୨୦) ଫକୀରମୋହନ ସେନାପତି—ଆତ୍ମଜୀବନ ଚରିତ, ପୃଷ୍ଠା-୧୨୫ ।

ଆରମ୍ଭ କରିଥିଲେ । ୧୮୯୯ ମସିହା ପରେ ଫକୀରମୋହନ ଆଉ କୌଣସି ଚାକିରି କରିନଥିବା କଥା ତାଙ୍କ ଆତ୍ମଚରିତରେ ଉଲ୍ଲେଖ କରିଅଛନ୍ତି । ସେ କେନ୍ଦ୍ରାପଡ଼ାରେ ୧୮୯୯ ମସିହାରେ ଯେଉଁ ନଅମାସ କାର୍ଯ୍ୟ କରିଥିଲେ, ତାହା ପ୍ରକୃତରେ ତାଙ୍କର ଚାକିରି ନଥିଲା କହିଲେ ଚଳେ । ଫକୀରମୋହନ କେନ୍ଦ୍ରାପଡ଼ାରୁ ଆସିଲାବେଳକୁ ତାଙ୍କର ବୟସ ୫୭ ବର୍ଷ । ଏହି ସମୟରୁ ସେ ପ୍ରାୟ ୭ ବର୍ଷ ଧରି କଟକର ବାଖରାବାଦ' ସ୍ଥିତ ତାଙ୍କ ନବ-ନିର୍ମିତ ବାସଭବନରେ କାଳାତିପାତ କରିଥିଲେ । ଏହିଠାରେ ସେ ତାଙ୍କ ଶେଷ ଜୀବନର ଅନେକଗୁଡ଼ିଏ କବିତା ଲେଖିଥିଲେ , ଏହି କବିତାଗୁଡ଼ିକୁ ସଂଗ୍ରହ କରି ପରେ 'ଅବସର ବାସରେ' ନାମଦେଇ ସେ ତାହା ପୁସ୍ତକାକାରରେ ପ୍ରକାଶ କରାଇଥିଲେ ।

ଫକୀରମୋହନଙ୍କ ସାହିତ୍ୟିକ ଜୀବନର ଆଦ୍ୟସ୍ଫୋରଣ ଘଟିଥିଲା ବାଲେଶ୍ୱର ମିଶନ୍ ସ୍କୁଲରେ ସେ ଶିକ୍ଷକତା କରୁଥିବା ସମୟରୁ । ସେଠାରୁ ପ୍ରକାଶିତ 'ବୋଧଦାୟିନୀ' ପତ୍ରିକାରେ ସେ 'ଲଛମନିଆ' ନାମକ ଏକ ଗଳ୍ପ ଲେଖିଥିଲେ । କିନ୍ତୁ ତାହା ଏବେ ଦୁଷ୍ପ୍ରାପ୍ୟ । ଏହାପରେ ଫକୀରମୋହନଙ୍କୁ ଜଣେ ଅନୁବାଦକ ଓ ପରେ ପରେ ଜଣେ କବି ଭାବରେ ଲକ୍ଷ୍ୟ କରାଯାଏ । ମାତ୍ର ଜୀବନର ଅନ୍ତିମ କାଳରେ ତାଙ୍କର ସାହିତ୍ୟିକ ଦୃଷ୍ଟିକୋଣ ଭିନ୍ନ ମୋଡ଼ନେଲା । ୧୮୯୭ରେ ଡୋମପଡ଼ା ଦେଓ୍ୱାନୀ ଛାଡ଼ିବା ପରେଠାରୁ ସେ ଜୀବନର ଅନ୍ତିମକାଳ ପର୍ଯ୍ୟନ୍ତ ନିଜକୁ ଗଳ୍ପ ଓ ଉପନ୍ୟାସ ରଚନାରେ ଏକାନ୍ତ ଭାବରେ ନିୟୋଜିତ କରିଦେଇଥିଲେ । ଏହିସବୁ ସୃଷ୍ଟି ସମ୍ପଦ ରଚନା କାଳରେ ଅତି-ବାର୍ଦ୍ଧକ୍ୟ ଓ ଚିନ୍ତା ହେତୁ ଫକୀରମୋହନଙ୍କୁ ନାନା କଷ୍ଟମାନ ଭୋଗିବାକୁ ପଡ଼ିଥିଲା । ତଥାପି ସେହି ସଂଗ୍ରାମମୟ ଦିବସରେ ସେ ଯେଉଁ ସାଧନା କଲେ ତାହାର ଫଳ ସ୍ୱରୂପ ଏ ଜାତି ଓ ଏ ଜାତିର ସାହିତ୍ୟ ପାଇଲା ୨୦ଟି ଗଳ୍ପ ଓ ଚାରିଖଣ୍ଡି ଉପନ୍ୟାସ ।

ଫକୀରମୋହନ ତାଙ୍କ କଟକ ବାସ କାଳରେ ଉପନ୍ୟାସ ରଚନାରେ ବ୍ରତୀ ହୋଇଛନ୍ତି । ଏହି ସମୟରେ ସେ ଧାରାବାହିକ ଭାବେ ବିଶ୍ୱନାଥ କରଙ୍କ ସମ୍ପାଦିତ 'ଉତ୍କଳସାହିତ୍ୟ'ରେ ମଧ୍ୟ ଲେଖାମାନ ପ୍ରକାଶିତ କରିଥିଲେ । 'ଆତ୍ମଜୀବନ ଚରିତ' ରେ ସେ ଲେଖିଛନ୍ତି—"କଟକ ବାସ ସମୟରେ ମୋର ଉପନ୍ୟାସ ଲେଖା ଆରମ୍ଭ ହୁଏ । ମୁଁ ପ୍ରଥମେ ରେବତୀ ନାମକ ଗୋଟିଏ ଗଳ୍ପ ଲେଖିଲି । 'ଉତ୍କଳ ସାହିତ୍ୟ'ରେ ପ୍ରକାଶ କରିବା ପାଇଁ ତାହା ସଂପାଦକଙ୍କୁ ଦେଲି । ମୁଁ ଏହି ସମୟରେ ଯେଉଁ ଗଳ୍ପ ଓ ଉପନ୍ୟାସ ମାନ ଲେଖୁଥିଲି, ତାହା ମୋହର ନାମରେ ପ୍ରକାଶିତ ନକରି 'ଧୂର୍ଜ୍ଜଟୀ' ଛଦ୍ମନାମରେ ପ୍ରକାଶ କରୁଥିଲି । ଏ ନାମଟି ବାଛିଥିଲେ ମୋର ପ୍ରିୟବନ୍ଧୁ ମଧୁସୂଦନ ରାଓ । ତତ୍ପରେ 'ଛମାଣ ଆଠଗୁଣ୍ଠ' ନାମରେ ଗୋଟିଏ ଗଳ୍ପ ଆରମ୍ଭ କଲି । ତାହା କ୍ରମଶଃ ବଢ଼ି ବଢ଼ି ଗୋଟିଏ ଉପନ୍ୟାସରେ ପରିଣତ ହେଲା । ଏହାପରେ 'ଅପୂର୍ବ ମିଳନ' ନାମରେ

ଗୋଟିଏ ଉପନ୍ୟାସ ଲେଖିବାକୁ ଆରମ୍ଭ କରେ ଏବଂ ଏହି ନାମରେ ତାହା 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇଥିଲା । ସ୍ୱତନ୍ତ୍ର ପୁସ୍ତକାକାରରେ ଯେତେବେଳେ ଛପାହେଲା, ତାହାର ନାମଦେଲି 'ଲଛମା' । ମୋର ଏହି ଗଳ୍ପ ଓ ଉପନ୍ୟାସ ମାନ ପଢ଼ି ପାଠକମାନେ ବିଶେଷ ପ୍ରୀତ ହୋଇଥିଲେ । 'ଛମାଣ ଆଠଗୁଣ୍ଠ'କୁ ସେମାନେ ବିଶେଷ ଆଗ୍ରହର ସହ ପଢ଼ୁଥିଲେ । ଏହି ଉପନ୍ୟାସ ଲିଖିତ ରାମଚନ୍ଦ୍ର ମଙ୍ଗରାଜର ବିବରଣ ଯେତେବେଳେ 'ଉତ୍କଳସାହିତ୍ୟ'ରେ ପ୍ରକାଶିତ ହେଉଥିଲା, ଯେତେବେଳେ ମଫସଲରୁ କେତେକ ଅଜ୍ଞ ଲୋକ ମକଦ୍ଦମା ବିଚାର ଦେଖିବା ପାଇଁ କଟକ ଆସିଥିଲେ ।'' (୨୧)

ଫକୀରମୋହନ ୧୯୦୫ ମସିହା ପର୍ଯ୍ୟନ୍ତ କଟକରେ ଅବସ୍ଥାନ କରିଥିଲେ ଏବଂ ଏତେବେଳକୁ ସେ 'ଅବସର ବାସରେ', 'ପୁଷ୍ପମାଳା ଏବଂ 'ଉପହାର' ନାମକ ତିନୋଟି କବିତା ଗ୍ରନ୍ଥ ଏବଂ ଉପନିଷଦର ପଦ୍ୟାନୁବାଦ ସହିତ ରେବତୀ ଗଳ୍ପ, 'ଛମାଣ ଆଠଗୁଣ୍ଠ', 'ଲଛମା' ଆଦି ଉପନ୍ୟାସ ମାନ ରଚନା କରିସାରିଥିଲେ । ୧୯୦୫ ମସିହାରେ ତାଙ୍କ ପୁତ୍ର ମୋହିନୀ ମୋହନ ବାଲେଶ୍ୱରରେ ସବ୍ ଡେପୁଟୀ ଭାବେ ନିଯୁକ୍ତ ପାଇବାରୁ ଫକୀରମୋହନ ମଧ୍ୟ ତାଙ୍କ ସହିତ କଟକ ଛାଡ଼ି ବାଲେଶ୍ୱର ଚାଲିଯାଇଥିଲେ । ବାଲେଶ୍ୱରରେ ଫକୀରମୋହନ ୧୯୦୫ ମସିହାରୁ ଜୀବନର ଅନ୍ତିମ ସମୟ ପର୍ଯ୍ୟନ୍ତ ଅର୍ଥାତ୍ ୧୯୧୮ ମସିହା ପର୍ଯ୍ୟନ୍ତ ଅବସ୍ଥାନ କରିଥିଲେ ।

ଫକୀରମୋହନଙ୍କ ଅନ୍ତିମକାଳର ଦୀର୍ଘ ତେରବର୍ଷ ଅସହାୟ ତଥା ନିସଙ୍ଗତାର ଦାବାନଳରେ ଜଳିଉଠିଥିଲା । ବୃଦ୍ଧ ଫକୀରମୋହନ ଶରୀର ମନସ୍ତାପ ସହ ଏହି ସମୟରେ ଏକାନ୍ତ ଏକଲା ହୋଇ ନାନା ରୋଗ ଯନ୍ତ୍ରଣାରେ ଜର୍ଜରିତ ହୋଇଉଠିଥିଲେ । ଏହା ସତ୍ତ୍ୱେ ବି ସେ ଓଡ଼ିଶାର ବାଣୀଭଣ୍ଡାରକୁ 'ମାମୁଁ', 'ପ୍ରାୟଶ୍ଚିତ୍ତ,' ଉପନ୍ୟାସ ଓ ବୌଦ୍ଧାବତାର' ପରି ମହାନ୍ କଳାକୃତିକୁ ଦାନକରିଯାଇ ନିଜର ଅଦମ୍ୟ ତଥା ଅଦମନୀୟ ସାହସ ଓ ପ୍ରତିଭାର ପରିଚୟ ଦେଇଯାଇଅଛନ୍ତି । ସ୍ୱୀୟଜୀବଦଶାର ଅନ୍ତିମକାଳର ଅସହାୟତାକୁ ସେ ଅତି ବିଦ୍ରୂପ ତଥା ଅନୁଶୋଚନାରେ 'ଆତ୍ମଜୀବନ ଚରିତ'ରେ ବ୍ୟକ୍ତ କରିଯାଇଛନ୍ତି । ଏହା ପାଠକଲେ ଯେକୌଣସି ବ୍ୟକ୍ତିର ମନ ଓ ହୃଦୟ ଯେ ଏ ଦେଶର ସାହିତ୍ୟ ସେନାପତି ଫକୀରମୋହନଙ୍କ ପ୍ରତିଭା ଆଗରେ ଅତି ଦୟନୀୟ ହୋଇଉଠେ, ଏକଥା ଅସ୍ୱୀକାର କରିହେବ ନାହିଁ । ପାଠକ ବିସ୍ମିତ ବୃଦ୍ଧ ଫକୀରମୋହନଙ୍କ ଅବସ୍ଥା ପାଇଁ ନିଜକୁ ଦୋଷୀ ବୋଲି ମନେକରେ । କାରଣ ଏ ଜାତିର ଗୌରବ, ଏ ସାହିତ୍ୟର ରଥୀ ଫକୀରମୋହନଙ୍କ ଜୀବଦଶାର ଅନ୍ତିମକାଳ ଯେ, ଏପରି

---

(୨୧) ଫକୀରମୋହନ—ଆତ୍ମଜୀବନ ଚରିତ, ପୃଷ୍ଠା—୧୩୮ ।

ନପରୀ ହୋଇଉଠିଥିବ । ଏହା ହୁଏତ ତା'ର କଳ୍ପନାକୁ କେବେ ସ୍ପର୍ଶ କରିନଥିଲା । ମାତ୍ର ସେ ଏହାକୁ କଳ୍ପନା ମନେକରିପାରନ୍ତା, କିନ୍ତୁ ଫକୀରମୋହନ ନିଜ ଜୀବନର କାହାଣୀକୁ ଯେପରି ନିର୍ମମ ସତ୍ୟରେ ପ୍ରକାଶ କରିଅଛନ୍ତି, ତାକୁ ଏଡ଼ାଇ ଦେବାର ସାହସ ବା କାହିଁ କେଉଁ ପାଠକର ଅଛି ? ୭୪ ବର୍ଷ ବୟସ୍କ ବୃଦ୍ଧ ଫକୀରମୋହନ ଅତି କାରୁଣ୍ୟର ସହ ପ୍ରକାଶ କରିଛନ୍ତି ଯେ,—" ମୁଁ ୧୯୦୫ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱର ଆସିଲି । ଆଜିକି ୧୩ ବର୍ଷ ହେଲା ଏହିଠାରେ ବାସ କରୁଅଛି । ମୋହର ସ୍ତ୍ରୀ କୃଷ୍ଣାକୁମାରୀ ଅନେକ ବର୍ଷ ପୂର୍ବରୁ ମୋତେ ଛାଡ଼ି ଚାଲିଯାଇଛନ୍ତି । ମୋହର ପୁତ୍ର ସରକାରୀ କାର୍ଯ୍ୟୋପଲକ୍ଷ୍ୟେ ସ୍ଥାନାନ୍ତରରେ ଥାଏ । ମୋହର ପୁତ୍ର ବଧୂ ମୋହର ବାଲେଶ୍ୱର ନିବାସର ଅଧିକାଂଶ କାଳ ବିଦେଶରେ ଅଛି । ଜ୍ଞାତିବନ୍ଧୁ ମାନଙ୍କଠାରୁ ବିଚ୍ଛିନ୍ନ ହୋଇ ମୁଁ ଏହି ୧୩ ବର୍ଷକାଳ ପ୍ରାୟ ଏକାକୀ ରହିଅଛି । ଚିରଦିନ ଏକାକୀ ରହିବା ମୋ ଭାଗ୍ୟଲିପିରେ ଲେଖାଅଛି । ବାଲ୍ୟକାଳରେ ପିତୃମାତୃହୀନ ଥିଲି, ଯୌବନରେ ପତ୍ନୀରହିତ ହୋଇ ଦୂର ଦେଶରେ ରହିଲି । ଏବେ ବାର୍ଦ୍ଧକ୍ୟରେ ପୁଭା ସନ୍ତାନଠାରୁ ବିଚ୍ଛିନ୍ନ ହୋଇ ନିର୍ଜନ ବାସ କରୁଅଛି । ଏକାକୀ ଥିବାରୁ ଚିନ୍ତାକରିବାକୁ ଯଥେଷ୍ଟ ସମୟ ପାଏ । ମୁଁ ଚିରଦିନ ରୋଗୀ ଥିବାରୁ କର୍ମପଟୁ ନୁହେଁ; ମାତ୍ର ବ୍ୟାଧି, ବିପଦ ସମୟରେ ମୋହର ଲେଖା ଠିକଏ ଭଲହୁଏ । ମୋହର ଉଦ୍ୟାନ ମଧ୍ୟସ୍ଥ କୃଷ୍ଣାକୁମାରୀ ସମାଧି ମନ୍ଦିର ଏବଂ ଗୃହ ନିକଟସ୍ଥ 'ଶାନ୍ତିକାନନ' ନାମକ ଉଦ୍ୟାନ ମୋତେ ଏହି ଦୀର୍ଘ ନିର୍ଜନ ବାସ କାଳରେ ଶାନ୍ତିଦାନ କରିଅଛନ୍ତି । ଏହି ଶାନ୍ତି ଏବଂ ନିର୍ଜନତାର କୋଡ଼ରେ ବସି ମୁଁ ମୋର ଜୀବନର ଶେଷ ଗ୍ରନ୍ଥମାଳା ରଚନା କରିଅଛି । 'ମାମୁଁ', 'ପ୍ରାୟଶ୍ଚିତ୍ତ' ବୌଦ୍ଧାବତାର କାବ୍ୟ' ଏବଂ ମୋହର ଏହି ଆତ୍ମ-ଜୀବନ ଚରିତ" ଏହିଠାରେ ରଚିତ ହୋଇଅଛି ।" (୨୨)

ଫକୀରମୋହନ ଅନ୍ତିମ କାଳରେ ମୋହିନୀ ମୋହନଙ୍କର ତାଙ୍କ ନିକଟରେ ଅନୁପସ୍ଥିତିକୁ ଗଭୀର ଅଭିମାନରେ, ତଥା କ୍ଷୋଭର ସହକାରେ ପ୍ରକାଶ କରିଅଛନ୍ତି । ମୋହିନୀ ମୋହନଙ୍କ ସହ ତାଙ୍କର ଏକଦା ମତାନ୍ତର ମଧ୍ୟ ଘଟିଥିଲା । ତେଣୁ ବାପପୁଅ ମଧ୍ୟରେ ଏହି ଭୁଲ୍ ବୁଝାମଣା ଫକୀରମୋହନଙ୍କୁ ଅନ୍ତିମ କାଳରେ ଏକାନ୍ତ ବ୍ୟଥିତ ତଥା ଅସହାୟ କରିପକାଇଥିଲା । ସେ ମୋହିନୀମୋହନଙ୍କର ବ୍ୟବହାରରେ ସନ୍ତୁଷ୍ଟ ନଥିଲେ ବି ଅନ୍ତିମକାଳରେ ଯେ ତାଙ୍କର ସହାନୁଭୂତି ପାଇଁ ବ୍ୟାକୁଳ ହୋଇଉଠିଥିଲେ, ଏକଥା ତାଙ୍କ 'ଆତ୍ମଜୀବନ ଚରିତ'ରୁ ଅନୁଭୂତ ହୁଏ । ଉତ୍କଳମଣି ଗୋପବନ୍ଧୁ ଦାସ ୧୯୧୫ ମସିହାରେ ଫକୀରମୋହନଙ୍କ ଘରେ ଦୁଇଦିନ କଲିକତା ଫେରନ୍ତା ବାଟରେ ଅବସ୍ଥାନ କରିଥିଲେ । ସେ ଫକୀରମୋହନଙ୍କ ଅସହାୟତା, ବ୍ୟାକୁଳତାକୁ ହୃଦୟଙ୍ଗମ କରିପାରି ତାଙ୍କୁ କହିଥିଲେ—"ମୁଁ ଦୁଇଦିନ ଏଠାରେ ରହି ଆପଣଙ୍କ ଅବସ୍ଥା ବୁଝିଲି ।

(୨୨) ଫକୀରମୋହନ—ଆତ୍ମଜୀବନ ଚରିତ, ପୃଷ୍ଠା-୧୩୯

ଆପଣ ନିତାନ୍ତ ଦୁର୍ବଳ, ନିଃସହାୟ ଓ ଏକାକୀ ହୋଇପଡ଼ିଛନ୍ତି । ଶିକ୍ଷକମାନଙ୍କ ସେବା ବର୍ତ୍ତମାନ ଆପଣଙ୍କ ପକ୍ଷରେ ଯଥେଷ୍ଟ ନୁହେଁ । ଆପଣଙ୍କ ସେବା ଓ ସାହାଯ୍ୟ ସକାଶେ ଆତ୍ମୀୟସ୍ୱଜନଙ୍କର ପାଖରେ ଥିବା ନିତାନ୍ତ ଆବଶ୍ୟକ ।" (୨୩) କିନ୍ତୁ ଶେଷ ପର୍ଯ୍ୟନ୍ତ ତାଙ୍କର ଆତ୍ମଜ ମୋହିନୀ ମୋହନ ତାଙ୍କୁ ଯେପରି ଅସହାୟ ଭାବରେ 'ଶାନ୍ତିକାନନ'ରେ ଛାଡ଼ିଦେଇଥିଲେ ସେହି ଚିନ୍ତା ଓ ରୁଗ୍ଣ ସ୍ୱାସ୍ଥ୍ୟରେ ଜର୍ଜରିତ ହୋଇ ୧୯୧୮ ମସିହା ଜୁନ୍ ୧୪ ତାରିଖ ରଜ ସଂକ୍ରାନ୍ତି ଦିନ ଓଡ଼ିଆ ଭାଷା-ସାହିତ୍ୟର ସେନାପତି ବ୍ୟାସକବି ଫକୀରମୋହନ ଜୀବନସାରା ସଂଗ୍ରାମ କରି କରି ମହାନିଦ୍ରାରେ ଶୋଇପଡ଼ିଲେ ।

ଜୀବନର ପରିପକ୍ୱ ଅନୁଭୂତି ନେଇ, ନାନାଦି ଘଟଣାକୁ ସେ ସୁନ୍ଦର ଭାବରେ ସାହିତ୍ୟରେ ରୂପ ଦେଇଥିଲେ । ସେ ଓଡ଼ିଆ ସାହିତ୍ୟକୁ ନିଜର ନାନା ଦୁର୍ଯୋଗ, ଦୁର୍ବିପାକ ସତ୍ତ୍ୱେ ଯେଉଁ ମହାର୍ଘ ମଣିରତ୍ନ ଗଳ୍ପ, ଉପନ୍ୟାସମାନ ଦାନ କରିଯାଇଛନ୍ତି, ତାହା ଚିରଦିନ ଭାସ୍ୱର ରହିବ ।

ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣଙ୍କ ଜୀବନର ଜ୍ୱଳନ ଓ ତତ୍ଜନିତ ପ୍ରତିଭାର ସ୍ଫୁରଣ ପରି ଆମ ସାହିତ୍ୟରେ ଫକୀରମୋହନଙ୍କ ଜୀବନ ତଥା ପ୍ରତିଭା ନାନା ସଂଘର୍ଷପୂର୍ଣ୍ଣ ଏବଂ ବୈଚିତ୍ର୍ୟମୟ କାଳରେ ଉଦ୍‌ଭାସିତ ହୋଇଉଠିଥିଲା । ଏହି ପରିପ୍ରେକ୍ଷୀରେ ଉଭୟ ଔପନ୍ୟାସିକଙ୍କ ଜନ୍ମଜାତକ ବିଚାରଠାରୁ କର୍ମମୟ ଜୀବନର ଘାତପ୍ରତିଘାତ ଏବଂ ଅନ୍ତିମ ସମୟର ଅବସ୍ଥାକୁ ତୁଳନାତ୍ମକ ଭାବେ ବିଚାର କରାଯାଇପାରେ ।

**ତୁଳନାତ୍ମକ ବିଚାର** :

ହଥର୍ଣ୍ଣ ଓ ଫକୀରମୋହନ ଗୋଟିଏ ଦେଶର ସାହିତ୍ୟିକ ନୁହନ୍ତି ସତ୍ୟ; କିନ୍ତୁ ସମକାଳୀନ ସାହିତ୍ୟିକ । ଉଭୟ ଔପନ୍ୟାସିକ ସେମାନଙ୍କ ମାତୃଭୂମି ତଥା ମାତୃଭାଷାର ସନ୍ଧିସନ୍ଧି ମୁହୂର୍ତ୍ତରେ ଜନ୍ମଗ୍ରହଣ କରି ଯେପରି ନାନା ସଂଘର୍ଷରେ ନିଜକୁ ତଥା ନିଜର ସାହିତ୍ୟିକ ପ୍ରତିଭାକୁ ବିକଶିତ କରାଇ ପାରିଥିଲେ, ସେହିପରି ନାନା ଘାତ ପ୍ରତିଘାତ ମଧ୍ୟଦେଇ ସେମାନେ ଆପଣା ଆପଣାର ମାତୃଭୂମି ତଥା ମାତୃଭାଷାକୁ ନିଜ ପ୍ରତିଭା ବଳରେ ନାନା ସଂକଟର ସମ୍ମୁଖୀନ ହୋଇ ବି ସମୃଦ୍ଧି କରିପାରିଥିଲେ । କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟର କଥା ଏହି ଉଭୟ ଔପନ୍ୟାସିକ ହଥର୍ଣ୍ଣ ଓ ଫକୀରମୋହନଙ୍କ ଜୀବନର ବିକାଶ ତଥା କର୍ମମୟ ଜୀବନର ଅନୁ ପ୍ରବେଶରେ ନାନାଭାବେ ସାମ୍ୟ ପରିଲକ୍ଷିତ ହୁଏ । ନିମ୍ନଭାବେ ସେ ସବୁ ଆମର ଆଲୋଚ୍ୟ :—

(୧) ହଥର୍ଣ୍ଣ ଓ ଫକୀରମୋହନ ଉଭୟ ଜନ୍ମଗ୍ରହଣ କରିଥିଲେ ଏକ ଏକ ସମ୍ଭ୍ରାନ୍ତ ପରିବାରରେ । ହଥର୍ଣ୍ଣଙ୍କ ପରିବାର ଏକଦା ସାଲେମ୍ ସହରର ଏକ ବିଭବଶାଳୀ ପରିବାର

(୨୩) ଫକୀରମୋହନ—ଆତ୍ମ-ଜୀବନ ଚରିତ, ପୃଷ୍ଠା-୧୪୬

ଭାବେ ବିବେଚିତ ହୋଇଥିଲା । କିନ୍ତୁ ତାଙ୍କ ପିତାଙ୍କର ଅକାଳ ବିୟୋଗରେ ଏହି ପରିବାରର ସମସ୍ତ ପ୍ରତିପତ୍ତି, ବିଭବ ତଥା ସମ୍ମାନ ଅତି ଅସ୍ୱାଭାବିକ ଭାବେ ଧୂଳିସାତ୍ ହୋଇଯାଇଥିଲା । ହଥର୍ଣ୍ଣଙ୍କ ପରି ଫକୀରମୋହନଙ୍କ ପରିବାର ମଧ୍ୟ ଥିଲା ଏକ ସମ୍ଭ୍ରାନ୍ତ ପରିବାର । ଫକୀରମୋହନଙ୍କ ପୂର୍ବପୁରୁଷ ହନୁମଲ୍ଲ ଜଣେ ଖଣ୍ଡାୟତ ପାଇକ ତଥା ନାୟକ ଥିଲେ । ତାଙ୍କ ଜେଜେ ବାପା କୃଷ୍ଣମଲ୍ଲ ମଧ୍ୟ ମୁର୍ଶିଦାବାଦ୍ ନବାବଙ୍କ ଅଧୀନରେ ଜମାଦାର କାର୍ଯ୍ୟ କରୁଥିଲେ । 'ମଲ୍ଲ' ପରିବାର ସେତେବେଳେ ଏକ ବିଭବଶାଳୀ ତଥା ପ୍ରତିପତ୍ତିଶାଳୀ ପରିବାର ଥିଲା । ମାତ୍ର କୃଷ୍ଣମଲ୍ଲଙ୍କ ମୃତ୍ୟୁପରେ ଏବଂ ଠାକୁରମା'ଙ୍କ ଅମାୟିକ ସରଳ ତଥା ନିଷ୍କପଟ ବ୍ୟବହାରରେ ସେମାନଙ୍କ ଜମିଦାରୀ ତଥା ପାରିବାରିକ ଜୀବନ ଧ୍ୱସ୍ତବିଧ୍ୱସ୍ତ ହୋଇ-ଯାଇଥିଲା । ଅତଏବ ହଥର୍ଣ୍ଣ ଓ ଫକୀରମୋହନ ଔପନ୍ୟାସିକ ଦ୍ୱୟ ଏକ ଅଭାବଗ୍ରସ୍ତ, ବିପର୍ଯ୍ୟସ୍ତ ପରିବାରରେ ଜନ୍ମଗ୍ରହଣ କରି ପରବର୍ତ୍ତୀ ଜୀବନ ପାଇଁ ନାନାଭାବେ ନାନା ସମସ୍ୟାର ସମ୍ମୁଖୀନ ହୋଇଥିଲେ । ତେଣୁ ଉଭୟ ଔପନ୍ୟାସିକଙ୍କ ପାରିବାରିକ ସମସ୍ୟାରେ ଯେଉଁ ସାମ୍ୟ ପରିଲକ୍ଷିତ ହୋଇଛି, ତାହା ବୋଧେ ଏତେ ମାତ୍ରାରେ ଅନ୍ୟ କୌଣସି ଔପନ୍ୟାସିକଙ୍କ ଜୀବନରେ ଘଟିଥିବାର ଆମ ଦୃଷ୍ଟିକୁ ଆସେ ନାହିଁ । ପୁଣି ନିଜ ପାରି-ବାରିକ ଜୀବନର ଏହି ଅକାଳ ଅବକ୍ଷୟତାକୁ ଉଭୟ ଔପନ୍ୟାସିକ ଗଭୀର ମନସ୍ତାପର ସହ ଗ୍ରହଣକରି ସ୍ୱ ସ୍ୱ ଉପନ୍ୟାସରେ ତାହା ବର୍ଣ୍ଣନା କରିଛନ୍ତି । ହଥର୍ଣ୍ଣଙ୍କ 'The house of the Seven Gables' ଉପନ୍ୟାସରେ ଥିବା ଅଭିଶପ୍ତ "ପିନ୍‌ଚନ୍ ପରିବାର" ଓ ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ ଥିବା 'ବାଘସିଂହ ପରିବାର'ର ଅବ-କ୍ଷୟ ଚିତ୍ର ଭିତରେ ହିଁ ଉଭୟ ଔପନ୍ୟାସିକଙ୍କ ସ୍ୱ ବଂଶର ବିଳୟକାଳୀନ ଚିତ୍ର ଉଦ୍-ଭାସିତ ହୋଇଉଠିଛି । ତେଣୁ ବାଲ୍ୟକାଳରେ ଏକ ବିପର୍ଯ୍ୟସ୍ତ ପାରିବାରିକ ଜୀବନ ନେଇ ଏହି ଉଭୟ ଔପନ୍ୟାସିକଙ୍କ ପରବର୍ତ୍ତୀ ମନସ୍ତାତ୍ତ୍ୱିକ ଚିତ୍ର ଯେ ଅଦ୍ଭୁତ ଭାବେ ସାମ୍ୟ ଦର୍ଶାଇଛି, ଏହା ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ହୋଇଯାଇଛି ।

(୨) ହଥର୍ଣ୍ଣ ଆମେରିକାର ଏକ ବନ୍ଦର ସହରରେ ଜନ୍ମଗ୍ରହଣ କରିଥିଲେ । ସେହି ସହରର ନାମ ଥିଲା ସାଲେମ୍ । ସାଲେମ୍ ଏକ ବନ୍ଦର ସହରଭାବେ ସେତେବେଳେ ସାରା ବିଶ୍ୱରେ ଖ୍ୟାତି ଅର୍ଜନ କରିଥିଲା । ମାତ୍ର ଯେତେବେଳେ ହଥର୍ଣ୍ଣ ନ'ବର୍ଷର ପିତୃ-ହୀନ ଅବୋଧ ବାଳକ, ସେତେବେଳେ ଏହି ବନ୍ଦର ସହର ଆମେରିକାର ଗୃହଯୁଦ୍ଧ ଏବଂ ଏକ ଭୟଙ୍କର ଘୂର୍ଣ୍ଣିବାତ୍ୟାର ସମ୍ମୁଖୀନ ହୋଇ ନିଜର ସମସ୍ତ ବିଭବ ହରାଇବସିଲା । ଠିକ୍ ହଥର୍ଣ୍ଣଙ୍କ ପରି ଫକୀରମୋହନ ଓଡ଼ିଶାର ଏକ ବନ୍ଦର ସହର ବାଲେଶ୍ୱର ଠାରେ ଜନ୍ମଗ୍ରହଣ କରିଥିଲେ । ଏହି ବାଲେଶ୍ୱର ବନ୍ଦର ଏକଦା ବିଭବଶାଳୀ ଓ ବେଶ୍ ଖ୍ୟାତି-ସମ୍ପନ୍ନ ଥିଲା । ଏଠାରେ ନ'ବର୍ଷ ବୟସରେ ଫକୀରମୋହନ ଅଗ୍ଧାଲ୍ ସିଲ୍‌ଇ ଓ ନିମକ ମାହାଲ କାର୍ଯ୍ୟ କରୁଥିଲେ । କିନ୍ତୁ ଏହି ଅଗ୍ଧାଲ ସିଲାଇ ଓ ନିମକ ମାହାଲ କ୍ରମଶଃ ବନ୍ଦ

ହୋଇଯିବାରୁ ବାଲେଶ୍ୱର ବନ୍ଦରର ଅବସ୍ଥା ମଧ୍ୟ ଶୋଚନୀୟ ହୋଇପଡ଼ିଲା । ତେଣୁ ଉଭୟ ଔପନ୍ୟାସିକ ଜନ୍ମସ୍ଥାନ ଦୃଷ୍ଟିରୁ ଏକ ଏକ ବନ୍ଦର ସହରରେ ଜନ୍ମଗ୍ରହଣ କରିଥିଲେ ଏବଂ ସେମାନଙ୍କ ଜୀବନର ମାତ୍ର ନ'ବର୍ଷ ବୟସରେ ଏହି ଉଭୟ ବନ୍ଦର ସହର ଅବସ୍ଥା ଶୋଚନୀୟ ହୋଇଉଠିଥିଲା । ତେଣୁ ଜନ୍ମସ୍ଥାନ ଦୃଷ୍ଟିରୁ ଏହି ଉଭୟ ଔପନ୍ୟାସିକଙ୍କ ଜୀବନରେ ଯେଉଁ ସାମ୍ୟ ପରିଲକ୍ଷିତ ହୁଏ, ତାହା ଅନନ୍ୟ ।

(୩) ହୃଥର୍ଣ୍ଣଙ୍କୁ ଯେତେବେଳେ ମାତ୍ର ଚାରିବର୍ଷ, ସେତେବେଳେ ତାଙ୍କର କ୍ୟାପ୍‌ଟେନ୍ ପିତା ଜାହାଜ ଦୂରରେ ଏକ ବନ୍ଦର ନିକଟରେ ପୀଡ଼ିତ ହୋଇ ପ୍ରାଣ ହରାଇଥିଲେ । ମାତା ତାଙ୍କର ଅସୀମ ଧୈର୍ଯ୍ୟର ସହ ପରିସ୍ଥିତିକୁ ମୁକାବିଲା କରିବା ପାଇଁ ତାଙ୍କର ଅନ୍ୟାନ୍ୟ ସନ୍ତାନ ସନ୍ତତିମାନଙ୍କୁ ଧରି ହୃଥର୍ଣ୍ଣଙ୍କ ମାମୁଁ ଘର (ନିଜର ବାପଘର)କୁ ଚାଲି-ଯାଇଥିଲେ । ହୃଥର୍ଣ୍ଣଙ୍କ ପିତାଙ୍କ ପରି ଫକୀର ମୋହନଙ୍କ ପିତା ମଧ୍ୟ ଅଳ୍ପ ସମୟରେ ମୃତ୍ୟୁ ବରଣ କରିଥିଲେ । ସେ ପୁରୀଧାମକୁ ରଥଯାତ୍ରା ଦେଖିବାକୁ ଯାଇ ଫେରିବା ବାଟରେ ଝାଡ଼ାବାନ୍ତି ରୋଗରେ ଆକ୍ରାନ୍ତ ହୋଇ ଭୁବନେଶ୍ୱର ସ୍ଥିତ 'ବିନ୍ଦୁସାଗର ପୁଷ୍କରିଣୀ' ନିକଟରେ ପ୍ରାଣ ହରାଇଲେ । ଏହାର ଠିକ୍ ଚଉଦମାସ ପରେ ଏହି ରୋଗରେ ଫକୀର ମୋହନଙ୍କ ଜନନୀ ମଧ୍ୟ ପ୍ରାଣତ୍ୟାଗ କଲେ । ଅତଏବ ଏତେବେଳେ ଫକୀର ମୋହନ ପିତୃମାତୃହୀନ ହୋଇ ମାତାମହୀ କୁଚିଲା ଦେବୀଙ୍କ ଯତ୍ନରେ ଲାଳିତ ପାଳିତ ହୋଇ-ଥିଲେ । ଉଭୟ ଔପନ୍ୟାସିକଙ୍କ ପିତୃବିୟୋଗ ଏକ ଏକ ଜଳାଶୟ ନିକଟରେ ଏବଂ ଅକାଳରେ ଯେ ଘଟିଥିଲା ତାହା ଏଥିରୁ ଜଣାଯାଏ । ଉଭୟ ସ୍ୱ-ପରିବାରର ଉପାର୍ଜନକ୍ଷମ ସ୍ନେହଶୀଳ ପିତାଙ୍କୁ ହରାଇ ପରବର୍ତ୍ତୀ ଜୀବନରେ ନାନା ଦୁଃଖ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଥିଲେ, ତେଣୁ ପିତାଙ୍କ ମୃତ୍ୟୁରେ ଉଭୟ ଔପନ୍ୟାସିକଙ୍କ ଜୀବନରେ ଯେ ସାମ୍ୟ ଅଛି, ଏହା ଅସ୍ୱୀକାର କରାଯାଇ ନପାରେ ।

(୪) ଉଭୟ ଔପନ୍ୟାସିକ ହୃଥର୍ଣ୍ଣ ଓ ଫକୀରମୋହନ ସେମାନଙ୍କ ପିତୃବିୟୋଗ ପରେ ଯଥାକ୍ରମେ ଜନନୀ ଓ ଠାକୁର ମା'ଙ୍କ ବହୁ କଷ୍ଟଜନିତ ଯତ୍ନରେ ମଣିଷ ହୋଇ-ଥିଲେ । ଅବଶ୍ୟ ହୃଥର୍ଣ୍ଣଙ୍କୁ ଏ କ୍ଷେତ୍ରରେ ତାଙ୍କ ମାମୁଁଘର ସାହାଯ୍ୟ କରିଥିଲାବେଳେ ଫକୀରମୋହନଙ୍କୁ କେହି ସାହାଯ୍ୟ କରିବାକୁ ଆଗେଇ ଆସିନଥିଲେ । ଇତ୍ୟବସରରେ ଉଭୟ ଔପନ୍ୟାସିକ ମନସ୍ତାତ୍ତ୍ୱିକ ଚିନ୍ତା ମଧ୍ୟ ବେଶ୍ ରହସ୍ୟଧର୍ମୀ । ହୃଥର୍ଣ୍ଣ ନିଜ ମାମୁଁ ଘରେ ଥାଇଁ ବି ବେଶ୍ ଗମ୍ଭୀର ସ୍ୱଭାବର ଓ ନିରୋଳା ଜୀବନଯାପନ କରିଥିଲେ । ଫକୀର ମୋହନଙ୍କ ଜୀବନରେ ତାହାହିଁ ଘଟିଥିଲା । ଏକ ପକ୍ଷରେ ଠାକୁର ମା'ଙ୍କ ବହୁକଷ୍ଟ ସ୍ୱୀକାର ଜନିତ ଯତ୍ନ ଓ ଅପର ପକ୍ଷରେ ବଡ଼ବାପାଙ୍କର କୁଟୀଳ ଗ୍ରସ୍ତ ଭ୍ରୂଭଙ୍ଗୀ ଫକୀରମୋହନଙ୍କ ବାଲ୍ୟମାନସପଟରେ ଏକ ଦୁଃଖଦ ରେଖା ଅଙ୍କିତ କରିଦେଇଥିଲା । ତେଣୁ ପିତୃହୀନ ହୋଇ ଉଭୟ ଔପନ୍ୟାସିକ ବାଲ୍ୟଜୀବନରେ ଓ ପରବର୍ତ୍ତୀ ସମୟରେ ଘଟଣାର

ଭିନ୍ନତା ହେତୁ ନାନା ଭାବେ ହରିବ୍ରଣ ହରକତ ହୋଇଥିଲେ ସତ୍ୟ; କିନ୍ତୁ 'ବେଦ ଜନେ ପଢ଼ନ୍ତି ଏକାଦଶୀ' ସେ ଉଭୟଙ୍କ ଗ୍ରାସ କରିଥିଲା ଏକଥା ଅସ୍ୱୀକାର କରିହେବ ନାହିଁ । ଏ କ୍ଷେତ୍ରରେ ମଧ୍ୟ ଉଭୟ ଔପନ୍ୟାସିକଙ୍କ ଜୀବନରେ ଆଶ୍ଚର୍ଯ୍ୟଜନକ ସାମ୍ୟ ପରିଲକ୍ଷିତ ହୋଇଛି ।

(୫) ପୁଣି ଶିକ୍ଷା କ୍ଷେତ୍ରରେ ଉଭୟ ଔପନ୍ୟାସିକଙ୍କ କଥା ଏହି ପ୍ରସଙ୍ଗରେ ଆମର ବିଚାର୍ଯ୍ୟ । ହରିଶ୍ଚନ୍ଦ୍ର ଉଚ୍ଚଶିକ୍ଷିତ ଥିଲେ । କିନ୍ତୁ ଏହି ଶିକ୍ଷାଲାଭ ପାଇଁ ସେ ଯେଉଁ ଏକନିଷ୍ଠତା ତଥା ଆର୍ଥିକ ସଙ୍କଟ ଓ ନାନା ଅସୁବିଧାର ସମ୍ମୁଖୀନ ହୋଇଥିଲେ ତାହା ଅବର୍ଣ୍ଣନୀୟ । ଫକୀରମୋହନ ତାଙ୍କ ଶିକ୍ଷା କ୍ଷେତ୍ରରେ ଏହିପରି ମଧ୍ୟ ଅନେକ ଅସୁବିଧାର ସମ୍ମୁଖୀନ ହୋଇଥିଲେ । ବିଶେଷକରି ସ୍କୁଲ ଦରମା ଦେଇ ନପାରିବାରୁ 'ବାରବାଟୀ' ସ୍କୁଲରୁ ତାଙ୍କର ଶିକ୍ଷା ସମାପ୍ତି ଘଟିଥିଲା । ସେ ହରିଶ୍ଚନ୍ଦ୍ରଙ୍କ ପରି ଉଚ୍ଚଶିକ୍ଷିତ ହୋଇପାରି ନଥିଲେ କିମ୍ବା ଉଚ୍ଚଶିକ୍ଷାଗତ ପ୍ରମାଣପତ୍ର ହାସଲ କରିପାରିନଥିଲେ ସତ୍ୟ; କିନ୍ତୁ ସେ ସ୍ୱ ଅଧ୍ୟବସାୟ ବଳରେ ପାର୍ଶି, ବଙ୍ଗଳା, ଇଂରାଜୀ, ସଂସ୍କୃତ ବ୍ୟାକରଣ, ଅଭିଧାନ, ଆଦିରେ ଅସାଧାରଣ ପାଣ୍ଡିତ୍ୟ ପ୍ରଦର୍ଶନ କରିପାରିଥିଲେ । ପ୍ରମାଣପତ୍ର (Certificate)କୁ ବାଦ୍ ଦେଲେ ହରିଶ୍ଚନ୍ଦ୍ରଙ୍କ ବୁଦ୍ଧି, ଜ୍ଞାନ ଓ ଶିକ୍ଷାଜନିତ ଅଧ୍ୟବସାୟ ସହ ଫକୀରମୋହନଙ୍କୁ ତୁଳନା କରାଯାଇପାରେ । ହରିଶ୍ଚନ୍ଦ୍ର ଉଚ୍ଚଶିକ୍ଷିତ ହୋଇ କର୍ମମୟ ଜୀବନରେ ଏହାର ସଦୁପଯୋଗ କରିପାରିନଥିଲେ; କିନ୍ତୁ ଫକୀରମୋହନ ସ୍ୱଳ୍ପଶିକ୍ଷାରେ ଇଂରେଜ ସରକାରଙ୍କ ପରି ଚତୁର ଶୋଷକଙ୍କୁ ମଧ୍ୟ ଭୁଆଁ ବୁଲାଇ ଦେଇପାରିଥିଲେ । କିନ୍ତୁ ଶିକ୍ଷା କ୍ଷେତ୍ରରେ ଉଭୟ ଔପନ୍ୟାସିକଙ୍କ ଜୀବନରେ ଯେଉଁ ଯେଉଁ ଅସୁବିଧା ଦେଖାଦେଇଥିଲା, ତାହା ଯେ ସେମାନଙ୍କ କର୍ମମୟ ଜୀବନର ଭିତ୍ତିଭୂମି ଜନିତ ସମସ୍ୟାର ସାମ୍ୟ ଏକଥା ଅସ୍ୱୀକାର କରିହେବ ନାହିଁ ।

(୬) ହରିଶ୍ଚନ୍ଦ୍ର ଓ ଫକୀରମୋହନ ବାଲ୍ୟକାଳରୁ କର୍ମମୟ ଜୀବନରେ ପ୍ରବେଶ ପର୍ଯ୍ୟନ୍ତ ଏବଂ ଏମିତକି ଜୀବନର ଅନ୍ତିମଦଶା ପର୍ଯ୍ୟନ୍ତ ନାନା ଦୁଃଖ ଯନ୍ତ୍ରଣାର ଶୀକାର ହୋଇଥିଲେ, ହରିଶ୍ଚନ୍ଦ୍ର ମାମୁଁ ଘରେ ରହି ପଢ଼ିବାବେଳେ ଅତି ଅସାବଧାନ ହୋଇ ଫୁଟ୍‌ବଲ୍ ଖେଳୁ ଖେଳୁ ନିଜର ଗୋଟିଏ ଗୋଡ଼ରେ ଯେଉଁ ଆଘାତ ପାଇଥିଲେ, ସେଥିରେ ଦୀର୍ଘଦିନ ସେ ଶଯ୍ୟାଶାୟୀ ହେଲେ । ଏତେବେଳେ ତାଙ୍କର ମାନସିକ ଅବସ୍ଥା ଅବର୍ଣ୍ଣନୀୟ । ତାଙ୍କ ଜୀବନର ପରବର୍ତ୍ତୀ ସମୟରେ ସେ ଏହି ସମୟର କଥା ଭାବି ବେଶ୍ ମାନସିକ ଯନ୍ତ୍ରଣା ଅନୁଭବ କରିଥିଲେ । ହରିଶ୍ଚନ୍ଦ୍ରଙ୍କ ପରି ଫକୀରମୋହନଙ୍କ ଯନ୍ତ୍ରଣା ସାମୟିକ ନଥିଲା । ସେ ଥିଲେ ଚିରରୋଗୀ; କିନ୍ତୁ ହରିଶ୍ଚନ୍ଦ୍ରଙ୍କ ପରି ବାଲ୍ୟକାଳରେ ତାଙ୍କୁ ମଧ୍ୟ ଏକ ଦୂରାରୋଗ୍ୟ ଜ୍ୱରରେ ଆକ୍ରାନ୍ତ ହୋଇ ମାସ ପରେ ମାସ, ବର୍ଷ ପରେ ବର୍ଷ ଶଯ୍ୟାଶାୟୀ ହେବାକୁ

ହୋଇଥିଲା ଏବଂ ଠାକୁର ମା'ଙ୍କ ସେବା ଶୁଶ୍ରୂଷାରେ ସେ ଆରୋଗ୍ୟ ଲାଭ କରିଥିଲେ । ଏହି ଜ୍ୱର ତାଙ୍କ ଜୀବନର ଏକ ଅଭୁଲା ଅଧ୍ୟାୟ ଠିକ୍ ହଥର୍ଣ୍ଣଙ୍କ ଘୋଡ଼ାଭଙ୍ଗା ଘଟଣା ପରି । କେବଳ ଏତକ ନୁହେଁ ହଥର୍ଣ୍ଣ ଓ ଫକୀର ମୋହନ ଘଟଣାଚକ୍ରରେ ନାନା ଅଭାବ ସୁଅବଧାର ସମ୍ମୁଖୀନ ହୋଇଛନ୍ତି, ଯାହାକି ଅବର୍ଣ୍ଣନୀୟ । ତେଣୁ ଦୁଃଖ ଯନ୍ତ୍ରଣା ଅନୁଭବରେ ଉଭୟଙ୍କ ଜୀବନରେ ଯେ ଅଦ୍ଭୁତ ଧରଣର ସାମ୍ୟ ରହିଛି । ଏକଥା ନିଃସନ୍ଦେହରେ କୁହାଯାଇପାରେ ।

(୭) ଉଭୟ ଔପନ୍ୟାସିକଙ୍କ ଜୀବନରେ ବ୍ୟାଧି, ନିଃସଙ୍ଗତା ଓ ଦାରିଦ୍ର୍ୟ ଥିଲା ଚିରସହଚର । ହଥର୍ଣ୍ଣ ପିତୃହୀନ ହେବାପରେ ସେହି ଦୁଃଖରେ ଅଦ୍ଭୁତ ଭାବେ ଜୀବନମାତ୍ର ଭୋଗି ପଡ଼ିଥିଲେ । ତେଣୁ ସେ ଅନେକଥର ଏକୁଟିଆ ଜୀବନଯାପନ କରିବାକୁ ଭଲପାଉଥିଲେ । ଫକୀରମୋହନଙ୍କ ଜୀବନରେ ଏହି ନିଃସଙ୍ଗତା ଭିନ୍ନଭାବେ ଆସିଥିଲା । ପିଲାଦିନରୁ ସେ ଥିଲେ ନିଃସଙ୍ଗ । ମାତା' ପିତାଙ୍କ ସ୍ନେହରୁ ବଞ୍ଚିତ ହୋଇ ତାଙ୍କର ମାନସିକ ଅବସ୍ଥା' ଶୋଚନୀୟ ହୋଇପଡ଼ିଥିଲା । ପୁଣି ଠାକୁର ମା'ଙ୍କ ଯତ୍ନରେ ସେ ସାମୟିକ ଆନନ୍ଦ ପାଉଥିଲେ ସତ୍ୟ; କିନ୍ତୁ ତାଙ୍କ ଜୀବନର ୧୩ ବର୍ଷରେ ତାଙ୍କୁ ଲୀଳାବତୀଙ୍କ ସହିତ ଯେଉଁ ବିବାହ କରିବାକୁ ପଡ଼ିଥିଲା, ସେଥିରେ ସେ ବୀତସ୍ପୃହ ହୋଇପଡ଼ିଥିଲେ । ଲୀଳାବତୀଙ୍କ କର୍କଶ ସ୍ୱଭାବ, ଉଗ୍ର ମୂର୍ତ୍ତି, ରୁଦ୍ରଭାବ ତାଙ୍କୁ ଉତ୍ପୀଡ଼ିତ କରିଦେଇଥିଲା । ଲୀଳାବତୀଙ୍କ ମୃତ୍ୟୁରେ ସେ ଆଶ୍ୱସ୍ତି ଅନୁଭବ କରିଥିଲେ; କିନ୍ତୁ ଏହାପୂର୍ବରୁ ସେ ଠାକୁର ମା'ଙ୍କ ପରଲୋକରେ ଆହୁରି ନିଃସଙ୍ଗ ହୋଇପଡ଼ିଥିଲେ । ଦ୍ୱିତୀୟ ଥର ପାଇଁ ସେ ବିବାହ କଲେ କୃଷ୍ଣକୁମାରୀଙ୍କୁ । ମାତ୍ର ୪୮ ମସିହାରେ ତାଙ୍କର ବିୟୋଗ ଫକୀରମୋହନଙ୍କ ଜୀବନରେ ଯେ, ଚିର ନିଃସଙ୍ଗତାର ସୂତ୍ରପାତ କଲା ତା' ନୁହେଁ, ତାଙ୍କ ଜୀବନକୁ ଏହା ଅନ୍ତିମକାଳ ପର୍ଯ୍ୟନ୍ତ ହାହୁତାଶମୟ ମଧ୍ୟ କରିଦେଇଥିଲା । ଏହା ବ୍ୟତୀତ ପୁତ୍ର ମୋହିନୀମୋହନଙ୍କର ତାଙ୍କ ପ୍ରତି ବିରାଗ ଭାବ ଓ ଦୂରରେ ରହିବା ଘଟଣା ଫକୀରମୋହନଙ୍କ ଜୀବନକୁ ମୃତ୍ୟୁ ପର୍ଯ୍ୟନ୍ତ ନିଃସଙ୍ଗମୟ କରିଦେଇଥିଲା । ଅବଶ୍ୟ ହଥର୍ଣ୍ଣଙ୍କ ଠାରୁ ଫକୀରମୋହନଙ୍କ ନିଃସଙ୍ଗତା ଥିଲା ବେଶ୍ ଭୟଙ୍କର, ହାହୁତାଶମୟ ଓ ଯନ୍ତ୍ରଣାଦାୟକ । କିନ୍ତୁ ଉଭୟ ଔପନ୍ୟାସିକ ଯେ ନିଃସଙ୍ଗତାର ବଳୟ ଭିତରେ ଆବଦ୍ଧ ହୋଇଥିଲେ, ଏକଥା ଅସ୍ୱୀକାର କରିହେବ ନାହିଁ । ହଥର୍ଣ୍ଣ ତାଙ୍କର "The House of the Seven Gables' ଉପନ୍ୟାସରେ ତାଙ୍କ ଜୀବନର ନିଃସଙ୍ଗ ଚିତ୍ରକୁ ପ୍ରତିଫଳିତ କରିଥିବାବେଳେ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ଫକୀରମୋହନ ରାମଚନ୍ଦ୍ର ମଙ୍ଗରାଜଙ୍କ ମୃତ୍ୟୁକାଳୀନ ଦୃଶ୍ୟରେ ସ୍ୱ ନିଃସଙ୍ଗ ଭାବକୁ ହିଁ ପ୍ରତିଫଳିତ କରାଯାଇଛନ୍ତି ।

(୮) ଉଭୟ ଔପନ୍ୟାସିକଙ୍କ ଜୀବନବୃତ୍ତକୁ ପଡ଼ୋଶୀ ମାନଙ୍କର ଚକ୍ରାନ୍ତ ଦୋହଲାଇ ଦେଇଥିଲା । ହଥର୍ଣ୍ଣ ବି. ଏ ପାଶ୍ କଲାପରେ ଦୀର୍ଘ ବାରବର୍ଷ ଧରି ସାହିତ୍ୟ ସାଧନା କରିଥିଲେ । କିନ୍ତୁ ଏତେବେଳେ ଚାକିରି କରି ଅର୍ଥ ଉପାର୍ଜନ କରିବା ତାଙ୍କର ପାରିବାରିକ ଆର୍ଥିକ ଅସ୍ୱଚ୍ଛଳତା ଦୃଷ୍ଟିରୁ ଉଚିତ୍ ଥିଲା; କିନ୍ତୁ ସେ ତାହା ଅପେକ୍ଷା ସାହିତ୍ୟ ସାଧନାକୁ ଅଧିକ ମଣିଥିଲେ । ଏ କ୍ଷେତ୍ରରେ ତାଙ୍କର କେତେକ ପଡ଼ୋଶୀମାନେ ତାଙ୍କ ବିରୁଦ୍ଧରେ ଚକ୍ରାନ୍ତ କରୁଥିଲେ । ହଥର୍ଣ୍ଣ ଏ କ୍ଷେତ୍ରରେ ତାଙ୍କର ନୀରବ ସାଧନାରେ ତା'ର ମୁକାବିଲା କରି ସଫଳ ହୋଇଥିଲେ । ସେ ଯଦି ପଡ଼ୋଶୀମାନଙ୍କ ଚକ୍ରାନ୍ତରେ ପଡ଼ିଯାଇ-ଥା'ନ୍ତେ, ତେବେ ସେ କେବଳ ଜଣେ ସାଧାରଣ ବ୍ୟକ୍ତି ହୋଇ ବଞ୍ଚିଥା'ନ୍ତେ । ବରଂ ତାଙ୍କ ପରି ଜଣେ ପ୍ରତିଭାବାନ୍ ସାହିତ୍ୟିକଙ୍କୁ ହରାଇଥା'ନ୍ତା । କିନ୍ତୁ ସେ ଆପଣାର ନୀରବ ସାଧନାରେ ପଡ଼ୋଶୀମାନଙ୍କର ଚକ୍ରାନ୍ତକୁ ପଣ୍ଡ କରିଦେଇଥିଲେ । ହଥର୍ଣ୍ଣଙ୍କ ଅପେକ୍ଷା ଫକୀରମୋହନଙ୍କ ଜୀବନ ଥିଲା ଉଭୟଙ୍କର ଚକ୍ରାନ୍ତର ଯାଦୁଘର । ହଥର୍ଣ୍ଣ ସାମାନ୍ୟ କେତୋଟି ଘଟଣାରେ ଚକ୍ରାନ୍ତର ଶିକାର ହୋଇଥିଲାବେଳେ ଫକୀରମୋହନ ଜୀବନସାରା ଚକ୍ରାନ୍ତର ଶିକାର ହୋଇଥିଲେ । ବାଲ୍ୟକାଳରୁ ପିତୃମାତୃହୀନ ହୋଇ ସେ ବଡ଼ବାପା ଓ ବଡ଼ମା'ଙ୍କର କ୍ରୂର ଦୃଷ୍ଟିରେ ପ୍ରଥମେ ପଡ଼ିଲେ; ମାତ୍ର ଠାକୁରମା'ଙ୍କ ଯତ୍ନରୁ ସେଠାରୁ ସେ ବଞ୍ଚିଗଲେ; କିନ୍ତୁ ପରବର୍ତ୍ତୀ ଜୀବନସାରା ସେ ବନ୍ଧୁ, ଜ୍ଞାତି କୁଟୁମ୍ବ, ତଥା କର୍ମକ୍ଷେତ୍ରରେ ନାନା ଚକ୍ରାନ୍ତର ସମ୍ମୁଖୀନ ହୋଇଥିଲେ । ଏହା ସତ୍ତ୍ୱେ ଫକୀରମୋହନ ଥିଲେ ବେଶ୍ କୌଶଳୀ । ନିଜର ଉପସ୍ଥିତ ବୁଦ୍ଧି ଓ କୌଶଳରେ ସେ ଏହିସବୁ ଚକ୍ରାନ୍ତ ବ୍ୟୂହରୁ ଅପଣାକୁ, ଆପଣାର ଜାତି ଓ ଭାଷାକୁ, ଆପଣାର ଉପରିସ୍ଥଙ୍କୁ ନାନାଭାବେ ରକ୍ଷା କରିଛନ୍ତି । ଏହିପରି ଭାବେ ହଥର୍ଣ୍ଣ ଓ ଫକୀରମୋହନ ଔପନ୍ୟାସିକ ଦ୍ୱୟ ସ୍ୱ ସ୍ୱ ଜୀବନ ପଥରେ ନାନା ଚକ୍ରାନ୍ତର ସମ୍ମୁଖୀନ ହୋଇ ବି ଆପଣା ପ୍ରତିଷ୍ଠାର ପରାକାଷ୍ଠା ଜାହିର୍ କରିଯାଇଛନ୍ତି, ଯାହାକି ଏବେ ବି ଆମପାଇଁ ଏକ ଏକ ବିସ୍ମୟ ହୋଇପଡ଼ିଛି ।

(୯) ହଥର୍ଣ୍ଣ ବାଲ୍ୟକାଳ ଓ ଶିକ୍ଷା କ୍ଷେତ୍ରରେ ବହିଯାଇଥିବା ଝଡ଼ଝଞ୍ଜାରୁ ମୁକ୍ତ ପାଇ ଆର୍ଥିକ ଅବସ୍ଥାକୁ ସୁଧାରିବା ପାଇଁ କର୍ମମୟ ଜୀବନରେ ପ୍ରବେଶ କରିଥିଲେ । ସେ ତାଙ୍କ ବନ୍ଧୁଙ୍କ ପାଇଁ ରାଜନୀତିରେ ପ୍ରବେଶ କରିଥିଲେ ଏବଂ ତାଙ୍କର କୃପାରୁ ଖଣ୍ଡିଏ ଚାକିରି ପାଇଥିଲେ; ମାତ୍ର ଶାସନକାଳ ପୁଣି ବଦଳିଯିବା ସଙ୍ଗେ ସଙ୍ଗେ ତାଙ୍କୁ ଚାକିରିରୁ ଅନ୍ତର ହେବାକୁ ପଡ଼ିଥିଲା । ଏହାପରେ ୧୦୦୦ ଡଲାର୍ ଦେଇ ସେ Brook Firmର ଜଣେ ଅଂଶୀଦାର ହେଲେ । ଏଠାରେ କିନ୍ତୁ ସେ ନାନା ଅସୁବିଧାର ସମ୍ମୁଖୀନ ହୋଇ ତାହା ପରିତ୍ୟାଗ କଲେ । ପରେ 'old manse'କୁ ଜୀବିକା ନିର୍ବାହ ପାଇଁ ସେ ଚାଲିଯାଇଥିଲେ । ସେଠାରେ ସେ କର୍ମଯୁକ୍ତ ଥିବାବେଳେ ପାରିବାରିକ ଚାପରେ ପୁଣି ସାଲେମ୍ ଫେରି-ଥିଲେ । କୌଣସି ସ୍ଥାନରେ ସେ ଦୀର୍ଘଦିନ ଧରି ଚାକିରି କରିପାରିନଥିଲେ କି କୌଣସି

ବୃତ୍ତିରେ ସ୍ୱାଧୀନଭାବେ ଜୀବିକାର୍ଜନ କରିବାର ଧୈର୍ଯ୍ୟ ତାଙ୍କର ନଥିଲା । ତେଣୁ ଜୀବନରେ ସେ ବହୁଭାବେ ଅର୍ଥନୈତିକ ଦିଗରୁ କ୍ଷତିଗ୍ରସ୍ତ ହୋଇଥିଲେ । ଠିକ୍ ହରିଶଙ୍କ ପରି ଫକୀର-ମୋହନଙ୍କ କର୍ମମୟ ଜୀବନ ନାନାଭାବେ ବିପର୍ଯ୍ୟସ୍ତ ହୋଇପଡ଼ିଥିଲା । ପ୍ରଥମେ ଅର୍ଥାଭାବ ଯୋଗୁଁ ଓ ନିମାକ ମାହାଲ ପରିତ୍ୟାଗ କରି ସେ ପୁଣି ଅଧ୍ୟୟନ କଲେ । ମାତ୍ର ଆର୍ଥିକ ଅବସ୍ଥା ତାଙ୍କର ସ୍ୱଚ୍ଛଳ ନଥିବାରୁ ସେହି ସ୍କୁଲ ଶିକ୍ଷାରୁ ତାଙ୍କ ପଢ଼ାରେ ଡୋରି ବନ୍ଧା-ହେଲା । ସେ ସ୍ୱଳ୍ପ ବେତନରେ ବାରବାଟୀ ସ୍କୁଲ ଓ ପରେ ବାଲେଶ୍ୱର ମିଶନ ସ୍କୁଲରେ ଶିକ୍ଷକତା କଲେ । ବାଲେଶ୍ୱର ସ୍କୁଲର ଶିକ୍ଷକତା ସାଙ୍ଗକୁ ପ୍ରେସ୍ ଏବଂ ଅନ୍ୟାନ୍ୟ ନାନା କାର୍ଯ୍ୟରେ ଫକୀରମୋହନ ସାମୟିକ ବ୍ୟସ୍ତ ରହି ପରେ ପୁଣି ସେ ସବୁକୁ ଛାଡ଼ିବାକୁ ବାଧ୍ୟ ହୋଇଥିଲେ ହରିଶଙ୍କ ପରି ଫକୀରମୋହନଙ୍କ କର୍ମମୟ ଜୀବନ ଥିଲା ଇତସ୍ତତଃ ଶିକ୍ଷକତା ପରେ ସେ ନୀଳଗିରି ଡୋମପଡ଼ା, ଢେଙ୍କା-ନାଳ, ଦଶପଲ୍ଲା, ପାଲଲହଡ଼ା, କେନ୍ଦୁଝର ଆଦି ଗଡ଼ଜାତ ରାଜ୍ୟରେ ଦେଓ୍ୱାନୀ ଓ ମେନେଜରୀ କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । କିନ୍ତୁ ନାନା କାରଣରୁ ସେ ସବୁଥିରୁ ଇସ୍ତଫା ଦେଇଥିଲେ । ତାଙ୍କର ପରମ ହିତୈଷୀବନ୍ଧୁ କଲେକ୍ଟର ଜନ୍‌ବାମ୍ସ ସାହେବ ତାଙ୍କୁ ଏ ଦିଗରେ ନାନା ମତେ ସାହାଯ୍ୟ କରିଥିଲେ । କିନ୍ତୁ ଫକୀରମୋହନ ହରିଶଙ୍କ ପରି କୌଣସି କର୍ମରେ ଦୀର୍ଘଦିନ ଅବସ୍ଥାନ କରିପାରି ନଥିଲେ । ଅତଏବ ଉଭୟ ଔପ-ନ୍ୟାସିକଙ୍କ କର୍ମମୟ ଜୀବନକୁ ତୁଳନା ମୂଳକ ଭାବେ ବିଚାର କଲେ ଜଣାଯାଏ ଯେ, ଏମାନଙ୍କ କର୍ମମୟ ଜୀବନରେ ଇତସ୍ତତଃ ଭାବହିଁ ସେମାନଙ୍କୁ ଅନେକାଂଶ ସମଧର୍ମୀ କରିପାରିଛି ।

(୧୦) ପାରିବାରିକ ଝଡ଼ ଉଭୟ ଔପନ୍ୟାସିକଙ୍କ ବିପର୍ଯ୍ୟସ୍ତ ଜୀବନର ଅନ୍ୟଅଙ୍ଗ ବୋଲି କହିବାକୁ ପଡ଼ିବ । କାରଣ ପରିବାରରେ ମଣିଷ ସୁଖୀ ରହେ । କିନ୍ତୁ ଏହି ଦୁଇ ଔପନ୍ୟାସିକଙ୍କ ଜୀବନରେ ଦୁଃଖ ଅପେକ୍ଷା ସୁଖର ମାତ୍ରା ଥିଲା ବହୁତ କମ୍; ଏହାକୁ ସାମୟିକ ମଧ୍ୟ କୁହାଯାଇପାରେ । ହରିଶ୍ର ଜୀବନର ମଧ୍ୟାହ୍ନରେ (ହରିଶ୍ର ୬୦ ବର୍ଷରେ ମୃତ୍ୟୁ ବରଣ କରିଥିଲେ, ବିବାହ କରିଥିଲେ ୩୮ ବର୍ଷ ବୟସରେ) ଯୋଫିଆ ନାମ୍ନୀ ଜଣେ ସଂଭ୍ରାନ୍ତ ପରିବାରର କନ୍ୟାକୁ ବିବାହ କରିଥିଲେ । ସେମାନଙ୍କ ମଧୁମୟ ଜୀବନ ଆରମ୍ଭ ହେବାର ମାତ୍ର ଅଳ୍ପଦିନ ପରେ ତାଙ୍କର ଲାଳନପାଳନ କର୍ତ୍ତ୍ରୀ ବାଲ୍ୟକାଳରେ ରକ୍ଷା-କାରିଣୀ, ଚିରଦୁଃଖିନୀ ସ୍ନେହମୟୀ ଜନନୀଙ୍କର ପରଲୋକ ପ୍ରାପ୍ତି ହେଲା । ହରିଶ୍ର ଏହାକୁ ଧୈର୍ଯ୍ୟର ସହ ମୁକାବିଲା କଲେ ବି ଏଥିରେ ତାଙ୍କର ନାନା ଦୁଃଶ୍ଚିନ୍ତା ଦେଖାଦେଇଥିଲା । ଠିକ୍ ହରିଶଙ୍କ ପରି ଫକୀରମୋହନଙ୍କ ଜୀବନରେ ଏପରି ଦୁର୍ଯ୍ୟୋଗ ଉପସ୍ଥିତ ହୋଇ-ଥିଲା । ଫକୀରମୋହନ ଯେତେବେଳେ ବାଲେଶ୍ୱର ମିଶନ୍ ସ୍କୁଲର ଶିକ୍ଷକ । ୧୮୬୭ ମସିହାରେ ତାଙ୍କ ଠାକୁରମା'ଙ୍କ ପରଲୋକ ହୋଇଗଲା । ଫକୀରମୋହନ ତାଙ୍କୁହିଁ ସମ୍ବଳ କରି ଜୀବନର କଣ୍ଟକାକୀର୍ଣ୍ଣ ଦିନଗୁଡ଼ିକୁ ଅତିକ୍ରାନ୍ତ କରିଦେଉଥିଲେ । ଠାକୁରମା'ଙ୍କ

ମୃତ୍ୟୁ ପରେ ତାଙ୍କର ପ୍ରଥମ ସ୍ତ୍ରୀଙ୍କ ଅସୌଜନ୍ୟ ବ୍ୟବହାର, କଟୁକ୍ତି, ପ୍ରତି ମୁହୂର୍ତ୍ତରେ ତାଙ୍କୁ ବ୍ୟଥିତ କରିଦେଉଥିଲା । ମାତ୍ର ୧୮୭୧ ମସିହାରେ ତାଙ୍କ ପ୍ରଥମ ସ୍ତ୍ରୀଙ୍କ ମୃତ୍ୟୁରେ ତାଙ୍କ ପରିବାରରେ ଉଠିଥିବା ଅଶାନ୍ତ ଝଡ଼ର ଅବସାନ ହେଲା । ସେ ୧୮୭୨ ମସିହାରେ କୃଷ୍ଣା-କୁମାରୀଙ୍କୁ ବିବାହ କଲେ । ତାଙ୍କ ପ୍ରେମରେ ଫକୀରମୋହନ ଜୀବନ ପୁଣି ଉଦ୍ଭାସିତ ହୋଇଉଠିଥିଲା । କିନ୍ତୁ ୧୮୯୪ ମସିହାରେ କୃଷ୍ଣାକୁମାରୀଙ୍କ ମୃତ୍ୟୁ ଫକୀରମୋହନଙ୍କ ପରିବାରରେ ଯେଉଁ ଝଡ଼ ଆଣିଲା, ଫକୀରମୋହନ ତାଙ୍କ ଜୀବଦ୍ଦଶାରେ ଆଉ ତା'ର ସମାପ୍ତି ଦେଖିଲେ ନାହିଁ । ବୃଦ୍ଧ ଅବସ୍ଥାରେ ପୁତ୍ର ମୋହିନୀ ମୋହନଙ୍କର ତାଙ୍କ ପ୍ରତି ଅବମାନନା ଭାବ ତାଙ୍କ ପାରିବାରିକ ଜୀବନକୁ ସମ୍ପୂର୍ଣ୍ଣ ନଷ୍ଟ କରିଦେଇଥିଲା । ଅବଶ୍ୟ ହାର୍ଡି ଏ ପ୍ରକାର ଦୁର୍ଦ୍ଦମନୀୟ ପାରିବାରିକ ଝଡ଼ର ଶୀକାର ହୋଇନଥିଲେ; କିନ୍ତୁ ଅନ୍ତିମ କାଳରେ ତାଙ୍କର ପ୍ରିୟତମା ପତ୍ନୀଙ୍କ ସାହଚର୍ଯ୍ୟକୁ ମଧ୍ୟ ସେ କାହିଁକି କେଜାଣି ବିଷ ଦୃଷ୍ଟିରେ ଦେଖିଥିଲେ । ତାଙ୍କ ମନର ଏହି ଝଡ଼ ତାଙ୍କ ମୃତ୍ୟୁରେ ହିଁ ଶେଷ ହୋଇଥିଲା । ଅତଏବ ଫକୀରମୋହନ ଓ ହାର୍ଡିଙ୍କ ଜୀବନଚର୍ଯ୍ୟାର ତୁଳନାତ୍ମକ ବିଚାରରେ ଦେଖିବାକୁ ଗଲେ ଉଭୟଙ୍କ ପାରିବାରିକଜୀବନ ଝଡ଼ର କେନ୍ଦ୍ର ଏକ । ତାହା ହେଉଛି ମନର ଘୋର ଅବସାଦ, ଅଶାନ୍ତ ଓ ଅନ୍ତର୍ଦ୍ଦହନ ।

(୧୧) ହାର୍ଡି ରାଜନୀତି କ୍ଷେତ୍ରରେ କେବେ ପ୍ରତ୍ୟକ୍ଷ ଭାଗ ନେଇନଥିଲେ ବା କୌଣସି ପ୍ରଶାସନିକ ଦକ୍ଷତା ନିଜର କର୍ମମୟ ଜୀବନରେ ସେ ପ୍ରତିପାଦିତ କରିପାରି ନାହାନ୍ତି । କିନ୍ତୁ ପରୋକ୍ଷ ଭାବେ ସେ ରାଜନୀତିକ ଅବହାଓ୍ବାରେ ଜଡ଼ିତ ଥିଲେ । ନିଜର ବନ୍ଧୁ ଫ୍ରାଙ୍କ୍ଲିନ ପିଅରସଙ୍କ ପାଇଁ ସେ ରାଜନୈତିକ ପ୍ରଚାର କରିଥିଲେ । ରାଜନୀତି ପ୍ରଣୋଦିତ ଗୃକର ଖଣ୍ଡିଏ ମଧ୍ୟ ସେ ପାଇଥିଲେ । ୧୮୫୨ରୁ ୧୮୫୮ ମସିହା ପର୍ଯ୍ୟନ୍ତ ଦୀର୍ଘ ୬ବର୍ଷ ଧରି ସେ ବନ୍ଧୁ ଫ୍ରାଙ୍କ୍ଲିନ୍ଙ୍କୁ ରାଜନୀତି କ୍ଷେତ୍ରରେ ସହଯୋଗ କରିଥିଲେ, ଏପରିକି ଏହି ସମୟରେ ତାଙ୍କର ସୃଜନଶୀଳ ପ୍ରତିଭା ନୀରବ ହୋଇଯାଇଥିଲା । କିନ୍ତୁ ହାର୍ଡିଙ୍କ ସମଧର୍ମୀ ଔପନ୍ୟାସିକ ଫକୀରମୋହନ ରାଜନୀତି କ୍ଷେତ୍ରରେ ଓତଃପ୍ରୋତ ଭାବେ ଜଡ଼ିତ ଥିଲେ । ଏହାର ପ୍ରମାଣ ହିଏ ତାଙ୍କର ବିଭିନ୍ନ ଗଡ଼ଜାତ ରାଜ୍ୟରେ ଦେଓ୍ବାନଗିରି କରି-ଥିବା ଘଟଣା । ଅତଏବ ଉଭୟ ଔପନ୍ୟାସିକଙ୍କ ଜୀବନରେ ରାଜନୀତି ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବେ ଅନୁପ୍ରବେଶ କରିଥିଲା ବୋଲି କହିବାକୁ ହେବ ।

(୧୨) ହାର୍ଡିଙ୍କ ମଧ୍ୟମସ୍କ ଜୀବନ ଆରମ୍ଭ ହୋଇଥିଲା ତାଙ୍କର ୩୮ ବର୍ଷ ବୟସରୁ । ଏହି ସମୟରେ ସେ କିଛି ଉପାର୍ଜନକ୍ଷମ ହେବା ସଙ୍ଗେ ସଙ୍ଗେ ସୋଫିଆ ନାମ୍ନୀ ଜଣେ ତରୁଣୀର ପାଣି ଗ୍ରହଣ କଲେ । ଜୀବନର ଅନେକ ଦିନ ପର୍ଯ୍ୟନ୍ତ ସେ ସୋଫିଆ ପ୍ରେମରେ ନିମଜ୍ଜିତ ଥିଲେ । ଠିକ୍ ସେହିପରି ଔପନ୍ୟାସିକ ଫକୀରମୋହନ ନିଜର ଦ୍ୱିତୀୟ ପତ୍ନୀ

କୃଷ୍ଣକୁମାରୀଙ୍କୁ ପାଇ ନିଜ ଜୀବନ ଧନ୍ୟ ହେଲା ପରି ଭାବ ଅନୁଭବ କରିଥିଲେ । ଅବଶ୍ୟ ଏକଥା ସତ୍ୟ ଯେ, ଫକୀର ମୋହନଙ୍କ ଚିର ଅଶାନ୍ତିମୟ ଜୀବନରେ କୃଷ୍ଣକୁମାରୀ ଥିଲେ ଶାନ୍ତିର ବାରିଧାରା । କିନ୍ତୁ ଅନ୍ତିମ କାଳରେ ଫକୀରମୋହନ ସେହି ସୁଖରୁ ବଞ୍ଚିତ ହୋଇଥିଲେ । ହାର୍ଡିଙ୍କ ଅନ୍ତିମ କାଳରେ ମଧ୍ୟ ଫ୍ଲୋରେନ୍ସଙ୍କ ସାହଚର୍ଯ୍ୟକୁ ସହି ପାରି ନଥିଲେ । ଅତଏବ ଉଭୟ ଔପନ୍ୟାସିକ ବୈବାହିକ ଜୀବନର ମଧୁପାନ କରିଥିଲେ କିଛିକ୍ଷଣ ଧରି ଏବଂ ପରବର୍ତ୍ତୀ କାଳରେ ହାର୍ଡି ତାଙ୍କ ପତ୍ନୀ ଜୀବିତ ଥାଇ ଥାଇ ଓ ଫକୀର ମୋହନ ତାଙ୍କର ପତ୍ନୀବିୟୋଗରେ ନିଜକୁ ଏକାନ୍ତ ଅସହାୟ ମନେକରିଥିଲେ ।

(୧୩) ହାର୍ଡି ଓ ଫକୀରମୋହନ ଉଭୟ ଏକ ଅନିଶ୍ଚିତ, ଦୁଃଶ୍ଚିନ୍ତାଗ୍ରସ୍ତ ବାଲ୍ୟକାଳ ଦେଇ କର୍ମମୟ ଜୀବନରେ ଅନୁପ୍ରବେଶ କରିଥିଲେ । ତାଙ୍କର ଏହି କର୍ମମୟ ଜୀବନ ମଧ୍ୟ ଏକ ଅନିଶ୍ଚିତ ଭିତ୍ତିଭୂମି ଉପରେ ଗଢ଼ିଉଠିଥିଲା । ଏହାର ସାଙ୍ଗକୁ ସମୟେ ସମୟେ ପାରିବାରିକ ସମସ୍ୟା ସେମାନଙ୍କ ମାନସପଟକୁ ନାନାଭାବେ ଆକ୍ରାନ୍ତ କରିଥିଲା । ଏହା ସତ୍ତ୍ୱେ ଉଭୟ ଔପନ୍ୟାସିକ ତାଙ୍କ ଜୀବନର ବୌଦ୍ଧିକ ସଂଗ୍ରାମରେ ବିଜୟୀ ଥିଲେ । ହାର୍ଡି ଜୀବନରେ କର୍ମସଂସ୍ଥାନର ନାନା ଅସୁବିଧା ଭିତରେ ଥାଇ ଯେପରି ଅସୀମ ଧୈର୍ଯ୍ୟର ସହ ତାଙ୍କ ପ୍ରତିଭାର ପରିଚୟ ଦେଇଯାଇଛନ୍ତି । ଫକୀରମୋହନ ତାଙ୍କ ନିଃସଙ୍ଗ ଜୀବନ ତଥା ସଂଗ୍ରାମମୁଖର କର୍ମବ୍ୟସ୍ତତାରେ ମଧ୍ୟ ଠିକ୍ ହାର୍ଡିଙ୍କ ପରି ସ୍ୱ ପ୍ରତିଭାର ଯଥାର୍ଥବିକାଶ ଘଟାଇପାରିଛନ୍ତି । ତେଣୁ ଉଭୟ ଔପନ୍ୟାସିକ ଜୀବନର ଏକ ଜ୍ୱାଳାମୟ କୁଟିଳ ରେଖାରେ ଠିଆହୋଇ ନିଜର ଅନିଶ୍ଚିତ ଭବିଷ୍ୟତକୁ ପ୍ରତି ମୁହୂର୍ତ୍ତରେ ଯେପରି ସଂଗ୍ରାମ ତଥା ସଂଘର୍ଷ ଭାବେ ଧରିନେଇଥିଲେ ଏବଂ ଏକ ବୃଲେଟ୍ ଭାବେ ଉତ୍ତୀର୍ଣ୍ଣ କରି-ଥିଲେ ତାହା ହୁଏତ ଏତେଟା ସାମ୍ୟ ଦର୍ଶାଇ ଅନ୍ୟ କୌଣସି ଔପନ୍ୟାସିକଙ୍କ ଜୀବନରେ ଘଟିନାହିଁ ।

ହାର୍ଡିଙ୍କ ଅପେକ୍ଷା ଫକୀର ମୋହନଙ୍କ ଜୀବନ ଅବଶ୍ୟ ଅନେକସ୍ଥଳେ ଅଧିକ ଜଟିଳ ଓ ସମସ୍ୟା ଜଡ଼ିତ ଥିଲା । ଯଥା—ହାର୍ଡି ଶିକ୍ଷାକ୍ଷେତ୍ରରେ ତାଙ୍କ ଠାରୁ ଅଧିକ ଉଚ୍ଚତର ସୋପାନ ଆରୋହଣ କରିଥିଲେ । ଏଥିପାଇଁ ସେ ମାମୁଁଙ୍କଠାରୁ ମଧ୍ୟ ଅନେକ ସାହାଯ୍ୟ ପାଇଥିଲେ । ପୁଣି ଫକୀରମୋହନ ଉଭୟ ପିତା ମାତାଙ୍କୁ ହରାଇଥିବାବେଳେ ହାର୍ଡି କେବଳ ପିତାଙ୍କୁ ହରାଇଥିଲେ । ଫକୀରମୋହନ ବାରମ୍ବାର ପତ୍ନୀ ହରାଇ ଓ ଶେଷରେ ପୁତ୍ରର ଅବାଧ୍ୟ ହେବାର ଦୁଃଖରେ ଯେପରି ଭାଙ୍ଗିପଡ଼ିଥିଲେ, ତାହା ଅବଶ୍ୟ ହାର୍ଡିଙ୍କ ଜୀବନରେ ଘଟିନଥିଲା । କିନ୍ତୁ ଏହି କେତେକ ବୈଷମ୍ୟକୁ ନେଇ ଭାବେ ଅନୁଧାନ କଲେ ଜଣାଯିବ ଯେ ହାର୍ଡି ଏହାସତ୍ତ୍ୱେ କୌଣସି ଦୃଷ୍ଟିରୁ ଫକୀରମୋହନଙ୍କ ଅପେକ୍ଷା ଅଧିକ ସୁଖୀ ବା ଆନନ୍ଦମୟ ଜୀବନ ଯାପନ କରିନଥିଲେ । ତେଣୁ ଏହି ତୁଳନା-ତ୍ମକ ବିଗ୍ରହରେ ଆଲୋଚ୍ୟ ଔପନ୍ୟାସିକଦ୍ୱୟ ଆପଣା ଜୀବନଚର୍ଯ୍ୟାର ସେହି ସମଧର୍ମ

ସ୍ୱପ୍ନ ଦେଖାଇଛନ୍ତି ତାହା ବିଶ୍ୱର ଅନ୍ୟ କୌଣସି ଔପନ୍ୟାସିକଙ୍କ ଜୀବନରେ ଏପରି ସାମ୍ୟ ପ୍ରତିଷ୍ଠା କରିପାରି ନାହିଁ ।

ଓଡ଼ିଆ ସାହିତ୍ୟରେ ଫକୀରମୋହନଙ୍କୁ କେହି କେହି ଟମାସ୍ ହାର୍ଡି ଓ କେହି କେହି ପ୍ରେମଚାନ୍ଦ ଆଦି କହିଲାବେଳେ, ନାନା ସାମ୍ୟ ସତ୍ତ୍ୱେ ତାଙ୍କୁ ବରଂ ଓଡ଼ିଆ ସାହିତ୍ୟର ହଥର୍ଣ୍ଣ କୁହାଯିବା ଅଧିକ ଯୁକ୍ତିଯୁକ୍ତ । ଏହି ଉଭୟ ଔପନ୍ୟାସିକ ମାନଙ୍କର ସାମ୍ୟ ଯେ ସେମାନଙ୍କ ଜୀବନଚର୍ଯ୍ୟାରେ କେବଳ ପରିଲକ୍ଷିତ ତାହା ନୁହେଁ, ସେମାନଙ୍କ ସାହିତ୍ୟ ସୃଷ୍ଟିରେ ମଧ୍ୟ ଏହି ସାମ୍ୟ ସେମାନଙ୍କୁ ଅଧିକ ଅନ୍ତରଙ୍ଗ କରିପାରିଛି । ପରବର୍ତ୍ତୀ ପର୍ଯ୍ୟାୟରେ ତାହା ଆମର ଆଲୋଚ୍ୟ ।

□ □ □

# ହଥର୍ଣ୍ଣ ଓ ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟିର ମୂଲ୍ୟାୟନ ଓ ସାହିତ୍ୟିକ ଜୀବନର ସମୀକ୍ଷା

**[ କବିତା, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ ଓ ଅନୁବାଦ ]**

ଦ୍ୱିତୀୟ ଅଧ୍ୟାୟର ଦ୍ୱିତୀୟ ପର୍ଯ୍ୟାୟରେ ଔପନ୍ୟାସିକ ହଥର୍ଣ୍ଣ ଓ ଫକୀରମୋହନଙ୍କ କାଳଗତ ବିଚାର କରାଯାଇଛି, ସେହିପରି ସେମାନଙ୍କ ଜୀବନଚର୍ଯ୍ୟାର ତୁଳନାତ୍ମକ ବିଚାରରେ ସେମାନଙ୍କ ମଧ୍ୟରେ ଥିବା ସାମ୍ୟ ଓ ବୈଷମ୍ୟକୁ ତୃତୀୟ ଅଧ୍ୟାୟର ପ୍ରଥମ ପର୍ଯ୍ୟାୟରେ ଆଲୋଚନା କରାଯାଇଛି । କିନ୍ତୁ ଏହି ପର୍ଯ୍ୟାୟରେ ଉଭୟ ଔପନ୍ୟାସିକଙ୍କ ସାରସ୍ୱତ ସାଧନା ଆମର ବିଚାର୍ଯ୍ୟ । ଜୀବନର ନାନା ଦୁର୍ଯୋଗ, ଦୁର୍ବିପାକ ସତ୍ତ୍ୱେ ଉଭୟ ଔପନ୍ୟାସିକ କିପରି ନିଜର ଏକନିଷ୍ଠ ସାଧନା ସାହିତ୍ୟ କ୍ଷେତ୍ରରେ ପ୍ରଦର୍ଶନ କରିଯାଇଛନ୍ତି ତାହାର ସମୀକ୍ଷା ତଥା ସେମାନଙ୍କ ସାହିତ୍ୟ ସୃଷ୍ଟିର ବିଭିନ୍ନ ଦିଗ ଉପରେ ଆଲୋକପାତ ଜନିତ ତୁଳନାତ୍ମକ ବିଚାର ଏହି ଆଲୋଚନାର ମୁଖ୍ୟ ବିଷୟବସ୍ତୁ । ତେଣୁ ପର୍ଯ୍ୟାୟକ୍ରମେ ଏ କ୍ଷେତ୍ରରେ ପ୍ରଥମେ 'ହଥର୍ଣ୍ଣ ଓ ତାଙ୍କ ସାହିତ୍ୟ', ଓ ତତ୍ପରେ 'ଫକୀରମୋହନ ଓ ତାଙ୍କ ସାହିତ୍ୟ'କୁ ଆଲୋଚନାର ଅନ୍ତର୍ଭୁକ୍ତ କରାଯାଇପାରେ ।

**(କ) ଔପନ୍ୟାସିକ ହଥର୍ଣ୍ଣ ଓ ତାଙ୍କ ସାହିତ୍ୟ :**

ଆମେରିକୀୟ ସାହିତ୍ୟର ମୂଳଉତ୍ସ ଆମେରିକାର ମଧ୍ୟରାଜ୍ୟ ମାନଙ୍କରୁ ଶାଖା-ପ୍ରଶାଖା ମେଲି ପଶ୍ଚିମାଞ୍ଚଳ ଆଡ଼କୁ କାୟାବିସ୍ତାର କରିଥିଲା । ଆମେରିକାର ଏହି ରାଜ୍ୟ ଗୁଡ଼ିକରେ ଯେପରି ସାମାଜିକ ପରିବର୍ତ୍ତନ ଆସିଥିଲା, ସେହିପରି ଭାବେ ମଧ୍ୟ ସାହିତ୍ୟର ଭୂୟସୀ ବିକାଶ ଘଟିଥିଲା । ଆମେରିକୀୟ ଜାତୀୟ ସାହିତ୍ୟ ଉପନିବେଶିକ ସାହିତ୍ୟ ଠାରୁ ଅଲଗା ହୋଇ ପେନ୍ସିଲ୍ ଭାନିଆ ଓ ନ୍ୟୁୟର୍କର ଲେଖକମାନଙ୍କ ଦ୍ୱାରା ଅଧିକ ପ୍ରଭାବଶାଳୀ ହୋଇପାରିଥିଲା । ଏହି ଲେଖକମାନେ ଅନେକାଂଶରେ ଆଟଲାଣ୍ଟିକ ମହାସାଗରିକ ସାହିତ୍ୟ ଓ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବକୁ ଆହରଣ କରିଥିଲେ । ଏହି ଜାତୀୟତାବାଦୀମାନଙ୍କ ମଧ୍ୟରେ ସବୁଠାରୁ ଆମେରିକୀୟ (Filling) ଥିଲେ କୁପର (Cooper) ଯିଏ କି ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟର ମୁଖ୍ୟସ୍ୱର ସହ ନିଜର ସଂସ୍କାରବାଦୀ ସ୍ୱରକୁ ଏକୀକରଣ କରିଦେଇଥିଲେ ।

ଆମେରିକାର ରାଜନୈତିକ ବିପ୍ଳବପରେ ଏବଂ ଦେଶରେ ସ୍ଥିରତା ଆସିବା ପରେ ସେମାନେ କେବଳ ଯେ, ପାଶ୍ଚାତ୍ୟ, ସାହିତ୍ୟ ଦ୍ୱାରା ପ୍ରଭାବିତ ହୋଇଥିଲେ ତା' ନୁହେଁ, ସେମାନେ ଭାବୁଥିଲେ ମାସାଚୁସେଟ୍ କେବଳ ଉପନିବେଶିକ ସାହିତ୍ୟରେ ଆବଦ୍ଧ ହୋଇଥିବା ଠିକ୍ ନୁହେଁ । ଅର୍ଥାତ୍ ମାସାଚୁସେଟ୍ ଏକଦେଶୀୟ ସ୍ୱର ସହ ନିଜର ସାହିତ୍ୟିକ ସ୍ୱର ଉତ୍ତୋଳନ କରିବା ଉଚିତ୍ । ତେଣୁ ମାସାଚୁସେଟ୍ ଏହିରୁ ଉପନିବେଶିକ ସାହିତ୍ୟଠାରୁ ନିଜକୁ ବିଚ୍ଛିନ୍ନ କରି ନିଜ ସାହିତ୍ୟର ଏକ ଭିନ୍ନ ଗତିପଥ ବାଛିନେଇଥିଲା । ଗୃହଯୁଦ୍ଧ (୧୮୬୧) ପୂର୍ବରୁ ଆମେରିକୀୟ ଜାତୀୟବାଦୀମାନେ ଆଟଲାଣ୍ଟିକ ସାହିତ୍ୟିକ ସମ୍ପ୍ରଦାୟକୁ ବିଶେଷ ପ୍ରାଧାନ୍ୟ ଦେଇଥିଲେ । ଏହି ପୁରୁଣା ଆଟଲାଣ୍ଟିକୀୟ ଚେତନା ଆମେରିକୀୟ ସାହିତ୍ୟରେ ଜଡ଼ିତ ହେବା ପୂର୍ବରୁ ଏକ ଜାତୀୟବାଦୀ ଚିନ୍ତାଧାରା ଦ୍ୱାରା ତାହା ପ୍ରଭାବିତ ହୋଇପଡ଼ିଥିଲା । ଏହି ଚିନ୍ତା ଓ ଚେତନାର ଦୁଇଜଣ ମହାନ୍ ଆମେରିକୀୟ ଲେଖକଙ୍କ ଲେଖାରେ ପରିପୁଷ୍ଟ ହୋଇଥିଲା । ସେ ଦୁଇଜଣ ହେଲେ (୧) ନାଥିନିଏଲ୍ ହଥର୍ଣ୍ଣ ଓ (୨) ଏଡ୍‌ଗାର୍ ଆଲନ୍ ପୋ । ନିଜ ନିଜର ଉପନିବେଶିକ ସାହିତ୍ୟ କ୍ଷେତ୍ରରେ ଏମାନେ ନିଜ ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖିଥିଲେ । ତଥାପି ଏହି ଦୁଇ ସାହିତ୍ୟିକଙ୍କ ଦୃଷ୍ଟିରେ କେତେକ ସାମଞ୍ଜସ୍ୟ ଦେଖିବାକୁ ମିଳେ । ଏ ଦୁହିଁଙ୍କ ମତରେ—"ସାହିତ୍ୟରେ କଳ୍ପନା ଅପେକ୍ଷା ନଗ୍ନ ବାସ୍ତବତା ହିଁ ପ୍ରକାଶ ଲଭିବା ଉଚିତ୍ ।"

ହଥର୍ଣ୍ଣ ନିଜ ସାହିତ୍ୟରେ ପୃଥିବୀର ଦୈନନ୍ଦିନ ଘଟଣାବଳୀର ଆଲୋଚନା କରୁଥିବାବେଳେ ପୋ' ଏକ କାଳ୍ପନିକ ପୃଥିବୀର ଅତୀବ ସୌନ୍ଦର୍ଯ୍ୟତାକୁ ନେଇ ତାଙ୍କ ଚିନ୍ତାଧାରାର ପରି-ପ୍ରକାଶ କରୁଥିଲେ । ଏହିପରିଭାବେ ହଥର୍ଣ୍ଣ ମାସାଚୁସେଟ୍‌ରେ ଓ ପୋ' ଭର୍ଜିନିଆରେ ସାହିତ୍ୟ ସାଧନାରେ ବ୍ରତୀ ଥିଲାବେଳେ ତାଙ୍କର ସମସାମୟିକମାନେ (Willıam bartram on the Atlantic River in Florida. Thoreau on his 'Prairie for out laws" or on top of mount katahdin in Maine, Francis Parkman on the oregon Trail, Melville in the velly of the Typees, Mark Twain in Naveda—All were engaged in this American Adventure) ତାଙ୍କ ଅଞ୍ଚଳ ମାନଙ୍କରେ ସାହିତ୍ୟ ସାଧନାରେ ବ୍ୟସ୍ତ ଥିଲେ ।

କିନ୍ତୁ ହଥର୍ଣ୍ଣଙ୍କ ସାହିତ୍ୟିକ ଚେତନା 'ମାସାଚୁସେଟ୍'ରୁ ଉପନିବେଶିକ ସାହିତ୍ୟର ମାଧ୍ୟମ ଦେଇ ଜାତୀୟ ସ୍ତରରେ ପହଞ୍ଚି ପାରିଥିଲା । ତେଣୁ ହଥର୍ଣ୍ଣ ଏକ ନୂତନ ପୃଥିବୀରେ, ମଣିଷର ଅସହାୟତା ସମ୍ପର୍କରେ ଯେଉଁ ଗବେଷଣା ଆରମ୍ଭ କରିଥିଲେ, ତାହା ତାଙ୍କର ପ୍ରତ୍ୟେକ ଉପନ୍ୟାସରେ ବର୍ଣ୍ଣିତ କରିଛନ୍ତି । ସେ ଯେଉଁ ଚରିତ୍ର ଗୁଡ଼ିକ ଏହାର

ପ୍ରତୀକଭାବେ ସୃଷ୍ଟି କରାଯାଇଛନ୍ତି ସେ ସବୁଥିରେ ତାଙ୍କର ଏକ ଅତିମାନସିକ ପ୍ରଜ୍ଞା ଓ ବୌଦ୍ଧିକ ଚେତନାର ପରିଚୟ ନିହିତ ଅଛି ।

ଆମେରିକୀୟ ସାହିତ୍ୟରେ ହଥର୍ଣ୍ଣ ତାଙ୍କର ନୂତନ ଶୈଳୀ, ମାର୍ଜିତ ରୁଚିବୋଧ ଓ ତତ୍କାଳୀନ ଆମେରିକାର ରାଜନୈତିକ, ସାମାଜିକ ଅର୍ଥନୈତିକ ସମସ୍ୟା ଗୁଡ଼ିକୁ ଜୀବନ୍ତ-ଭାବେ ରୂପଦେଇ ତାଙ୍କ ଉପନ୍ୟାସ ସୌଧ ନିର୍ମାଣ କରିଛନ୍ତି । ସେଥିପାଇଁ ସେ ଆମେରିକୀୟ ସାହିତ୍ୟ ଜଗତରେ ଅବିସ୍ମରଣୀୟ । ତାଙ୍କ ସାହିତ୍ୟ ସାଧନା ସମ୍ପର୍କରେ ତାଙ୍କର ଜଣେ ପରମବନ୍ଧୁ ତଥା ସାହିତ୍ୟିକ ଜେମ୍ସ (James) ଲେଖିଛନ୍ତି—"[He] contrived by an exquisite prosess, best known to himself to transmute this heavy moral burden into the very substance of the imagination ।"

ଜଣେ ଲେଖକ ଭାବେ ହଥର୍ଣ୍ଣଙ୍କ ପାଇଁ ଏହା ଥିଲା ସର୍ବଶ୍ରେଷ୍ଠ ସ୍ୱୀକୃତି ଓ ମର୍ଯ୍ୟାଦା । ତାଙ୍କର ନୀତିବାଦ ତଥା ସଂସ୍କାର ପ୍ରୟାସ ପାଇଁ ସେ ଆମେରିକୀୟ ସାହିତ୍ୟରେ ଏକ ସ୍ୱତନ୍ତ୍ର ଆସନର ଅଧିକାରୀ । ୧୮୫୦ ମସିହାରେ ପ୍ରକାଶିତ ତାଙ୍କର ପ୍ରଥମ ତଥା ସର୍ବଶ୍ରେଷ୍ଠ ଉପନ୍ୟାସ 'The scarlet Letter" ହିଁ ତାଙ୍କ ସପକ୍ଷରେ ଉପରୋକ୍ତ ମତାମତକୁ ଅଧିକଭାବେ ପ୍ରତିପାଦିତ କରିପାରିଛି । ତତ୍କାଳୀନ ଆମେରିକୀୟ ସାହିତ୍ୟର ଦୁର୍ବଳ ଚେତନାକୁ ହଥର୍ଣ୍ଣଙ୍କ ସାହିତ୍ୟିକ ଅବଦାନ ଅନେକାଂଶରେ ସବଳ କରିଛି । ସେହି ସମୟରେ ଏକ ନୂତନ ଚିନ୍ତା ଓ ନୂତନ ମନସ୍ତତ୍ତ୍ୱକୁ ନେଇ ଉପନ୍ୟାସ ଲେଖୁଥିବା ମେଲ୍‌ଭିଲେ, ହାଏଲ୍ସ, ଓ ଜେମ୍ସ (Melville, Howells, and James) ପ୍ରଭୃତି ଲେଖକଙ୍କ ମଧ୍ୟରେ ହଥର୍ଣ୍ଣ ଥିଲେ ସର୍ବପ୍ରଥମ ଓ ସର୍ବଶ୍ରେଷ୍ଠ ଚିନ୍ତାଚେତନାର ରୂପକାର ତାଙ୍କ ସାହିତ୍ୟ କୃତି ସମ୍ପର୍କରେ ମୋଟାମୋଟି ଭାବେ କହିବାକୁ ଯାଇଁ ଆମେରିକୀୟ ସମାଲୋଚକ Darret Abel କହିଛନ୍ତି—

"Howthorne in short is a writer's writer ।"

ଆମେରିକାର ଭୌଗୋଳିକ ପରିବେଶ ଓ ସାଧାରଣ ଜନ-ଜୀବନର ଚିତ୍ରକୁ ନେଇ ହଥର୍ଣ୍ଣଙ୍କ ଉପନ୍ୟାସ ଋଦ୍ଧିମନ୍ତ । ଦୈନନ୍ଦିନ କାର୍ଯ୍ୟରତ ମାନବର ସୁଖ-ଦୁଃଖର କାହାଣୀ ତାଙ୍କର ପ୍ରାୟ ଉପନ୍ୟାସରେ ବର୍ଣ୍ଣିତ ହୋଇଥିବାରୁ ଏହା ଆମେରିକା ବାସୀଙ୍କ ପାଇଁ ବେଶ୍ ଗ୍ରହଣଯୋଗ୍ୟ ହୋଇପାରିଥିଲା । ହଥର୍ଣ୍ଣଙ୍କ ଉପନ୍ୟାସରେ ମାନବସତ୍ତା ଓ ଐଶୀସତ୍ତା ମଧ୍ୟରେ ଏକ ତୃତୀୟ ସତ୍ତାର ଆବିର୍ଭାବ ଦେଖିବାକୁ ମିଳେ । ତାହା ହେଉଛି ଆତ୍ମା, ମଣିଷର ଅତୃପ୍ତ ଆତ୍ମା ଏବଂ ମଣିଷର ଆତ୍ମାତତ୍ତ୍ୱ ସଂପର୍କରେ ସେ ତାଙ୍କର 'The House of the Seven Gables"ରେ ଅତି ପର୍ଯ୍ୟାପ୍ତ ଭାବରେ ବର୍ଣ୍ଣନା କରି-

ଅଛନ୍ତି । ଏହି ତତ୍ତ୍ୱବୋଧର ହଥର୍ଣ୍ଣଙ୍କ ଦୃଷ୍ଟିଭଙ୍ଗୀ ବେଶ୍ ଧାର୍ମିକ ଓ ବୌଦ୍ଧିକସ୍ୱଭାବ ପ୍ରକାଶର ସହାୟକ ହୋଇପାରିଛି । ହଥର୍ଣ୍ଣ ତାଙ୍କ ଉପନ୍ୟାସରେ କୌଣସି ନିର୍ଦ୍ଦିଷ୍ଟ ଚେତନାକୁ ଅନୁରଣିତ କରିନାହାନ୍ତି । ଯେଉଁଥିପାଇଁ ତାଙ୍କର ବିଭିନ୍ନ ଉପନ୍ୟାସ ବିଭିନ୍ନ ଚେତନା ମାଧ୍ୟମରେ ପରିପ୍ରକାଶ ଲାଭ କରିଛି । ଆମେରିକୀୟ ସମାଲୋଚକ Hyatt . H. Waggnoer ଏଥିପାଇଁ କହିଛନ୍ତି—

> 'Of this four completed novels, only the last treats the subject directly. 'The Marble Faun' is Howthorne's theological novel. But "The Blithedale Romance" explicitly examines the possibility of undoing the Fall, and "The House of the Seven Gables" retells the story as enacted by a family over generations. Only the Scarlet letter is not concerned with it. It simply assumes it. But even it adumbrates the familiar pattern : a clear fall into sir, followed by an ambigiuos rise. (୨୪) ପୁଣି ହଥର୍ଣ୍ଣଙ୍କ ଦୃଷ୍ଟିଭଙ୍ଗୀ ସମ୍ପର୍କରେ ଅନ୍ୟ ଜଣେ ଆମେରିକୀୟ ସମାଲୋଚକ ଲେଖିଛନ୍ତି—

> "He has been called a Puritan and rebel against Puritanism, a Romantic and anti Romantic, a Transcendentalism and a critic of Transcendentalism, a Society—conscious humanitarian and an introverted acsthete an aristocrat and a democrat, a realistand an idealist the disagreement about a properlable for him is as General as the agreement about his literary excellence." (୨୫)

ନିଜସ୍ୱ ବିଡ଼ମ୍ବିତ ଜୀବନ ନେଇ ହଥର୍ଣ୍ଣ ଅନ୍ୟାନ୍ୟ ସାହିତ୍ୟିକଙ୍କ ଅପେକ୍ଷା ଅନେକ ବିଳମ୍ବରେ ଊନବିଂଶ ଶତାବ୍ଦୀର ଆମେରିକୀୟ ସାହିତ୍ୟରେ ପ୍ରତିଷ୍ଠିତ ହୋଇପାରିଥିଲେ । କିନ୍ତୁ

---

(୨୪) Six. Ame. Novelist of the nineteenth century, Page 72

(୨୫) American literature, Vol 2 ।

ଜନ୍ମରୁ ସାହିତ୍ୟିକ ହଥର୍ଣ୍ଣ ଏଥିପାଇଁ ଦାୟୀ ନୁହନ୍ତି; ଦାୟୀ ତତ୍କାଳୀନ ଅର୍ଥଲିପ୍ସୁ ପ୍ରକାଶକବୃନ୍ଦ । ତାଙ୍କର ପ୍ରାଥମିକ ସାହିତ୍ୟିକ ଜୀବନ ଆରମ୍ଭ ହୋଇଥିଲା ପ୍ରବନ୍ଧ ରଚନାରୁ । ସେ କଲେଜରେ ପଢ଼ୁଥିବା ସମୟରେ କେତେକ ପ୍ରବନ୍ଧ ରଚନା କରିଥିଲେ, କିନ୍ତୁ ଏହି ପ୍ରବନ୍ଧ ରଚନାରେ ସେ ଦୀର୍ଘଦିନ ବାନ୍ଧିହୋଇ ରହିପାରିଲେ ନାହିଁ । ଆମେରିକୀୟ ଜନମାନଙ୍କର ଅଧିକ ନିକଟତର ହେବା ପାଇଁ ସେ ଗଳ୍ପ ରଚନା ଆରମ୍ଭ କଲେ ସେହି କଲେଜପଢ଼ା ସମୟରେ । ସାହିତ୍ୟିକ ହଥର୍ଣ୍ଣ ଦୀର୍ଘ ସମୟ ଏହି ଗଳ୍ପ ରଚନାରେ ହିଁ ବ୍ୟୟ କରିଥିଲେ । କିନ୍ତୁ ୧୮୫୦ ମସିହା ବେଳକୁ ତାଙ୍କର ଏହି ଦୃଷ୍ଟିକୋଣ ଓ ସାଧନାର ମୋଡ଼ ବଦଳି ଯାଇଥିଲା । ସେ ଉପନ୍ୟାସ ରଚନାରେ ବ୍ରତୀ ହୋଇଥିଲେ ୧୮୫୦ ମସିହାଠାରୁ । କିନ୍ତୁ ଜୀବନରେ ସେ ଯେଉଁ ଗଳ୍ପଗୁଡ଼ିକ ରଚନା କରିଛନ୍ତି, ତାହା ତାଙ୍କ ଔପନ୍ୟାସିକ ଜୀବନର ପୃଷ୍ଠଭୂମି ହୋଇଥିବାରୁ ସର୍ବପ୍ରଥମ ତାଙ୍କ ଗଳ୍ପ-ଜଗତକୁ ଅନୁଧ୍ୟାନ କରାଯିବା ଆବଶ୍ୟକ ।

## ଗାଳ୍ପିକ ହଥର୍ଣ୍ଣ ଓ ତାଙ୍କ ଗଳ୍ପ [୧୮୨୭-୧୮୫୧]

୧୮୨୧ ମସିହାରୁ ୧୮୨୫ ମସିହା ମଧ୍ୟରେ ହଥର୍ଣ୍ଣ କଲେଜ ଛାତ୍ର ଥିବାବେଳେ ବହୁ କ୍ଷୁଦ୍ରଗଳ୍ପ ରଚନା କରି ତନ୍ମଧ୍ୟରୁ କେତେକକୁ ପତ୍ରପତ୍ରିକାରେ ପ୍ରକାଶିତ କରାଇଥିଲେ । କେତେକ ପ୍ରକାଶିତ ଗଳ୍ପ ଓ କେତେକ ଅପ୍ରକାଶିତ ଗଳ୍ପକୁ ନେଇ ସେ ପ୍ରଥମକରି ଏକ ଗଳ୍ପ ସଂକଳନ ପ୍ରକାଶ କରିବାକୁ ଇଚ୍ଛା ପୋଷଣ କରିଥିଲେ । ସେ ଏହି ଗଳ୍ପ ସଂକଳନଟିର ନାମ ରଖିଥିଲେ "Seven Tales of my Native land."

ଏହି ଗଳ୍ପ ସଂକଳନଟିରେ ହଥର୍ଣ୍ଣ ୭ଟି ଗଳ୍ପକୁ ସ୍ଥାନ ଦେଇଥିଲେ; କିନ୍ତୁ ଏଗୁଡ଼ିକୁ ପ୍ରକାଶ କରିବାର ଦାୟିତ୍ୱ କୌଣସି ପ୍ରକାଶକ ବହନ ନକରିବାରୁ ସେ ତାଙ୍କ ମନ ଓ ହୃଦୟରେ ଯେଉଁ ଆଘାତ ପାଇଲେ ଜୀବନସାରା ତାହା ତାଙ୍କର ଏକ ଅଭୁଲା ଦାଗ ହୋଇ ରହିଯାଇଥିଲା । ଏହି ଆଘାତ ତାଙ୍କର ଏପରି ତୀବ୍ର ହୋଇଥିଲା ଯେ, ସେ ଗୋଟିଏ ବର୍ଷ ପରେ ଏହି ସଂକଳନଟିର ପାଣ୍ଡୁଲିପିକୁ ନିଆଁରେ ଜାଳିଦେଇଥିଲେ । ଏଥିରୁ କେତେକ ପୂର୍ବରୁ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିବାରୁ ତନ୍ମଧ୍ୟରୁ ପରେ କେତେକ ମିଳିବା ସମ୍ଭବପର ହୋଇଥିଲା । ଆଲୋଚକଙ୍କ ମତରେ—ଏହି 'Seven Tales' ରେ ଥିବା 'Alice Doane's Appeal' ଏବଂ 'The Hallow of three Hills' ଗଳ୍ପ ଦୁଇଟି ହଥର୍ଣ୍ଣଙ୍କ ଆଦ୍ୟଗଳ୍ପ ସୃଷ୍ଟି ମଧ୍ୟରୁ ଅନ୍ୟତମ ଦୁଇ ଶ୍ରେଷ୍ଠ ଗଳ୍ପ (୨୬)

(୨୬) The only certainly identifiable tale from this first group is 'Alice Doane's Appel', "The Hallow of the three Hills" is probably also one of the Seven Tales. ( American cite, Vol-2, Page-190 )

ତାଙ୍କର ଏହି ଲେଖାରେ ପ୍ରକାଶ ପାଇଥିବା ଆଧିଭୌତିକ ଚିନ୍ତାଧାରାର ଏକ ପୂର୍ଣ୍ଣାଙ୍ଗ ପରିପ୍ରକାଶ ତାଙ୍କ ଶେଷ ଉପନ୍ୟାସ 'The marble Faun"ରେ ଦେଖିବାକୁ ମିଳେ ।

## Fanshawe :

ହଥର୍ଣ୍ଣଙ୍କର ଦ୍ୱିତୀୟ ସାହିତ୍ୟକୃତି ଓ ପ୍ରଥମ ପ୍ରକାଶିତ ପୁସ୍ତକ ହେଉଛି "Fanshawe ।" ଏଥିରେ ସେ ତାଙ୍କ କଲେଜ ଜୀବନର ଅଭିଜ୍ଞତାକୁ ପ୍ରକାଶ କରିଥିଲେହେଁ ମୁଖ୍ୟତଃ ଏହା ' Walrer Scot' ନାମକ ଜଣେ ଯୁବକର ପ୍ରେମ-କାହାଣୀକୁ ନେଇ ରଚିତ । ଜୀବନରେ କୌଣସି ଉଲ୍ଲେଖଯୋଗ୍ୟ କୃତିତ୍ୱ ହାସଲ କରି-ନପାରି ଏକୁଟିଆ ଜୀବନଯାପନ କରି, ଶେଷରେ ଯୁବକ ଅବସ୍ଥାରେ ମୃତ୍ୟୁବରଣ କରିଥିବା ଗୋଟିଏ ଚରିତ୍ରର କଥା ଏଥିରେ କୁହାଯାଇଛି । ହଥର୍ଣ୍ଣ ତାଙ୍କ ବ୍ୟକ୍ତିଗତ ଜୀବନର ଅନୁ-ଭୂତିକୁ ଏହି ଦୀର୍ଘ ଗଳ୍ପଟିରେ ରୂପ ଦେଇଛନ୍ତି । ହଥର୍ଣ୍ଣଙ୍କର ଏହି ନିଃସଙ୍ଗ ତଥା ବଚିକିତ ଭାବ ତାଙ୍କର ଅନ୍ୟ ଏକ ଶ୍ରେଷ୍ଠ ଗଳ୍ପ 'The Ambition Guest"ରେ ମଧ୍ୟ ପରି-ପ୍ରକାଶ ଲଭିଛି ।

ଜଣେ 'Boston' ପ୍ରକାଶକଙ୍କ ଦ୍ୱାରା ହଥର୍ଣ୍ଣଙ୍କ ରଚିତ ଏହି 'Fanshawe' ୧୮୨୮ ମସିହାରେ ପ୍ରକାଶିତ ହୋଇଥିଲା । ଏହାକୁ ଏକ କ୍ଷୁଦ୍ର ଉପନ୍ୟାସ ବୋଲି ତାଙ୍କର ଆଲୋଚକମାନେ କହିଥିଲେହେଁ ବାସ୍ତବରେ ଏହା ହେଉଛି ଏକ ସ୍ଫୀତିକୃତ ଗଳ୍ପ ।

## Provincial Tales :

ଏହା ହେଉଛି ହଥର୍ଣ୍ଣଙ୍କର ତୃତୀୟ ସାହିତ୍ୟକୃତି । ଏହି ଲେଖା ସଙ୍କଳନଟି ବୋଷ୍ଟନ୍ ପବ୍ଲିସର୍ 'ସାମୁଏଲ୍, ଜି ଗୁଡ୍‌ରିଚ୍'ଙ୍କ ପ୍ରକାଶନ ସଂସ୍ଥାଦ୍ୱାରା ପ୍ରକାଶିତ ହୋଇଥିଲା । ଏଥିରେ 'The Gentle Boy,' "Roger malvins Burial,' ଓ My kinsman' Major Molineux' ପ୍ରଭୃତି ଗଳ୍ପଗୁଡ଼ିକ ସଙ୍କଳିତ ହୋଇଛି ।

ଏଥିରେ ସଙ୍କଳିତ 'The gentle Boy' ହଥର୍ଣ୍ଣଙ୍କର ଏକ ଶ୍ରେଷ୍ଠଗଳ୍ପ । ତାଙ୍କୁ ଜଣେ ସଫଳ ଗାଳ୍ପିକ ଭାବେ ପରିଚିତ କରାଇବାରେ ତାଙ୍କ ଗଳ୍ପ 'The Gentle Boy'ର ଭୂମିକାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ବୋଷ୍ଟନ୍ ପ୍ରକାଶକ ଗୁଡ୍‌ରିଚ୍‌ଙ୍କ ସହ ଏତେବେଳକୁ ହଥର୍ଣ୍ଣଙ୍କ ସମ୍ପର୍କ ବେଶ୍ ଘନିଷ୍ଠ ହୋଇପଡ଼ିଥିଲା । ତେଣୁ ହଥର୍ଣ୍ଣ ଗୁଡ୍‌ରିଚ୍‌ଙ୍କ ଆନୁଆଲ୍ ଗିଫ୍‌ଟି (Annual Gift ) ପାଇଁ ପ୍ରକାଶିତ ପତ୍ରିକା 'The Token'କୁ ବହୁଗଳ୍ପ ପ୍ରକାଶ ପାଇଁ ଦେଇଥିଲେ ଏବଂ ସେଥିରେ ତାଙ୍କ ଲିଖିତ ୧୮୩୧ରୁ ୧୮୩୮ ମସିହା ପର୍ଯ୍ୟନ୍ତ ପ୍ରାୟ ଅନେକ ଗଳ୍ପ ପ୍ରକାଶିତ ହୋଇଥିଲା । ଏହା ବ୍ୟତୀତ ହଥର୍ଣ୍ଣ Good Richଙ୍କ ସାହାଯ୍ୟରେ କେତେକ ଲେଖାକୁ 'The New

England' magazineରେ ପ୍ରକାଶିତ କରାଇ ପାରିଥିଲେ । ଏଥିପାଇଁ ପାରଶ୍ରମିକ ଭାବେ ସେ କିଛି ଅର୍ଥ ମଧ୍ୟ ଉପାର୍ଜନ କରିପାରିଥିଲେ । ଏହି ଅର୍ଥ ପ୍ରାପ୍ତି ତାଙ୍କୁ ଭବିଷ୍ୟତରେ ଲେଖାଲେଖି କରିବା ପାଇଁ ବେଶ୍ ପ୍ରେରଣା ଯୋଗାଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

୧୮୩୬ ମସିହାରେ ସେ GoodRichଙ୍କ ପାଇଁ 'Peter Parley's Universal History'ର ସମ୍ପାଦନା କାମ ମଧ୍ୟ ହାତକୁ ନେଇଥିଲେ । ଏ କାର୍ଯ୍ୟରେ ତାଙ୍କ ଭଉଣୀ ତାଙ୍କୁ ଅନେକାଂଶରେ ମଧ୍ୟ ସାହାଯ୍ୟ କରିଥିଲେ ।

## Twice-told tales (1837)

ଏଥିରେ ପ୍ରକାଶିତ ପ୍ରାୟ କ୍ଷୁଦ୍ରଗଳ୍ପ ହଥର୍ଣ୍ଣଙ୍କ ଛଦ୍ମ ନାମରେ ପତ୍ରପତ୍ରିକା ଗୁଡ଼ିକରେ ପ୍ରକାଶିତ ହୋଇଥିଲା । ୧୮୩୭ ମସିହା ପର୍ଯ୍ୟନ୍ତ ପ୍ରକାଶିତ ଓ ଅପ୍ରକାଶିତ କେତେକ ଗଳ୍ପକୁ ନେଇ ସେ ଏହି ଗଳ୍ପ ସଙ୍କଳନ ପ୍ରକାଶ କରିବାକୁ ଇଚ୍ଛା କରିଥିଲେ । ଏଥିରୁ କେତେକ ଗଳ୍ପ 'ଗଡ଼ରିଚ'ଙ୍କ ବାର୍ଷିକ ଉପହାର ପତ୍ରିକା 'The token'ରେ ମଧ୍ୟ ପ୍ରକାଶିତ ହୋଇଥିଲା ।

'Twice told tales'ରେ ଥିବା କାହାଣୀଗୁଡ଼ିକ ମୁଖ୍ୟତଃ ଦୁଇଟି ଚିନ୍ତାଧାରା ଓ ଦର୍ଶନ ଉପରେ ପର୍ଯ୍ୟବସିତ । ପ୍ରଥମଟି ହେଉଛି—'ପ୍ରତ୍ୟେକ ମଣିଷର ହୃଦୟରେ ଏକ ପ୍ରକାର ଅସୂରିକ ପ୍ରବୃତ୍ତି ରହିଛି, ଯାହା ଅଦମନୀୟ' । ଦ୍ୱିତୀୟଟି ହେଉଛି—'ମଣିଷ ଯଦି ସାଧାରଣ ଜନଗଣଙ୍କ ଠାରୁ ବିଚ୍ଛିନ୍ନ ହୋଇ ରହେ, ତେବେ ତାର ସ୍ୱାର୍ଥ ମାନବିକ ଭାବ ହ୍ରାସ ଘଟେ ।" ଏହି ଦୁଇଟି ଚିନ୍ତାଧାରା ଏକାଥରକେ ଆଲୋଚ୍ୟ ଗଳ୍ପ ସଂକଳନର ଅନ୍ୟତମ ଗଳ୍ପ 'The Minister's black veil' ଗଳ୍ପରେ ପରିପ୍ରକାଶ ଲଭିଛି । ଜଣେ ଯୁବକ ମନ୍ତ୍ରୀ କଥା ଏଥିରେ ବର୍ଣ୍ଣିତ ହୋଇଛି । ସଂସାର ପ୍ରତି ବିତୃଷ୍ଣ ହୋଇ ଏହି ଯୁବକ ମନ୍ତ୍ରୀଜଣକ ତାଙ୍କ ଜୀବନସାରା ଦୁଃଖ କଷ୍ଟରେ କାଳାତିପାତ କରିଥିଲେ । କାହାଠାରୁ ସ୍ନେହମମତା ନପାଇ ସମାଜଠାରୁ ଦୂରରେ ରହି ଏବଂ ବିଚ୍ଛିନ୍ନ ହୋଇ ଶେଷରେ ସେ ଏକାକୀତ୍ୱ ବୋଧରେ ନିଜର ବ୍ୟକ୍ତିତ୍ୱକୁ ଜଳାଞ୍ଜଳି ଦେଇଥିଲେ । ଆଲୋଚ୍ୟ ଗଳ୍ପ ସଂକଳନଟିରେ ସଙ୍କଳିତ ଅନ୍ୟ ଏକ ଗଳ୍ପ ହେଉଛି 'The Maypale of Marry Mount" । ଏହି ଗଳ୍ପଟିରେ ସାଧାରଣ ମନୁଷ୍ୟର ପାପ ପୂଣ୍ୟର ବିଚାର କରାଯାଇଛି । ମାହାଚୁସେଟର ସଂସ୍କାରବାଦୀ ଇତିହାସକୁ ନେଇ ଗଳ୍ପଟିର ଭିତ୍ତିଭୂମି ପରିକଳ୍ପିତ । 'Wake field' ଗଳ୍ପରେ ମଣିଷର ବଂଶବାର ଦାବିକୁ ପ୍ରତିଷ୍ଠିତ କରିବାର ପ୍ରଚଣ୍ଡ ଇଚ୍ଛା ମାଧ୍ୟମରେ ହଥର୍ଣ୍ଣ ବ୍ୟକ୍ତ କରିଅଛନ୍ତି । ଏହି ଗଳ୍ପର ନାୟକ ଅସାଧାରଣ ଓ ଖୁବ୍ ଭାବପ୍ରବଣ । ଗଳ୍ପର ମୁଖ୍ୟ ଚରିତ୍ର 'Wake field' ନିଜ ସ୍ତ୍ରୀଠାରୁ ଅଲଗା ହୋଇ ଠିକ୍ ତା' ପାଖ ଘରେ ଦୀର୍ଘ କୋଡ଼ିଏ

ବର୍ଷ କାଳାତିପାତ କରିଛି । ଅତୀତ ଜୀବନର ରହସ୍ୟ ଉଦ୍‌ଘାଟନ କରିବା ଥିଲା ତାର ଏହି ବିଚ୍ଛିନ୍ନତାର ମୂଳ ଉଦ୍ଦେଶ୍ୟ । ପରିଶେଷରେ ସେ ତାର ସ୍ତ୍ରୀ ପାଖକୁ ଆସିଲାବେଳକୁ ପୂର୍ବର ନିବିଡ଼ତା ଆଉ ରକ୍ଷାକରି ପାରିନାହିଁ । ଗଳ୍ପଟିର ସାରକଥା ହେଉଛି ଗୋଟିଏ ସମୟର ବିଚ୍ଛିନ୍ନତା କିପରି ଜୀବନସାରା ମଣିଷକୁ ଖାପଛଡ଼ା କରିଦିଏ । ଏହାର ମାଧ୍ୟମରେ ହଥର୍ଣ୍ଣ ତାଙ୍କ ଜୀବନର ଏକ ନିଚ୍ଛକ ବର୍ଣ୍ଣନାକୁ ପ୍ରକାଶ କରିଅଛନ୍ତି । ତାଙ୍କ ଜୀବନର ନିଃସଙ୍ଗତାକୁ ନେଇ ଏହି ଗଳ୍ପର ପୃଷ୍ଠଭୂମି ପରିକଳ୍ପିତ ଓ ଜୀବନର ବିଚ୍ଛିନ୍ନତାକୁ ନେଇ ଗଳ୍ପଟିର ପରିସମାପ୍ତି । ଏଥିରେ ସଙ୍କଳିତ ଅନ୍ୟକେତେକ ଗଳ୍ପଗୁଡ଼ିକ ମଧ୍ୟ ହଥର୍ଣ୍ଣଙ୍କ ନିଃସଙ୍ଗଧର୍ମୀ ଚିନ୍ତାଧାରାର ପରିଚୟ ପ୍ରଦାନ କରନ୍ତି । ଏଥିରେ ଥିବା ଅନ୍ୟ କେତୋଟି ଗଳ୍ପ ହେଉଛି—'Lady Eleanares mantle' ଓ The Ambitious Guest''.

ହଥର୍ଣ୍ଣଙ୍କ ପ୍ରଖ୍ୟାତ ଗଳ୍ପ ସଂକଳନ ଗ୍ରନ୍ଥ 'Twice Told Tales' ର ଭୂମିକା ଅନସ୍ୱୀକାର୍ଯ୍ୟ । ହଥର୍ଣ୍ଣ ତାଙ୍କର ଜଣେ ବନ୍ଧୁଙ୍କ ସାହାଯ୍ୟରେ ଏହା ପ୍ରକାଶ କରାଇ ଜଣେ ଖ୍ୟାତିସମ୍ପନ୍ନ ସାହିତ୍ୟିକ ଭାବେ ତଥା ବ୍ୟବସାୟିକ ଦୃଷ୍ଟିକୋଣରୁ ବେଶ୍ ଲାଭବାନ ହୋଇଥିଲେ (୨୭) ୧୮୪୨ ମସିହାରେ ଏହାର ଦ୍ୱିତୀୟ ସଂସ୍କରଣରେ ସେ ଏଥି ସହ ଆଉ ଦୁଇଟି ଗଳ୍ପକୁ ସଂଯୋଜିତ କରିଥିଲେ ।

**Mosses From an oldmanse-1846 :**

'Old manse' ଠାରେ ରହୁଥିବାବେଳେ ହଥର୍ଣ୍ଣ ଉକ୍ତ ଗଳ୍ପ ସଂକଳନଟିକୁ ପ୍ରକାଶ କରିଥିଲେ । ଏଥିରେ ସଂକଳିତ ଗଳ୍ପଗୁଡ଼ିକ ୧୮୩୮ରୁ ୪୬ ମଧ୍ୟରେ ବିଭିନ୍ନ ପତ୍ରି-

---

(୨୭) Twice Told Tales' Howthornes first important book. Finally achieved print because his college friends. Horatio Bridge, had without the Author's knowledge guaranteed the publisher against loss. Howthorne's name apeared on the title page and the emerged from the obscurity of pseudonyms which to gather with public apathy toward serious fiction, had made it difficult for him to establish himself as a writer ! Fortunately 'Twice-Told Tales' was both a critical and a commercial success. The small edition of a thousand copieswas 'gotridof." ( to use the Publisher's word ) in about a year."

(American literature, By-Abel, vol-2, Page-194/95)

ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହି ସଂକଳନଟିରେ ଥିବା କେତେକ ଶ୍ରେଷ୍ଠଗଳ୍ପ ହେଉଛି—'The birth Mark,' Rappaccinis Daughter,' 'young Good Man-Brown,' ଓ 'The calestial Rail road'.

'The Birth Mark' ଗଳ୍ପଟିରେ ଜଣେ ଯୁବବୈଜ୍ଞାନିକଙ୍କ କଥା ବର୍ଣ୍ଣିତ ହୋଇଛି । ଏହି ବୈଜ୍ଞାନିକ ଜଣେ ଏକ ବୈଜ୍ଞାନିକ ପରୀକ୍ଷା ଦ୍ୱାରା ନିଜର ସୁନ୍ଦରୀ ସ୍ତ୍ରୀକୁ ମୃତ୍ୟୁ ମୁଖକୁ ଠେଲିଦେଇଥିଲେ । "Rappaccian's daughter" ଗଳ୍ପରେ ଜଣେ ଡାକ୍ତର ତାଙ୍କର ଯୁବତୀ ଝିଅକୁ ନେଇ ଗୋଟିଏ Medicine ଉଦ୍ଭାବନରେ ବ୍ୟସ୍ତ ଅଛନ୍ତି ଏବଂ ଏହି ଔଷଧ ପରୀକ୍ଷା ଦ୍ୱାରା ତାଙ୍କ ଝିଅଟିକୁ ମଧ୍ୟ ହରାଇଲେ । ଉକ୍ତ ଗଳ୍ପ ଦୁଇଟି ସଂପର୍କରେ ସମାଲୋଚକ Abel କୁହନ୍ତି—"These two tales are early example of the 'Mad scientist' story in America fiction· Howthornes interest in such charecters and situations had been stimulated by his reading of Gothic novels, especially those of William Godwin, Rogger chilling worth the diabolical Phisician of the 'Scarlet letter' is his finest charecter of this type. Both 'the birth mark,' and Rappaccian's daughter' emphasize the folly of aberration from normal and natural humanity." (American Lit,-Vol-2)

'Young good man Brown' ଗଳ୍ପଟି ଏଥିରେ ସଂକଳିତ ଅନ୍ୟାନ୍ୟ ଗଳ୍ପଗୁଡ଼ିକ ମଧ୍ୟରୁ ହଥର୍ଣ୍ଣଙ୍କର ଗୋଟିଏ ଶ୍ରେଷ୍ଠ ଗଳ୍ପ ବୋଲି ବିବେଚ୍ୟ । Twice-Told Tales" ରେ ଥିବା 'The Minister's black Veil" ଗଳ୍ପ ସହ ଅଲୋଚ୍ୟ ଗଳ୍ପଟିକୁ ତୁଳନା କରାଯାଇପାରେ । ବାସ୍ତବିକ ୧୮୩୭ ମସିହାରେ ପ୍ରକାଶିତ ତାଙ୍କର ଏହି ଗଳ୍ପ ସଙ୍କଳନଟି ଆମେରିକୀୟ ସାହିତ୍ୟରେ ଅନନ୍ୟ ।

**The Snowimage 1851 :**

'ସ୍ନୋଇମେଜ୍' ଗଳ୍ପ ସଙ୍କଳନଟି ପ୍ରକାଶନ ପୂର୍ବରୁ ହଥର୍ଣ୍ଣଙ୍କର ଦୁଇଟି ଉପନ୍ୟାସ The Scarlet letter' ଓ 'The House of the Seven Gables" ଯଥାକ୍ରମେ ୧୮୫୦ ଓ ୧୮୫୧ ମସିହାରେ ପ୍ରକାଶିତ ହୋଇସାରିଥିଲା । ୧୮୫୧ ମସିହାରେ ପ୍ରକାଶିତ 'ସ୍ନୋଇମେଜ୍' ଗଳ୍ପ ସଂକଳନର ଗଳ୍ପଗୁଡ଼ିକ କିନ୍ତୁ ୧୮୫୦ ପୂର୍ବରୁ ଲିଖିତ ଓ ନାନା ପତ୍ରପତ୍ରିକାରେ ପ୍ରକାଶିତ । ତେଣୁ ହଥର୍ଣ୍ଣଙ୍କ ଗଳ୍ପସୃଷ୍ଟି ୧୮୫୦ ପର୍ଯ୍ୟନ୍ତ ଅଧ୍ୟାୟରେ ହିଁ ସମାପ୍ତି ହୋଇଛି । ସେ ଉପନ୍ୟାସ ରଚନା କରିବା ପରେ ଯେପରି କିଛି

ଉଲ୍ଲେଖଯୋଗ୍ୟ ଗଳ୍ପ ଲେଖିଥିବାର ଆମ ଦୃଷ୍ଟିକୁ ଆସିନାହିଁ । 'ସ୍ନୋଇମେଜ୍' ହଥର୍ଣ୍ଣଙ୍କର ଶେଷ ଗଳ୍ପ ସଂକଳନ ସତ୍ୟ; କିନ୍ତୁ ଏଥିରେ ତାଙ୍କ ଗଳ୍ପ ଲିଖନର ପ୍ରସ୍ତୁତି ସତ୍ତ୍ୱ ଅନ୍ୟାନ୍ୟ ଗଳ୍ପ ସଂକଳନ ତୁଳନାରେ ଅଧିକ ଅନୁଭୂତ । ଏ ସମ୍ପର୍କରେ Literary consummation 1 : Massachusets & virginia' ରେ କୁହାଯାଇଛି— "The title story of the Volume 'The Snowimage' demonstrates the theme than mans meterial and spiritual natures should not oppse or deny each other but should harmonize and complete each other. ××× 'The Snowimage shows ameterialist who could not perceive the mixture of the ideality in real things and thereby destroyed through his imperfective handling the best the earth offers'' (୨୮)

'ସ୍ନୋଇମେଜ୍' ଗଳ୍ପ ସଂକଳନ ହଥର୍ଣ୍ଣଙ୍କର ଶେଷ ଗଳ୍ପ ସଂକଳନ ଏହାପରେ ସେ ଆମେରିକୀୟ ସାହିତ୍ୟର ଜଣେ ଖ୍ୟାତନାମା ଔପନ୍ୟାସିକ ରୂପେ ନିଜର ଏକନିଷ୍ଠ ସାଧନାର ପରିଚୟ ଦେଇପାରିଛନ୍ତି ।

ହଥର୍ଣ୍ଣଙ୍କ ସାହିତ୍ୟିକ ଜୀବନ ଆରମ୍ଭ ହୋଇଥିଲା ପ୍ରବନ୍ଧ ରଚନାରୁ; ମାତ୍ର ସେ ଜଣେ ମୌଳିକ ସ୍ରଷ୍ଟାଭାବେ ଗଳ୍ପଜଗତରେ ଆବିର୍ଭାବ ହେବାପରେ ପ୍ରବନ୍ଧ ରଚନାରୁ ନିବୃତ୍ତ ରହିଥିଲେ । ପ୍ରତ୍ୟେକ ଔପନ୍ୟାସିକଙ୍କ ଜୀବନର ପୃଷ୍ଠଭୂମି ସେତେବେଳେ ଗଳ୍ପ ରଚନାରୁ ହେବାପର ମନେହୋଇଥାଏ । ହଥର୍ଣ୍ଣ ମଧ୍ୟ ଏହି ସତ୍ୟର ପରାକାଷ୍ଠାରୁ ଉଦ୍‌ଭୂତ ହୋଇଥିବା ଏକ ପ୍ରଚଣ୍ଡ ପ୍ରତିଭା । ସେ ଯେଉଁ ଗଳ୍ପମାନ ରଚନା କରିଥିଲେ, ତାର ପୃଷ୍ଠଭୂମି ଉପରେ ସେ ଦଣ୍ଡାୟମାନ ହୋଇ ରଚନା କରିଯାଇଛନ୍ତି ତାଙ୍କର କାଳଜୟୀ ଉପନ୍ୟାସ ମାନ । ୧୮୫୦ ମସିହାଠାରୁ ସେ ଆମେରିକୀୟ ସାହିତ୍ୟରେ ଜଣେ ଔପନ୍ୟାସିକ ଭାବେ ଦେଖାଦେଇଥିଲେ ।

## ଔପନ୍ୟାସିକ ହଥର୍ଣ୍ଣ ଓ ତାଙ୍କ ଉପନ୍ୟାସ :

ସମାଲୋଚକ Darrel Abel ଙ୍କ ଭାଷାରେ—"with the Publication of the 'Scarlet letter' Howthorne turned from the writing of tales to the production of what he preferred to call 'romance' rather than Novels' (୮)

(୨୮) American Literature—By-Abel, vol-2, Page-204.

୧୮୫୦ ମସିହା ପର୍ଯ୍ୟନ୍ତ ହଥର୍ଣ୍ଣ ଜଣେ ସଫଳ ଗାଳ୍ପିକଭାବେ ଆମେରିକୀୟ ସାହିତ୍ୟରେ ପରିଚିତ ଥିଲେ । ମାତ୍ର ୧୮୫୦ ମସିହାର ପ୍ରଥମ ଉପନ୍ୟାସ 'The Scarlet Letter'ରେ ତାଙ୍କର ଔପନ୍ୟାସିକ ଦୃଷ୍ଟିଭଙ୍ଗୀ ତାଙ୍କୁ ଜଣେ ସଫଳ ଔପନ୍ୟାସିକ ହେବାର ଗୌରବ ତଥା ପ୍ରତିଶ୍ରୁତି ଆଣିଦେଇପାରିଥିଲା । ଏହି ଉପନ୍ୟାସ ରଚନାର ଖୁବ୍ ସ୍ୱଳ୍ପସମୟ ମଧ୍ୟରେ ସେ ବେଶ୍ ଜନପ୍ରିୟ ହୋଇପାରିଥିଲେ । ତାଙ୍କର ଗଳ୍ପ ସୃଷ୍ଟି ଅପେକ୍ଷା ତାଙ୍କ ଉପନ୍ୟାସ ସୃଷ୍ଟି ଅଧିକ ପ୍ରାଣବନ୍ତ ଓ ହୃଦୟସ୍ପର୍ଶୀ ମନେହୁଏ । ଜୀବନର ଗଭୀରତମ ତତ୍ତ୍ୱକୁ ସେ ତାଙ୍କର ପ୍ରତ୍ୟେକ ଉପନ୍ୟାସରେ ରୂପ ଦେଇଛନ୍ତି । ଜଣେ ସଂସ୍କାର ପ୍ରୟାସୀ ସ୍ରଷ୍ଟାର ତୀବ୍ର ସଂସ୍କାରବୋଧ ତାଙ୍କର ଉପନ୍ୟାସ ମାନଙ୍କ ମଧ୍ୟରେ ମଧ୍ୟ ସ୍ପଷ୍ଟ ପ୍ରତିଫଳିତ ହୋଇଛି । ସେ ଭାଗ୍ୟ, ପୂର୍ବଜନ୍ମର ଫଳ, ଅଭିଶାପ, ଆତ୍ମା ଆଦି ଉପରେ ଗଭୀର ବିଶ୍ୱାସୀ ଥିଲେ; ଯାହାର ନିଚ୍ଛକ ପ୍ରତିଫଳନ ତାଙ୍କର 'The Scarlet letter' ଓ 'The House of the Seven Gables' ଉପନ୍ୟାସରେ ଘଟିଛି । ହଥର୍ଣ୍ଣ ଅତିବାସ୍ତବ ଓ ବସ୍ତୁତଭାବେ ଆମେରିକୀୟ ସମାଜର ପୁଣ୍ୟ ଜୀବନ ଧାରଣ ପ୍ରଣାଳୀ ଓ ରକ୍ଷଣଶୀଳତାର ନିର୍ମମ ଦୃଶ୍ୟକୁ ମଧ୍ୟ ତାଙ୍କ ଉପନ୍ୟାସରେ ମର୍ମସ୍ପର୍ଶୀଭାବେ ଆଙ୍କିପାରିଛନ୍ତି । ଅତଏବ ଏହି ପ୍ରସଙ୍ଗରେ ଏକଥା କୁହାଯାଇପାରେ ଯେ, ହଥର୍ଣ୍ଣ ତାଙ୍କ ଗଳ୍ପରେ ଯେଉଁ ଉନ୍ମେଷମୟ ପ୍ରତିଭାର ପରିଚୟ ପ୍ରଦାନ କରିଥିଲେ, ତାହାର ସମୋତ୍ତରଣ ଘଟାଇଲେ ତାଙ୍କ ଉପନ୍ୟାସ ମାଳାରେ । ସେଥିପାଇଁ ହଥର୍ଣ୍ଣ ଜଣେ ଗାଳ୍ପିକ ଅପେକ୍ଷା ଜଣେ ସଫଳ ଔପନ୍ୟାସିକଭାବେ ଆମେରିକୀୟ ଉପନ୍ୟାସ ଜଗତରେ ପରିଚିତ ।

ହଥର୍ଣ୍ଣ ତାଙ୍କ ଜୀବଦ୍ଦଶାରେ ମାତ୍ର ଚାରିଗୋଟି ପୂର୍ଣ୍ଣାଙ୍ଗ ଉପନ୍ୟାସ ରଚନା କରିଛନ୍ତି । ଜୀବନର ଅନ୍ତିମ ୧୪ ବର୍ଷ ମଧ୍ୟରେ (୧୮୫୦-୧୮୬୪) ସେ ଏହି ଯେଉଁ ୪ଟି ଉପନ୍ୟାସ ରଚନା କରିଯାଇଛନ୍ତି ତାହା ଆମେରିକୀୟ ଉପନ୍ୟାସ ଜଗତରେ ଅନନ୍ୟ । ଏହି ୪ଟି ଉପନ୍ୟାସ ହେଲା—'(୧) The Scarlet letter' (18[illegible]0) (୨) The house of the seven Gables (1851), (୩) the Blithedale Romance (1852) (୪) marble Foun (1860) ହଥର୍ଣ୍ଣ ତାଙ୍କ ଜୀବନର ଅନ୍ତିମ କାଳରେ ତୀବ୍ର ମାନସିକ ଜ୍ୱାଳାରେ ଜଳୁଥିଲାବେଳେ ଏବଂ ନିଃସଙ୍ଗତାର ପରିଧିରେ ନିଜର ପ୍ରିୟତମା ପତ୍ନୀ ସୋଫିଆ ଥାଇ ବି ଏକୁଟିଆ ଏକ ଅସମ୍ଭବ ଖିଆଲରେ ଛଟପଟ ହେଉଥିବା ବେଳେ ଏହି ୪ଟି ଉପନ୍ୟାସ ରଚନା କରିଥିଲେ । ତେଣୁ ନିଜ ଜୀବନର ଅନେକ ଘଟଣା, ଅନେକ ଅଂଶ ସେ ନିଜର ଜ୍ଞାତ ଓ ଅଜ୍ଞାତସାରରେ ଏହି ଉପନ୍ୟାସ ମାନଙ୍କରେ ଅବତାରଣା କରିଯାଇଛନ୍ତି । ମାନସିକ ଦାବାନଳରେ ବିବ୍ରତ ତଥା ବ୍ୟତିବ୍ୟସ୍ତ ହଥର୍ଣ୍ଣ ୧୮୫୦, ୫୧, ୫୨ ମସିହାରେ ନିରବଚ୍ଛିନ୍ନଭାବେ ୩ଟି ଉପନ୍ୟାସ ରଚନା କଲାବେଳେ ତାଙ୍କର ଚତୁର୍ଥ ଉପନ୍ୟାସଟିକୁ ତୃତୀୟ ଉପନ୍ୟାସ ରଚନାର ଦୀର୍ଘ ଆଠବର୍ଷ ପରେ

ରଚନା କରିଥିଲେ । ଏହି ଆଠବର୍ଷ ମଧ୍ୟରେ ହଥର୍ଣ୍ଣ ନାନାଦି ପାରିବାରିକ ଜଞ୍ଜାଳ ତଥା ଆପଣାର ଇଟାଲୀ ଭ୍ରମଣରେ ବ୍ୟସ୍ତ ଥିଲେ ବୋଲି ତାଙ୍କର ସମାଲୋଚକମାନେ ମତବ୍ୟକ୍ତ କରୁଥିଲେ ବି ଏକଥା ନିଶ୍ଚିତ ସତ୍ୟ ଯେ, ହଥର୍ଣ୍ଣ ତାଙ୍କ ନିଃସଙ୍ଗ ଜୀବନଯନ୍ତ୍ରଣାର ବୃତ୍ତରେ ଛଟପଟ ହୋଇ ଏତେବେଳେ କୌଣସି କଥାରେ ଯଥାଯଥ ମନଯୋଗ କରିପାରି ନଥିଲେ; ଯେଉଁଥିପାଇଁ ୧୮୫୬ ମସିହାରୁ ତାଙ୍କ ସୃଜନଶୀଳ ପ୍ରତିଭା କ୍ରମଶଃ ଅବକ୍ଷୟ ପଥରେହିଁ ଆଗେଇ ଯାଇଥିଲା । କିନ୍ତୁ ବୁଦ୍ଧିମାନ୍ ହଥର୍ଣ୍ଣ ଏହି ଅବକ୍ଷୟକୁ ନାନାଭାବେ ମୁକାବିଲା କରିଥିଲେ, ଜୀବଦ୍ଦଶାର ଶେଷମୁହୂର୍ତ୍ତ (୧୮୬୪) ପର୍ଯ୍ୟନ୍ତ । କିନ୍ତୁ ନାନା ଅଭାବ ଅସୁବିଧାରେ, ନାନା ଚିନ୍ତା ଚେତନାରେ, ନାନା ବ୍ୟସ୍ତ ବିବ୍ରତଭାବ ହେତୁ ସେ ଏଥିରେ ଅସଫଳ ହେଲେ । ତାଙ୍କର ଅନେକ ଅସମାପ୍ତ ପାଣ୍ଡୁଲିପି ସେହି ଅବସ୍ଥାରେ ରହିଗଲା; କିନ୍ତୁ ହଥର୍ଣ୍ଣ ମୃତ୍ୟୁକାଳ ପର୍ଯ୍ୟନ୍ତ ଯେ ଏହା ସମାପନରେ ବ୍ରତୀ ଥିଲେ ତାହା ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ।

ପ୍ରତିଭାଧର ହଥର୍ଣ୍ଣଙ୍କ ଶିଳ୍ପୀପ୍ରାଣ ମଣିଷ ସମାଜ ସହ ଏପରି ଅନ୍ତରଙ୍ଗ ଥିଲା (ଯଦିଓ ସେ ନିଜକୁ ନିଃସଙ୍ଗ ମନେକରୁଥିଲେ) ଯେଉଁଥିପାଇଁ ତାଙ୍କ ଉପନ୍ୟାସମାଳା ଖାଲି ମଣିଷର କାହାଣୀ ଏବଂ ଅଗ୍ନିଗର୍ଭ କାହାଣୀହିଁ କହିଯାଇଛି । ଏହା ହଥର୍ଣ୍ଣଙ୍କ ଅନୁଭବୀ ପ୍ରାଣର ପରିଚୟ ଓ ଦରଦୀ ମନର ଅଭିବ୍ୟକ୍ତି ବ୍ୟତୀତ ଅନ୍ୟ କିଛି ନୁହେଁ । ଆମେ ତାଙ୍କୁହିଁ ଭେଟିବା ତାଙ୍କରି—(୧) The Scarlet letter (1850)

(୨) The House of the Seven Gables (1851)
(୩) The Blithedale Romance (1852) ଓ
(୪) The marble Foun (1860) ଉପନ୍ୟାସରେ ।

## The Scarlet letter-1850 :

ହଥର୍ଣ୍ଣଙ୍କ ଔପନ୍ୟାସିକ ଜୀବନର ଅଦ୍ୟ ବିକଚ ବିକାଶ ହେଉଛି ତାଙ୍କର ପ୍ରଥମ ତଥା ଶ୍ରେଷ୍ଠ ଉପନ୍ୟାସ 'The Scarlet Letter" । ୧୮୫୦ ମସିହାରେ ଏହାର ପ୍ରକାଶନ ଘଟେ । ଏଥିରେ ହଥର୍ଣ୍ଣ କ୍ଷୟିଷ୍ଣୁଶୀଳ ଆମେରିକୀୟ ଜନଜୀବନର ଚିତ୍ର, ଅବୈଧ ପ୍ରଣୟ ଓ ତଜ୍ଜନିତ ଶାସ୍ତି, କ୍ଷମତାର ଅପ ବ୍ୟବହାର ଓ ନିର୍ବାହ ସ୍ୱାମୀର ପ୍ରଚଣ୍ଡ ପ୍ରତି-ଶୋଧ ଲିପ୍ସାକୁ ଅତି ହୃଦୟସ୍ପର୍ଶୀ ଭାବେ ଔପନ୍ୟାସିକ ହଥର୍ଣ୍ଣ ପ୍ରକାଶ କରିଦେଇଛନ୍ତି । ଉପନ୍ୟାସରେ ଜଣେ ରାଜନୈତିକ ନେତା କିପରି ବ୍ୟଭିଚାର ତଥା ଗୁପ୍ତ ପ୍ରଣୟରେ ଜଡ଼ିତ ହୋଇପାରେ ଏବଂ ଜଣେ ବିବାହିତା ତରୁଣୀ କିପରି ତାଙ୍କୁ ନିଜର ପ୍ରେମିକ ଭାବରେ ଗ୍ରହଣକରି ନିଜ ସ୍ୱାମୀର ଅନୁପସ୍ଥିତିରେ ଏକ ଅବୈଧ ସନ୍ତାନର ଜନନୀ ହେବାକୁ ବାଧ୍ୟ

କରିପାରେ ଓ ତଜ୍ଜନିତ ଦଣ୍ଡକୁ ମଧ୍ୟ ସ୍ୱୀକାର କରିନେଇପାରେ, ତାହାର ଏକ ମର୍ମନ୍ତୁଦ ଚିତ୍ର ହଥର୍ଣ୍ଣ ପ୍ରଦାନ କରିଛନ୍ତି । ଏହି ଉପନ୍ୟାସଟି ବେଶ୍ କରୁଣାତ୍ମକ । ସପ୍ତଦଶ ଶତାବ୍ଦୀର ଆମେରିକୀୟ ରକ୍ଷଣଶୀଳ ସମାଜର ନିଷ୍ଠୁର ନିର୍ଯ୍ୟାତନା ଓ ବ୍ୟଭିଚାରକୁ ରୂପ ଦେବାକୁ ଯାଇଁ ହଥର୍ଣ୍ଣ ଏଥିରେ ବୋଷ୍ଟନ ସହରର ତତ୍କାଳୀନ ଦୁର୍ନୀତିଗ୍ରସ୍ତ, ବ୍ୟଭିଚାର ଜଡ଼ିତ, ଲମ୍ପଟ ଶାସକ, ବିଚାରକ ଓ ଧର୍ମୀୟ ବୃତ୍ତିଧାରୀ ଗୋଷ୍ଠୀକୁ ଛିନ୍ନ ଦେଇଛନ୍ତି ।

[ଅଧ୍ୟାୟ: ପଞ୍ଚମରେ ଏହି ଉପନ୍ୟାସ ସଂପର୍କରେ ସବିଶେଷ ଆଲୋଚନା ହେବାକୁ ଥିବାରୁ ଏଠାରେ ତା'ର ସୂଚନା ମାତ୍ର ଦିଆଗଲା ।]

**The House of the Seven Gables—1851 :**

ଏହା ହଥର୍ଣ୍ଣଙ୍କର ଦ୍ୱିତୀୟ ଉପନ୍ୟାସ । Scarlet Letter'ର ପ୍ରକାଶନ ପରେ ୧୮୫୧ ମସିହାରେ ଏହାକୁ ହଥର୍ଣ୍ଣ ପ୍ରକାଶ କରିଥିଲେ । ସମ୍ପତ୍ତି ଓ ମାଟିର ମୋହ କିପରି ମଣିଷର ମାନବିକତାକୁ ଲୋପକରି ତାକୁ ହିଂସ୍ର କରାଏ ତାହା ଏହି ଉପନ୍ୟାସରେ ବର୍ଣ୍ଣିତ । ସ୍ୱକର୍ମ ଅର୍ଜିତ ଫଳ ଉପରେ ହଥର୍ଣ୍ଣ ଏହି ଉପନ୍ୟାସକୁ ବେଶ୍ ଯୁକ୍ତିଯୁକ୍ତ ଭାବେ ବର୍ଣ୍ଣନା କରିଅଛନ୍ତି । ହଥର୍ଣ୍ଣଙ୍କ ସଂସ୍କାରବାଦୀ ମନୋବୃତ୍ତି ଏହି ଉପନ୍ୟାସଟିରେ ଭିନ୍ନଭାବେ ପରିବେଶିତ ହୋଇଛି । ଭୂମି କୈନ୍ଦ୍ରିକ ଚିନ୍ତାଧାରା ଓ ତଜ୍ଜନିତ ପରିଣାମରେ ଏହି ଉପନ୍ୟାସର କଳେବର ବେଶ୍ ଦ୍ୱନ୍ଦ୍ୱଜଡ଼ିତ ତଥା ହୃଦସ୍ପର୍ଶୀ ହୋଇପାରିଛି । ଜମିଜମା ଗଣ୍ଡଗୋଳରୁ ଉପନ୍ୟାସଟିର ଆରମ୍ଭ । ଏହି ଉପନ୍ୟାସର ଏକ ନିରୀହ ଚରିତ୍ର ମାଥିଉ ମାଉଲେଙ୍କ ଶ୍ରେଷ୍ଠ ଜମିଖଣ୍ଡିକୁ କୌଶଳକ୍ରମେ ପ୍ରତିପତ୍ତିଶାଳୀ ପିନ୍‌ଚନ୍ ପରିବାରର କର୍ଣ୍ଣେଲ୍ ପିନ୍‌ଚନ୍ ହାତକୁ ନେଇଯାଇଛନ୍ତି । ଏଥିପାଇଁ ସେ ମାଉଲେଙ୍କ ବିରୁଦ୍ଧରେ ମିଥ୍ୟା ଅଭିଯୋଗ ଆଣି ତାଙ୍କୁ ଫାଶୀଦଣ୍ଡରେ ଦଣ୍ଡିତ କରାଇଛନ୍ତି । କିନ୍ତୁ ମାଉଲେଙ୍କ ପ୍ରାଣର ସର୍ବଶ୍ରେଷ୍ଠ ସମ୍ପଦ ଏହି କ୍ଷୁଦ୍ର ଜମି ଖଣ୍ଡିକୁ ନେଇ ଉପନ୍ୟାସରେ ନାନା ଅସ୍ୱାଭାବିକ ଘଟଣାମାନ ଘଟିଯାଇଛି । ମାଉଲେଙ୍କ ଅତୃପ୍ତ ଆତ୍ମା ଯେ ଏ ଖେଳ ତାହା ଔପନ୍ୟାସିକ ହଥର୍ଣ୍ଣ ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି । ତେଣୁ ଏହି ଉପନ୍ୟାସରେ ହଥର୍ଣ୍ଣ ମୃତବ୍ୟକ୍ତିର ଆତ୍ମା, କର୍ମଫଳ ଓ ଭାଗ୍ୟବାଦରେ ଯେ ବିଶ୍ୱାସୀ ତାହାର ସ୍ପଷ୍ଟ ଚିତ୍ର ଉଦ୍‌ଭାସିତ ହୋଇଉଠିଛି । ଆମ ସାହିତ୍ୟର ଔପନ୍ୟାସିକ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ତଥା ଗୋପୀନାଥଙ୍କ 'ପରଜା' ଉପନ୍ୟାସ ସହ ଏହି ଉପନ୍ୟାସଟିର ବହୁଳ ସାମ୍ୟ ପରିଲକ୍ଷିତ ହୁଏ । ('ଅଧ୍ୟାୟ : ଚତୁର୍ଥ'ରେ ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ' ସହ ହଥର୍ଣ୍ଣଙ୍କ ଏହି ଉପନ୍ୟାସଟିର ତୁଳନାତ୍ମକ ବିଚାର କରାଯିବାକୁ ଥିବାରୁ ଏଠାରେ ଏହି ଉପନ୍ୟାସ ସମ୍ପର୍କରେ ଏକ ସଂକ୍ଷିପ୍ତ ସୂଚନା ମାତ୍ର ଦିଆଯାଇଛି । )

**The Blithedale Romance-1852 :**

ହଥର୍ଣ୍ଣଙ୍କ ତୃତୀୟ ଉପନ୍ୟାସ ଭାବେ ପରିଚିତ ଏହି ଉପନ୍ୟାସଟି ହଥର୍ଣ୍ଣଙ୍କର ଏକଦା କର୍ମକ୍ଷେତ୍ର 'Brook firm'ର ଅଭିଜ୍ଞତାକୁ ନେଇ ରଚିତ ମନ୍ତ୍ର । ଏହି

ଉପନ୍ୟାସରେ ହଥର୍ଣ୍ଣଙ୍କ ସାମାଜିକ ସଂସ୍କାର ପ୍ରସ୍ତାବ କୂଳ ଲଙ୍ଘନ କରିଥିଲେ ବି ସଫଳତାର ବେଳାଭୂମିକୁ ଯଥାର୍ଥଭାବେ ଏହା ସ୍ପର୍ଶ କରିପାରି ନାହିଁ ବୋଲି କହିବାକୁ ହେବ । (ଏହି ଉପନ୍ୟାସଟି ସମ୍ପର୍କରେ 'ଅଧ୍ୟାୟ ପଞ୍ଚମ'ରେ ବିସ୍ତୃତଭାବେ ଆଲୋଚନା କରାଯିବାକୁ ଥିବାରୁ ଏଠାରେ ତାର ସଂକ୍ଷିପ୍ତ ସୂଚନା ମାତ୍ର ଦିଆଗଲା । )

**The Marble Faun-1860 :**

ହଥର୍ଣ୍ଣଙ୍କ ଶେଷ ଓ ଚତୁର୍ଥ ଉପନ୍ୟାସଭାବେ ଏହି ଉପନ୍ୟାସଟି ୧୮୬୦ ମସିହାରେ ପ୍ରକାଶିତ ହୋଇଥିଲା । ହଥର୍ଣ୍ଣ ୧୮୫୨ରୁ ୧୮୬୦ ମସିହା ମଧ୍ୟରେ ଆପଣାର ଜଣେ ଘନିଷ୍ଠବନ୍ଧୁଙ୍କ ପାଇଁ ରାଜନୀତିରେ ସହଯୋଗ ତଥା ଇଟାଲୀ ଭ୍ରମଣ କରିବାର ସୁଯୋଗ ପାଇଥିଲେ । ତାଙ୍କର ଏହି ଭ୍ରମଣ ଜନିତ ଅଭିଜ୍ଞତା ବେଶ୍ ମନୋଜ୍ଞଭାବେ ଏହି 'Marble Faun' ଉପନ୍ୟାସର କାହାଣୀରେ କିୟଦଂଶ ରୂପଲାଭ କରିଛି । ଇଟାଲୀୟ ଜନଜୀବନର ଚିତ୍ର, କଳା, ସଂସ୍କୃତିର ଏକ ପୂର୍ଣ୍ଣ ଐତିହାସିକ ଚିତ୍ର ଏହି ଉପନ୍ୟାସରେ ବର୍ଣ୍ଣିତ । ଉକ୍ତ ଉପନ୍ୟାସଟି ହଥର୍ଣ୍ଣଙ୍କୁ ଜଣେ ଐତିହ୍ୟବାଦୀ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଔପନ୍ୟାସିକଭାବେ ପରିଚିତ କରାଇପାରିଥିଲା । (ଏ ସଂପର୍କରେ ବିସ୍ତୃତଭାବେ 'ପଞ୍ଚମ ଅଧ୍ୟାୟ'ରେ ଆଲୋଚନା ହେବାକୁ ଥିବାରୁ ପ୍ରସଙ୍ଗ ଅନୁରୋଧରେ ଏଠାରେ ଏହାର ସଂକ୍ଷିପ୍ତ ସୂଚନା ଦିଆଗଲା । )

ହଥର୍ଣ୍ଣ ତାଙ୍କ ସାହିତ୍ୟିକ ଜୀବନରେ ଏକାଧାରରେ ଜଣେ ପ୍ରାବନ୍ଧିକ, ଶିଶୁସାହିତ୍ୟିକ, ଗାଳ୍ପିକ ଓ ଔପନ୍ୟାସିକ ହେବାର ଗୌରବ ଅର୍ଜନ କରିଛନ୍ତି । କିନ୍ତୁ ଏହା ମଧ୍ୟରୁ ଶେଷୋକ୍ତ ଦୁଇଟି ବିଭାବ ତାଙ୍କ ସାହିତ୍ୟିକ ଜୀବନର ଉତ୍କୃଷ୍ଟ ପରିଚାୟକ । ଆଜି ଯଦି ହଥର୍ଣ୍ଣ ଆମ୍ଭମାନଙ୍କ ନିକଟରେ ପରିଚିତ ହୋଇଥାନ୍ତି, ତେବେ କେବଳ ତାଙ୍କର ଗଳ୍ପ ଓ ଉପନ୍ୟାସ ପାଇଁ । ଔପନ୍ୟାସିକ ହଥର୍ଣ୍ଣଙ୍କ ପରି ତାଙ୍କର ଅନେକ ସମସାମୟିକ ସେତେବେଳେ ସାହିତ୍ୟ ରଚନାରେ ବ୍ରତୀଥିଲେ ବି ହଥର୍ଣ୍ଣ ତାଙ୍କର ମାର୍ଜିତ ରୁଚିବୋଧ, ଅଭିନବ ଶୈଳୀ, ଉପସ୍ଥାପନାର ମନୋଜ୍ଞ ଚାତୁରୀ ପାଇଁ ଆମେରିକୀୟ ସାହିତ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ।

ହଥର୍ଣ୍ଣଙ୍କର ବହୁ ଅସମାପ୍ତ ଲେଖାମାନ ରହିଯାଇଥିବା କଥା ତାଙ୍କ ସମାଲୋଚକମାନେ ପ୍ରକାଶ କରନ୍ତି । ୧୮୬୦ ମସିହାରେ ହଥର୍ଣ୍ଣ ତାଙ୍କର ଚତୁର୍ଥ ଉପନ୍ୟାସ 'The Marble Faun'କୁ ସମାପ୍ତ କରିସାରିବା ପରେ ତାଙ୍କର ଅନ୍ୟାନ୍ୟ ଅସମାପ୍ତ ଲେଖାକୁ ସମାପ୍ତ କରିବା ପାଇଁ ଚାହିଁଥିଲେ; ମାତ୍ର ପାରିବାରିକ ତଥା ନାନା ବ୍ୟକ୍ତିଗତ ସମସ୍ୟାର ସମ୍ମୁଖୀନ ହୋଇ ସେ ଏହା କରିପାରିନଥିଲେ । ଇଟାଲୀରୁ ସେ ଆମେରିକା ପ୍ରତ୍ୟାବର୍ତ୍ତନ କରିବା ପରେ କ୍ରମାଗତ ଭାବରେ ତାଙ୍କର ସ୍ୱାସ୍ଥ୍ୟହାନି ହେଲା ଏବଂ ଇଟାଲୀରେ ଥିବା

ତାଙ୍କର ବଡ଼ଝିଅ ଉନା (una)ର ଅସୁସ୍ଥତା ତାଙ୍କୁ ବିଶେଷ କରି ବିଚଳିତ କରିପକାଇ-ଥିଲା । ପୁଣି ଆମେରିକାକୁ ଫେରିବା ପରେ ୧୮୬୧ ମସିହାର ଗୃହଯୁଦ୍ଧ ତାଙ୍କ ମନରେ ଖୁବ୍ ବିଷାଦଭାବ ସୃଷ୍ଟି କରିଥିଲା । ସବୁବେଳେ, ସବୁଆଡ଼େ ଯେପରି ସେ ଧ୍ୱଂସର ପଦଧ୍ୱନି ଶୁଣିବାକୁ ପାଉଥିଲେ । ଏକ ଅଜଣା ଆତଙ୍କରେ ସେ ଶିହରି ଉଠୁଥିଲେ ଏହିସବୁ ଚିନ୍ତା, ବ୍ୟାକୁଳତା ଓ ଆଶଙ୍କା ହେତୁ ସେ ତାଙ୍କର ନାନା ଅସମାପ୍ତ ଲେଖାକୁ ସମାପ୍ତ କରିପାରି-ନଥିଲେ, କିନ୍ତୁ ତାଙ୍କ ମୃତ୍ୟୁ ପୂର୍ବରୁ ସେ ଏସବୁକୁ ସମାପନ କରିଯିବାକୁ ଚାହିଁଥିଲେ । ମାତ୍ର ଭାଗ୍ୟର ବିଡ଼ମ୍ବନା ହେତୁ ୧୮୬୪ ମସିହାରେ ତାଙ୍କର ଅକାଳ ବିୟୋଗ ହୋଇଗଲା । ସେ ଆମେରିକୀୟ ସାହିତ୍ୟରେ ଏକ ଅଭାବ ହୋଇ ରହିଗଲେ ଚିରଦିନ ପାଇଁ ।

ଏହି ଏକନିଷ୍ଠ ସାଧକ, ପ୍ରତିଭାବାନ୍ ଔପନ୍ୟାସିକ ହଥର୍ଣ୍ଣଙ୍କ କାଳ, ଜୀବନୀ ସହ ଆମ ଉପନ୍ୟାସ ଜଗତର ଶ୍ରେଷ୍ଠ ଔପନ୍ୟାସିକ ଫକୀରମୋହନଙ୍କ କାଳ ତଥା ଜୀବନୀର ଯେପରି ଅପୂର୍ବ ସାମ୍ୟ ରହିଛି ( ଯାହାକି ପୂର୍ବରୁ ଆଲୋଚନା କରାଯାଇଛି) ସେହିପରି ଉଭୟ ଔପନ୍ୟାସିକଙ୍କ ସାହିତ୍ୟିକ ଜୀବନରେ ମଧ୍ୟ ଅନେକ ସାମ୍ୟଥିବାର ପରିଲକ୍ଷିତ ହୁଏ । ଏହି ସାମ୍ୟକୁ ଦର୍ଶାଇବା ପାଇଁ ଅର୍ଥାତ୍ ଉଭୟଙ୍କ ସାହିତ୍ୟିକ ଜୀବନର ତୁଳନାତ୍ମକ ବିଚାର ପାଇଁ ଏହି ପରିପ୍ରେକ୍ଷୀରେ 'ଫକୀରମୋହନ ଓ ତାଙ୍କ ସାହିତ୍ୟ' ଆମର ଆଲୋଚ୍ୟ ।

**(ଖ) ଫକୀର ମୋହନ ଓ ତାଙ୍କ ସାହିତ୍ୟ (୧୮୬୪ରୁ ୧୯୧୮)**
**('ଭଜପୁରର ଇତିହାସ' ରଚନାରୁ 'ଆତ୍ମଜୀବନ ଚରିତ' ରଚନା ପର୍ଯ୍ୟନ୍ତ)**

"ଆମେ ଓଡ଼ିଆମାନେ ଆଜି ଯେଉଁ ଫକୀରମୋହନଙ୍କୁ ପୂଜାକରୁଛୁ, ସତାବନ ବର୍ଷ ବୟସରେ ଦେବାଜୀ-ମାନେଜରୀରୁ ବିଦାୟନେଇ ଅବସରପ୍ରାପ୍ତ ହେଲା ପର୍ଯ୍ୟନ୍ତ ମଧ୍ୟ ସେ ଫକୀରମୋହନର ଆତ୍ମବୃଦ୍ଧି ହୋଇନଥିଲା କହିଲେ ଚଳେ । କୃଷ୍ଣାକୁମାରୀଙ୍କର ଆବିର୍ଭାବ ଓ ତିରୋଭାବ ରୂପକ ଦୁଇଟି ବିନ୍ଦୁମଧ୍ୟବର୍ତ୍ତୀ କାଳଟି ହିଁ ଫକୀରମୋହନଙ୍କର ପାର୍ଥିବ ଉନ୍ନତିର କାଳ । ତା'ପରେ ସେ ପୁଣି ଅର୍ଥକଷ୍ଟ ଓ ମାନସିକ ଦାବ-ଦହନ ଭିତର ଦେଇ ଦୀର୍ଘ ପଚିଶବର୍ଷକାଳ ବଞ୍ଚିଛନ୍ତି । ପରମ ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ଏହି ଦାବଦଗ୍ଧ ପାଞ୍ଚ-ଶତାବ୍ଦୀ ହିଁ ଥିଲା ଏହି ଆଧୁନିକ 'ଉତ୍କଳ-ସରସ୍ୱତୀ'ର ଉଦାର ବୀଣା ବାଦନର ସମୟ ଏବଂ ଏହି ମହାନ୍ ସାରସ୍ୱତ ସଙ୍ଗୀତ ପାଇଁ ମଧ୍ୟ ଅନାଲୋକିତା କୃଷ୍ଣା-କୁମାରୀ ହିଁ ଯେ ଅଜ୍ଞାତସାରରେ ସକଳ ଆୟୋଜନ କରିଯାଇଥିଲେ, ତାହା ଫକୀର-ମୋହନଙ୍କ ନିଜ ବାକ୍ୟରେ ହିଁ ପାଠକ-ପାଠିକା ଶୁଣନ୍ତୁ ଏବଂ ତାଙ୍କ ଜୀବନର ଚରମ ସାର୍ଥକତା କେଉଁଠି ତାହା ଉତ୍ତମ ରୂପେ ଉପଲବ୍ଧି କରନ୍ତୁ ।"

(ସରସ୍ୱତୀ ଫକୀରମୋହନ ପୃ ୧୬୦)

ଫକୀରମୋହନ କହନ୍ତି—

"ମୁଁ ଯେ କବିତା ଲେଖୁଛି, ସେଥିରେ ଅନ୍ୟତମ କାରଣ, ମୋର ସ୍ତ୍ରୀ । ସେ ମୋ କବିତା ଶୁଣିବାକୁ ବଡ଼ ଭଲ ପାଉଥିଲେ । ପ୍ରଥମେ ତାଙ୍କ ମନୋରଞ୍ଜନ ସକାଶେ ମୁଁ କବିତା ଲେଖୁଥିଲି । ତାଙ୍କର ମୃତ୍ୟୁପରେ, ମୋର ବ୍ୟାକୁଳତା ନିବାରଣ ନିମନ୍ତେ ହିଁ, ମୁଁ କବିତା ଲେଖେ ।"

× × ×

ମୋର ଶୈଶବାବସ୍ଥାରେ ମାତାପିତା ଚାଲିଯାଇଥିଲେ । ମୋ ଜୀବନଧାରିଣୀ, ରକ୍ଷାକାରିଣୀ ଠାକୁର ମା' ମଧ୍ୟ ମୋତେ ପରିତ୍ୟାଗ କରି ଚାଲିଯାଇଥିଲେ । ଜ୍ଞାତି, ବନ୍ଧୁମାନଙ୍କର ମୋ ପ୍ରତି କିଛିମାତ୍ର ସହାନୁଭୂତି ନଥିଲା । ମୋର ଦ୍ୱିତୀୟ ବିବାହ ସମୟରେ ମୋର ବୟସ ଊନତ୍ରିଂଶ ବର୍ଷ ଏବଂ କୃଷ୍ଣା କୁମାରୀଙ୍କ ବୟସ ବାରବର୍ଷ ମାତ୍ର । ସେହି ଅଳ୍ପବୟସରୁ ସେ ମନପ୍ରାଣ ଦେଇ ମୋର ମଙ୍ଗଳ କାମନା କରିଆସୁଥିଲେ । ତାଙ୍କର ପୁଣ୍ୟ ସ୍ମୃତି ଅଦ୍ୟାବଧି ହୃଦୟରେ ପୋଷଣ କରି ରଖିଅଛି । ମୋର ସ୍ତ୍ରୀ ବିୟୋଗର ଆଜକୁ ଚବିଶବର୍ଷ ଗତ ହୋଇଯାଇଛି । ବର୍ତ୍ତମାନ ଦେଖୁଛି, ମୋର ହୃଦୟ ଶୂନ୍ୟମୟ । ମୋ ମନବେଦନା ଜଣାଇବାକୁ ଜଗତରେ ଆଉ କେହି ନାହିଁ । ମୋ ହୃଦୟରେ ଦାରୁଣ କଷ୍ଟ ଜାତ ହେଲେ ଉଦ୍ୟାନସ୍ଥ ତାଙ୍କ ସମାଧି ନିକଟରେ ବସି ମୁଁ ସାନ୍ତ୍ୱନା ଲାଭ କରେ ।"

(ଆତ୍ମଜୀବନ ଚରିତ, ପୃ-୩୨)

ଏଥିରୁ ଜଣାପଡ଼େ ଫକୀରମୋହନଙ୍କର ଯାହା ଶ୍ରେଷ୍ଠ ସାରସ୍ୱତ ସଂପଦ ସେସବୁ ଆତ୍ମପ୍ରକାଶ ଲଭିଛି ତାଙ୍କ ଜୀବନର ଉତ୍ତରାୟଣରେ । କର୍ମକ୍ଷେତ୍ରରେ ନାନା ଜଞ୍ଜାଳ ତଥା ସାଂସାରିକ ଜୀବନର ସଂପୂର୍ଣ୍ଣ ପୂର୍ଣ୍ଣଚ୍ଛେଦ ପରେ ସେ ନିଜକୁ ଏକନିଷ୍ଠ ଭାବେ ସାହିତ୍ୟ ସାଧନାରେ ନିୟୋଜିତ କରିଦେଇଥିଲେ । ଯଦିଓ ତାଙ୍କର ପୁତ୍ର ମୋହିନୀମୋହନ ତାଙ୍କ କରିର ପ୍ରତିପକ୍ଷଭାବେ ତରୁଣାବସ୍ଥାରେ ଉପନୀତ ହୋଇଥିଲେ, କିନ୍ତୁ ସେ ଥିଲେ ସମ୍ପୂର୍ଣ୍ଣଭାବେ ଔଚିତ୍ୟ ସଂପନ୍ନ ଓ ପିତୃବାକ୍ୟ ଅପ୍ରତିପାଳିତ ଅବାଧ ସନ୍ତାନ । ପୁତ୍ରର ଏହି ଯଥାଚାର ବିରୁଦ୍ଧରେ ବୃଦ୍ଧ ଫକୀରମୋହନ ସ୍ୱର ଉଠାଇବାକୁ ଆଉ ସାହସ ନକରି ତଜ୍ଜନିତ ନୀଂସଙ୍ଗତା ଓ ତୀବ୍ର ମାନସିକ ଦାବ-ଦହନକୁ ତାଙ୍କ ସାରସ୍ୱତ ସୃଷ୍ଟିରେ, ନାନା ପ୍ରସଙ୍ଗରେ ଉତ୍ଥାପିତ କରିଯାଇଛନ୍ତି । ଏହିପରି ଯନ୍ତ୍ରଣା ଜର୍ଜରିତ ମାନସିକ ବେଦନାରେ ଫକୀରମୋହନ ବୃଦ୍ଧ ହୋଇଯାଇଥିଲେ ସତ୍ୟ; କିନ୍ତୁ ସାହିତ୍ୟର ଉଚ୍ଛଳ-ସ୍ରୋତରେ ସେ ନିମଜ୍ଜିତ ହୋଇ-ଯାଉଥିଲାବେଳେ ତାରୁଣ୍ୟର ମଧୁର ଫେଳବ ତାଙ୍କୁ ଭାବବିହ୍ୱଳ କରିଦେଉଥିବାର ଅନୁଭୂତ ହୁଏ । ଯଦି ସେ ମାନସିକ ବେଦନା ତଥା ବିକାରଗ୍ରସ୍ତ ଓ ତଜ୍ଜନିତ ବ୍ୟାକୁଳ ହୃଦୟନେଇ ଚିରଦିନ ଜୀବନ ଅତିବାହିତ କରିଥା'ନ୍ତେ, ତେବେ ତାଙ୍କ ଜୀବନରେ

ସାହିତ୍ୟିକ ହେବାର ସ୍ୱପ୍ନ ଏକ ଦୁଃସ୍ୱପ୍ନ ହିଁ ହୋଇ ରହିଯାଇଥା'ନ୍ତା କହିଲେ ଚଳେ । ଅତଏବ ବ୍ୟକ୍ତିଗତ ଜୀବନ ଯନ୍ତ୍ରଣାର ଖୋଳପା ଭିତ୍ରେ ଫକୀରମୋହନଙ୍କ ସାହିତ୍ୟ ଆତ୍ମା ତାଙ୍କ ସୃଜନଶୀଳ ପୃଥିବୀ ମଧ୍ୟକୁ ଏକାବେଳକେ ଏପରି ଲମ୍ଫ ପ୍ରଦାନ କରିଥିଲା ଯେ, ସେଠି ମାନସିକ ଦାବ-ଦହନର ଯନ୍ତ୍ରଣା ଥାଇ ବି ତାହା ତାଙ୍କୁ ଅନୁଭୂତ ହେଉନଥିଲା, ସେ ବିବ୍ରତ ହେଉନଥିଲେ, ତାଙ୍କ ମନଗହନର ଅନନ୍ତ ଚେତନା ଦେଇ ଏସବୁ ତାଙ୍କ ସୃଷ୍ଟି ମଧ୍ୟରେହିଁ ଜୀବନ୍ତ ହୋଇଉଠିଥିଲା । ଏହି ପରିପ୍ରେକ୍ଷୀରେ ଫକୀରମୋହନଙ୍କ ସାହିତ୍ୟିକ-ଜୀବନ ଆମର ଆଲୋଚ୍ୟ । ଆଧୁନିକ ଶିକ୍ଷାରେ ଉଚ୍ଚସୋପାନ ଆରୋହଣ କରିବାର ସୁଯୋଗ ଲାଭ ନକରିବା କିମ୍ବା ଶିକ୍ଷା-ପ୍ରମାଣପତ୍ର ହାସଲ କରିନଥିଲେ ବି ଫକୀରମୋହନ ତାଙ୍କର ସ୍ୱତଃ ସାରସ୍ୱତ ସାଧନାରେ ଯେଉଁ ସିଦ୍ଧି କବଚ ସେ ଲାଭ କରିପାରିଥିଲେ, ତାହି ଦ୍ୱାରା ଓଡ଼ିଶାର ସାରସ୍ୱତ ଦରବାରରେ ସେ ଚିରଦିନ ଅମର ହୋଇ ରହିବେ । ଫକୀର-ମୋହନଙ୍କ ସମଗ୍ର ଜୀବନ ପର୍ଯ୍ୟାୟ ଦୁଇଟି ସ୍ମରଣୀୟ ଅବଦାନରେ ଭାସ୍ୱର । ତନ୍ମଧ୍ୟରୁ ଗୋଟିଏ ବ୍ରିଟିଶ୍ ଶାସନକାଳୀନ ଓଡ଼ିଶାର ଗଡ଼ଜାତ ଅଞ୍ଚଳମାନଙ୍କରେ ପ୍ରଶାସନ ଏବଂ ଅପରଟି ଓଡ଼ିଆସାହିତ୍ୟର ଏକନିଷ୍ଠ ସର୍ଜନା ଏ ଉଭୟ କ୍ଷେତ୍ରରେ ଫକୀରମୋହନଙ୍କ ଦୁଃସାହସିକ ପଦକ୍ଷେପ ବାସ୍ତବିକ ପ୍ରଶଂସାଯୋଗ୍ୟ ପ୍ରଶାସନିକ କ୍ଷେତ୍ରରେ ବିଭିନ୍ନ ସମସ୍ୟାର କ୍ଷୁରଧାରରେ ଚାଲିବା ଦୃଷ୍ଟିରୁ ସେ ଯେପରି ବୁଦ୍ଧିମତା, ସାହସିକତା ତଥା ଦକ୍ଷତାର ପରିଚୟ ଦେଇପାରିଛନ୍ତି, ସେହିପରି ସାହିତ୍ୟ କ୍ଷେତ୍ରରେ ତତ୍କାଳୀନ ଭାଷାବିଲୋପ ଆନ୍ଦୋଳନ ଓ ପଡ଼ୋଶୀ ଭାଷାଭାଷୀଙ୍କ ଅସୂୟାଭାବ ସାର୍ଥକ ମୁକାବିଲା ଜଣେ ସଫଳ ସାହିତ୍ୟ ସେବକଭାବରେ ତାଙ୍କୁ ଅଗ୍ରଣୀ କରାଇପାରିଛି । ଫକୀରମୋହନଙ୍କ ଆପ୍ରାଣ ଚେଷ୍ଟା ବିଦେଶୀମାନଙ୍କ ଓଡ଼ିଆଭାଷା ବିଦ୍ୱେଷୀ ଚକ୍ରାନ୍ତକୁ ପଣ୍ଡ କରିଛି । ଫକୀରମୋହନଙ୍କ ସାହିତ୍ୟସାଧନା ଓଡ଼ିଶାରେ ଓଡ଼ିଆ ସାହିତ୍ୟର ପୃଷ୍ଠପୋଷକ ଗଢ଼ିଛି ଏବଂ ଫକୀରମୋହନଙ୍କ ସାଙ୍ଗଠନିକ ମନୋଭାବ ଅନ୍ୟାନ୍ୟ ଭାଷାହିତୈଷୀ ସାହିତ୍ୟିକମାନଙ୍କୁ ପ୍ରେରଣା ଯୋଗାଇଛି । କର୍ମମୟ ଜୀବନର ସ୍ୱଳ୍ପ ଅବସର, ସେହି ଅବସର ମୁହୂର୍ତ୍ତ କେତୋଟିକୁ ଯଥାର୍ଥଭାବରେ ସଦୁପଯୋଗ କରି ଫକୀରମୋହନ ଗଢ଼ିଯାଇଛନ୍ତି ଓଡ଼ିଆସାହିତ୍ୟ ସୌଧର ସୁଦୃଢ଼ ଭିତ୍ତିଭୂମି । ରୋଗ ଯନ୍ତ୍ରଣା ତଥା ମାନସିକ ବ୍ୟାଧି ଜର୍ଜରିତ ହୋଇ ସେ ସାହିତ୍ୟ ସୃଷ୍ଟିରେ ଯେ ଏକନିଷ୍ଠ ଭାବର ଯେଉଁ ପରାକାଷ୍ଠା ଦେଖାଇଯାଇଛନ୍ତି, ତାହା ଓଡ଼ିଆସାହିତ୍ୟରେ କାହିଁକି ବିଶ୍ୱ-ସାହିତ୍ୟରେ ମଧ୍ୟ ଅନନ୍ୟ ।

ଫକୀରମୋହନଙ୍କ ସାହିତ୍ୟ ସାଧନାକୁ ବିଭିନ୍ନ ପର୍ଯ୍ୟାୟଭୁକ୍ତ କରାଯାଇପାରେ । ପ୍ରତ୍ୟେକ ପର୍ଯ୍ୟାୟରେ ତାଙ୍କ ଲେଖନୀର ବୈଶିଷ୍ଟ୍ୟ ଏବଂ ପ୍ରତିଭାର ପରାକାଷ୍ଠା ଭାସ୍ୱର । ନାଟକକୁ ବାଦ୍‌ଦେଲେ ସାହିତ୍ୟର ଅନ୍ୟ ସମସ୍ତ ବିଭାଗରେ ସେ ତାଙ୍କ ସଫଳ ଲେଖନୀର ପରୀକ୍ଷା ଦେଇଛନ୍ତି ଏବଂ ମୂଲ୍ୟାୟନର ଦାୟିତ୍ୱ ଅର୍ପଣ କରିଛନ୍ତି ପାଠକମାନଙ୍କ ନିକଟରେ । ଏ ମୂଲ୍ୟାୟନରେ —ଫକୀରମୋହନଙ୍କ କୃତିତ୍ୱ ଗୋଟିଏ ଯୁଗର ନୁହେଁ, ସବୁ ଯୁଗରେ,

କେବଳ ଅତୀତ ବା ବର୍ତ୍ତମାନର ନୁହେଁ ଅନାଗତ ଭବିଷ୍ୟତର । ଓଡ଼ିଆ ସାହିତ୍ୟରେ ସେ ଏକାଧାରରେ ଜଣେ ଅନୁବାଦକ, ପାଠ୍ୟପୁସ୍ତକ ରଚୟିତା, କବି, ଗାଳ୍ପିକ ଏବଂ ଔପନ୍ୟାସିକ ଭାବରେ ସୁବିଦିତ ଓ ଗୌରବାନ୍ୱିତ । ଏହି ପରିପ୍ରେକ୍ଷୀରେ ବିଭିନ୍ନ ପର୍ଯ୍ୟାୟରେ ତାଙ୍କର ସାହିତ୍ୟିକ ଅବଦାନକୁ ଆଲୋଚନାର ପରିସରଭୁକ୍ତ କରାଯାଇପାରେ ।

## ଅନୁବାଦକ ଫକୀରମୋହନ :

ପ୍ରାଚୀନ ସଂସ୍କୃତ ପୁରାଣଶାସ୍ତ୍ରର ଲୁପ୍ତରତ୍ନକୁ ଓଡ଼ିଆ ପାଠକମାନଙ୍କୁ ପରିବେଷଣ କରିବା କାମନା ନେଇ ଫକୀରମୋହନ ରାମାୟଣ, ମହାଭାରତ, ଗୀତା, ଖିଲ ହରିବଂଶ ଓ ଉପନିଷଦକୁ ଓଡ଼ିଆଭାଷାରେ ଅନୁବାଦ କରିଥିଲେ । କର୍ମଶୂନ୍ୟ ଅବସ୍ଥାରେ ପତ୍ନୀ କୃଷ୍ଣା-କୁମାରୀଙ୍କ ମନରୁ ପ୍ରଥମ ପୁତ୍ରର ମୃତ୍ୟୁ ଯନ୍ତ୍ରଣାକୁ ଅପସାରିତ କରିବାର ଅଭିଳାଷ ତାଙ୍କୁ ପୁରାଣ ଶାସ୍ତ୍ରର ଜ୍ଞାନରାଜି ଆହରଣ ତଥା ଅନୁବାଦ କରିବାର ପ୍ରେରଣା ଯୋଗାଇଥିଲା ଏବଂ ସେହି ଅଭିଳାଷର ଐକାନ୍ତିକତା ତଥା ମାନସିକ ଦୃଢ଼ତାର ପରିଣତି ତାଙ୍କର ଅନୁବାଦ ସର୍ଜନା । ତାଙ୍କର ସମସ୍ତ ଅନୁବାଦର ଭାଷା ସହଜ, ସରଳ ଓ ସର୍ବଜନ ବୋଧ । ଫକୀର-ମୋହନଙ୍କ ଅନୁବାଦକ ଜୀବନର ପରମ ସଫଳତା ସମ୍ପର୍କରେ ଜନୈକ ସମାଲୋଚକ ଯେଉଁ ମତ ପୋଷଣ କରିଥିଲେ, ତାହା ଏଠାରେ ଉଦ୍ଧାରଯୋଗ୍ୟ । ଫକୀରମୋହନଙ୍କ ଅନୂଦିତ ରାମାୟଣର "ଅଯୋଧ୍ୟାକାଣ୍ଡ" ପ୍ରକାଶ ପରେ ଉକ୍ତ ସମାଲୋଚକ ଲେଖିଥିଲେ— "ଅତଏବ ଆମ୍ଭେମାନେ ଅନୁରୋଧ କରୁଅଛୁଁ ଯେ, ଓଡ଼ିଶାବାସୀ ଚର୍ଣ୍ଣିଙ୍କ ଲୋକମାନଙ୍କେ ଏଥିରୁ ଖଣ୍ଡିଏ ଖଣ୍ଡିଏ ସଂଗ୍ରହକରି ଘରେ ରଖିବା ଉଚିତ୍ । ଶିକ୍ଷିତ ଯୁବକେ ଆପଣା ସ୍ତ୍ରୀକୁ କେବଳ ବର୍ଣ୍ଣଶିକ୍ଷା କରାଇଦେଇ ସେମାନଙ୍କ ହାତରେ ଏଥିରୁ ଖଣ୍ଡିଏ ଖଣ୍ଡିଏ ଦେଲେ, ସେମାନେ ଆପେ ପଢ଼ିପାରିବେ ଏବଂ ଧର୍ମନୀତି, ସମାଜନୀତି, ଗୁରୁଭକ୍ତି ଓ ପତିଭକ୍ତି ପ୍ରଭୃତି ଅନେକ ପ୍ରୟୋଜନୀୟ ବିଷୟ ଶିଖିପାରିବେ ।" ଆଧୁନିକ ଓଡ଼ିଆ ସାହି-ତ୍ୟର ପ୍ରାକ୍‌କାଳରେ ଯେତେବେଳେ ସ୍ୱତନ୍ତ୍ର ଓଡ଼ିଆଭାଷାର ସତ୍ତା ଲୋପ ଲାଗି ବିଦେଶୀମାନେ ବ୍ୟାକୁଳ । ସେତେବେଳେ ଯେତେ ତ୍ରୁଟି ଥିଲେ ବି ଫକୀରମୋହନଙ୍କ ଅନୁବାଦ କଳା ଓ ତତ୍‌ଜନିତ ପ୍ରୟାସ ଏ କ୍ଷେତ୍ରରେ ଏକାନ୍ତ ସ୍ୱାଗତଯୋଗ୍ୟ ହୋଇଉଠିଥିଲା ।

ଫକୀରମୋହନଙ୍କ ଅନୁବାଦ-ଶୈଳୀ ସମ୍ପର୍କରେ ତାଙ୍କ "ଉପନିଷଦ" ଅନୁବାଦରୁ ଏକ ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା—

"ମନରେ ଭାଳିବ ଏମନ୍ତ
ଜଗତ—ପଦାର୍ଥ ସମସ୍ତ
ପରମ ଆତ୍ମା ଆଚ୍ଛାଦନ
କରିରଖିଛୁ ଅନୁକ୍ଷଣ

ତେଜିବ ବିଷୟ ଆହେନ୍ତ
ନର୍ଲୋକେ ପରର ଫଥନ୍ତି ।"

ଫକୀରମୋହନ ଉପନିଷଦକୁ ନବାକ୍ଷରୀ ଛନ୍ଦରେ ଅନୁବାଦ କରି-ଯାଇଛନ୍ତି । ଅନେକତ୍ର ବଳରାମ ଦାସଙ୍କ ଗୈତାକ୍ଷରୀ ଛନ୍ଦରେ ମଧ୍ୟ ଏହା ଅନୂଦିତ ହୋଇଥିବାର ଲକ୍ଷ୍ୟ କରାଯାଏ । ଫକୀରମୋହନଙ୍କ ଜୀବନରେ ସାହିତ୍ୟିକ ହେବାର ଆଦ୍ୟ ସୋପାନ ଅନୁବାଦ ମାଧ୍ୟମରେ ହିଁ ଆରମ୍ଭ ହୋଇଛି । ପ୍ରଚଣ୍ଡ ଧାର୍ମିକ ଚେତନା ତଥା କାବ୍ୟ ମାଧୁରୀ ଆସ୍ୱାଦନରେ ଫକୀରମୋହନ ଯେ, ତାଙ୍କର ଯନ୍ତ୍ରଣାକ୍ଲିଷ୍ଟ ଜୀବନରେ ବ୍ୟାକୁଳ ହୋଇଉଠିଥିଲେ । ତାହା ତାଙ୍କ ଅନୁବାଦରୁ ହିଁ ସ୍ପଷ୍ଟ ଅନୁଭୂତ ହୁଏ । ଫକୀରମୋହନଙ୍କ ଅନୁବାଦର ଅନେକାଂଶ ପଦ୍ୟରେ ହିଁ ଆରମ୍ଭ ହୋଇଥିବାରୁ ତାଙ୍କର ସାହିତ୍ୟିକ ଜୀବନର ଶୁଭାରମ୍ଭ କାବ୍ୟକଣ୍ଠରେ ପ୍ରକଟିତ ହୋଇଛି; କିନ୍ତୁ ପରବର୍ତ୍ତୀ କାଳରେ ଅନୁବାଦକ—କବି ଫକୀରମୋହନ କବିତା ରଚନାରେ ମୌଳିକତାର ପରିଚୟ ଦେଇଥିଲେ ବି ତାଙ୍କ ଗଦ୍ୟରଚନା ଆଗରେ ତାହା ନିଷ୍ପ୍ରଭ ହୋଇଯାଇଛି । ଫକୀରମୋହନଙ୍କ ଅନୁବାଦଗୁଡ଼ିକ ମଧ୍ୟରେ 'ରାମାୟଣ' ( ୧୮୭୬-୮୩ ), 'ମହାଭାରତ', ( ୧୮୮୧-୧୯୦୬ ) ଗୀତା, ହରିବଂଶ, ଉପନିଷଦ ( ୧୮୯୬-୧୯୦୫ ) ଆଦି ଅନ୍ୟତମ । କେହି କେହି ତାଙ୍କର 'ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଜୀବନୀ'କୁ ଅନୁବାଦ ବୋଲି କହିଥାଆନ୍ତି । କିନ୍ତୁ ଏ କ୍ଷେତ୍ରରେ ନାନା ମତାନ୍ତର ପରିଲକ୍ଷିତ ହୁଏ । ଡଃ ଦେବୀପ୍ରସନ୍ନ ପଟ୍ଟନାୟକ ଏହାକୁ ଫକୀରମୋହନଙ୍କ ଅନୁବାଦ ସାହିତ୍ୟର ଅନ୍ତର୍ଭୁକ୍ତ କରିବେଲେ ଡଃ ଶ୍ରୀନିବାସ ମିଶ୍ର ଏହାକୁ ଡଃ ପଟ୍ଟନାୟକଙ୍କର ଭୁଲ୍ ଆଲୋଚନା ବୋଲି ମତ ଦେଇଛନ୍ତି । ତାଙ୍କର ଗବେଷଣାତ୍ମକ ସନ୍ଦର୍ଭ "ଆଧୁନିକ ଓଡ଼ିଆ ଗଦ୍ୟସାହିତ୍ୟ"ରେ ସେ ଲେଖିଛନ୍ତି— ଫକୀରମୋହନଙ୍କ ଅନ୍ୟ ଏକ ଗଦ୍ୟପୁସ୍ତକ "ଜୀବନ ଚରିତ" । କଲିକତା ବାପ୍ଟିଷ୍ଟ ମିଶନ୍ ପ୍ରେସ୍‌ରୁ ୧୮୬୬ରେ ଏହା ମୁଦ୍ରିତ । ସେ କାଳର ଛାତ୍ରବୃତ୍ତି ପରୀକ୍ଷାରେ ହିତୋପଦେଶ ସ୍ଥାନରେ ଜୀବନ ଚରିତ ପାଠ୍ୟପୁସ୍ତକ ଭାବେ ନିରୂପିତ ହୋଇଥିଲା । ଏହି ଜୀବନ ଚରିତ ବିଦ୍ୟାସାଗରଙ୍କ ଆତ୍ମଚରିତର ଅନୁବାଦ ବୋଲି ଓଡ଼ିଶାର କେହି କେହି ଆଲୋଚକ ଭୁଲ୍‌କ୍ରମେ ନିର୍ଣ୍ଣୟ କରିଛନ୍ତି । ( ୭-(କ) କବିଲିପି-ଦେବୀପ୍ରସନ୍ନ ପଟ୍ଟନାୟକ (ଖ) ଓଡ଼ିଆ ସାହିତ୍ୟରେ ଅନ୍ଧକାର ଯୁଗ—ସୁରେନ୍ଦ୍ର ମହାନ୍ତି, ଡଗର ୧୬/୧, ପୃଷ୍ଠା-୨୫ ) ବିଦ୍ୟାସାଗରଙ୍କ ସ୍ୱରଚିତ ଜୀବନଚରିତର ପ୍ରକାଶକାଳ ୧୮୯୧, ଫକୀର-ମୋହନଙ୍କ ଜୀବନ ଚରିତ ରଚନାର ୨୫ ବର୍ଷ ପରେ । ପ୍ରକୃତ ବିଷୟ ହେଲା ଫକୀରମୋହନ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଆଦେଶରେ ତାଙ୍କ ଲିଖିତ ଜୀବନଚରିତ ଉତ୍କଳ ଭାଷାରେ ଅନୁବାଦ କରିଥିଲେ । ଓଡ଼ିଆ ଭାଷାରେ ପୁସ୍ତକ ଅଭାବ ହେତୁ ବଙ୍ଗାଳୀ-ବାବୁମାନଙ୍କ ଅବହେଳା ବିଦ୍ରୂପ ଦୂର କରିବା ନିମନ୍ତେ ବଙ୍ଗଳାର କୃତବିଦ୍ୟ ପାଠ୍ୟପୁସ୍ତକ

ଲେଖକ ବିଦ୍ୟାସାଗରଙ୍କ ରଚନାର ଅନୁବାଦ ହୁଏତ ଫକୀରମୋହନଙ୍କ ପ୍ରତିଭା ପ୍ରକର୍ଷର ପରିଚାୟକ ନୁହେଁ । ମାତ୍ର ସେତେବେଳ ପର୍ଯ୍ୟନ୍ତ ଫକୀରମୋହନଙ୍କ ମୌଳିକ ପ୍ରତିଭାର ବିକାଶ ଏକ ଅପେକ୍ଷିତ ବ୍ୟାପାର (୨୯) ତେବେ ଏକଥା ଅସ୍ୱୀକାର କରିହେବ ନାହିଁ ଯେ, ଫକୀରମୋହନଙ୍କ ସାରସ୍ୱତ ପ୍ରତିଭା ପ୍ରଥମକରି ଅନୁବାଦ ମାଧ୍ୟମରେ ହିଁ ପରିପ୍ରକାଶିତ ହୋଇଥିଲା । ପରବର୍ତ୍ତୀ କାଳରେ ଓଡ଼ିଶାର ଖ୍ୟାତନାମା ଅଗ୍ନି ଦେଇ ପ୍ରତିଭା ଫକୀରମୋହନ ଅନୁବାଦ ମାଧ୍ୟମରେ ତାଙ୍କ ସାହିତ୍ୟିକ ଜୀବନର ଯେଉଁ ପରିଚୟ ଦେଇଥିଲେ । ତାହା ଯେ ପରବର୍ତ୍ତୀ କାଳରେ ଓଡ଼ିଆଭାଷା ଓ ସାହିତ୍ୟ ପାଇଁ ଏକ ଦୃଢ଼ ପ୍ରତିଶ୍ରୁତି ବହନ କରିଥିଲା—ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।

**କବି ଫକୀରମୋହନ :**

ଅନୁବାଦ କ୍ଷେତ୍ରରେ ଫକୀରମୋହନ ସ୍ୱ କବିତ୍ୱର ସ୍ୱାକ୍ଷର ପ୍ରଥମକରି ପ୍ରକାଶ କରିବା ପରେ ମୌଳିକ ରଚନା କ୍ଷେତ୍ରରେ ତାହା ଅଧିକ ବୌଦ୍ଧିକ ଓ ପରିପୁଷ୍ଟ ହୋଇଉଠିଥିଲା । କିନ୍ତୁ ତାଙ୍କ ଗଦ୍ୟ ରଚନା, ଯଥା—ଗଳ୍ପ ଓ ଉପନ୍ୟାସ ସୃଷ୍ଟିରେ ତାଙ୍କ କବିତାର ମୂଲ୍ୟାୟନ ଯେ, ବିଡ଼ମ୍ବିତ ହୋଇଯାଇଛି ଏକଥା ଅସ୍ୱୀକାର କରିହେବ ନାହିଁ । ପୁଣି ଏକଥା ମଧ୍ୟ କୁହାଯାଇପାରେ ଯେ,—"ରାଧାନାଥଙ୍କ କାବ୍ୟ କୀର୍ତ୍ତିର ବିଷ୍ଟ ଛାୟାତଳେ ଫକୀରମୋହନଙ୍କ କାବ୍ୟ ଓ କବିତାର ମୂଲ୍ୟାଙ୍କନ ଅବଲୁପ୍ତ ହୋଇ-ପଡ଼ିଛି । ଓଡ଼ିଆ ସାହିତ୍ୟରେ ଆଧୁନିକତାର ପ୍ରବର୍ତ୍ତକ ରୂପେ ରାଧାନାଥ ଏକାନ୍ତ ଭାବରେ ସମ୍ମାନିତ ଓ ପ୍ରତିଷ୍ଠିତ । ସେଥିପାଇଁ ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସରେ ଫକୀର-ମୋହନଙ୍କ ଭୂମିକା ଯଥାର୍ଥ ସ୍ୱୀକୃତି ଲାଭ କରିପାରି ନାହିଁ । ପୁଣି ଫକୀରମୋହନଙ୍କ ସାହିତ୍ୟବିଚାର ବେଳେ ସମାଲୋଚକମାନଙ୍କର ଦୃଷ୍ଟି ତାଙ୍କର ଉପନ୍ୟାସ ଓ ଗଳ୍ପସାହିତ୍ୟ ଉପରେ ନିବଦ୍ଧ ହୋଇପଡ଼ିଥିବାରୁ ତାଙ୍କ କବିତାର ସାହିତ୍ୟିକ ମୂଲ୍ୟ ବିଚାର ତଥାପି ସମ୍ଭବ ହୋଇନାହିଁ ।

ମାତ୍ର ଅନାସକ୍ତ ଭାବେ ବିଚାର କଲେ ମନେହୁଏ, ରାଧାନାଥ ଭଞ୍ଜଯୁଗର ଶେଷ କବି । ଇଂରାଜୀ କବି ଟେନିସନ୍‌ଙ୍କ ଦ୍ୱାରା ପ୍ରଭାବିତ ହୋଇନଥିଲେ, ପୁଣି ଇଂରାଜୀ ସାହିତ୍ୟରେ ତାଙ୍କର ଅଗାଧ ପାଣ୍ଡିତ୍ୟ ନଥିଲେ । ରାଧାନାଥ ଓଡ଼ିଆ କାବ୍ୟ ସାହିତ୍ୟରେ ମଧ୍ୟଯୁଗୀୟ ପରମ୍ପରା, ରୁଚି ଓ ସାହିତ୍ୟାଦର୍ଶରୁ ଅତିକ୍ରାନ୍ତ ହୋଇପାରିନଥାନ୍ତେ । ଆଙ୍ଗିକ ଦୃଷ୍ଟିରୁ ନ ହେଲେହେଁ ଆତ୍ମାଦୃଷ୍ଟିରୁ ରାଧାନାଥଙ୍କ କାବ୍ୟ ଅଷ୍ଟାଦଶ ଊନବିଂଶ ଶତାବ୍ଦୀର ରୁଚି କାବ୍ୟାଦର୍ଶଠାରୁ ବିଶେଷ ଦୂରବର୍ତ୍ତୀ ନଥିଲା । ଉକ୍ତ ରୂପଜ ମୋହ ଓ ତାହାର

---

(୨୯) ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ—ଡଃ ଶ୍ରୀନିବାସ ମିଶ୍ର, ପୃଷ୍ଠା-୧୩୯/୪୦

ଆଲଙ୍କାରିକ ବର୍ଣ୍ଣନା ରାଧାନାଥଙ୍କ କାବ୍ୟ ସାହିତ୍ୟର ମଧ୍ୟ ପ୍ରଧାନ ଉପଜୀବ୍ୟ ଥିଲା । ମାତ୍ର ସେଥିରେ ବୈଷ୍ଣବ କବିମାନଙ୍କର ଗଭୀର ଭାବାବେଗ ନଥିଲା କିମ୍ବା ରୀତିଯୁଗରେ ଅନ୍ୟ କବିମାନଙ୍କର ଉଦ୍ଦୀପକ ଚମତ୍କାରିତା ନଥିଲା । 'ମହାଯାତ୍ରା' ଅମିତ୍ରାକ୍ଷର ଛନ୍ଦରେ ରଚିତ ଏକ ପୌରାଣିକ କାବ୍ୟ । କିନ୍ତୁ ରାଧାନାଥଙ୍କ ପୂର୍ବରୁ ନାଟ୍ୟକାର ରାମଶଙ୍କର ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତନ ଓ ଅନୁଶୀଳନ ଆରମ୍ଭ କରିଥିଲେ । ଆଉ କ୍ଷୁଦ୍ରକାୟ 'ଦରବାର'ରେ ଯଦି ରାଧାନାଥଙ୍କୁ ଆଧୁନିକ ଯୁଗର ପ୍ରବର୍ତ୍ତକ ବୋଲି ଦାବି କରାଯାଏ, ତା'ହେଲେ ରାଧାନାଥଙ୍କ ଭାଷାରେ—

"ସ୍ୱର୍ଣ୍ଣ ନୁହଇ ତ ସ୍ୱର୍ଣ୍ଣାଭାସ ମାତ୍ର ।" (୩୦)

ସମାଲୋଚକ ସୁରେନ୍ଦ୍ର ମହାନ୍ତିଙ୍କର ଉପରୋକ୍ତ ଆଲୋଚନାକୁ ବିଚାର କଲେ ଏକଥା ନିଶ୍ଚିତ ସତ୍ୟ ମନେହୁଏ ଯେ, ରାଧାନାଥ ସୌନ୍ଦର୍ଯ୍ୟର ଉପାସନା କରି ତାଙ୍କ କାବ୍ୟ-କବିତାକୁ ଯେଉଁ ଚମତ୍କାରିତା ପ୍ରଦାନ କରିଥିଲେ ଫକୀରମୋହନ ତାଙ୍କ କାବ୍ୟ କବିତାରେ ଜୀବନର ନିରସ ଦର୍ଶନକୁ ଉପସ୍ଥାପନା କରିବାରୁ ତାହା ସେତେ ଆକର୍ଷଣୀୟ ଓ ହୃଦ୍ୟ ହୋଇପାରିନଥିଲା । ତେଣୁ ନିର୍ବିବାଦରେ ରାଧାନାଥ ଆଧୁନିକ କବି ଭାବରେ ଶ୍ରେଷ୍ଠତ୍ୱ ହାସଲ କଲାବେଳେ ଅପର ପକ୍ଷରେ ଫକୀରମୋହନଙ୍କ ଗଦ୍ୟ ରଚନାର ଉତ୍କର୍ଷ ଆପଣାର କାବ୍ୟ-କବିତା ମୂଲ୍ୟାଙ୍କନରେ ମଧ୍ୟ ଅନ୍ଧକାର ଭାବ ସୃଷ୍ଟି କରିଥିଲା ।

ପ୍ରକୃତ ପକ୍ଷରେ ବିଚାର କଲେ ଫକୀରମୋହନଙ୍କଠାରେ ଯେଉଁ କବି ଆତ୍ମା ବିରାଜିତ ଥିଲା, ତାହା ମାନବ ବନ୍ଦନାରେ ଚିରଚଞ୍ଚଳ ଓ ମାନବ ଜୀବନାଦର୍ଶ ପ୍ରେକ୍ଷାପଟ୍ଟରେ ଚଳଚ୍ଚିତ୍ର ପ୍ରାୟ ହିଁ ଉଦ୍‌ଭାସିତ ହୋଇଉଠିଥିଲା । ତାଙ୍କ କବିତାରେ କଳାତ୍ମକ ଉତ୍କର୍ଷତା ଅପେକ୍ଷା ଗଭୀର ଜୀବନଧର୍ମୀ ଚିନ୍ତା ଚେତନାର ପ୍ରତିଫଳନ ହିଁ ଅଧିକ ମାତ୍ରାରେ ଘଟିଥିଲା । ପୁଣି ଫକୀରମୋହନଙ୍କ କାବ୍ୟକବିତାଗୁଡ଼ିକ ଏଭଳି ଗୀତିଧର୍ମୀ ଯେ ସେଗୁଡ଼ିକୁ ନିର୍ବିବାଦରେ ଗୀତିକବିତା ବୋଲି ମଧ୍ୟ କୁହାଯାଇପାରେ (୩୧) । ଗୀତିକବି ଭାବରେ ତାଙ୍କର ଭାବୁକତା ସେତେ ଉଚ୍ଚକୋଟୀର ନ ହେଲେ ମଧ୍ୟ ଓଡ଼ିଶାର କାନ୍ଦ ନିକାନ୍ଦ । ଓଡ଼ିଆ ସମାଜ ଜୀବନର ଅସଂଖ୍ୟ ଉପାଦାନ ତାଙ୍କର ଗୀତିଗୁଚ୍ଛରେ ପରିପୂର୍ଣ୍ଣ । ତାଙ୍କର ବହୁ କବିତା କରୁଣ ହୃଦୟର ମର୍ମଭେଦୀ ବିଳାପ ଧ୍ୱନିରେ ମୂର୍ଚ୍ଛିତ । ପୁଣି ଏହି କବିତା ମଧ୍ୟରୁ ଅନେକାଂଶ ଐତିହ୍ୟ ଚେତନାରେ ସ୍ୱତଃସ୍ଫୂର୍ତ୍ତ ସଫଳ ଅଭିବ୍ୟକ୍ତ । ସମାଜରେ

(୩୦) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା—୧୮୧/୮୨

(୩୧) ମଧୁସୂଦନଙ୍କ ପରେ ଜଣେ ବଳିଷ୍ଠ ଗୀତିକାର ହିସାବରେ ଫକୀରମୋହନ ଗୃହୀତ ହୋଇପାରନ୍ତି । ( ଓ. ସା. ଇ —ଡକ୍ଟର ନଟବର ସାମନ୍ତରାୟ )

ପ୍ରଚଳିତ ପାରମ୍ପରିକ ଅନ୍ଧବିଶ୍ୱାସ ମୂଳରେ କବିଙ୍କର ବ୍ୟଙ୍ଗ, ବିଦ୍ରୂପାତ୍ମକ ଶାଣିତ କୁଠାର-ଘାତ ତାଙ୍କର ସମାଜସଂସ୍କାର ମନୋବୃତ୍ତିର ସ୍ପଷ୍ଟ ନିଦର୍ଶନ । କବିତାଗୁଡ଼ିକ ସେଭଳି ଉଚ୍ଚକାବ୍ୟାଦର୍ଶ ମଣ୍ଡିତ ନହେଲେହେଁ ସେଗୁଡ଼ିକରେ କବିଙ୍କର ଅନୁଭୂତି ପରିସ୍ଫୁଟ । ଲୋକଚରିତ୍ର ଅଧ୍ୟୟନର ଫଳାଫଳ ଉଦ୍‌ଘୋଷିତ ।

ସ୍ଥାନେ ସ୍ଥାନେ ସରଳ ତରଳ ଗ୍ରାମ୍ୟ ଭାଷାରେ ଗଣଜୀବନର ଉଚ୍ଛଳ ଫଲ୍‌ଗୁ ପ୍ରବାହିତ ହୋଇ ପାଠକ ପ୍ରାଣରେ ହର୍ଷ-ବିଷାଦର ଏକ ବିଚିତ୍ର ଆଲେଖ୍ୟ ଆଙ୍କି ଦେବା ପରି ମନେହୁଏ । ପୁଣି ଫକୀରମୋହନଙ୍କ କବିତାର ଅନେକ ସ୍ଥଳେ ବିଦ୍ରୂପୋକ୍ତିର ଅନ୍ତରାଳରେ ହାସ୍ୟରସର ଅବତାରଣା ପାଠକକୁ ଆନନ୍ଦସାଗରରେ ନିମଜ୍ଜିତ କରେ । ଫକୀରମୋହନ ଯେପରି ଗଦ୍ୟ କ୍ଷେତ୍ରରେ ସ୍ୱ-ଅପ୍ରତିଦ୍ୱନ୍ଦୀ ପ୍ରତିଭାର ପରାକାଷ୍ଠା ଦର୍ଶାଇଯାଇଛନ୍ତି ଅବଶ୍ୟ (ପଦ୍ୟ) କବିତା କ୍ଷେତ୍ରରେ ସେପରି ନିଦର୍ଶନ ସେ ଦେଖାଇବାକୁ କ୍ଷମଶୀଳ ହୋଇପାରି ନାହାନ୍ତି । ପ୍ରତିଭାସଂପନ୍ନ କବିତ୍ୱ ତାଙ୍କର ନିଜସ୍ୱ ନହେଲେ ବି ଜଣେ ସୁରସିକ ଅନୁଧ୍ୟାନ-କାରୀ ତଥା ଜୀବନ-ଅନୁସନ୍ଧିତ୍ସୁ ଭାବରେ ତାଙ୍କ କବିତାର ମୂଲ୍ୟାଙ୍କନ ନିରର୍ଥକ ନୁହେଁ । ନିମ୍ନରେ ଫକୀରମୋହନ କବିତ୍ୱ ସଂପର୍କରେ ତାଙ୍କ ନିଜ ମତର ଯେଉଁ ଅବତାରଣା କରିଛନ୍ତି, ତାହା ତାଙ୍କ କବିତ୍ୱ ମୂଲ୍ୟାୟନର ଯେ ଶ୍ରେଷ୍ଠ କଷଟି—ଏକଥା ଆଉ ଅସ୍ୱୀକାର କରିହେବ ନାହିଁ । ତାଙ୍କ ଭାଷାରେ—

"ମୋ ବିଶ୍ୱାସ ଜଗତରେ କବି ସବଲୋକ
କେହି ବା ବିଶେଷ କେହି ଅଳ୍ପ ମାତ୍ରିକ ।"

ଜୀବନର ଅନୁଭୂତି ପ୍ରାଚୁର୍ଯ୍ୟ ଆନୁଷଙ୍ଗିକ ଅନୁକୂଳ ପରିବେଷ୍ଟନୀର ପ୍ରଭାବ କବିତ୍ୱ ମାଧ୍ୟମରେ ପ୍ରକାଶିତ ହେଲେ ତାହା ଅବହେଳିତ ବା ଅପାଂକ୍ତେୟ ନୁହେଁ । କବିତା କେବଳ ଭାବୁକତାର ଉତ୍ତୁଙ୍ଗ ଅଭିବ୍ୟକ୍ତି ନୁହେଁ ବା ପ୍ରତିଭାର ଅଫୁରନ୍ତ ସ୍ଫୁରଣ ନୁହେଁ; ବରଂ ଜୀବନଦର୍ଶନର ଅନୁଭୂତିକୁ ଆତ୍ମଲିପି ରୂପେ ସ୍ୱୀକାର କରୁଥିବା କବିତ୍ୱ ଚରନ୍ତନ । ଦାର୍ଶନିକ 'ଗେଟେ' ସେଥିପାଇଁ କହିଛନ୍ତି—"ବେଦନା ମଥିତ କବି ହୃଦୟର ଆତ୍ମପ୍ରକାଶହିଁ କବିତା ଏବଂ ଏହି ପ୍ରକାଶ ଶକ୍ତି ହେଉଛି କବିତ୍ୱ ।" ମୋଟ୍ ଉପରେ କହିବାକୁ ଗଲେ, ଫକୀରମୋହନଙ୍କ କବିତା ବିଶେଷ କଳାତ୍ମକ ନହେଲେ ବି ଗଭୀର ଜୀବନମୁଖୀ । ଗୀତି-କବିତାଗୁଡ଼ିକରେ ଶୋକଗୀତିକା, ପ୍ରେମକବିତା, ରୂପକ କବିତା, ବ୍ୟଙ୍ଗକବିତା, ଶିଶୁ କବିତା ପ୍ରଭୃତି ଦେଖିବାକୁ ମିଳେ । ଏତଦ୍‌ଭିନ୍ନ ତାଙ୍କର କେତେକ ଗାଥାକବିତା ମଧ୍ୟ ଅଛି । ଜଣେ କବି ଭାବେ ଫକୀରମୋହନ ତାଙ୍କ କବିତ୍ୱର ପରିଚୟ 'ଉତ୍କଳ ଭ୍ରମଣଂ' 'ପୁଷ୍ପମାଳା', 'ଉପହାର', 'ପୂଜାଫୁଲ,' 'ଧୂଳି' ଅବସର ବାସରେ' ଓ 'ବୌଦ୍ଧାବତାର

କାବ୍ୟ ଆଉ କାବ୍ୟ କବିତାରେ ପ୍ରଧାନ କରିଯାଇଛନ୍ତି । ନିମ୍ନମତେ ତାଙ୍କ କାବ୍ୟ-କବିତାର ମୂଲ୍ୟାଙ୍କନ କରାଯାଇପାରେ ।

**(କ) ଉତ୍କଳ ଭ୍ରମଣଂ—୧୮୯୨ :**

ଫକୀରମୋହନଙ୍କର ପ୍ରଥମ ମୌଳିକ କବିତା ପୁସ୍ତକ "ଉତ୍କଳ ଭ୍ରମଣଂ" ପ୍ରକାଶିତ ହୋଇଥିଲା ୧୮୯୨ ମସିହାରେ । କେନ୍ଦୁଝର ରାଜ୍ୟର ମେନେଜର ଥିବାବେଳେ ଦୁଇ-ତିନି ଦିନ ପୂର୍ବରୁ ସେ ଭଦ୍ରକରୁ ଆନନ୍ଦପୁରକୁ ହସ୍ତୀ ପୃଷ୍ଠରେ ଯାଉଥିବା ସମୟରେ ଏହି ପୁସ୍ତିକାର ଅର୍ଦ୍ଧେକ ଲେଖିପକାଇଥିଲେ ଓ ଆନନ୍ଦପୁରରେ ପହଞ୍ଚି ଅପର ଅର୍ଦ୍ଧେକ ଲେଖି ଦୁଇଦିନ ମଧ୍ୟରେ ଛପାଇ ଦେଇଥିଲେ । (୩୨) ଏହା ସତ୍ତ୍ୱେ ଆଜି ଅନେକଙ୍କ ପକ୍ଷେ ଅବିଶ୍ୱାସଯୋଗ୍ୟ ତଥାପି ଏହାକୁ ବିଶ୍ୱାସ କଲେ ଫକୀରମୋହନ ଯେ ଅସାଧାରଣ କବିତ୍ୱ ଶକ୍ତିର ଆଧାର ଥିଲେ ତାହା ଆମ ଆଗରେ ସ୍ପଷ୍ଟ ହୋଇଯାଏ ।

'ଉତ୍କଳ ଭ୍ରମଣଂ' ଫକୀରମୋହନଙ୍କର ଏକ ଭ୍ରମଣ ବୃତ୍ତାନ୍ତ ସତ୍ୟ ମାତ୍ର ଏହା ତାଙ୍କ ଶାରୀରିକ ଭ୍ରମଣ ବର୍ଣ୍ଣନା ଅପେକ୍ଷା ମାନସିକ ଭ୍ରମଣ ବର୍ଣ୍ଣନାର ମାତ୍ରାଧିକ୍ୟ ସଚେତନ ବହନ କରେ । ଇଂରାଜୀ ସାହିତ୍ୟରେ ୧୭ଶ ଏବଂ ୧୮ଶ ଶତାବ୍ଦୀରେ ଡ୍ରାଇଡନ୍ ଏବଂ ପୋପ୍ ସାଟାୟର ରଚନାକରି ଇଂରାଜୀ ସାହିତ୍ୟକୁ ସମୃଦ୍ଧ କରିଥିଲେ । ଡ୍ରାଇଡନ୍ ତାଙ୍କ

---

(୩୨) "ଭଦ୍ରକରୁ ଆନନ୍ଦପୁର ବାହୁଡ଼ିଆସୁଥାଏ ××× ହଠାତ୍ ମୋ ମନରେ ଉଦୟ ହେଲା ବର୍ତ୍ତମାନ ଉତ୍କଳରେ ଯେତେ ସାହିତ୍ୟିକ ଏବଂ ପ୍ରଧାନ ଲୋକ ଅଛନ୍ତି, ସେମାନଙ୍କ ନାମ ସାହିତ୍ୟ ମଧ୍ୟରେ ଲିଖିତ ହେବା ଉଚିତ । ପରେ ମନେକଲି କେବଳ ନାମମାଳା ଗୁନ୍ଥି ରଖିଲେ ଲୋକେ ପଢ଼ିବାକୁ ସୁଖ ପାଇବେ ନାହିଁ । ନାମ ସହିତ ସେମାନଙ୍କର ଗୁଣାବଳୀ ଲିପିବଦ୍ଧ କରିବାକୁ ଇଚ୍ଛା ହେଲା । ହାତୀ ଉପରେ ବସିଥାଏ । ପକେଟରୁ ପକେଟ ବହି ଓ ପେନ୍‌ସିଲ ବାହାର କରି ପଦ୍ୟ ଲେଖିବାକୁ ଆରମ୍ଭ କଲି । ଆନନ୍ଦପୁରରେ ପହଞ୍ଚିବା ସମୟରେ ଅଧାଅଧି ଲେଖା ହୋଇଯାଇଥିଲା । ସେଠାରୁ ହାତୀରୁ ଓହ୍ଲାଇବା ମାତ୍ରେ କମ୍ପୋଜିଟରକୁ ଡାକି କମ୍ପୋଜ କରିବାକୁ ଦେଲି । କିଛିକ୍ଷଣ ବିଶ୍ରାମ କରି ପୁଣି ଲେଖିବାକୁ ଆରମ୍ଭ କଲି । ଖଣ୍ଡିଏ ଖଣ୍ଡିଏ କାଗଜରେ ଲେଖା ହୋଇଯିବା ମାତ୍ରେ ଅକ୍ଷର ଯୋଜନା ନିମନ୍ତେ କମ୍ପୋଜିଟର୍ ତାହା ନେଇ ଯାଉଥାଏ । ××× ଦ୍ୱିତୀୟ ଦିନ ସନ୍ଧ୍ୟା ସରିକି ପୁସ୍ତକ ଛାପା ସମାପ୍ତ ହୋଇଗଲା । ଏହାହିଁ ମୋର 'ଉତ୍କଳ ଭ୍ରମଣଂ'ର ପ୍ରଥମ ସଂସ୍କରଣ ।"

( ଆତ୍ମଜୀବନ ଚରିତ )

କବିତାରେ କେତେକ ରାଜମାତାଙ୍କ ତଥା ନେତୃବୃନ୍ଦଙ୍କୁ ସମାଲୋଚନା କରିଛନ୍ତି । ପୋପ୍ ତାଙ୍କ 'The Dunciad' ନାମକ ଦୀର୍ଘ କବିତାରେ ନାଟ୍ୟକାର Colley Cibber ଏବଂ ଅନ୍ୟ କେତେକ ସାହିତ୍ୟିକଙ୍କୁ ଭର୍ତ୍ସନା ତଥା ବ୍ୟଙ୍ଗ କରିଅଛନ୍ତି । ଠିକ୍ ସେହିଭଳି ଫକୀରମୋହନ ତାଙ୍କ ଉତ୍କଳଭ୍ରମଣଂ'ରେ ଓ ରାଧାନାଥ ତାଙ୍କ 'ଦରବାର'ରେ ଉତ୍କଳର ଅନେକ ସମ୍ମାନାସ୍ପଦ ବ୍ୟକ୍ତିଙ୍କ ବିରୁଦ୍ଧରେ ଯେପରି ନିନ୍ଦାଗାନ କରିଛନ୍ତି, ସେହିପରି ସ୍ତୁତି-ଗାନ ମଧ୍ୟ କରିଛନ୍ତି । ତେବେ ଫକୀରମୋହନଙ୍କ "ଉତ୍କଳ ଭ୍ରମଣଂ"କୁ ରାଧାନାଥଙ୍କ ଦରବାର ସହିତ ତୁଳନା କରାଯାଇ ନପାରେ । "କାରଣ 'ଦରବାର' 'ସାଟାୟାର' ନୁହେଁ । ଆପାତ ସାମ ଜିକ ଭାବନା ମିଶ୍ରିତ ଏହା ଏକ ପଦ୍ୟରଚନା ମାତ୍ର । ଏହା ପୁଣି 'ଦରବାର'ର ଏକ ସମ୍ପୂର୍ଣ୍ଣ କାଳ୍ପନିକ ଓ ତାତ୍ତ୍ୱିକ ପୃଷ୍ଠଭୂମିରେ ଲିଖିତ ହୋଇଅଛି ।" (୩୩) ମାତ୍ର ଉତ୍କଳ-ଭ୍ରମଣଂ"ରେ ଯେଉଁ ସାଟାୟାର (ବ୍ୟଙ୍ଗ) ପରିଲକ୍ଷିତ ହୁଏ, ତାହା ସାଟାୟାରର ସଙ୍ଗାଦୃଷ୍ଟିରୁ ଯଥାର୍ଥ ହୋଇଥିବାରୁ "ଉତ୍କଳଭ୍ରମଣଂ" ଏକ ବ୍ୟଙ୍ଗଧର୍ମୀ କାବ୍ୟ ବା ପଦ୍ୟରଚନା । ରାଧାନାଥଙ୍କ 'ଦରବାର'ର ପୂର୍ବରୁ ଏହା ପ୍ରକାଶିତ ହୋଇଥିବାରୁ "ଉତ୍କଳୀୟ ବ୍ୟଙ୍ଗ ପଦ୍ୟରଚନା କ୍ଷେତ୍ରରେ ଏହାର ସ୍ଥାନକୁ ସର୍ବପ୍ରଥମଭାବେ ଧରିନିଆଯାଇପାରେ (୩୪)

'ଉତ୍କଳ ଭ୍ରମଣଂ' କାବ୍ୟରେ ବାଗ୍‌ଦେବୀ ସାରଳାଙ୍କ ଠାରୁ ଆରମ୍ଭକରି, ସେ ସମୟର ଶାସନକର୍ତ୍ତା, କବି, ସମାଜପତି, ଓକିଲ, ଗଡ଼ଜାତରାଜା ଓ ଶିକ୍ଷିତ ଗୋଷ୍ଠୀ ପର୍ଯ୍ୟନ୍ତ ସମସ୍ତେ ଫକୀରମୋହନଙ୍କ ପ୍ରଚଣ୍ଡ ବ୍ୟଙ୍ଗ, ବିଦ୍ରୂପର ଶିକାର ହୋଇଛନ୍ତି, ମାତ୍ର ଏସବୁରେ ଫକୀରମୋହନଙ୍କ ଅସୂୟାଭାବ ବା ଅଶିଷ୍ଟତା ଜନିତ ମନପ୍ରାଣ ଆହତ ହେବା ଭଳି ବର୍ଣ୍ଣନା ନାହିଁ । ଫକୀରମୋହନ ଏଥିରେ ସାରଳାଙ୍କୁ ନମ୍ରଭାବେ ବନ୍ଦନା କରିଛନ୍ତି, ଯେଉଁଥିରେ ତାଙ୍କ ରସିକ ତଥା ବିଦଗ୍ଧ ପ୍ରାଣ ପୁଲକିତ ହୋଇଉଠିଥିବାର ଲକ୍ଷ୍ୟ କରାଯାଏ—

"ତୁମ୍ଭର ଅଭ୍ୟାସ କବିକଣ୍ଠେ ବସିବାର
ମୋ ପ୍ରତି ସେପରି କରନାହିଁ ଅତ୍ୟାଚାର ।
× × ×
ଉଣ୍ଢାସେ ବସିବ ମାତ ମୋ ମୁଣ୍ଡରେ ଧୀରେ
ଝୁଙ୍କି ନପଡ଼ିବ ମୁଣ୍ଡ ଯେମନ୍ତ ଭାରରେ ।"

---

(୩୩) ଫକୀରମୋହନ ସମୀକ୍ଷା—ସୁରେନ୍ଦ୍ର ମହାନ୍ତି, ପୃଷ୍ଠା-୨୦୬ ।

(୩୪) 'ଉତ୍କଳ ଭ୍ରମଣ' ନୁହେଁ ଆଧୁନିକ 'ଉତ୍କଳ ଭ୍ରମଣଂ' ଓଡ଼ିଆସାହିତ୍ୟରେ ଏକ ଉଲ୍ଲେଖଯୋଗ୍ୟ ପଦ୍ୟ-ରଚନା । ଏହା ପୁଣି ଓଡ଼ିଆସାହିତ୍ୟରେ ସର୍ବପ୍ରଥମ ସାଟାୟର ।" (ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା-୨୦୪ ।

ଏତଦ୍‌ଭିନ୍ନ ସେ ରାଧାନାଥ, ମଧୁସୂଦନ, ବାଗ୍ମୀପ୍ରବର ବିଶ୍ୱନାଥ ଆଦି ବହୁ ଜଣାଶୁଣା ବ୍ୟକ୍ତଙ୍କ ସମ୍ପର୍କରେ ଏହି ପୁସ୍ତିକାରେ ନାନା ବ୍ୟଙ୍ଗ ଭାବାବେଶରେ ବିଦ୍ରୂପାତ୍ମକ କହୀଇ ଲେଖିଛନ୍ତି—

(୧) କବି ରାଧାନାଥଙ୍କୁ :—

"ଯେ ଯାହା କହୁ, ମାତ୍ର ମୁଁ କହେ ବରାବର
ଓଡ଼ିଶାର ଭାଗ୍ୟ ଗୁଣେ ହେବ ଇନସ୍‌ପେକ୍ଟର ।"

(୨) କବି ମଧୁସୂଦନ ରାଓଙ୍କୁ :—

"ଓଜନରେ ହେବ ମଧୁ ଅଢ଼ାଇ ପସୁରି
କପାଳ ଲେଖିଛି ଏତେ ଗୁଣ ସେଟେଇରି ।"

(୩) ବାଗ୍ମୀପ୍ରବର ବିଶ୍ୱନାଥଙ୍କୁ :—

"ବାଟୁଳି ବାଜିବ ନାହିଁ କଥାଗଲେ କହି
ଉବୁଡ଼ା ମାଠିଆ ମୁହଁ ପାଣି ପର ବହି ।"

(୪) ଉତ୍କଳ ଗୌରବ ମଧୁସୂଦନ ଦାସଙ୍କୁ :—

"ସବୁବେଳେ ଦେଖେ ତୁମ୍ଭେ ଭାଳୁଥାଅ ବସି
ମନେଦେଶ ଚିନ୍ତା ମାତ୍ର, ହେ ଯୋଗୀ ତପସ୍ୱୀ ।"

ଏହିପରି ଭାବେ ଫକୀରମୋହନ ଉତ୍କଳର ଗୁଣଗ୍ରାହୀ ବ୍ୟକ୍ତିଙ୍କୁ ଆଦର, ସମ୍ମାନପ୍ରଦର୍ଶନଧର୍ମୀ ବ୍ୟଙ୍ଗଚେତନାର ବୌଦ୍ଧିକ ସ୍ତବକ ମାଳରେ ନମ୍ରତାର ସହ ସେମାନଙ୍କ ଗୁଣକୁ ସ୍ୱୀକାର କଲାବେଳେ ଅପରପକ୍ଷେ ଆମ ସମାଜର ଶଠତା, ତତ୍କାଳୀନ ପ୍ରବଞ୍ଚନାର ଚିତ୍ର ବର୍ଣ୍ଣନାରେ ଯେଉଁ ବିଦ୍ରୂପଭାବ ପ୍ରଦର୍ଶନ କରିଛନ୍ତି, ତହିଁରେ ତାଙ୍କ କବିତ୍ୱ ଶକ୍ତି ଅପେକ୍ଷା ସଂସ୍କାର ପ୍ରୟାସୀ ଶକ୍ତିର ଆବିର୍ଭାବ ଅଧିକ ମାତ୍ରାରେ ହୋଇଛି ବୋଲି କହିବାକୁ ହେବ । ମୁକ୍ତିମଣ୍ଡପ ସଭାର ଭଣ୍ଡାମି ତଥା ଉତ୍କଳୀୟ ସଂସ୍କୃତିର ଅଧୋଗତି ସଂପର୍କରେ ସେ ଯେଉଁ ଚିତ୍ର ପ୍ରଦାନ କରିଛନ୍ତି, ସେଥିରେ ଫକୀରମୋହନଙ୍କ ବ୍ୟକ୍ତିସତ୍ତାର ପ୍ରକୃତ ସ୍ୱରୂପ ହିଁ ଉଦ୍‌ଘାଟିତ ହୋଇପାରିଛି । ସେ ଲେଖିଛନ୍ତି—

"ଯେଉଁଠାରେ ହେଉଥିଲା ପଣ୍ଡିତଙ୍କ ମେଳା
ଏବେ ଦେଖ ସେ ସ୍ଥାନରେ ଠକ ଭେଲା ଭେଲା ।
ସ୍ୱଦେଶୀ ପଣ୍ଡିତେ ଯହିଁ ହେଉଥିଲେ ଋଣ୍ଡ
ଠକ କୁଆଁ ସ୍ୱେର ତହିଁ ମେଲିଛନ୍ତି ତୁଣ୍ଡ ।"

କାହିଁଗଲା ବେଦପାଠ, କାହିଁ ଶାସ୍ତ୍ରାଳାପ
ଏବେ ତହିଁ ବିରାଜିତ ମୂର୍ତ୍ତିମନ୍ତ ପାପ ।
ପଣ୍ଡିତମାନଙ୍କ ଗାଦି ଖାଲିଅଛି ପଡ଼ି
ଯାବନ୍ତ ଶାସନଦଣ୍ଡା ପାଡ଼ୁଛନ୍ତି ରଡ଼ି ।
ଦେଉଥିଲେ ଯାହା ମୁକ୍ତିମଣ୍ଡପ ବ୍ୟବସ୍ଥା
ଭାରତ ମଧ୍ୟରେ ହେଉନଥିଲା ଅନ୍ୟଥା ।
ହାୟ ସେ ପଣ୍ଡିତ ଜଣେ ମଧ୍ୟ ନାହିଁ
ମୁକତି ମଣ୍ଡପକୁ ଲେ ବସି ଦେବା ପାଇଁ ।"

ଏହିପରି ବହୁ ଗ୍ରନ୍ଥଭୁକ୍ତ, ପରିହାସୋଜ୍ଜ୍ୱଳ ଉକ୍ତିରେ 'ଉତ୍କଳଭ୍ରମଣ'ର ପ୍ରତ୍ୟେକ ପୃଷ୍ଠା ରସରଞ୍ଜିତ, ମୌଳିକ ଚିନ୍ତାଶକ୍ତି ସପନ୍ନ ହେବାର ଗୌରବ ଅର୍ଜନ କରିପାରିଛି । 'ଉତ୍କଳ ଭ୍ରମଣ" ସଂପର୍କରେ ସୁସମାଲୋଚକ ସୁରେନ୍ଦ୍ର ମହାନ୍ତି ଲେଖିଛନ୍ତି—"ଅପୂର୍ବ କୃତିତ୍ୱ, ଅନର୍ଗଳ ପ୍ରକାଶରୀତି, ସମାଜପ୍ରତି ଗଭୀର ଦାୟିତ୍ୱବୋଧ, ସଂସ୍କାର, ପ୍ରଗତିଧର୍ମୀ ପ୍ରଚଣ୍ଡ ଦୃଷ୍ଟିଭଙ୍ଗୀ ଓ ଏକ ସହାନୁଭୂତିଶୀଳ ମାନସ "ଉତ୍କଳ ଭ୍ରମଣ"କୁ ଓଡ଼ିଆ-ସାହିତ୍ୟରେ ଏକ ଓ ଅଦ୍ୱିତୀୟ କରିଅଛି । (୩୫) ବାସ୍ତବିକ ସମାଲୋଚକଙ୍କ ଏହି ଦୃଷ୍ଟିଭଙ୍ଗୀ 'ଉତ୍କଳଭ୍ରମଣ'ର ଆଲୋଚନା ପ୍ରତି ବେଶ୍ ଯଥାଯଥ ମନେହୁଏ ।

## (ଖ) "ପୁଷ୍ପମାଳା ଓ ଉପହାର'—୧୮୯୪-୯୬ :

୧୮୯୨ ମସିହାରେ 'ଉତ୍କଳଭ୍ରମଣ' କାବ୍ୟପରେ ଫକୀରମୋହନ ବିଭିନ୍ନ ସମୟରେ ଲେଖିଥିବା କେତେକ କବିତାକୁ ଯଥାକ୍ରମେ ୧୮୯୪ ଓ ୯୬ ମସିହାରେ 'ପୁଷ୍ପମାଳା' ଓ 'ଉପହାର' କବିତା ଗ୍ରନ୍ଥ ନାମରେ ପ୍ରକାଶିତ କରିଥିଲେ । ଫକୀରମୋହନ ନିଜ ମନ ତଥା ହୃଦୟର ପ୍ରଫୁଲ୍ଲତା ପାଇଁ, ପୁଣି ନିଜର ବିଭିନ୍ନ ଅନୁଭୂତି, ଆବେଗ ଓ ଚିନ୍ତାକୁ ଲିପିବଦ୍ଧ କରିବା ପାଇଁ ଏହି କବିତାଗୁଡ଼ିକ ରଚନା କରିଥିଲେ । ଏଥିପାଇଁ କୃଷ୍ଣା-କୁମାରୀଙ୍କ ଅକାଳ ବିୟୋଗ ଓ ଆପଣାର ଘଟଣାକ୍ଲିଷ୍ଟ ଜୀବନର ମର୍ମନ୍ତୁଦ କାହାଣୀ ତାଙ୍କୁ ପ୍ରେରଣା ଯୋଗାଇଥିଲା କହିଲେ ଚଳେ । ତାଙ୍କ ଜୀବନର ନାନା ସଂଘାତ, ସଙ୍କୁଳ ପରିସ୍ଥିତି ଓ ଚିନ୍ତାଚେତନାର ଭାବାବେଶ ହେଉଛି 'ପୁଷ୍ପମାଳା' ଓ 'ଉପହାର' କବିତା ସଂକଳନରେ ସଙ୍କଳିତ କବିତା ଗୁଡ଼ିକର ମୂଳଉତ୍ସ । 'ଆତ୍ମଜୀବନ ଚରିତ'ରେ ଫକୀରମୋହନ ଲେଖିଛନ୍ତି—

(୩୫) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା ପୃଷ୍ଠା-୨୧୧

"ମୁଁ ଡମପଡ଼ାରେ ଦ୍ୱିତୀୟଥର କର୍ମକରୁଥିବା ସମୟରେ ମୋର ସ୍ତ୍ରୀ କୃଷ୍ଣା-କୁମାରୀ ପରଲୋକ ଗମନ କଲେ । ମୋର ସେ ସମୟରେ ଯେଉଁ ଦାରୁଣ କଷ୍ଟ ଉପସ୍ଥିତ ହୋଇଥିଲା, ତାହାହିଁ ମୁଁ "ପୁଷ୍ପମାଳା" ଏବଂ 'ଉପହାର'— ଏହି ଦୁଇଖଣ୍ଡି ପୁସ୍ତକରେ ପ୍ରକାଶ କରିଅଛି ।"

ଅତଏବ ଏହିଦବୁ କବିତା ପୁସ୍ତକରେ ଏକ ଅଭିନନ୍ଦନୀୟ ମାନବୀୟ ପ୍ରକୃତିର ଉତ୍କଣ୍ଠା ଅତି ସ୍ୱଚ୍ଛ, ସରଳଭାବରେ ପ୍ରକଟିତ ହୋଇଛି । ବିରହ ବିଧୁର, ବ୍ୟଥିତ ଚିତ୍ତ ବୃଦ୍ଧ ଫକୀର-ମୋହନ ସ୍ତ୍ରୀ କୃଷ୍ଣାକୁମାରୀଙ୍କୁ ହରାଇ ଯେଉଁ ନିଃସଙ୍ଗ ବିଳାପ କରିଉଠିଥିଲେ, ତାହା ଆଲୋଚ୍ୟ କବିତା ପୁସ୍ତକର ଅନେକ କବିତାରେ ପ୍ରତିଧ୍ୱନିତ ହୋଇଉଠିଛି । 'ପୁଷ୍ପମାଳା'ରୁ ଏହାର ଉଦାହରଣ ନିଆଯାଇପାରେ—

"କୁସୁମ କଳିକା ଥିଲା ଯୌବନର ଖଣି
ମଧୁମୟୀ ହାସ୍ୟମୁଖୀ ପ୍ରେମଲତା-ମଣି
ବୃଦ୍ଧଜନ ପାଇଁ ମାୟା ମମତା ଲଗାଇ
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ ।"

(୨) ମୋ ଘର ପ୍ରାଙ୍ଗଣେ ଥିଲା ଲବଙ୍ଗର ଲତା
ଫାଟିପଡ଼ୁଥିଲା ରୂପକାନ୍ତି କୋମଳତା
ଆହା ଆହା କଏ ଦେଲା ତାହାକୁ ଶୁଖାଇ
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ ।

(୩) ହୃଦୟକପାଟୀ ଶିଳେ କାଞ୍ଚନର ରେଖ
ନୀଳାକାଶେ ଇନ୍ଦ୍ରଧନୁ ଚନ୍ଦ୍ରମୟ ଲେଖ;
ବେଦରୁ ଗାୟତ୍ରୀ ମନ୍ତ୍ର କେ ଦେଲା କାଢ଼ିଇ
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ ।"

( 'ପୁଷ୍ପମାଳା'ରୁ )

ସ୍ୱପତ୍ନୀଙ୍କ ପ୍ରେମ ଆନ୍ତରିକତା, ମୁଗ୍ଧଗୃହିଣୀ, ଆଶାତୀତ ଯତ୍ନ, ବାରମ୍ବାର ଫକୀର-ମୋହନଙ୍କର ନିଃସଙ୍ଗ ଜୀବନକୁ ଉତ୍ପୀଡ଼ିତ କରିଥିଲା । ତେଣୁ ଏହି ଉତ୍ପୀଡ଼ନର ଶିକାର ହୋଇ ବୃଦ୍ଧ ଫକୀରମୋହନ ସ୍ୱଲେଖନୀକୁ ଯେଉଁବାଟେ ଚଳାଇନେଲେ, ସେଥିରେ ତାଙ୍କୁ ଅବଶ୍ୟ 'ସରସ୍ୱତୀ', ବ୍ୟାସକବି' ଆଖ୍ୟା ହେବାର ଗୌରବ ମିଳିଲା; କିନ୍ତୁ ଏହି ନାମରେ ସେ ଜୀବିତ ହେଲେନାହିଁ, ତାଙ୍କ ଗଦ୍ୟ କସଟୀରେ ଏହି ନାମମାନ ଅନାମର ନାମ ହୋଇ ରହିଗଲା । ଗୋଟିଏ ପଟରେ କବି ଫକୀରମୋହନ ସ୍ୱକବିତାର ଖ୍ୟାତିପାଇଁ ଉପରୋକ୍ତ ଉପାଧିରେ ଉତ୍କଳ ଜନମାନସରେ ଚର୍ଚ୍ଚିତ ହେଲେ ବି ଅପର ପକ୍ଷରେ ତାଙ୍କର ଗଳ୍ପ ଓ

ଉପନ୍ୟାସମାଳା ତାଙ୍କ ପୂରପର୍ଣ୍ଣରେ ବେଶ୍ ଅଦ୍ଭୁତ କରିପାରିଥିଲା । କିନ୍ତୁ ନିର୍ବିବାଦରେ, ନିରପେକ୍ଷଭାବେ ବିଗ୍ଭର କଲେ ଫକୀରମୋହନ ଜୀବନର ସ୍ୱଚ୍ଛ ଦର୍ପଣଭାବେ ଏବଂ ତଦ୍ଧିରେ ତାଙ୍କ ଅନ୍ତର୍ନିହିତ ଜ୍ୱଳନର ପ୍ରତିଫଳନ ଘଟିଥିଲା 'ପୁଷ୍ପମାଳା' ଓ 'ଉପହାର' କବିତା ଗ୍ରନ୍ଥ ଦୁଇଟିରେ ।

## (ଗ) ଅବସର ବାସରେ—୧୯୦୩ :

ଫକୀରମୋହନ କର୍ମମୟଜୀବନରୁ ଅବ୍ୟାହତ ନେଲେ ତାଙ୍କର ସର୍ବଶେଷ କର୍ମକ୍ଷେତ୍ର 'କେନ୍ଦ୍ରାପଡ଼ାରୁ ଫେରିଆସିବା ପରେ । ଏତିକବେଳେ କଟକର ବାଲିଗ୍ରାବାଦ ସ୍ଥିତ ତାଙ୍କ ଘରେ ଅବସ୍ଥାନ କରୁଥିବା ସମୟରେ ୧୯୦୩ରେ ଯେ 'ଅବସର ବାସରେ' ନାମକ ଏକ କବିତା ଗ୍ରନ୍ଥ ପ୍ରକାଶ କରିଥିଲେ । (୩୬) ଏଥିରେ ଯେ କେତେକ ମନୋଜ୍ଞ କବିତାର ସମାହାର କରିଅଛନ୍ତି । ଏଥିରେ ଶ୍ରେଷ୍ଠ ବଡ଼ ପ୍ରାୟ ପ୍ରତ୍ୟେକଟି କବିତାରେ ଢଳଢଳ ହେଉଥିବାର ଆମେ ଦେଖିବା ଏକ ଉଚ୍ଚମାନବିକତାମୟ ଉଦାର ଓ ସୂକ୍ଷ୍ମତମ, ସହାନୁଭୂତି ସଂପନ୍ନ ସରସ ପ୍ରାଣର ଆଗ୍ରହ, ସମାଦାର ଓ କାରୁଣ୍ୟ ଯାହା ଦେଶକାଳର ସକଳ ସଂକୀର୍ଣ୍ଣ-ତାକୁ ତେର୍ଦ୍ଧହୋଇଉଠିଛି ବିଶ୍ୱଜନୀନ ଓ ସର୍ବକାଳୀନ । ଏହିସବୁ କବିତାରେ ଏକ ମାନସିକ ବିକାରଗ୍ରସ୍ତ, ଅତ୍ୟଧିକ ଚିନ୍ତାଭାରରେ ଅବନତ, ଆସନ୍ନ ମୃତ୍ୟୁ ଯନ୍ତ୍ରଣାରେ ଜର୍ଜରିତ, ବୃଦ୍ଧ ଫକୀରମୋହନଙ୍କ ଅପେକ୍ଷା, ଚଳଚଞ୍ଚଳ ରସିକପ୍ରାଣ, ଆବେଗ ବିହ୍ୱଳିତ ଚିର ସୁରଭିତ, ବିଦଗ୍ଧ ରସିକ ଫକୀରମୋହନଙ୍କ କଳକଲ୍ଲୋଳିତ ଆତ୍ମାର ପ୍ରତିଫଳନ ଘଟିଛି । ଏତେବେଳକୁ କୃଷ୍ଣାକୁମାରୀଙ୍କ ମୃତ୍ୟୁ କିଛିକାଳ ବିତିଗଲାଣି । ପତ୍ନୀ ମୃତ୍ୟୁର ସଦ୍ୟ ଭାବନା ଓ ତଜ୍ଜନିତ ବ୍ୟଥିତ ଚିତ୍ତରୁ ଫକୀରମୋହନ କିଛିଟା ଦୂରେଇ ଆସିଲେଣି । ତେଣୁ ନିଃସଙ୍ଗତାର ବିଳାପ ଧ୍ୱନି ଅପେକ୍ଷା ନିରଭିମାନ ଓ ନଶ୍ୱର ଆତ୍ମାର ମୁଗ୍ଧ ବନ୍ଦନାରେ ଏ କ୍ଷେତ୍ରରେ କବିପ୍ରାଣର ଉଚ୍ଛଳା ଫଲ୍‌ଗୁ ପ୍ରବାହିତ ହୋଇଯାଇଛି । ପୁଣି କବି ଚିତ୍ତ ଆଲୋଚ୍ୟ କବିତା ସଙ୍କଳନର ଅନେକ କବିତାରେ ଆଧ୍ୟାତ୍ମିକ ଉତ୍ତରଣରେ ଉପନୀତ ହୋଇଛି । ଏ ସମ୍ପର୍କରେ ଏହି ସଂକଳନରେ ଥିବା ତାଙ୍କର 'ଅଚିନ୍ତ୍ୟ ତତ୍ତ୍ୱ' କବିତାର ଉଦାହରଣ ନିଆଯାଇପାରେ—

"କରିଛନ୍ତି ଆର୍ଯ୍ୟଋଷି ସନ୍ଧାନ ବିସ୍ତାର<br>
ପ୍ରକୃତ ପ୍ରଶ୍ନର କେବା ଦେଇଛି ଉତ୍ତର ?<br>
ଊନବିଂଶ ଶତାବ୍ଦୀର ୟୁରୋପୀ-ବିଜ୍ଞାନ<br>
ମୂଳ ତତ୍ତ୍ୱ ପ୍ରକାଶରେ ଦେଖିଛୁ ଅଜ୍ଞାନ ।

---

(୩୬) "କେନ୍ଦ୍ରାପଡ଼ାରୁ ଆସିଲାବେଳେ ମୋର ବୟଃକ୍ରମ ୫୬ ବର୍ଷ ହୋଇଥିଲା । ଏହାପରେ ମୁଁ ଆଉ କାହାର ଅଧୀନରେ କର୍ମ ଗ୍ରହଣ କରିନାହିଁ । ବର୍ତ୍ତମାନ ମୋର—

ଦର୍ଶନ, ନୟନସ୍ନାନ, ବିଜ୍ଞାନ, ନ୍ୟାୟ,
ଆଉବା ପାଇବ କାହିଁ ଘାଣ୍ଟି ଗ୍ରନ୍ଥଯାକ !
ଅସୀମ ବ୍ରହ୍ମାଣ୍ଡ କେବା କରିଛି ନିର୍ମାଣ
କିପରି ଜାଣିବ ଶୁଦ୍ର ମାନବ ଅଜ୍ଞାନ ?'' (ଅବସର ବାସରେ)

''ଅବସର ବାସରେ' କବିତା ଗ୍ରନ୍ଥର ଅନ୍ୟକେତୋଟି ଶକ୍ତିଶାଳୀ କବିତା ମଧ୍ୟରେ 'ଧର୍ମରଥ କଥା', 'ଚନ୍ଦ୍ରପ୍ରଭାର ନିର୍ଜଳା ଏକାଦଶୀ' ଆଦି କବିତା ବେଶ୍ ଉପଭୋଗ୍ୟ ଓ ଉଲ୍ଲେଖଯୋଗ୍ୟ । ଏହି କବିତା ଦୁଇଟିରେ ଫକୀରମୋହନଙ୍କ ନିର୍ଭୀକ କବିଚିତ୍ତ, ସଂସ୍କାର ପ୍ରୟାସୀ ମନ, ତଥା ଉଗ୍ର ବୈପ୍ଳବିକ ଚିନ୍ତାଧାରା ଅତି ବେକ୍‌ଠୋକ୍ ଭାବେ ପ୍ରକାଶିତ ହୋଇଛି ।

'ଧର୍ମରଥ କଥା' କବିତାରେ ପ୍ରଚଣ୍ଡ ବ୍ୟଙ୍ଗ ବିଦ୍ରୂପ ମାଧ୍ୟମରେ କବି ଫକୀର-ମୋହନ ବିଧବା ସମସ୍ୟା ପ୍ରତି ସମାଜର ଦୃଷ୍ଟି ଆକର୍ଷଣ କରିଥିଲେ । ''ଆଜି ହିନ୍ଦୁ ବିଧବାର ଅମାନୁଷିକ ସାମାଜିକ ଯନ୍ତ୍ରଣାର ପ୍ରାୟ ଅବସାନ ଘଟିଥିଲେହେଁ, ପ୍ରାୟ ଶହେ ବର୍ଷ ତଳେ ଲିଖିତ ଫକୀରମୋହନଙ୍କ କାବ୍ୟାବଳୀରେ ସେହି ପରମ ମାନବିକ ଅବିଚାର କେତେକ ମୂର୍ଖ, ବିଚାରହୀନ, ରକ୍ଷଣଶୀଳ ସମାଜପତିଙ୍କ ନିର୍ଦ୍ଦେଶରେ ଯେପରି ସହସ୍ର ସହସ୍ର ବର୍ଷ ଧରି ଏହି ତଥାକଥିତ ସଭ୍ୟ ଦେଶରେ ଚାଲିଆସିଥିଲା, ତାର କରୁଣ ପ୍ରତିଧ୍ୱନି ଆଜି ବି ପାଠକ, ପାଠିକା ପାଇପାରିବେ (୩୭) ଫକୀରମୋହନଙ୍କ ଭାଷାରେ—

କଟକ ବାଙ୍ଖିରିବାଦ ଘରେ ରହିଲି । × × × ଏହି ଘରେ ମୋର ଶେଷ ଜୀବନର ଅନେକଗୁଡ଼ିଏ କବିତା ଲେଖା ହୋଇଥିଲା । କେଉଁଦିନ ରଜନୀଗନ୍ଧା, କେଉଁଦିନ ବା ଗୋଲାପ ଫୁଲ ପ୍ରତି ଦୃଷ୍ଟି ପଡ଼ିଗଲା, ସେହି ବିଷୟରେ ମୁଁ କବିତା ଲେଖା ଆରମ୍ଭକଲି । ଅନେକମାସ ପର୍ଯ୍ୟନ୍ତ ମନଦେଇ ଦେଖିଛି ପ୍ରତିଦିନ ସକାଳ ଠିକ୍ ୯ଟା ସମୟରେ ଯୋଡ଼ିଏ ହଳଦୀ ବସନ୍ତ ଆସି ପୁଷ୍ପୋଦ୍ୟାନ ମଧ୍ୟରେ କ୍ରୀଡ଼ାରେ ରତ ଥାଆନ୍ତି । ସେ ବିଷୟରେ ଗୋଟିଏ କବିତା ଦେଖିଲି । ଯୋଡ଼ିଏ କପୋତ ଆକାଶରେ କିପରି ଲଗାଲଗି ହୋଇ ଉଡ଼ିଗଲେ ସେ ବିଷୟରେ ଗୋଟିଏ କବିତା, ସନ୍ଧ୍ୟା ସମୟରେ କାଠଯୋଡ଼ିକୂଳ ପଥରବନ୍ଧ ଉପରେ ବସିଛି, ମନରେ ଯେଉଁ ଭାବ ଉଦୟ ହେଲା, ତାହା ଗୋଟିଏ କବିତାରେ ଲିପିବଦ୍ଧ କଲି । ମୁଁ ଏହି କବିତାଗୁଡ଼ିକୁ ସଂଗ୍ରହକରି 'ଅବସର ବାସରେ'' ପୁସ୍ତକ ଖଣ୍ଡିକ ପ୍ରକାଶ କଲି ।'' ( ଆତ୍ମଜୀବନ ଚରିତ)

(୩୭) ଡଃ ମାୟାଧର ମାନସିଂହ—ସରସ୍ୱତୀ ଫକୀରମୋହନ, ପୃଷ୍ଠା-୧୬୨

"ନାଣ୍ଡୋଳ ହାତେ ଯେନସ୍ତମ୍ଭ ରଥେ
ବୁଲି ଶାସନ ଦାଣ୍ଡରେ
ଘର ପାଣ୍ଟିକର ବୋଇଲେ ଏପରି
ଶୁଣିଛଟି କି ହେ କରେ ?

× × ×

ରାଣ୍ଡ ବାହାକଥା ସାତପୁରୁଷରୁ
କେହି କେବେ ଶୁଣିନାହିଁ
କଳି ପରା ଶେଷ ହେବାରୁ ଏକଥା
ଏବେ ଶୁଣାଗଲା ଭାଇ ।

× × ×

ଶାସନରେ ଯେତେ ବ୍ରାହ୍ମଣେ ଅଛନ୍ତି
କରିବା ଗୋଟାଏ ସଭା
ରାଣ୍ଡୀଝିଅ କୋହ୍ନ ବେଶ୍ୟା ହୋଇଯାଉ
ତାହାକୁ ନଦେବା ବିଭା ।" (ଅବସର ବାସରେ)

ବିଧବା ବେଦନା ପ୍ରତି ସମ୍ବେଦନଶୀଳ ହୋଇ କବିଚିତ୍ତ ମଥିତଭାବେ ସମାଜ ସଂସ୍କାର ଉଦ୍ଦେଶ୍ୟରେ ଏଇ ଯେଉଁ କାବ୍ୟିକ ପ୍ରୟାସ କରିଛି, ତାହା ଫକୀରମୋହନଙ୍କ କାଳରେ କମ୍ ସ୍ପର୍ଦ୍ଧାର କଥା ନୁହେଁ । କେବଳ ଏତିକି ନୁହେଁ 'ବାଲ-ବିବାହ' ପ୍ରଥାର ଘୋର ସମାଲୋଚନା କରି କବି ଫକୀରମୋହନ ଚନ୍ଦ୍ରପ୍ରଭା ଜୀବନର କରୁଣ କାହାଣୀକୁ 'ଚନ୍ଦ୍ରପ୍ରଭାର ନିର୍ଜଳା-ଏକାଦଶୀ, କବିତାରେ ଯେପରିଭାବେ ବର୍ଣ୍ଣନା କରିଛନ୍ତି, ତାହା ଏକାନ୍ତ ଭାବେ ହୃଦସ୍ପର୍ଶୀ । ସେ ଲେଖିଛନ୍ତି—

"ଷାଠିଏ ବରଷ ବୁଢ଼ା ବିଭହୋଇପାରେ
ବାଳିକା ସକାଶେ ଶାସ୍ତ୍ର-ବିଧାନ ବାହାରେ ।
ହେ ସମାଜ କରୁଅଛ ଯେଉଁ ଅତ୍ୟାଚାର
ନିସ୍ତାର ହେବଟି ପରଲୋକରେ ବିଚାର ।

× × ×

ଜାଣିଥିବ ଚନ୍ଦ୍ରଭାର ପ୍ରତ୍ୟେକ ନିଶ୍ୱାସ
କରିପକାଇବ କେତେ କୁଳକୁ ବିନାଶ ।"

ଚନ୍ଦ୍ରପ୍ରଭା ମାତ୍ର ଆଠବର୍ଷରେ ବିଭାହେଲା ଷାଠିଏ ବର୍ଷର ବୃଦ୍ଧକୁ । ମାତ୍ର ବିବାହର ଗୋଟିଏ ବର୍ଷପରେ ତାର ସ୍ୱାମୀ ହେଲେ ପରଲୋକଗତ । ଚନ୍ଦ୍ରପ୍ରଭା ଜୀବନରେ ଯେଉଁ

ବିଷାଦ ବଉଦର ଘନ ଘୋଟିଆସିଲା, ତାହା କବି ଲେଖନୀରେ ଅତି କରୁଣ ଓ ମର୍ମନ୍ତୁଦ ହୋଇଉଠିଛି—

"ରଥେ ତ ଧଇଲେ ବରଷକେ ସମଦଣ୍ଡ
ନଅ ବରଷରେ ଚନ୍ଦ୍ରପ୍ରଭା ହେଲା ରାଣ୍ଡ
ଆଜଠାରୁ ସେ ବିଧବା କରିବ ହବିଷ୍ୟ
ନ ଖାଇବ ଭଲ ଭଲ ଦ୍ରବ୍ୟ ବା ଆମିଷ ।"

ଚନ୍ଦ୍ରପ୍ରଭା ଜୀବନରେ ଏଇ ଯେଉଁ ଅକାଳବୈଧବ୍ୟ ଆସିଛି, ସେଥିପାଇଁ କବି ଫକୀରମୋହନ ଦାୟୀ କରନ୍ତି ତଥାକଥିତ ପଣ୍ଡିତ ବୋଲାଉଥିବା ମୂର୍ଖ ବ୍ରାହ୍ମଣ ଓ ସମାଜପତିମାନଙ୍କୁ । ଫକୀରମୋହନୀୟ ଯନ୍ତ୍ରଣାର ପ୍ରତ୍ୟକ୍ଷ ଅନୁଭୂତିରେ ଏ କବିତା ହୋଇଛି ଏକାନ୍ତଭାବେ ମର୍ମସ୍ପର୍ଶୀ । ଏହିପରି ଭାବେ 'ଅବସର ବାସରେ' କବିତା ଗ୍ରନ୍ଥରେ ଫକୀରମୋହନ ତାଙ୍କ କବିତ୍ୱର ବୌଦ୍ଧିକ ପରାକାଷ୍ଠା ଜାହିର୍ କରିଥିବାର ଲକ୍ଷ୍ୟ କରାଯାଇପାରେ ।

## (ଘ) ବୌଦ୍ଧାବତାର କାବ୍ୟ—୧୯୦୭/୮ :

ଫକୀରମୋହନଙ୍କ 'ବୌଦ୍ଧାବତାର କାବ୍ୟ' ତାଙ୍କ ବାଲେଶ୍ୱର ରହଣିକାଳରେ ରଚନା । କଟକରୁ ଯାଇଁ ବାଲେଶ୍ୱରର ଶାନ୍ତିକାନନଠାରେ ରହିଥିବାବେଳେ ୧୯୦୭ରେ ସେ ଏହାକୁ ରଚନା କରିଥିଲେ ଓ ୧୯୦୮ରେ ଏହା ପ୍ରକାଶିତ ହୋଇଥିଲା । କେତେକ ସମାଲୋଚକ ଏହାକୁ ବଙ୍ଗକବି ନବୀନ ଚନ୍ଦ୍ର ସେନ୍‌ଙ୍କର 'ଅମିତାଭ' କାବ୍ୟର ଅନୁସରଣରେ ଓ ଅନୁବାଦ ହୋଇଥିବା କଥା ଉଲ୍ଲେଖ କରନ୍ତି । ପଣ୍ଡିତ ନୀଳକଣ୍ଠ ଦାସ ଏଥି ମଧ୍ୟରୁ ଅନ୍ୟତମ । କିନ୍ତୁ ଡଃ ମାୟାଧର ମାନସିଂହ ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ଏଥିପାଇଁ ତୀବ୍ର ସମାଲୋଚନା କରି ଲେଖିଛନ୍ତି—"× × × ପଣ୍ଡିତ ମହାଶୟ ମଧ୍ୟ ସେନାପତିଙ୍କ 'ବୌଦ୍ଧାବତାର କାବ୍ୟ'କୁ ନବୀନ୍ ସେନ୍‌ଙ୍କ 'ଅମିତାଭ'ର 'ଗୋଟିଏ ସ୍ୱତନ୍ତ୍ର-ଅନୁବାଦ" ବୋଲି ଏକ ଗୁରୁତ୍ୱପୂର୍ଣ୍ଣ ଘୋଷଣା କରିଯାଇଛନ୍ତି । କିନ୍ତୁ ତାହା ସାମାନ୍ୟତମ ଭାବରେ ହେଲେ ପ୍ରମାଣିତ କରିବାକୁ ଚେଷ୍ଟା କରିନାହାନ୍ତି; (୩୮) କିନ୍ତୁ ସେନାପତି ନିଜେ ତାଙ୍କ ମୁଖବନ୍ଧରେ 'ବୌଦ୍ଧଗ୍ରନ୍ଥ ଲଳିତ ବିସ୍ତର ଏବଂ ବଙ୍ଗ ଭାଷାରେ ପ୍ରକାଶିତ କେତେଖଣ୍ଡ ମାସିକ ପତ୍ରିକା ଏବଂ ପୁସ୍ତକ ଅବଲମ୍ବନରେ ଏହି କାବ୍ୟ ଲିଖିତ" ବୋଲି ଦ୍ୱିଧାହୀନ ସ୍ୱୀକାରୋକ୍ତି ଶୁଣାଇଯାଇଛନ୍ତି । ତେଣୁ ଏହି କାବ୍ୟରେ ଫକୀରମୋହନଙ୍କ ଆହରଣ ସ୍ୱମୌଳିକତାର ପ୍ରୟୋଗରେ ବର୍ଣ୍ଣିଳ ତଥା ବିଚିତ୍ର ହୋଇଉଠିଛି ।

ଫକୀରମୋହନ ଥିଲେ ସମାଜ ସଂସ୍କାରକ । ସମାଜର ଭଣ୍ଡ ପୁରୋହିତ ମାନଙ୍କର ଅସ୍ତିତ୍ୱ ସ୍ୱୀକାର ଅପେକ୍ଷା ନିରାକାରମୟ ପ୍ରଭୁଙ୍କୁ ବରଂ ସେ ସ୍ୱୀକାର କରିଥିଲେ । ତେଣୁ

(୩୮) ଡକ୍ଟର ମାୟାଧର ମାନସିଂହ—ସରସ୍ୱତୀ ଫକୀରମୋହନ ।

ମୋକ ପ୍ରତି ଅତିବାଲ୍ୟକାଳରୁ ତାଙ୍କ ମନରେ ଜାତ ହୋଇଥିବା ନାସିକା କୁଞ୍ଚନ ଭାବ ପରେ ନାନା ବ୍ୟଙ୍ଗ ସ୍ୱରୂପ ମାଧ୍ୟମରେ ତଥା ଆଧିଭୌତିକ ଚେତନା ମାଧ୍ୟମରେ ତାଙ୍କ ସାହିତ୍ୟ ସୃଷ୍ଟିରେ ପରପ୍ରକାଶ ଲଭିଛି । 'ବୌଦ୍ଧାବତାର କାବ୍ୟ' ଏହି ସତ୍ୟର ପରିଚାୟକ । ସମାଜର ଅବକ୍ଷୟ ଘାତମାତ, ଭ୍ରଷ୍ଟ କୁଳାଗ୍ରର ଦେଖି ଫକୀର ମୋହନଙ୍କ ମନ ସ୍ୱଭାବତଃ ଧର୍ମ ଆଡ଼କୁ ଝୁଙ୍କିଯାଇଥିଲା । ତେଣୁ ସେ ବୌଦ୍ଧ ଧର୍ମର 'ଅହିଂସା ପରମ ନୀତି'ରେ ପ୍ରଚଣ୍ଡ ବିଶ୍ୱାସୀ ହୋଇଉଠିଥିଲେ । ବୁଦ୍ଧଙ୍କ ତ୍ୟାଗପୂତ ବାଣୀରେ ସେ ଉଦ୍‌ବୁଦ୍ଧ ହୋଇ 'ବୌଦ୍ଧାବତାର' ପରି ଏକ କାବ୍ୟ ରଚନାରେ ପ୍ରୟାସୀ ହୋଇଥିଲେ ବୋଲି କୁହାଯିବା ବରଂ ଅଧିକ ସମିଚୀନ । ବୁଦ୍ଧଙ୍କ ଜୀବନ ସମ୍ବନ୍ଧୀୟ ନାନା ତଥ୍ୟ ଓ ତତ୍ତ୍ୱରେ ଆଲୋଚ୍ୟ କାବ୍ୟକୁ ଫକୀରମୋହନ ବେଶ୍ ରସାଣିତ କରିଅଛନ୍ତି । ଡଃ ମାନସିଂହ 'ବୌଦ୍ଧାବତାର କାବ୍ୟ' ସମ୍ପର୍କରେ ସ୍ୱମତର ଅବତାରଣା କରି ଲେଖିଛନ୍ତି—(ବୌଦ୍ଧାବତାର କାବ୍ୟ) "ଏକ ଐତିହାସିକ ମହାମାନବର ଜୀବନ ଚରିତ ହେଲେହେଁ ଫକୀରମୋହନଙ୍କ ଭିନ୍ନ ଭିନ୍ନ ଛନ୍ଦରେ ଲିଖିତ ବୌଦ୍ଧାବତାର କାବ୍ୟଟି କାବ୍ୟଭାବରେ ଉତ୍ତୀର୍ଣ୍ଣ ନହୋଇଛି ବୋଲି ମଧ୍ୟ କେହି କହିପାରିବେନ । ଗୌତମଙ୍କ ସାତବର୍ଷର ତପସ୍ୟା, ତାଙ୍କର ବୈଶାଖ ପୂର୍ଣ୍ଣିମା ରାତ୍ରିରେ ଭିନ୍ନ ଭିନ୍ନ ଧ୍ୟାନସ୍ତରର ଅଭିଜ୍ଞତା ଓ ତାଙ୍କର ଧର୍ମ ପ୍ରଚାର ଇତ୍ୟାଦି କୌଣସି ଲଳିତ କାବ୍ୟର ଉପଯୋଗୀ ଉପାଦାନ ନହେଲେ ହେଁ ସେ ସମସ୍ତ ବାଧାକୁ ଫକୀରମୋହନ ବହୁ ପରିମାଣରେ ଅତିକ୍ରମ କରି, ସମଗ୍ର ଗାଥାଟିକୁ ସାଧାରଣ ପାଠକ ନିକଟରେ ସୁଖବୋଧ୍ୟ ଓ ଉପଭୋଗ୍ୟ କରି ଯୋଇ ପାରିଛନ୍ତି । ସମଗ୍ର କାବ୍ୟଟି ଶାନ୍ତ ଓ କରୁଣରସରେ ପରିପୂରିତ । ବିଶେଷକରି ସିଦ୍ଧାର୍ଥଙ୍କର ପିତାମାତାଙ୍କ ଠାରୁ ପ୍ରାକ୍ ସନ୍ୟାସ ବିଦାୟ ଓ କପିଳବାସ୍ତୁରେ ସେମାନଙ୍କ ସହିତ ବୋଧି ପର-ମିଳନ ଗମ୍ଭୀର କାରୁଣ୍ୟରସର ଉତ୍ସ ହୋଇ ଦୃଶ୍ୟାୟମାନ । (୩୯)

କେବଳ ଏତିକି ନୁହେଁ ମୃତ୍ୟୁ ପ୍ରତିଥିବା ଚିରନ୍ତନ ଜାଗ୍ରତ ଭାବ ଫକୀରମୋହନଙ୍କ ଜୀବନାଦର୍ଶ ଭାବେ ଏହି କାବ୍ୟରେ ମଧ୍ୟ ପ୍ରତିଫଳିତ ହୋଇଛି । ସେ ଲେଖିଛନ୍ତି—

"ଅନିତ୍ୟ, ଅଧ୍ରୁବ ଜୀବନ  
ଅବୋଧ ବସିଛି ମରଣ ।  
କ୍ଷଣିକ ଜଳବିନ୍ଦୁ ପ୍ରାୟେ;  
ଜୀବନ ଦୀପ ଲିଭିଯାଏ ।" (ବୌଦ୍ଧାବତାର କାବ୍ୟ-୧୦ମସର୍ଗ)

ସମାଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ କହିବାକୁ ଗଲେ—"ଓଡ଼ିଆ ସାହିତ୍ୟରେ ରାଧାନାଥଙ୍କ କାବ୍ୟକୀର୍ତ୍ତିର ମଧ୍ୟାହ୍ନରେ ୧୯୦୭ ଖ୍ରୀ. ଅ.ରେ ରଚିତ 'ବୌଦ୍ଧାବତାର କାବ୍ୟ' ଓଡ଼ିଆ କାବ୍ୟ ସାହିତ୍ୟର ବିକାଶ ଓ ଅଭିବ୍ୟକ୍ତି ଦୃଷ୍ଟିରୁ ଉଲ୍ଲେଖ-

(୩୯) ଡକ୍ଟର ମାୟାଧର ମାନସିଂହ—ସରସ୍ୱତୀ ଫକୀରମୋହନ ।

ଯୋଗ୍ୟ ନୁହେଁ ।" "କିନ୍ତୁ ବିଷୟବସ୍ତୁ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟରେ ଏହି କାବ୍ୟର ଏକ ସମ୍ମାନଜନକ ସ୍ଥାନ ରହିବା ସ୍ୱାଭାବିକ ।" କାରଣ ବୁଦ୍ଧଙ୍କ ଜୀବନକୁ ନେଇ ଏହା ପୂର୍ବରୁ କୌଣସି କାବ୍ୟ ଓଡ଼ିଆ ଭାଷାରେ ରଚିତ ହୋଇନଥିଲା । ପୁଣି ଏହି କାବ୍ୟର ମୁଖବନ୍ଧରେ ଫକୀର-ମୋହନ ଯେଉଁ ଅଧ୍ୟୟନ, ଅଧ୍ୟବସାୟ ଓ ବିଦ୍‌ବତ୍ତାର ପରିଚୟ, ଦେଇଛନ୍ତି ତାହା ଅନନ୍ୟ । ତେଣୁ ଏହି କାବ୍ୟ ରାଧାନାଥ ଯୁଗରେ ଏକ ବ୍ୟତିକ୍ରମ ଓ ଫକୀରମୋହନ ସେହି ଦୃଷ୍ଟିରୁ ସମକାଳର ଜଣେ ସମ୍ମାନିତ ସ୍ରଷ୍ଟା ।

## (ଙ) "ପୂଜାଫୁଲ" ଓ "ଧୂଳି"—୧୯୧୭/୧୯୧୫ :

'ପୂଜାଫୁଲ' ଓ 'ଧୂଳି' କବିତା ଗ୍ରନ୍ଥ ଦ୍ୱୟ ଫକୀରମୋହନଙ୍କ ଜୀବଦ୍ଦଶାର ଅନ୍ତିମ କାଳର ସୃଷ୍ଟି । ବାଲେଶ୍ୱରରେ ଜୀବନର ସୂର୍ଯ୍ୟାସ୍ତରେ ନିଃସଙ୍ଗ ଜୀବନ ଯାପନ କାଳରେ ବୃଦ୍ଧ ଫକୀରମୋହନ ଏହାକୁ ରଚନା କରିଥିଲେ । ଏଥିରେ କବି ପ୍ରାଣର ଆଧ୍ୟାତ୍ମିକ ଚେତନା, ସମାଜ ସଂସ୍କାର ପ୍ରୟାସ, ବ୍ୟଙ୍ଗାନୁଚେତନା, ଅତି ମନୋଜ୍ଞ ଭାବରେ ପରି-ପ୍ରକାଶ ଲାଭ କରିଛି । 'ଅବସର ବାସରେ" କବିଚେତନାର ଯେଉଁ ବୌଦ୍ଧିକ ଉତ୍ତରଣ ଘଟିଥିଲା, ତାହା ଉପରୋକ୍ତ ଦୁଇ କବିତା ସଂକଳନରେ ସମଭାବେ ଅନୁଭୂତ ହୁଏ । 'ପୂଜା-ଫୁଲ ଓ ଧୂଳି' ରଚନା କାଳକୁ ଫକୀରମୋହନ ଓଡ଼ିଆସାହିତ୍ୟ ପାଇଁ ଉପନ୍ୟାସ ଓ ଗଳ୍ପ କ୍ଷେତ୍ରରେ ଏକ ନୂତନ ଦିଗନ୍ତ ସୃଷ୍ଟି କରିସାରିଥିଲେ । କିନ୍ତୁ କବିତ୍ୱକୁ ସେ ପରିହାର କରିପାରି ନଥିଲେ, ଯେଉଁଥିପାଇଁ ଗଳ୍ପ ଓ ଉପନ୍ୟାସ ରଚନାରେ ସେ ବ୍ରତୀ ଥାଇ ବି ୧୯୦୦ରେ ଲେଖିଥିଲେ 'ଅବସର ବାସରେ' ୧୯୧୨ ଓ ୧୫ରେ ଲେଖିଥିଲେ ଯଥାକ୍ରମେ 'ପୂଜାଫୁଲ' ଓ 'ଧୂଳି' କବିତା ଗ୍ରନ୍ଥ ଦୁଇଟିକୁ । ଏଣୁ କବିତ୍ୱ ଯେ ଫକୀରମୋହନଙ୍କ ସାହିତ୍ୟିକ ଜୀବନର ଜନ୍ମଗତ କଳା ଏକଥା ଅସ୍ୱୀକାର କରିହେବ ନାହିଁ ।

ଅନୁବାଦ ମାଧ୍ୟମରେ ଫକୀରମୋହନଙ୍କର ଯେଉଁ ସାରସ୍ୱତ ପ୍ରତିଭା ଅଙ୍କୁରିତ ହୋଇ-ଥିଲା, ତାହା ତାଙ୍କର କବିତ୍ୱ ଦେଇ ଗଦ୍ୟର ପୃଷ୍ଠପଟକୁ ଅବତରଣ କରିଥିଲା କହିଲେ ଚଳେ । ତେଣୁ ଫକୀରମୋହନ କବି ହେବାକୁ ଯାଇଥିବା ବେଳେ ତାଙ୍କ ମଧ୍ୟରେ ମହା-ଶାଳିକର ମହାଚେତନା ଅତି ଅସମ୍ଭବଭାବେ ଆମ ଆଗରେ ଉଦ୍‌ଭାସିତ ହୋଇଉଠିଲା । ଏ ସଂପର୍କରେ ଡ଼ଃ ମାନସିଂହଙ୍କ ମତ ଏ କ୍ଷେତ୍ରରେ ଉଦ୍ଧାରଯୋଗ୍ୟ । ସାଙ୍କ ମତରେ—

> "ଢେଙ୍କାନାଳରେ ବଡ଼ପୁଅ ମରିଯିବା ପରେ, ଖୁବ୍ ସମ୍ଭବତଃ—୧୮୮୧-୮୨ରେ ଅର୍ଥାତ୍ ପ୍ରାୟ ଷୋଳଶ ବର୍ଷ ବୟସ ବେଳେ ଫକୀରମୋହନ ଶୋକାତୁରା କୃଷ୍ଣା-କୁମାରୀଙ୍କର ଶୋକ ଭୁଲାଇନେବା ଲକ୍ଷ୍ୟରେ ରାମାୟଣ ଓ ମହାଭାରତ ଅନୁବାଦ କରନ୍ତି । ଏ ଅନୁବାଦ ଚାଲିଛି ୧୯୦୨ ପର୍ଯ୍ୟନ୍ତ—ପ୍ରାୟ ୧୯ ବର୍ଷ କାଳ ।"

ଖୁବ୍ ସମ୍ଭବତଃ ରାମାୟଣ-ମହାଭାରତର ଅନୁବାଦୀକରଣର ସଫଳତାହିଁ, ଫକୀର-ମୋହନଙ୍କୁ ମୌଳିକ କବିତା ରଚନା ପାଇଁ ପ୍ରଚୁର ଆସ୍ଥା ଓ ସାହସ ଯୋଗାଇ ପାରିଥିଲା । ପ୍ରୌଢ଼ ବୟସରେ ପ୍ରାୟ ପଚାଶବର୍ଷ ବୟସରେ, ଏହି ଦୀର୍ଘ-ଅନୁବାଦ-ଅଭ୍ୟସ୍ତ କୁଣ୍ଠାହୀନ ରଚନା ପାଟବ ହିଁ ସମ୍ଭବ କରିପାରିଥିଲା, ହାତ ଉପରେ ବସି ଯାଉଁ ଯାଉଁ ରାସ୍ତାରେ ରାସ୍ତାରେହିଁ 'ଉତ୍କଳ ଭ୍ରମଣ' ପରି ଅପୂର୍ବ ସୃଷ୍ଟି, ଯାହାକୁ ଜାଣିଶୁଣି ଲେଖକ ତତ୍-କାଳୀନ ଲେଖିଥିଲେ ହେଁ, ଯାହା ପ୍ରତିଭାର ସ୍ପର୍ଶରେ ଏପର୍ଯ୍ୟନ୍ତ ହରାଇନି ତାର ରସମୟ ପ୍ରତିଭୂତା ଓ ଜାତୀୟ ଆଦର୍ଶର ଔଜ୍ଜ୍ୱଲ୍ୟ । ସେ ହେଲା ୧୮୯୬ର କଥା । ତା'ପରେ ସବଦା ଆଉ ଅଚେତନ ଫକୀରମୋହନୀ ପ୍ରତିଭା, ପୁଣି ଚାରିବର୍ଷ ପାଇଁ ନୀରବ । ୧୮୯୪ ରେ କୃଷ୍ଣାକୁମାରୀଙ୍କ ବିୟୋଗ ପରେ ବିରହ ବିଧୁର ପ୍ରତିଭାକୁ କିଛି ସମୟ ଲାଗିଛି ଆତ୍ମସ୍ଥ ହେବାକୁ । ୧୮୯୫-୯୬ରୁ ହିଁ ଅର୍ଥାତ୍ ଯେତେବେଳେ ସଂଗୃହୀତୋକ୍ତ, ସେହି ସ୍ତ୍ରୀ ବିୟୋଗ କାତର ଅବସ୍ଥାରେ ହିଁ ଜନ୍ମଲାଭ କରିଛନ୍ତି ପ୍ରକୃତ କବି ଫକୀରମୋହନ ।

କିନ୍ତୁ କବି ଫକୀରମୋହନଙ୍କର ଦୁର୍ଭାଗ୍ୟକୁ ଠିକ୍ ସମକାଳରେ ଜନ୍ମନେଇଛନ୍ତି ମଧ୍ୟ 'ପ୍ରସିଦ୍ଧ ଗାଳ୍ପିକ ଓ ଔପନ୍ୟାସିକ' ଫକୀରମୋହନ । ଏହି ଦ୍ୱିତୀୟ ଫକୀରମୋହନର ଅସାଧାରଣ ସାଫଲ୍ୟ, ପ୍ରଥମ ଫକୀରମୋହନର ସମାନ ଭାବରେ ଅସାଧାରଣ ସାଫଲ୍ୟକୁ ପ୍ରାୟ ବୁଡ଼ାଇଦେଲା କହିଲେ ଚଳେ । ଯଦିଓ ଏକା ଏକା ରାମାୟଣ ଓ ମହାଭାରତ ଅନୁବାଦ କରିପାରିଥିବାରୁ ହିଁ (ଏବଂ ଯାହା ଜଣେ ଲୋକ ପକ୍ଷରେ ଯେ ଏକ ଅସାଧାରଣ ସାହିତ୍ୟିକ ସିଦ୍ଧି, ଏଥିରେ ସନ୍ଦେହ ନାହିଁ, ଦେଶବାସୀ କବିଙ୍କ ବୃଦ୍ଧ ବୟସରେ 'ବ୍ୟାସକବି ରୂପକ ଲୋଭନୀୟ ପଦବୀରେ ତାଙ୍କୁ ସମ୍ବୋଧିତ କରିବାକୁ ଲାଗିଲେ; କିନ୍ତୁ ତା' ଦ୍ୱାରା ଫକୀରମୋହନ ରାମାୟଣ ବା ମହାଭାରତ ଅନୁବାଦ ନକରି ମଧ୍ୟ ଯେ 'କ୍ୟାସକବି' ବୋଲାଇ ଥିବାର ଅଧିକାରୀ ଥିଲେ, ତାଙ୍କର ଏହି ମହାନ୍ ଗୌରବ ଏ ଦେଶରେ ସାହିତ୍ୟ ରସିକ ମାନଙ୍କର ଭ୍ରାନ୍ତଦୃଷ୍ଟିର ଅଭାବରୁ, ବହୁତଳେ ପୋତିହୋଇଯାଇଛି । ଏପର୍ଯ୍ୟନ୍ତ ଓଡ଼ିଆ ଭାଷାରେ 'କବି ଫକୀରମୋହନ'ର ସମୁଚିତ ଯଥାଯଥ ଆଲୋଚନା ଦୂରର କଥା ପ୍ରଚାର ବା ସମାଦାର ପାଇନି କହିଲେ ଚଳେ । ରାମାୟଣ ମହାଭାରତ ଅନୁବାଦ ନକରି ମଧ୍ୟ ଫକୀରମୋହନ ଓଡ଼ିଶାରେ 'ବ୍ୟାସକବି ବୋଲାଇବାର ଦାବି ଅନନ୍ୟ ।

ଏ ଦାବି ଚିର ଦଣ୍ଡାୟମାନ ତାଙ୍କ କାବ୍ୟକାଶୋତ୍ଥିତ ଧ୍ୱନି ଗୁଡ଼ିକର ବିସ୍ମୟକର ବ୍ୟାପ୍ତି ଯୋଗୁଁ । ବୁଢ଼ା ପଲାଶ ତରୁଠାରୁ ଦାମୋଦର ପଟ୍ଟନାୟକ ପର୍ଯ୍ୟନ୍ତ, ସତୀ ଲୁକ୍ରେସିୟାଠାରୁ ଚନ୍ଦ୍ରପ୍ରଭାର ନିର୍ଜଳା ଏକାଦଶୀ ପର୍ଯ୍ୟନ୍ତ । ବୁଦ୍ଧ୍ କାପାନଠାରୁ ପାଉଁଆ-ପାତେଇ ପର୍ଯ୍ୟନ୍ତ, ଯୀଶୁଖ୍ରୀଷ୍ଟଠାରୁ ଆରମ୍ଭକରି କବିର କଳହୁଡ଼ୀ ସ୍ତ୍ରୀ ପର୍ଯ୍ୟନ୍ତ

ଫକୀରମୋହନଙ୍କ ପ୍ରତିଭା ତା'ର କାବ୍ୟକବିତାର ଉପାଦାନ ନ୍ୟସଂକୋଚରେ ଗୋଟାଇ ଗୃହିଛି ସମଗ୍ର ବିଶ୍ୱରୁ (୪୦)

କିନ୍ତୁ ଫଳତଃ ତାଙ୍କ କବିତ୍ୱ ଓ ତତ୍ସନିତ ସୃଷ୍ଟି ଉପରେ ତାଙ୍କ ଅପ୍ରତିହତ, ଅନତିକ୍ରାନ୍ତ ଗଦ୍ୟସୃଷ୍ଟି ଏକ ସୂକ୍ଷ୍ମ ପରଳ ମଡ଼ାଇ ଦେଇଥିଲା । ଶ୍ରେଷ୍ଠ କବି ଭାବରେ ସେ ଯେତିକ ଗୌରବର ଅଧିକାରୀ ହେବା କଥା ତାହା ତାଙ୍କର ପାଠକ ବା ସମାଲୋଚକ ତାଙ୍କୁ ଦେଇ ନପାରି ଏକ ଦେଶଦର୍ଶୀ ଭାବେ ତାଙ୍କ ଗଦ୍ୟ ଉପରେ ଆଲୋକପାତ କରି-ଗୃଲେ । ତେଣୁ ତାଙ୍କ ଗଦ୍ୟ ସାହିତ୍ୟ ତୁଳନାରେ ତାଙ୍କ ପଦ୍ୟସାହିତ୍ୟ ଗୁଣାତ୍ମକ ବା ପରିମାଣାତ୍ମକ ଦୃଷ୍ଟିରୁ ନ୍ୟୁନ ନହେଲେ ମଧ୍ୟ ତାକୁ ନ୍ୟୁନ କରିଦିଆଯାଇଛି କହିଲେ ଅତ୍ୟୁକ୍ତି ହେବନାହିଁ, ଅଥଚ ଅପର ପକ୍ଷରେ ତାଙ୍କୁ ଓଡ଼ିଆ ସାହିତ୍ୟର ଜଣେ ସଫଳ ଗଦ୍ୟ ସ୍ରଷ୍ଟାର ଭୂମିକାରେ ଅବତୀର୍ଣ୍ଣ କରାଯାଇଁ ଯେଉଁ ମଣ୍ଡନ, ବନ୍ଦନ କରାଯାଉଛି, ତାହା ମଧ୍ୟ ତାଙ୍କର ଯଥାର୍ଥ ପ୍ରାପ୍ୟ । ଏହି ପରିପ୍ରେକ୍ଷୀରେ ତାଙ୍କର ଗଦ୍ୟସୃଷ୍ଟି ଆମର ଆଲୋଚ୍ୟ ।

## ଗଦ୍ୟସ୍ରଷ୍ଟା ଫକୀରମୋହନ :

ଗଦ୍ୟଶିଳ୍ପୀ ହିସାବରେ ଫକୀରମୋହନଙ୍କ ପ୍ରତିଭା ସର୍ବଜନ ସ୍ୱୀକୃତ । 'ଗଦ୍ୟ କବିନାଂ ନିକଷା ବଦନ୍ତି'—ଗଦ୍ୟରଚନା ଶୈଳୀ ରଚୟିତାର ସୃଷ୍ଟିସାମର୍ଥ୍ୟର କଷଟି ପଥର । ଅର୍ଥାତ୍ ଲେଖକର ପାରଦର୍ଶିତା ଯଥାର୍ଥ ଭାବେ ପ୍ରକଟିତ ହୁଏ ଗଦ୍ୟରେ । ଫକୀରମୋହନଙ୍କ ରଚନାର ସମସ୍ତ ସାରବତ୍ତା ନିହିତ ତାଙ୍କର ଗଦ୍ୟ ରଚନାମାନଙ୍କରେ । ଫକୀରମୋହନଙ୍କ ଗଦ୍ୟ ରଚନା ଭିତରେ ତାଙ୍କ ଲିଖିତ ବିଭିନ୍ନ ସମୟର କେତେକ ପ୍ରବନ୍ଧ ବା ସମାଲୋଚନା, ଗଳ୍ପ, ଉପନ୍ୟାସ ଆଦିକୁ ଅନ୍ତର୍ଭୁକ୍ତ କରାଯାଇପାରେ ।

**ରାଜପୁତ୍ରର ଇତିହାସ**—ଫକୀରମୋହନ ତାଙ୍କ ଜୀବନକାଳରେ ଆଦ୍ୟସାହିତ୍ୟିକର ମୂଳଭିତ୍ତି ପ୍ରଦାନ କରିଥିଲେ ତାଙ୍କର ସର୍ବପ୍ରଥମ ଗଦ୍ୟରଚନା ତଥା ସାହିତ୍ୟ କୃତି "ରାଜପୁତ୍ରର ଇତିହାସ"ରେ । ୧୮୬୪ ମସିହାରୁ ୧୮୭୨ ମସିହା ପର୍ଯ୍ୟନ୍ତ ସେ ବାଲେଶ୍ୱର ମିଶନ୍ ସ୍କୁଲରେ ଶିକ୍ଷକତା କରୁଥିଲେ । ଏହି ସମୟରେ ସେ "ରାଜପୁତ୍ରର ଇତିହାସ" ନାମକ ଏକ ଗଦ୍ୟ ରଚନା ଲେଖିଥିଲେ; ଯାହା ଏବେ ମଧ୍ୟ ଅପ୍ରକାଶିତ ଭାବରେ ରହିଛି । ଏହାକୁ ଏକ ଦୁଷ୍ପ୍ରାପ୍ୟ ଗ୍ରନ୍ଥ ଭାବେ ଡଃ ଶ୍ରୀନିବାସ ମିଶ୍ର ଉଲ୍ଲେଖ କରିଛନ୍ତି । ସେ ଲେଖିଛନ୍ତି—"× × × ଏହି ପରିସ୍ଥିତିରେ ଫକୀରମୋହନଙ୍କ ଗଦ୍ୟପୁସ୍ତକ "ରାଜପୁତ୍ରର ଇତିହାସ"ର ସୃଷ୍ଟି । ବହି ଛପାଇବା ନିମନ୍ତେ—ତିନିଶହ ଟଙ୍କା ଲାଗିବ, କଟକ ମିଶନ୍ ପ୍ରେସ୍‌ରୁ ଏହା ଜାଣି ସେ ନିରାଶ ହେଲେ । ଉଦାସୀନତା ଓ ଅଯତ୍ନ ହେତୁ ପାଣ୍ଡୁଲିପି କାହିଁ ଉଡିଗଲା । ଫକୀରମୋହନଙ୍କ ଆଦ୍ୟ ଗଦ୍ୟରଚନାର

(୪୦) ଡଃ ମାୟାଧର ମାନସିଂହ—ସରସ୍ୱତୀ ଫକୀରମୋହନ, ପୃଷ୍ଠା-୧୬୦/୬୧ ।

ଏହାହିଁ ବିତ୍ତମୂଳିତ ଇତିହାସ ।'' (୪୧) ଫକୀରମୋହନଙ୍କ ଜୀବନର ଆଦ୍ୟରଚନା ହେଉଛି ଏଇ ''ରାଜପୁତ୍ରର ଇତିହାସ'' ଗଦ୍ୟରଚନାଟି । ଏହା ପୂର୍ବରୁ ସେ ଅନ୍ୟକିଛି ଲେଖାଲେଖି କରିନଥିଲେ । ଏହି ରାଜପୁତ୍ରର ଇତିହାସ ଲେଖି ପ୍ରକାଶ କରିବାକୁ ଗଲାବେଳକୁ ସେ ଯେଉଁ ଆର୍ଥିକ ସମସ୍ୟାର ସମ୍ମୁଖୀନ ହୋଇଥିଲେ, ସେଥିରେ 'ରାଜପୁତ୍ରର ଇତିହାସ' ଆଲୋକ ଦେଖିପାରିଲା ନାହିଁ । ଅଥଚ ଅପର ପକ୍ଷରେ ଜୀବନର ଆଦ୍ୟ ଲେଖାଟିଏ ଅପ୍ରକାଶିତ ଓ ପରେ ଅପ୍ରାପ୍ତ ହୋଇଯିବାରୁ ଫକୀରମୋହନଙ୍କର ଗଭୀର ଅନ୍ତର୍ଦହନ ତଥା ମନସ୍ତାପ ଲକ୍ଷ୍ୟ କରାଯାଇଥିଲା ।

''ଫକୀରମୋହନଙ୍କ ଏହି 'ରାଜପୁତ୍ରର ଇତିହାସ' ରଚନାଟିକୁ କେହି କେହି ସମାଲୋଚକ ବଙ୍ଗୀୟ ପ୍ରଭାବ ବୋଲି କହିଥା'ନ୍ତି, ତେବେ ଏହା ଆଜି ଦୁଷ୍ପ୍ରାପ୍ୟ ଥିବାରୁ ଏ ସମ୍ପର୍କରେ ଅଧିକ ଆଲୋଚନା ସମ୍ଭବପର ନୁହେଁ ।'' (୪୨) 'ରାଜପୁତ୍ରର ଇତିହାସ' ବ୍ୟତୀତ ଫକୀରମୋହନଙ୍କର ଅନ୍ୟାନ୍ୟ କେତେକ କ୍ଷୁଦ୍ର କ୍ଷୁଦ୍ର ସମାଲୋଚନାଧର୍ମୀ ଗଦ୍ୟ ରଚନା ହେଉଛି—''ବିଦ୍ୟାସାଗରଙ୍କ ଜୀବନ ଚରିତର ଅନୁବାଦ (୧୮୬୬), ଦୁଷ୍ପ୍ରାପ୍ୟ 'ନାସ୍ତି ଜାତିର ପରିଧେୟ ପରିବର୍ତ୍ତନ', 'ଭାରତବର୍ଷର ଇତିହାସ' - ୧ମ ଭାଗ (୧୮୬୯) ଓ ଦ୍ୱିତୀୟ ଭାଗ—(୧୮୭୦), 'ଯୋଗଶାସ୍ତ୍ର', 'ନନାଙ୍କ ପାଞ୍ଜି', 'ଗୋଜ', 'ଉତ୍କଳ ଭାଷାର ଭୂତ ଓ ଭବିଷ୍ୟତ', ଓ 'ଅଭିଭାଷଣ'—୧ମ, ୨ୟ । (ପ୍ରଥମଟି କଟକ ଆଲୋଚନା ସଭାର ଚତୁର୍ଥ ବାର୍ଷିକ ଅଧିବେଶନରେ ଓ ୨ୟଟି ଉତ୍କଳ ସାହିତ୍ୟ ସମାଜରେ ୭ । ୯ । ୧୯୧୪ରେ ପ୍ରଦତ୍ତ ହୋଇଥିଲା) ଏତଦ୍‌ଭିନ୍ନ ଫକୀରମୋହନ ତାଙ୍କ ଆତ୍ମଚରିତର ଅନେକାଂଶ ବିଭିନ୍ନ ସମୟରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ କରିଥିଲେ ।

ଫକୀରମୋହନଙ୍କ ଗଦ୍ୟ ରଚନାର ଅନ୍ୟତମ ଦିଗଟି ହେଲା ତାଙ୍କ ଗଳ୍ପ ଓ ଉପନ୍ୟାସ ସୃଷ୍ଟି । ଏ ଦିଗରେ ଫକୀରମୋହନଙ୍କ ଗଦ୍ୟଶୈଳୀ ଏବେ ବି ଅନତିକ୍ରମଣୀୟ । ଏହି ପରିପ୍ରେକ୍ଷୀରେ ଫକୀରମୋହନଙ୍କ ଗଳ୍ପ ଓ ଉପନ୍ୟାସକୁ ଆଲୋଚନାର ପରିଧିକୁ ଅଣାଯାଇପାରେ ।

## ଗାଳ୍ପିକ ଫକୀରମୋହନ (୧୮୮୯-୧୯୧୭) :

ଲକ୍ଷ୍ୟ କଲେ ଜଣାଯାଏ ଫକୀରମୋହନଙ୍କ ସାହିତ୍ୟିକ ଜୀବନ ସାହିତ୍ୟର ନିର୍ଦ୍ଦିଷ୍ଟ କୌଣସି ବିଭାବରେ ଦୀର୍ଘକାଳ ଧରି ବନ୍ଦୀ ନୁହେଁ । ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ

(୪୧) ଡଃ ଶ୍ରୀନିବାସ ମିଶ୍ର—ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ, ପୃଷ୍ଠା-୬୩୯

(୪୨) ''ଫକୀରମୋହନଙ୍କ 'ରାଜପୁତ୍ରର ଇତିହାସ' ଯଥାସମ୍ଭବ ୧୮୬୫ ବେଳକୁ ଲିଖିତ ହୋଇଥିଲା । ଏହା ରାଜେନ୍ଦ୍ରଲାଲ ମିତ୍ରଙ୍କ ପୁସ୍ତକର ଅନୁବାଦ ବା ଛାୟାରେ ଲିଖିତ, ଏ ଅନୁମାନ ଅସଙ୍ଗତ ନୁହେଁ ।''
( ଡଃ ଶ୍ରୀନିବାସ ମିଶ୍ର—ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ—ପୃଷ୍ଠା-୧୩୯)

ସବେ ତାଙ୍କ ସାହିତ୍ୟିକ ଜୀବନର ଉନ୍ମୋନ୍ମୁଖ ଘଟିଛି । ସ୍କୁଲ ଶିକ୍ଷକ ଫକୀରମୋହନ ସାମାନ୍ୟ କିଛି ଲେଖାଲେଖି କରିବାର ଅଭିଳାଷ ନେଇ ତଥା ତାହା ପାଠ୍ୟପୁସ୍ତକ ହେଲେ ନିଜର କିଛିଟା ସୁନାମ ଓ ଅର୍ଥୋପାର୍ଜନ ହେବ ବୋଲି ଭାବି ସେ ସାହିତ୍ୟିକ ଜୀବନର ଆଦ୍ୟ କାଳରେ 'ରାଜପୁତର ଇତିହାସ', ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ 'ଜୀବନ ଚରିତ', 'ଅଙ୍କମାଳା', 'ବ୍ୟାକରଣ', 'ଭାରତବର୍ଷର ଇତିହାସ', ଆଦି ରଚନା କରିଥିଲେ । ମାତ୍ର ବାଲେଶ୍ୱରରେ ପ୍ରେସ୍ ଏବଂ ବିଭିନ୍ନ ଗଡ଼ଜାତ ରାଜ୍ୟର ଦେଓ୍ୱାନ୍ ତଥା ମ୍ୟାନେଜର ହେବାପରେ ତାଙ୍କ ସାହିତ୍ୟିକ ଦୃଷ୍ଟି ଅନୁବାଦ, କବିତା, ଗଳ୍ପ ଓ ଉପନ୍ୟାସ ମାଧ୍ୟମରେ ହେଲା ପ୍ରତିଫଳିତ । ତେଣୁ ଫକୀରମୋହନଙ୍କ ସାହିତ୍ୟିକ ଜୀବନ ଏକ ନିର୍ଦ୍ଦିଷ୍ଟ ବୃତ୍ତ ବା ବଳୟ ମଧ୍ୟରେ ଆବଦ୍ଧ ନୁହେଁ, ତାହା ଯୁଗ ଚେତନାର ଅନୁବର୍ତ୍ତୀ । ବିଶେଷକରି ଫକୀରମୋହନଙ୍କ ଯୁଗଚେତନାର ଅନୁବର୍ତ୍ତୀ ଭାବେ ତାଙ୍କ ଗଳ୍ପ ଓ ଉପନ୍ୟାସମାନଙ୍କରେ ପ୍ରତିଫଳିତ ହୋଇଛି ।

ଆଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ ମତରେ—"ଫକୀରମୋହନ ସମଗ୍ର ଭାରତୀୟ ଭାଷା ମାନଙ୍କରେ ପ୍ରଥମ କ୍ଷୁଦ୍ରଗଳ୍ପ ସ୍ରଷ୍ଟା । ତାଙ୍କ ପୂର୍ବରୁ ଯେଉଁ କେତେକ ପଡ଼ୋଶୀ ସାହିତ୍ୟିକ ସାଲ୍ପିକ ଗଳ୍ପ ରଚନା କରିଥିଲେ, ସେମାନଙ୍କ ଗଳ୍ପ ସବୁ ଫକୀରମୋହନଙ୍କ ପରି ଉତ୍କୃଷ୍ଟ କଳାଶ୍ରୀରେ ମଣ୍ଡିତ ନୁହେଁ ବା ସେ ସବୁ ଗଳ୍ପ ଫକୀରମୋହନଙ୍କ ତୁଳନାରେ ଉଚ୍ଚକୋଟୀର ନୁହେଁ । ଫକୀରମୋହନ ହେଉଛନ୍ତି ସାର୍ଥକ, ମାର୍ଜିତ, ରୁଚିପୂର୍ଣ୍ଣ, ପରିପୁଷ୍ଟ । ଆଧୁନିକ କଥାସାହିତ୍ୟ ସୃଷ୍ଟିରେ ଏ ଦେଶରେ ଅଗ୍ରଣୀ ।" ଶ୍ରୀଯୁକ୍ତ ମହାନ୍ତିଙ୍କ ଏ ମତବାଦ ବିଶେଷକରି ଫକୀରମୋହନଙ୍କ 'ଲଛମନିଆ' ଗଳ୍ପକୁ କେନ୍ଦ୍ର କରି । ଏହି ଗଳ୍ପଟି ବାଲେଶ୍ୱରରୁ ପ୍ରକାଶ ପାଉଥିବା "ବୋଧଦାୟିନୀ" ପତ୍ରିକାରେ ୧୮୬୮ ମସିହାରେ ପ୍ରକାଶିତ ହୋଇଥିଲା । କିନ୍ତୁ ଏବେ ଏହା ଦୁଷ୍ପ୍ରାପ୍ୟ (୪୩) । ତେଣୁ ଅଗତ୍ୟା ଲଛମନିଆକୁ ଭୁଲିପାରିଲେ ଫକୀରମୋହନ ସର୍ବମୋଟ କୋଡ଼ିଏଟି କ୍ଷୁଦ୍ରଗଳ୍ପ ଲେଖିଥିବାର ଦେଖିବାକୁ ମିଳେ । ଏସବୁ ତାଙ୍କର 'ଗଳ୍ପସ୍ୱଳ୍ପ' ୧ମ ଭାଗ ଓ ୨ୟ ଭାଗରେ ସଙ୍କଳିତ ହୋଇଛି ।

---

(୪୩) "ସେହି 'ବୋଧଦାୟିନୀ' ପତ୍ରିକାରେ ମୁଁ ଗୋଟିଏ ଗଳ୍ପ ଲେଖିଥିଲି, ତାହାର ନାମ 'ଲଛମନିଆ' ।' ବୋଧକରେ ଉତ୍କଳରେ ତାହାହିଁ ପ୍ରଥମ ମୁଦ୍ରିତ ଗଳ୍ପ । ଲୋକେ ତାହା ଆଗ୍ରହର ସହିତ ପଢ଼ିଥିଲେ । ମାତ୍ର ସେ କେତେ ଜଣ ? ମୁଁ ବାଲେଶ୍ୱରରୁ ଗୁଲିଆସି ଯେତେବେଳେ ଗଡ଼ଜାତମାନଙ୍କରେ କର୍ମକରିବାକୁ ଲେ, ସେତେବେଳେ ମୋର ସାହିତ୍ୟ ଲେଖା ବନ୍ଦ ହୋଇଗଲା । ଆଉ ଦଶବର୍ଷ କାଳ ମୁଁ ଲେଖାଲେଖି ଛାଡ଼ିଦେଲି ।" (ଆତ୍ମଜୀବନ ଚରିତ)

'ଗଳ୍ପସ୍ୱଳ୍ପ' ପ୍ରଥମ ଭାଗରେ ଯେଉଁ ଗଳ୍ପଗୁଡ଼ିକ ସଙ୍କଳିତ ତାହା ହେଲା—

(୧) ରେବତୀ —୧୮୯୮ (ଉତ୍କଳ ସାହିତ୍ୟରେ ପ୍ରକାଶିତ )
(୨) ପେଟେଣ୍ଟମେଡ଼ିସିନ୍ —୧୯୧୩ ( ,, ,, )
(୩) ଗ୍ରାଣ୍ଡିଘୁଅ ଅନନ୍ତା —୧୯୧୩
(୪) ରାଣ୍ଡିପୁଅ ମନ୍ତ —୧୯୧୬ (ଉତ୍କଳ ସାହିତ୍ୟ/୨୦ଶ ଭାଗ/ ଅଷ୍ଟମ ସଂଖ୍ୟା )
(୫) ଅଧର୍ମ ବିତ୍ତ —୧୯୧୫
(୬) ସଭ୍ୟ ଜମିଦାର —୧୯୧୪
(୭) ବିରେଇ ବିଶାଳ —୧୯୧୩
(୮) ଡାକମୁନ୍‌ସି —୧୯୧୨
(୯) ସୁନା ବେଙ୍ଗ —୧୯୧୩
(୧୦) ଧୂଳିଆବାବା —୧୯୧୫

"ଗଳ୍ପସ୍ୱଳ୍ପ" ଦ୍ୱିତୀୟ ଭାଗରେ ଯେଉଁ ଗଳ୍ପଗୁଡ଼ିକ ସଙ୍କଳିତ ତାହା ହେଲା—

(୧) ଅଜାନାନ୍ଦ କଥା
(୨) ବାଲେଶ୍ୱରୀ ପଙ୍ଗା ଲୁଣ
(୩) ବାଲେଶ୍ୱରୀ ଗ୍ରାହାଜାଜୀ
(୪) ମୌନା-ମୌନୀ
(୫) କମଳା ପ୍ରସାଦ ଘୋଷ
(୬) କାଳିଆ ପ୍ରସାଦ ଘୋଷ
(୭) ବଗେଲ୍ଲ ବଗୁଲ୍ଲୀ
(୮) ପାଠୋଇ ବୋହୂ
(୯) ମାଧ ମହାନ୍ତିଙ୍କ କନ୍ୟାସୁନା
(୧୦) ପୂନର୍ମୂଷିକ ଭବ ।

ଏହି ଗଳ୍ପଗୁଡ଼ିକ ତତ୍କାଳୀନ ବିଭିନ୍ନ ପତ୍ର-ପତ୍ରିକାରେ ପ୍ରକାଶ ପାଇଥିଲା । 'ଲଛମନିଆ' ପ୍ରକାଶିତ ହେବାର ପୂର୍ବ ୩୦ ବର୍ଷ ପରେ ଫକୀରମୋହନ 'ଧୂର୍ଜ୍ଜଟୀ' ଛଦ୍ମନାମରେ 'ରେବତୀ' ନାମକ ଗଳ୍ପ ୧୮୯୮ ମସିହାରେ 'ଉତ୍କଳସାହିତ୍ୟ' ପତ୍ରିକାରେ ପ୍ରକାଶିତ କରିଥିଲେ । 'ଲଛମନିଆ' ଗଳ୍ପଟି ଏବେ ଦୁଷ୍ପ୍ରାପ୍ୟ ହେବାରୁ ଆମର ସମାଲୋଚକମାନେ 'ରେବତୀ'କୁ ହିଁ ଫକୀରମୋହନଙ୍କର ତଥା ଓଡ଼ିଆ ସାହିତ୍ୟର ପ୍ରଥମ ଗଳ୍ପ ବୋଲି ଧରିନେଇଛନ୍ତି ।

'ଗଳ୍ପସ୍ୱଳ୍ପ'ର ପ୍ରଥମଭାଗରେ ସନ୍ନିବିଷ୍ଟ ଗଳ୍ପଗୁଡ଼ିକ ସାମାଜିକ ଗଳ୍ପାଂଶ ଅପେକ୍ଷା ଚରିତ୍ର ଚିତ୍ରଣ ଓ ସମସାମୟିକ ସମାଜର ନାନା ଅନୀତି, ଅନାଚାର ବିରୁଦ୍ଧରେ ପରିହାସ ଜର୍ଜରିତ ସମାଲୋଚନା ଓ ବିଦ୍ରୂପ ଏହି ଗଳ୍ପଗୁଡ଼ିକର ବିଶେଷତ୍ୱ ବସ୍ତୁତଃ ଫକୀରମୋହନଙ୍କ ଉପନ୍ୟାସ ଓ ଗଳ୍ପଗୁଡ଼ିକର କଥାବସ୍ତୁ ବା ଥିମ୍ (theme) ପ୍ରାୟ ସମାନ କହିଲେ ଚଳେ । 'ପେଟେଣ୍ଟ ମେଡ଼ିସିନ୍' ଗଳ୍ପଟି ନିଚ୍ଛକ ପ୍ରହସନମୂଳକ । ଚନ୍ଦ୍ରମଣିବାବୁଙ୍କର ମଦ ଓ ପରକୀୟା ପ୍ରେମବ୍ୟାଧି କେଉଁଥିରେ ଭଲ ହେଲା ନାହିଁ । ବାପା ଯେତେ

ବୁଝାଇଲେ, ଶ୍ୱଶୁର ଯେତେ ଉପଦେଶ ଦେଲେ କାହିଁରେ କିଛି ହେଲା ନାହିଁ । ଶେଷକୁ ସ୍ତ୍ରୀ ସୁଲୋଚନାଙ୍କ ଅର୍ଦ୍ଧାଙ୍ଗିନୀ ଗୃହଲକ୍ଷ୍ମୀ ପ୍ରଭାବରେ ଚନ୍ଦ୍ରମଣିବାବୁଙ୍କର ଅଦ୍ଭୁତ ପରିବର୍ତ୍ତନ ହୋଇଗଲା । ତାହାହିଁ ପେଟେଣ୍ଟ ମେଡ଼ିସିନ୍ । ମହାଜନ କୁବେର ସାହୁର ପରସ୍ୱ ଲୁଣ୍ଠନ ଓ ଏକ ଅଦୃଶ୍ୟ ଶକ୍ତିର ହସ୍ତରେ ତାହାର ଚରମ ଶାସ୍ତି । 'ଅଧର୍ମ ବିତ୍ତ'ଗଳ୍ପର କଥାବସ୍ତୁ । ଓଡ଼ିଶାର ବୃନଆଡ ସମାଜରେ ନବ୍ୟ ତଥାକଥିତ ପାଶ୍ଚାତ୍ୟ ସଂସ୍କାର, ସଂସ୍କୃତି ଓ ଚଳଣୀର ନିର୍ବୋଧ ଅନୁକରଣର ଶୋଚନୀୟ ପରିଣତି 'ସଭ୍ୟଜମିଦାର' ଗଳ୍ପର କଥାବସ୍ତୁ । କିନ୍ତୁ ଘଟଣାର ଏକ ଦେଶଦର୍ଶୀ ଅତିରଞ୍ଜନ ଫକୀରମୋହନଙ୍କ ଗଳ୍ପଗୁଡ଼ିକରେ ଏକ ଉଲ୍ଲେଖଯୋଗ୍ୟ ଦୁର୍ବଳତା । ଗଳ୍ପଗୁଡ଼ିକରେ ନୈତିକ ମୂଲ୍ୟପାଇଁ ଅନେକ ସମୟରେ ଫକୀରମୋହନ ଶୈଳ୍ପିକ ସାବଲୀଳତାକୁ ବର୍ଜନ ଦେଇଅଛନ୍ତି । 'ବଗେଇ ବଗାଲ' ଗଳ୍ପଟି କନ୍ୟାସୁନା ଲୋଭୀ ସ୍ୱଜବ ପାତ୍ରର ହୃଦବିଦାରକ କାହାଣୀ।X X Xଆଲୋଚିତ ଗଳ୍ପଗୁଡ଼ିକ ମଧ୍ୟରେ 'ରେବତୀ' ଓ 'ପେଣ୍ଟିପୁଅ ଅନନ୍ତା'ଗଳ୍ପ ଦୁଇଟି ଓଡ଼ିଆ କ୍ଷୁଦ୍ରଗଳ୍ପ ସାହିତ୍ୟରେ ଦୁଇଟି ସାର୍ଥକ ଓ ସୁନ୍ଦର ସୃଷ୍ଟି । X X ବିଶ୍ୱ କଲ୍ୟାଣ କାମନାରେ ଆତ୍ମବଳିଦାନ ହିଁ ଦେବତ୍ୱ । ପେଣ୍ଟିପୁଅ ଅନନ୍ତାର ମାନବ ଦେହ ଭିତରେ ଦେବ-ଦୂତ ଏକ ପ୍ରାପ୍ତି, ମହିମାର ଏହି ଝଲକ, ଅନନ୍ତାର କଦାକାର ବିଭତ୍ସ, ମାନବ ମୂର୍ତ୍ତିକୁ ଏକ ସ୍ୱର୍ଗୀୟ ଦ୍ୟୁତିରେ ବିଭୂଷିତ କରିଦେଲା । ସତ୍ୟ-ଶିବ ଓ ସୁନ୍ଦର ପ୍ରାଣଶକ୍ତିର ଏକ କରୁଣ ଆଲେଖ୍ୟ —"ପେଣ୍ଟିପୁଅ ଅନନ୍ତା (୪୪) ୧୮୭୧ ମସିହା" ପରବର୍ତ୍ତୀ ଓଡ଼ିଶାରେ ଯେଉଁ ନୂତନ ସମାଜ ଗଢ଼ିଉଠିଲା ତାର ସ୍ୱରୂପ 'ରେବତୀ' ଗଳ୍ପରେ ଫୁଟି-ଉଠିଥିଲା । ଓଡ଼ିଆ ସାହିତ୍ୟର ପ୍ରଥମ ଗଳ୍ପ 'ରେବତୀ' ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ସାମାଜିକ ଜୀବନର ଏକ ମନସ୍ତ ଅଭିବ୍ୟକ୍ତ ହେଲେହେଁ ଏହା ସଂଯତ ପ୍ରେମର ଏକ ଲଳିତ ପ୍ରକାଶ । ଏହି ଗଳ୍ପରେ ଅଛି ଊନବିଂଶତାବ୍ଦୀର ଶେଷାର୍ଦ୍ଧର ସାମାଜିକ ଜୀବନର ଶତ୍ରୁସଂଘର୍ଷ, ପ୍ରୀତି, କାରୁଣ୍ୟ—ବାତ୍ସଲ୍ୟର ତ୍ରିବେଣୀ ସଙ୍ଗମ ପରଂପରା ଓ ନୂତନର ଭାବସଂଘର୍ଷ ଏବଂ ନୂତନର ବିପର୍ଯ୍ୟୟ । ଅତଏବ 'ରେବତୀ' ଗଳ୍ପ ଓଡ଼ିଆ ସାହିତ୍ୟର ପ୍ରଥମ ଗଳ୍ପ ହେଲେହେଁ ଏହା ଊନବିଂଶ ଶତାବ୍ଦୀର ପ୍ରଚ୍ଛଦପଟ ଓ ବିଂଶ ଶତାବ୍ଦୀର ଗଳ୍ପସାହିତ୍ୟର ମୁଖବନ୍ଧ ।

'ଡାକ୍‌ମୁନ୍‌ସୀ' ଗଳ୍ପରେ ଫକୀରମୋହନ ତତ୍କାଳୀନ ଇଂରାଜୀ ଶିକ୍ଷିତ ଯୁବକର ମତଗତି ଓ ତତ୍ଜନିତ ନିରୀହ ପିତାର ଅସହାୟ ଭାବକୁ ଅତି କରୁଣ ଭାବରେ ବର୍ଣ୍ଣନା କରିଅଛନ୍ତି । କୁହାଯାଏ ଏହି ଗଳ୍ପର ଇଂରାଜୀ ପଢ଼ା ଶିକ୍ଷିତ ଯୁବକ ଗୋପାଳଚନ୍ଦ୍ର ଆଉ କେହି ନୁହେଁ, ସେ ସ୍ୱୟଂ ଫକୀରମୋହନଙ୍କ ଅବାଧ୍ୟ ପୁତ୍ର ମୋହିନୀମୋହନ । 'ଧୂଳିଆ ବାବା' ବ୍ୟାପକଭାବେ ଫକୀରମୋହନଙ୍କର ଏକ ସାର୍ଥକ ସୃଷ୍ଟି । ଏଥିରେ କଥାକାର

(୪୪) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା—୧୬୯/୧୭୦ ।

ତତ୍କାଳୀନ ସମାଜରେ ଧର୍ମ ନାମରେ ଗୁଳଥିବା ଭଣ୍ଡାମିର ସ୍ୱରୂପ ଉଦ୍‌ଘାଟନ କରି-ଦେଇଛନ୍ତି । କଥାକାର ଫକୀରମୋହନ ତାଙ୍କର ପ୍ରଥମ କ୍ଷୁଦ୍ରଗଳ୍ପ 'ରେବତୀ'ରେ ଶିକ୍ଷା କ୍ଷେତ୍ରରେ ଥିବା ପ୍ରତିବନ୍ଧକର ଯେଉଁ ଚିତ୍ର ପ୍ରଦାନ କରିଥିଲେ, ତାହାର ବିଷ ଝାଡ଼ିବା ପାଇଁ ସେ ଶେଷରେ ଲେଖିଥିଲେ 'ଗାରୁଡ଼ି ମନ୍ତ୍ର' । ଗାରୁଡ଼ି ମନ୍ତ୍ର ପାଠ ଦ୍ୱାରା ବାସ୍ତବରେ ଅନ୍ଧବିଶ୍ୱାସ ଓ କୁସଂସ୍କାର ଦୂର କରିବା ହିଁ ଥିଲା କଥାକାରଙ୍କର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ।

'ଗଳ୍ପସ୍ୱଳ୍ପ' ଦ୍ୱିତୀୟ ଭାଗରେ ଥିବା ଗଳ୍ପଗୁଡ଼ିକରେ ଫକୀରମୋହନଙ୍କ ଗଳ୍ପ-ମାନସ ନାନା ବିଚିତ୍ର ଭାବନା ମାଧ୍ୟମରେ ସ୍ୱୟଂ ଅଭିବ୍ୟକ୍ତିକୁ ପରିପ୍ରକାଶ କରିଛି । ନାଗା ଜମାଇତମାନେ କପରି ଧର୍ମର ଦ୍ୱାହିରେ ଗୁଣ୍ଡାମି ଓ ଡକାୟତି ଚଳାଇଥିଲେ ତାହା "ମୌନାମୌନୀ" ଗଳ୍ପରେ, ଇମକି ପୋଲିସର କନେଷ୍ଟବଲମାନେ କପରି ନିଜ ଇଲାକାରେ ରାଜଚକ୍ରବର୍ତ୍ତୀର ଏକଛତ୍ରାଧିପତ୍ୟ ବିସ୍ତାର କରୁଥିଲେ ତାହା "ପୁନର୍ମୂଷିକ-ଭବ' ଗଳ୍ପରେ, ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ସୁଦ୍ଧା ଓଡ଼ିଶାରେ କପରି ନୌବାଣିଜ୍ୟର ସୁଦିନ ଥିଲା, ପୁଣି କାଳକ୍ରମେ ତାହା କପରି ବନ୍ଦ ହୋଇଗଲା, ତାହାର ଚିତ୍ର 'କମଳା ପ୍ରସାଦ ଗୋବାପ' ଗଳ୍ପରେ ଫକୀରମୋହନ ଅତି ବାସ୍ତବ ଓ ମନୋଜ୍ଞ ଭାବେ ବର୍ଣ୍ଣନା କରିଅଛନ୍ତି । ଫକୀରମୋହନଙ୍କ 'କମଳାପ୍ରସାଦ ଗୋବାପ' ଗଳ୍ପରେ ସମୁଦ୍ର ଯାତ୍ରାର ଏକ ଅପୂର୍ବ କଳାକୁଶଳ ଓ ଜୀବନ୍ତ ବିବରଣୀ ପ୍ରଦାନ କରାଯାଇଛି ।

ବାଲେଶ୍ୱରର ତତ୍କାଳୀନ ସମୃଦ୍ଧି, ସୌଭାଗ୍ୟ ତଥା ଓଡ଼ିଶାର ଗୌରବଦୀପ୍ତ ନୌବାଣିଜ୍ୟର ଚିତ୍ର ଫକୀରମୋହନଙ୍କ 'ବାଲେଶ୍ୱରୀ ପଂଗାଲୁଣ', 'ବାଲେଶ୍ୱର ରହାଜାହାଜ' ଆଦି ଗଳ୍ପରେ ଅତି ବାସ୍ତବ ଭାବେ ବର୍ଣ୍ଣିତ ହୋଇଛି । ଏହି ସଂକଳନରେ ଥିବା 'ପାଠୋଇ ବୋହୂ', ଓ 'ମାଧ ମହାନ୍ତିଙ୍କ କନ୍ୟାସୁନା' ଗଳ୍ପ ଦୁଇଟି ଫକୀର-ମୋହନଙ୍କ ସଂସ୍କାରଲିପ୍ସୁ ମନୋଭାବ, ଆଧୁନିକ ଶିକ୍ଷାର ବିକଳ ଅନୁକରଣ ଜନିତ କୁ-ପ୍ରଭାବ ଓ ଆମ ସମାଜରେ ଅତୀତ କାଳରେ ଥିବା ବିବାହ ରୀତିନୀତି ଉପରେ ପର୍ଯ୍ୟବସିତ ।

"ରଚନା ଶୈଳୀ ଓ କଥାବସ୍ତୁ ଦୃଷ୍ଟିରୁ ଫକୀରମୋହନଙ୍କ ଗଳ୍ପଗୁଡ଼ିକ ଅପୂର୍ବ । ସ୍ପଷ୍ଟ ସାମାଜିକ ଉଦ୍ଦେଶ୍ୟରେ ଏ ଗଳ୍ପଗୁଡ଼ିକ ଲେଖାଯାଇଥିଲା । ସମାଜର ନାନା ଦୁର୍ନୀତି, ଅନ୍ୟାୟ, ଅନାଚାର ଓ କୁସଂସ୍କାର ବିରୁଦ୍ଧରେ ଫକୀରମୋହନ ଏହି ଗଳ୍ପଗୁଡ଼ିକ ମାଧ୍ୟମରେ ହିଁ ସଂଗ୍ରାମ ଘୋଷଣା କରିଥିଲେ । ଏ ଗଳ୍ପଗୁଡ଼ିକରେ ପୁଣି ଏକ ସ୍ପଷ୍ଟ ନୀତିଶିକ୍ଷା ଥିଲା । ତେଣୁ କେବଳ ସାହିତ୍ୟ ଦୃଷ୍ଟିରୁ ନୁହେଁ ସାମାଜିକ ବିଚାରରୁ ମଧ୍ୟ ଏ ଗଳ୍ପ-ଗୁଡ଼ିକ ଅତି ମୂଲ୍ୟବାନ୍ ।" (୪୫) ଏହି ଗଳ୍ପମାନଙ୍କ ମଧ୍ୟରେ ବର୍ଣ୍ଣିତ ଚରିତ୍ରଗୁଡ଼ିକ

(୪୫) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା-୧୬୩ ।

ତତ୍କାଳୀନ ସମାଜର ପ୍ରତିନିଧିତ୍ୱ କରୁଥିବା ଦୃଷ୍ଟିରୁ ଗଳ୍ପର ବାସ୍ତବତା ପାଇଁ ମୁଖ୍ୟତଃ ଦାୟୀ । ପ୍ରତ୍ୟେକ ଗଳ୍ପର ଅନ୍ତରାଳରେ ଫକୀରମୋହନଙ୍କ ଆଦର୍ଶ ଓ ନୀତିବାଦୀ ଦୃଷ୍ଟିଭଙ୍ଗୀର ସ୍ପଷ୍ଟ ପ୍ରତିଫଳନ ଦେଖାଯାଏ । ତାଙ୍କର ଗଳ୍ପ, ଉପନ୍ୟାସଗୁଡ଼ିକୁ ଚରିତ୍ର-ଚିତ୍ରଶାଳା କହିଲେ ଅତ୍ୟୁକ୍ତି ହେବନାହିଁ । ଘଟଣା ବିନ୍ୟାସ, ବ୍ୟଙ୍ଗ ବିଦ୍ରୂପ, ହାସ୍ୟରସ, ସମାଜ ସଂସ୍କାର, ଆଦର୍ଶର ବ୍ୟଞ୍ଜନା ଏବଂ ସର୍ବୋପରି ତତ୍କାଳୀନ ପରାଧୀନ ଅବସ୍ଥାରେ ବ୍ରିଟିଶ୍ ଶିକ୍ଷା ଓ ସଭ୍ୟତା ପ୍ରଭାବିତ ଭାରତବାସୀ ତଥା ଉତ୍କଳୀୟମାନଙ୍କର ଦୁର୍ଗତିର ପ୍ରଖ୍ୟାପନ ଫକୀରମୋହନଙ୍କ ସାମଗ୍ରିକ ଗଳ୍ପକୃତିର ଉଲ୍ଲେଖଯୋଗ୍ୟ ଉପାଦାନ ।

ବିଷୟବସ୍ତୁ ଓ ପାତ୍ରୋପଯୋଗୀ ଭାଷାର ଶୈଳୀ ଉପରୋକ୍ତ ଉପାଦାନ ସମୂହର ସଂପୂର୍ଣ୍ଣ ଅନୁଗାମୀ । ଅନୁଭୂତି ପୁଷ୍ଟ, ଜୀବନଧର୍ମୀ କାହାଣୀଗୁଡ଼ିକ ସ୍ଥଳବିଶେଷରେ ମର୍ମାନ୍ତିକ, ସହାନୁଭୂତି ସମ୍ପନ୍ନ, ଆକର୍ଷଣୀୟ ଏବଂ ଜୀବନ୍ତ । ଏ ଯୁଗର ସମସ୍ୟା ବହୁଳତା ବା ମନସ୍ତାତ୍ତ୍ୱିକତା ତାଙ୍କ ଗଳ୍ପଗୁଡ଼ିକର ପ୍ରକୃତ ନିର୍ଯ୍ୟାସ ନହେଲେ ବି ସେ ଯୁଗର ସାମାଜିକ ଜୀବନ ଏବଂ ସାମାଜିକ ଅବସ୍ଥା ତାଙ୍କ ଗଳ୍ପର ଭିତ୍ତିଭୂମି । ତାଙ୍କର ପ୍ରାୟ ଅଧିକାଂଶ ଗଳ୍ପରେ ସଂସ୍କାର ଚେତନା ଏବଂ ମାନବବାଦୀ ଦୃଷ୍ଟିଭଙ୍ଗୀ ନିହିତ । ନିତିଦିନିଆ ଜୀବନ ପ୍ରବାହର ସତ୍ୟ ଓ ବାସ୍ତବ ଘଟଣାକୁ ଫକୀରମୋହନ ତାଙ୍କର ଗଳ୍ପମାନଙ୍କରେ ପରିବେଷଣ କରିଅଛନ୍ତି ।

ଅତଏବ କୁହାଯାଇପାରେ ଯେ—"ଫକୀରମୋହନ ବୃଦ୍ଧାବସ୍ଥାରେ ଗଳ୍ପ ରଚନାରେ ମନୋନିବେଶ କରିଥିଲେହେଁ ତାଙ୍କର ଗଳ୍ପଗୁଡ଼ିକରେ ଆମେ ଏକ ଚିରନବଜୀବୀ. ଚିର ସରସ, ହାସ୍ୟ ସମୁଜ୍ଜ୍ୱଳ, ପ୍ରୀତିସ୍ନିଗ୍ଧ ଓ କରୁଣାର୍ଦ୍ର ମନର ସନ୍ଧାନ ଦେଖିବାକୁ ପାଉଁ । କଥ୍ୟ ଭାଷାର ଆଦର୍ଶରେ ସେ ଯେଉଁ ଅମର କ୍ଷୁଦ୍ର ଗଳ୍ପର ପ୍ରବର୍ତ୍ତନ କରିଯାଇଛନ୍ତି, ତାହାର ଅନୁବର୍ତ୍ତନ ହିଁ ଆଜି ଓଡ଼ିଆ ସାହିତ୍ୟରେ ଚାଲିଛି । ଐତିହାସିକ, ଶୈଳ୍ପିକ, ତଥା ମନସ୍ତାତ୍ତ୍ୱିକତା ଦୃଷ୍ଟିରୁ ତାଙ୍କର ଗଳ୍ପଗୁଡ଼ିକ ସାହିତ୍ୟରେ ଚିର-ସ୍ମରଣୀୟ ହୋଇ ରହିବା ଏକାନ୍ତ ସ୍ୱାଭାବିକ ।" (ଡ଼ଃ ଜାନକୀବଲ୍ଲଭ ମହାନ୍ତି) ପ୍ରକୃତରେ ତାଙ୍କର ପ୍ରତ୍ୟେକ ଗଳ୍ପରେ ସମୟର ପ୍ରାଣସ୍ପନ୍ଦନ ରହିଛି । ସମାଜର ଅସ୍ଥିର ବଗ୍ଭିର, ଯୁଗଯନ୍ତ୍ରଣାର ଚିତ୍କାର ଓ ବିଶ୍ୱଜନୀନ ଶୈଳୀ ମଧ୍ୟ ତାଙ୍କ ଗଳ୍ପର ପ୍ରାଣ-ପ୍ରବାହ । ସେ ସମୟର ବିଶ୍ୱବିଖ୍ୟାତ କଳାକାର ପରି ସେ ହୋଇଛନ୍ତି ମାନବବାଦୀ କଥାଶିଳ୍ପୀ । ତେଣୁ କଥାଶିଳ୍ପୀ ଟଲଷ୍ଟୟ, ଷ୍ଟିଭେନ୍‌ସନ୍, ପୋ', ହଥର୍ଣ୍ଣ, ପ୍ରେମଚାନ୍ଦ ଓ ରବୀନ୍ଦ୍ରନାଥଙ୍କ ସହ ଫକୀରମୋହନଙ୍କ ଅସ୍ମିତା ସ୍ୱର ଅନେକ କ୍ଷେତ୍ରରେ ଏକ ଓ ଅଭିନ୍ନ ହୋଇଉଠିଛି ।

ଫକୀରମୋହନଙ୍କ ଗଳ୍ପର ପୃଷ୍ଠଭୂମି ଉପରେ ହିଁ ତାଙ୍କର ପରବର୍ତ୍ତୀ ଔପନ୍ୟାସିକ କଳା ଗଢ଼ିଉଠିଛି । ଗଳ୍ପକୁ ଆଧାରକରି ସେ ସମକାଳରେ ଯେଉଁ ଚାରୋଟି ଉପନ୍ୟାସ

ରଚନା କରିଛନ୍ତି, ତାହା ମୂଳରେ ତାଙ୍କ ଗାଳ୍ପିକ ସତ୍ତା ହିଁ ବିଦ୍ୟମାନ । ତେଣୁ କୁହାଯାଇ-ପାରେ ଫକୀରମୋହନଙ୍କ ଉପନ୍ୟାସର ପ୍ରାଣବିନ୍ଦୁ ହେଉଛି ତାଙ୍କର ଗଳ୍ପ । ଅନେକ କ୍ଷେତ୍ରରେ ଯେ ଗଳ୍ପକୁ ସ୍ଫୀତକୃତ କରି ଉପନ୍ୟାସ ରଚନା କରିଥିବା କଥା ମଧ୍ୟ ସେ ଓ ତାଙ୍କ ସମାଲୋଚକମାନେ ସ୍ୱୀକାର କରିଛନ୍ତି । 'ଉତ୍କଳ ସାହିତ୍ୟ'ର ସମ୍ପାଦକ ତଥା ବାଗ୍ମୀପ୍ରବର ବିଶ୍ୱନାଥ କରଙ୍କୁ ଲେଖି ଫକୀରମୋହନ ୧ । ୪ । ୧୭ରେ ଯେଉଁ ଚିଠି ଦେଇଥିଲେ, ସେଥିରୁ ସ୍ପଷ୍ଟ ଜଣାଯାଏ ଯେ, ସେ ଗଳ୍ପକୁ ଅନେକତ୍ର ଉପନ୍ୟାସରେ ରୂପାନ୍ତରିତ କରିବାର ଚେଷ୍ଟା କରିଛନ୍ତି । (୪୬) ତେଣୁ ତାଙ୍କ ଉପନ୍ୟାସର ପୃଷ୍ଠପଟରେ ତାଙ୍କ ଗଳ୍ପର ଯେ ବଳିଷ୍ଠ ଅବଦାନ ରହିଛି, ଏକଥା ଅସ୍ୱୀକାର କରିହୁଏ ନାହିଁ । ଏହି ପରିପ୍ରେକ୍ଷୀରେ ଫକୀରମୋହନଙ୍କ ଉପନ୍ୟାସ ଆମର ଆଲୋଚ୍ୟ ।

**ଫକୀରମୋହନଙ୍କ ଉପନ୍ୟାସ : ୧୮୯୭-୧୯୧୫**

'ଫକୀରମୋହନଙ୍କ ଉପନ୍ୟାସ ଓଡ଼ିଆ ସାହିତ୍ୟରେ ଏକ ଅଭିନବ ସାଧନା, ଏକ ଅଭୂତପୂର୍ବ କୃତିତ୍ୱ, ଏକ ଅମଳିନ କୀର୍ତ୍ତି'' (୪୭) । ତାଙ୍କର ଉପନ୍ୟାସ ସୃଷ୍ଟି ସ୍ୱଳ୍ପ ।

---

୪୬ । (କ) ''××× ଆପଣଙ୍କ ଫରମାସ ଆସିବ ଜାଣି ଗୋଟିଏ ଗଳ୍ପ ଲେଖିବାକୁ ଆରମ୍ଭ କରିଅଛି । ଗଳ୍ପଟିର ନାମ 'ବଡମନ୍ତ୍ରି' । ଏପର୍ଯ୍ୟନ୍ତ ସାହିତ୍ୟ ଆକାରରେ ୩ ଫର୍ମା ଅର୍ଥାତ୍ ୨୫ । ୨୫ ପୃଷ୍ଠା ପର୍ଯ୍ୟନ୍ତ ହୋଇଗଲାଣି । ସଂସାରର ଏବଂ ବଳାଇ ଚରିତ୍ରର ନାନା ଜଟିଳ ସମସ୍ୟା ଆସି ପଡ଼ୁଯାଉଛି । ସମସ୍ତ ମୀମାଂସା କରି ଲେଖିବାକୁ ଗଲେ ସାହିତ୍ୟରେ ୫୦ ପୃଷ୍ଠା ପର୍ଯ୍ୟନ୍ତ ହୋଇପାରେ । ତାହାକୁ ଉପନ୍ୟାସ ଆକାରରେ ଲେଖିବାକୁ ନନ୍ଦକିଶୋର କହୁଛନ୍ତି, କ'ଣ କରିବି ଜାଣେ ଜାଣେ ନାହିଁ । ଆପଣ ଯଦି ଛୁଟି ହୁଅନ୍ତି ଲେଖିବେ । ସେଟା ବନ୍ଦ ରଖି ଅଉ ଗୋଟିଏ କ୍ଷୁଦ୍ରଗଳ୍ପ ଲେଖି ପଠାଇବି । ଉପସ୍ଥିତ ଗଳ୍ପଟା ଏଥିମଧ୍ୟରେ ଶେଷ-କରିପାରିବି ନାହିଁ । କାରଣ ସତ୍ତର ଉତ୍ତାରେ ପ୍ରତିଦିନ ଅଧଘଣ୍ଟା ମାତ୍ର ଲେଖିଥାଏ, ଏଥିରେ ଶେଷ ହୋଇପାରିବ ନାହିଁ ।''

(ଫକୀରମୋହନ ସମୀକ୍ଷା-ପୃ ୨୩୪ରୁ ଗୃହୀତ)

(ଖ) ''ଛ'ମାଣ ଆଠଗୁଣ୍ଠ', 'ପ୍ରାୟଶ୍ଚିତ' ଓ କେତେକାଂଶରେ 'ମାମୁଁ' ସ୍ଫୀତକୃତ କ୍ଷୁଦ୍ର ଗଳ୍ପ ବୋଲି ପୂର୍ବେ କୁହାଯାଇଛି । ଫକୀରମୋହନ ଇଚ୍ଛା କରିଥିଲେ ପୁଣି ସମୟ ଓ ସୁବିଧା ପାଇଥିଲେ 'ରେବତୀ' 'ମାଧମହାନ୍ତିଙ୍କ କନ୍ୟାସୁନା' 'ପୁନର୍ମୂଷିକୋଭବ' ପ୍ରଭୃତି କ୍ଷୁଦ୍ରଗଳ୍ପ ଗୁଡ଼ିକୁ ସ୍ଫୀତକରି ଉପନ୍ୟାସରେ ପରିଣତ କରିପାରିଥା'ନ୍ତେ ।''

(ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା-୮୧ ୮୨)

(୪୭) ସୁରେନ୍ଦ୍ର ମହାନ୍ତି-ଫକୀରମୋହନ ସମୀକ୍ଷା, ପ୍ରଥମ ସଂସ୍କରଣ ଭୂମିକା, ପୃ-୫ ।

ତାଙ୍କର ବଳିଷ୍ଠ ଲେଖନୀ ଓଡ଼ିଆ ସାହିତ୍ୟକୁ ମାତ୍ର ୪ଟି ଉପନ୍ୟାସ ଅର୍ପଣ କରିଯାଇଛୁ । କିନ୍ତୁ ଉପନ୍ୟାସ ସୃଷ୍ଟିର ଏହି ସ୍ୱଳ୍ପତା ମଧ୍ୟରେ ଫକୀରମୋହନଙ୍କ ଗଦ୍ୟସୃଷ୍ଟିର ସାମଗ୍ରିକ କଳା ନିହିତ । ପ୍ରତ୍ୟେକଟିଯାକ ଉପନ୍ୟାସ ଫକୀରମୋହନଙ୍କର ଅନନ୍ୟସାଧାରଣ କଳା-ଗୁରୁତ୍ୱରେ ବିମଣ୍ଡିତ । ଏଗୁଡ଼ିକ ଓଡ଼ିଆସାହିତ୍ୟ ଇତିହାସର ଚିରନ୍ତନ ଅମୂଲ୍ୟ ସଂପଦ । ଫକୀରମୋହନଙ୍କ ଉପନ୍ୟାସ ଗୁଡ଼ିକ ପ୍ରାକ୍-ବ୍ରିଟିଶ୍ ଓ ପର ବ୍ରିଟିଶ୍ ପରିବେଶ ବର୍ଷର ଓଡ଼ିଶାର କ୍ରମ ବିବର୍ତ୍ତିତ ସାମାଜିକ ଜୀବନର ଏକ ଚିତ୍ରଶାଳା । ସୁତରାଂ ଓଡ଼ିଶାର ଅତୀତ ଇତିହାସର ଏକ ଜୀବନ୍ତ ଅଧ୍ୟାୟ ପରିବେଷଣ କରିବାରେ ଫକୀରମୋହନଙ୍କ ଉପନ୍ୟାସ ଗୁଡ଼ିକ ଏକ ଏକ ମହାର୍ଘ ଉପାଦାନ ।

ଫକୀରମୋହନଙ୍କର ଉପନ୍ୟାସ ସୃଷ୍ଟି କାଳକୁ ଆମ ଦେଶ ଇଂରେଜ ଶାସନ କବଳିତ । ଇଂରେଜ ଶାସନାଧୀନ ଓଡ଼ିଶାବାସୀ ବିଦେଶୀ ଶିକ୍ଷା ଓ ସଭ୍ୟତାରେ ସଂପୂର୍ଣ୍ଣ ପ୍ରଭାବିତ । ଫଳରେ ପାରମ୍ପରିକ ଦୈନନ୍ଦିନ ଜୀବନ ପ୍ରବାହରେ ଦେଖାଦେଇଛୁ ଅଦ୍ଭୁତ ପରିବର୍ତ୍ତନ । ଏହି ପରିବର୍ତ୍ତନର ପରିଣତି ମଧ୍ୟ ଭୟାବହ ହୋଇଉଠିଛୁ । ଫକୀରମୋହନଙ୍କ ବହୁ ଗଳ୍ପ ଓ ଉପନ୍ୟାସରେ ଏହାର ବିଶଦ ଚିତ୍ର ବେଶ୍ ସ୍ପଷ୍ଟ ଓ ପ୍ରାଞ୍ଜଳଭାବେ ବର୍ଣ୍ଣିତ ହୋଇଛୁ । ଆଲୋଚକମାନଙ୍କ ମତରେ ତାଙ୍କର ଉପନ୍ୟାସ ଗୁଡ଼ିକ କ୍ଷୁଦ୍ରଗଳ୍ପର ଅଭିବୃଦ୍ଧି ମାତ୍ର । ସୁତରାଂ କ୍ଷୁଦ୍ରଗଳ୍ପ ପରି ଉପନ୍ୟାସରେ ମଧ୍ୟ ତାଙ୍କର ମାନବବାଦୀ ଦୃଷ୍ଟିଭଙ୍ଗୀ, ଲୋକଚରିତ୍ରର ଅଧ୍ୟୟନ ଏବଂ ଅନୁଶୀଳନ, ସଂସ୍କାର ପ୍ରସ୍ତାବ, ବ୍ୟଙ୍ଗ ବିଦ୍ରୂପ, ହାସ୍ୟରସ, ସାମାଜିକ ଘଟଣା ସ୍ରୋତରେ ପ୍ରବାହ, ଜାତୀୟତାବାଦୀ ଏବଂ ସର୍ବୋପରି ନୀତି ଆଦର୍ଶର ଅନୁବର୍ତ୍ତନ ଦୃଷ୍ଟିଗୋଚର ହୁଏ ।

ଫକୀରମୋହନଙ୍କ ଚାରୋଟି ଉପନ୍ୟାସ ମଧ୍ୟରୁ 'ଛ'ମାଣ ଆଠଗୁଣ୍ଠ', 'ମାମୁଁ' ଓ 'ପ୍ରାୟଶ୍ଚିତ' ଏହି ତିନୋଟି ଉପନ୍ୟାସ ସମାଜଧର୍ମୀ । ଓଡ଼ିଶାର ସାମାଜିକ ଜୀବନର ନାନା ସମସ୍ୟାବଳୀ ଏହି ଉପନ୍ୟାସ ତ୍ରୟରେ ଦୃଷ୍ଟିଗୋଚର ହୁଏ । କିନ୍ତୁ 'ଲଛମା' ଏକ ବ୍ୟତିକ୍ରମ । ଏଥିରେ ସାମାଜିକ ଚିତ୍ର ଅବହେଳିତ ନୁହେଁ; ମାତ୍ର ଏହାର ପ୍ରାଣବିନ୍ଦୁ ଇତିହାସଭିତ୍ତିକ । ଏହି ଉପନ୍ୟାସରେ ଇଂରେଜ ଶାସନ ପୂର୍ବବର୍ତ୍ତୀ ମରହଟ୍ଟା ଶାସନ କାଳର ଦୁଃଖ, ଦୁର୍ଦ୍ଦଶାଗ୍ରସ୍ତ ଓଡ଼ିଶାର ପଙ୍ଗୁ-ଜୀବନ ଧାରା ଅତି ମନୋଜ୍ଞ ଭାବରେ ବର୍ଣ୍ଣିତ ହୋଇଛୁ । ଏହି ପରିପ୍ରେକ୍ଷୀରେ ଉପରୋକ୍ତ ୪ଟି ଉପନ୍ୟାସ ସଂପର୍କରେ ସାମାନ୍ୟ ସୂଚନା ପ୍ରଦାନ ଏକାନ୍ତ ଯୁକ୍ତିଯୁକ୍ତ ମନେହୁଏ ।

**(୧) ଛ'ମାଣ ଆଠଗୁଣ୍ଠ : ୧୮୯୭-୧୯୦୦ :**

ଫକୀରମୋହନଙ୍କ ଉପନ୍ୟାସ ଜଗତରେ 'ଛମାଣ ଆଠଗୁଣ୍ଠ'ର ସ୍ଥାନ ଅନନ୍ୟ । ୧୮୯୭ ମସିହାରୁ ଧାରାବାହିକ ଭାବେ ଏହା—'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇ ତତ୍କାଳୀନ ଉତ୍କଳର ଘରପଲ୍ଲୀରେ ବେଶ୍ ଚାଞ୍ଚଲ୍ୟ ଖେଳାଇ

ଦେଇଥିଲା । ଏହି ଉପନ୍ୟାସ ରଚନାକାଳକୁ ଫକୀରମୋହନ କର୍ମମୟ ଜୀବନରୁ କ୍ଷାନ୍ତ ହୋଇ କଣ୍ଟକମଣ୍ଡିତ ଆପଣାର ବାସଭବନରେ ଅବସରପ୍ରାପ୍ତ । ତେଣୁ କର୍ମମୟ ଜୀବନର ଜଞ୍ଜାଳଜଡ଼ିତ ସମସ୍ୟା ଗୁଡ଼ିକ ଏକ ନିର୍ବୋଲା ମୁହୂର୍ତ୍ତରେ ସେ ଏହାକୁ ରଚନା କରିଥିଲେ ବି ଏଥିରେ ପ୍ରକୃତରେ ସେହି ଜଞ୍ଜାଳ ଜଡ଼ିତ ଦୁନିଆର ଚିତ୍ରକୁ ସେ ପ୍ରକାଶ କରିଛନ୍ତି । ଭୂମିକେନ୍ଦ୍ରିକ ଚକ୍ରାଧାରକୁ ନେଇ ଆଲୋଚ୍ୟ ଉପନ୍ୟାସଟି ପରିକଳ୍ପିତ । ସାରିଆ ଭଗିଆଙ୍କ ଜମି ଖଣ୍ଡିକୁ ନେବାପାଇଁ ରାମଚନ୍ଦ୍ର ମଙ୍ଗରାଜର କୌଶଳ ଓ ତଜ୍ଜନିତ ବିଷମୟ ପରିଣତି ଆଲୋଚ୍ୟ ଉପନ୍ୟାସକୁ ବେଶ୍ ହୃଦ୍ୟ ଓ ସୁଖପାଠ୍ୟ କରିଅଛି ।

ତତ୍କାଳୀନ ସମାଜରେ ଶୋଷଣକାରୀ ଜମିଦାରମାନଙ୍କର ଲୋଲୁପଦୃଷ୍ଟି ସଦାସର୍ବଦା ରହିଥିଲା ନିରୀହ ପ୍ରଜାଙ୍କର ସ୍ଥିର ଧନସମ୍ପତ୍ତି ଉପରେ । ଲକ୍ଷ ଲକ୍ଷ ଚାଳ ସର୍ବହରା ଶ୍ରମିକ ଓ କୃଷକଦଳ ଯେତେବେଳେ ସମ୍ପଦ ବା ଜମିଜମାର ଅଧିକାରୀ ହେଉଥିଲେ, ସେତେବେଳେ ଆରମ୍ଭ ହୋଇଯାଉଥିଲା ପ୍ରପୀଡ଼ିତ ଜମିଦାରଙ୍କର କାରସାଦ । ସେମାନେ ଅନବରତ ଚେଷ୍ଟା କରୁଥିଲେ ସେ ସମସ୍ତ ସମ୍ପଦରୁ ପ୍ରଜାମାନଙ୍କୁ ବଞ୍ଚିତ କରିବା ପାଇଁ । ଫକୀରମୋହନଙ୍କ ଉପନ୍ୟାସ 'ଛ'ମାଣ ଆଠଗୁଣ୍ଠ' ଉପରୋକ୍ତ ଘଟଣାର ଏକ ନିଛକ ପ୍ରତିବିମ୍ବ । ଚମ୍ପା ମାଧ୍ୟମରେ ଭଗିଆ ସାରିଆଙ୍କୁ ସର୍ବସ୍ୱାନ୍ତ କରି, ଛ'ମାଣ ଆଠଗୁଣ୍ଠ ଓ ନେତରାଣ୍ଡିକୁ କୌଶଳରେ ଆତ୍ମସାତ୍ କରି, ପ୍ରତିହିଂସାପରାୟଣ ହୋଇ ଚମ୍ପା ଦ୍ୱାରା ବାଘସିଂହ ପରିବାରକୁ ନିଆଁ ଲଗାଇ ବିପର୍ଯ୍ୟସ୍ତ କରି ରାମଚନ୍ଦ୍ର ମଙ୍ଗରାଜ ପରିଣତିରେ ଅତି ଅସହାୟ ଭାବରେ ମୃତ୍ୟୁବରଣ କରିଛି । ଚମ୍ପା ଗୋବିନ୍ଦା ଭଣ୍ଡାରୀର କ୍ଷୁରରେ ପ୍ରାଣ ଦେଇଛି । ପରସ୍ୱତ୍ୱ ଅପହରଣର ବିଷମୟ ପରିଣତି, କର୍ମଫଳ, ଭାଗ୍ୟବାଦ ଉପରେ ଫକୀରମୋହନ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ଆଦର୍ଶକୁ ପ୍ରତିଷ୍ଠିତ କରିଅଛନ୍ତି ।

ଫକୀରମୋହନ ଏହି ଉପନ୍ୟାସରେ କଥୋପକଥନ, ପ୍ରକୃତିର ମନୋଜ୍ଞ ମାଧୁରୀ, ଉତ୍କଳୀୟ ସମାଜର ନଗ୍ନଚିତ୍ରକୁ ଯେପରି ପ୍ରଦାନ କରିଛନ୍ତି ତାହା ଅନନ୍ୟ । ସମାଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ—"ଭାଷା, ଭାବ, ଶୈଳୀ ଓ ପରିବେଶ ଦୃଷ୍ଟିରୁ 'ଛ'ମାଣ ଆଠଗୁଣ୍ଠ' ବିଶ୍ୱ ସାହିତ୍ୟରେ ଏକ ମର୍ଯ୍ୟାଦାପୂର୍ଣ୍ଣ ଆସନ ଦାବି କରିପାରେ । ରାତ୍ରି ଶେଷରେ ପାହାନ୍ତି ଆକାଶରେ ଉଜ୍ଜ୍ୱଳ ଶୁକ୍ରତାରା ପରି ଊନବିଂଶ ଶତାବ୍ଦୀ ଶେଷରେ ଓଡ଼ିଆ ସାହିତ୍ୟର ଅନ୍ଧକାରାବୃତ୍ତ ଦିଗ୍‌ବଳୟରେ 'ଛ'ମାଣ ଆଠଗୁଣ୍ଠ'ର ଅଭ୍ୟୁଦୟ ହୋଇଥିଲା ଏକ ଉଜ୍ଜ୍ୱଳ ପ୍ରଭାତର ବାର୍ତ୍ତାଧରି । ସେ ପ୍ରଭାତର ଜନ୍ମ ହୋଇଛି । 'ଛ'ମାଣ ଆଠଗୁଣ୍ଠ'ର ପୃଷ୍ଠାରେ ଦେଇ ପ୍ରଭାତର ଜୟଗୀତି କାଳେ କାଳେ ଓଡ଼ିଆ ସାହିତ୍ୟର ସାଧକଙ୍କୁ ଉଦ୍‌ବୁଦ୍ଧ କରିବ, ସନ୍ଦେହ ନାହିଁ । ପୁଣି କୁହାଯାଇପାରେ ଫକୀରମୋହନ ଓଡ଼ିଆ ଉପନ୍ୟାସ ସାହିତ୍ୟର ଯେଉଁ ଚୌହଦୀ ଛ'ମାଣ ଆଠଗୁଣ୍ଠରେ ଟାଣିଦେଇ ଯାଇଛନ୍ତି, ଇତିମଧ୍ୟରେ ପ୍ରାୟ ଅର୍ଦ୍ଧଶତାବ୍ଦୀ ବିତିଯାଇଥିଲେ ସୁଦ୍ଧା, ତାହା ସେଥିରୁ ବିଶ୍ୱାଏ ହେଲେ ବଢ଼ିପାରି

ନାହିଁ । (୪୮) ଏ ସମ୍ପର୍କରେ "ଅଧ୍ୟାୟ : ଚତୁର୍ଥ"ରେ ବିଶଦଭାବେ ଆଲୋଚନା ହେବାକୁ ଥିବାରୁ ଏଠାରେ ତାର ସଂକ୍ଷିପ୍ତ ସୂଚନା ମାତ୍ର ଦିଆଗଲା । )

**(୨) ଲଛମା—୧୯୦୧ :**

ଫକୀରମୋହନଙ୍କ ଦ୍ୱିତୀୟ ଉପନ୍ୟାସ ଭାବେ 'ଲଛମା' ୧୯୦୧ ମସିହାରେ ରଚିତ ହୋଇଥିଲା । ଏହା ମଧ୍ୟ ଫକୀରମୋହନଙ୍କ କଟକ ରହଣି କାଳର ଲେଖା । ଧାରାବାହିକ ଭାବେ ଏହି ଉପନ୍ୟାସଟି 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହେବାପରେ ପୁସ୍ତକାକାରରେ ପ୍ରକାଶିତ ହୋଇଥିଲା । 'ଉତ୍କଳ ସାହିତ୍ୟ' ପତ୍ରିକାରେ ଏହା ଧାରାବାହିକ ଭାବରେ ପ୍ରକାଶିତ ହେଉଥିଲାବେଳେ ଫକୀରମୋହନ ଏହାକୁ 'ଅପୂର୍ବ ମିଳନ' ନାମରେ ପ୍ରକାଶିତ କରୁଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ 'ଲଛମା' ନାମ ନେଇ ଏହା ପୁସ୍ତକାକାରରେ ପ୍ରକାଶିତ ହେଲା ।

'ଲଛମା' ଏକ ମନୋଜ୍ଞ ଐତିହାସିକ ଉପନ୍ୟାସ । ଏଥିରେ ମରହଟ୍ଟା ଶାସନ କାଳର (୧୮୦୩ ପୂର୍ବବର୍ତ୍ତୀ କାଳର) ଘଟଣା ନାନା ଘଟଣାକ୍ରମରେ ବର୍ଣ୍ଣିତ ହୋଇଛି । ସେ କାଳର ଓଡ଼ିଶାରେ ମରହଟ୍ଟାମାନଙ୍କର ଅତ୍ୟାଚାର ଏବଂ ତାର ପ୍ରତିରୋଧ ଲାଗି ଓଡ଼ିଶାବାସୀଙ୍କ ଉଦ୍ୟମ ପ୍ରାଞ୍ଜଳ ଭାବରେ ଏହି ଉପନ୍ୟାସରେ ଫକୀରମୋହନ ବର୍ଣ୍ଣନା କରିଛନ୍ତି । ଓଡ଼ିଶାର ରାଜାରାଜୁଡ଼ା, ସାମନ୍ତବାଦୀ ଶାସନର ସ୍ଖଳନ ଏବଂ ତତ୍ସଙ୍ଗେ ସଙ୍ଗେ ଉତ୍କଳୀୟ ଶାସକଗୋଷ୍ଠୀ ରାଜନ୍ୟବର୍ଗଙ୍କର କ୍ଷମତାହୀନତା ଓ ଓଡ଼ିଶାବାସୀଙ୍କର ଦୁର୍ବଳତାର ସୁଯୋଗ ନେଇ ଅତ୍ୟାଚାରୀ ବର୍ଗୀମାନଙ୍କର ରାହାଜାନି ଓ ମୁସଲମାନ୍-ମାନଙ୍କର ରାଜ୍ୟ ଜୟ ଆଦିର ଏକ ମନୋହାରୀ ଚିତ୍ର ବହନ କରିଛି ଏହି 'ଲଛମା' ଉପନ୍ୟାସ । ଏହି ଘଟଣାର ଅନ୍ତରାଳରେ ଫକୀରମୋହନ ଲଛମା ଓ ବାଦଲ ସିଂହଙ୍କ ପ୍ରେମ, ବର୍ଗୀ ଅତ୍ୟାଚାରରେ ସେମାନଙ୍କ ବିଚ୍ଛେଦ ଏବଂ ପରିଣତିରେ ଲଛମା ଓ ବାଦଲ ସିଂହର ଅପୂର୍ବ ମିଳନ ଆଲୋଚ୍ୟ ଉପନ୍ୟାସଟିକୁ ବେଶ୍ ହୃଦୟସ୍ପର୍ଶୀ କରିଛି ।

ଏହି ଉପନ୍ୟାସଟି ରଚନାକ୍ରମରେ ଫକୀରମୋହନଙ୍କ ଉପନ୍ୟାସ କ୍ଷେତ୍ରରେ ଦ୍ୱିତୀୟ ସତ୍ୟ; ମାତ୍ର ଘଟଣାର ସତ୍ୟାସତ୍ୟ ଦୃଷ୍ଟିରୁ ଦେଖିବାକୁ ଗଲେ ଏହା ଫକୀର-ମୋହନଙ୍କର ପ୍ରଥମ ଉପନ୍ୟାସ । କାରଣ ଫକୀରମୋହନଙ୍କର ଅନ୍ୟାନ୍ୟ ଉପନ୍ୟାସରେ ୧୮୦୩ ପରବର୍ତ୍ତୀ ଇଂରେଜ ଶାସନକାଳର ଚିତ୍ର ବିଦ୍ୟମାନ; କିନ୍ତୁ 'ଲଛମା'ରେ ୧୮୦୩ ପୂର୍ବବର୍ତ୍ତୀ ମରହଟ୍ଟା ଶାସନକାଳର ଚିତ୍ର ସ୍ପଷ୍ଟ ଉଦ୍ଭାସିତ । ଏହି ହେତୁ ଦେଖିବାକୁ ଗଲେ ରଚନା ସମୟକୁ ଛାଡ଼ି ଘଟଣା ସମୟରେ 'ଲଛମା' ଫକୀରମୋହନଙ୍କର ପ୍ରଥମ

---

(୪୮) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା—୧୦୦/୧୦୧

ତଥା ଏକ ସାର୍ଥକ ଉପନ୍ୟାସ । ଏହି ଉପନ୍ୟାସଟି ହିନ୍ଦୀରେ ଅନୂଦିତ ହୋଇଥିଲା ବୋଲି ମଧ୍ୟ ଜଣାଯାଏ (୪୯) ।

'ଲଛମା' ଫକୀରମୋହନଙ୍କର ଗୋଟିଏ ସାର୍ଥକ ସୃଷ୍ଟି । ଆଧୁନିକ ଓଡ଼ିଆ ସାହିତ୍ୟରେ ବହୁ ଅଭିନବ ଉଦ୍ୟମ ହୋଇଥିଲେହେଁ, ଓଡ଼ିଆରେ କୌଣସି ଐତିହାସିକ ଉପନ୍ୟାସ 'ଲଛମା'ର କୃତିତ୍ୱକୁ ଅତିକ୍ରମ କରିବା ଦୂରେ ଥାଉ, ଏହାର ସୀମା ସୁଦ୍ଧା ସ୍ପର୍ଶ କରିପାରି ନାହିଁ । (୫୦)

**(ଗ) ମାମୁଁ—୧୯୧ଗ :**

କଟକରୁ ଯାଇଁ ବାଲେଶ୍ୱରରେ ଶାନ୍ତି କାନନରେ ଫକୀରମୋହନ ଅବସ୍ଥାନ କରୁଥିଲାବେଳେ ତାଙ୍କର ଦ୍ୱିତୀୟ ତଥା ଶ୍ରେଷ୍ଠ ଉପନ୍ୟାସ 'ମାମୁଁ' ରଚନା କରିଥିଲେ । କିନ୍ତୁ ଏହା ପୂର୍ବରୁ 'ଲଛମା' ରଚିତ ହୋଇଥିଲେ ବି ଏହାର ପ୍ରକାଶକାଳ 'ମାମୁଁ'ର ପରବର୍ତ୍ତୀ ସମୟ (୧୯୧୪ ଅପ୍ରେଲ ୩୦ ତାରିଖ) ହୋଇଥିବାରୁ କେତେକ ସମାଲୋଚକ ପ୍ରକାଶକାଳ ହେତୁ 'ମାମୁଁ'କୁ ଫକୀରମୋହନଙ୍କ ଦ୍ୱିତୀୟ ଉପନ୍ୟାସ ବୋଲି ଧରି ନେଇଛନ୍ତି । (୫୧) ବାଲେଶ୍ୱରରେ କ୍ଷତିପରିଜନହୀନ, ନିଃସଙ୍ଗ ଜୀବନଯାପନ କରୁଥିବା ସମୟରେ ଫକୀରମୋହନ ଅପୂର୍ବ ଧୈର୍ଯ୍ୟର ସହ ଏହି ଉପନ୍ୟାସଟି ରଚନା କରିଥିଲେ । ଏହା ମଧ୍ୟ 'ଉତ୍କଳ ସାହିତ୍ୟ'ରେ ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା ଓ ବହୁ ଜନାଦୃତ ହୋଇଥିଲା । 'ମାମୁଁ' ପ୍ରକାଶିତ ହେବାପରେ ଜଣେ ଲେଖକ 'ଉତ୍କଳ ସାହିତ୍ୟ'ରେ ଲେଖିଥିଲେ—"ଫକୀରମୋହନଙ୍କଠାରୁ ଖଣ୍ଡେ 'ଲଛମା' ପାଇଅଛୁ, ପଢ଼ିସାରିଅଛୁ । 'ମାମୁଁ' ପରି ସୁଖ ପାଠ୍ୟ ହେଲା ନାହିଁ ।" ଏଥିରୁ 'ମାମୁଁ'ର ଜନପ୍ରିୟତା ବେଶ୍ ଅନୁଭବ୍ୟ ।

(୪୯) (କ) "କଲିକତା ଗଲେ Prof. ହେମଚନ୍ଦ୍ର ସରକାରଙ୍କ ଫକୀରମୋହନବାବୁ ଖଣ୍ଡେ 'ଲଛମା'ର ହିନ୍ଦୀ ଅନୁବାଦ ଓ ଖଣ୍ଡେ 'ପ୍ରାୟଶ୍ଚିତ' ଉପହାର ସ୍ୱରୂପ ପଠାଇବେ ବୋଲି ତାଙ୍କୁ ଅନୁରୋଧ କରିଯିବ ।" (ବିଶ୍ୱନାଥ କରଙ୍କ ଚନ୍ଦ୍ରାମଣି ଆଚାର୍ଯ୍ୟଙ୍କ ପତ୍ର, ଫକୀରମୋହନ ସମୀକ୍ଷାର ପ୍ରଥମ ସଂସ୍କରଣର ଭୂମିକା, ପୃ—୭ରୁ ଗୃହୀତ) ।

(ଖ) "'ଲଛମା' ଉପନ୍ୟାସ ଖଣ୍ଡି ହିନ୍ଦୀ ଭାଷାରେ ଅନୂଦିତ ହୋଇଅଛି । ଅନୁବାଦକ ଶ୍ରୀଯୁକ୍ତ ପାଣ୍ଡେୟ ମୁରଲୀଧର ଓ ପାଣ୍ଡେୟ ମୁକୁଟଧର ଶର୍ମା । ଅତି ସରଳ ଶୁଦ୍ଧ ସୁନ୍ଦର ହିନ୍ଦୀ ଭାଷାରେ ପୁସ୍ତକ ଖଣ୍ଡି ଅନୁବାଦ କରିଛନ୍ତି ଏବଂ ଗ୍ରନ୍ଥକାରଙ୍କର ଅନ୍ୟ ଉପନ୍ୟାସ ଗୁଡ଼ିକ ମଧ୍ୟ ଅନୁବାଦ କରିବାର ଚେଷ୍ଟାରେ ଅଛନ୍ତି ।" ଉତ୍କଳ ସାହିତ୍ୟ—୧୯ଶ ଭାଗ, ୮ମ ସଂଖ୍ୟା)

(୫୦) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା-୮ ।

(୫୧) (ଫକୀରମୋହନଙ୍କ ଗଦ୍ୟରୀତି)—ଫକୀରମୋହନ ସମୀକ୍ଷା, ପୁଂ, ମ—ପୃଷ୍ଠା-୧ ।

'ମାମୁଁ' ଛ'ମାଣ ଆଠଗୁଣ୍ଠର କଥାବସ୍ତୁ ପରି ଏକ ଶୋଷଣ ପେଷଣ କାହାଣୀକୁ ଆଧାର କରି ଲିଖିତ । ଏଥିରେ ଇଂରେଜୀ ସଭ୍ୟତା ସମ୍ପର୍କରେ ଫକୀରମୋହନ ଅବଶ୍ୟ 'ଛ'ମାଣ ଆଠଗୁଣ୍ଠ' ଠାରୁ ଅଧିକ ବର୍ଣ୍ଣନା କରିଅଛନ୍ତି; କିନ୍ତୁ କାହାଣୀରେ ସେପରି କିଛି ବୈଚିତ୍ର୍ୟ ଅନୁଭୂତ ହୁଏ ନାହିଁ । ଏହି ଉପନ୍ୟାସରେ ଫକୀରମୋହନ ଅମଲାତନ୍ତ୍ରର ଶୋଷଣ, ଦୁଷଣର ଚିତ୍ର ପ୍ରଦାନ କରିଅଛନ୍ତି । ନାଜର ନଟବର ଦାସ ଏହାର ଜ୍ୱଳନ୍ତ ଉଦାହରଣ । ଭଣଜା ନରହରିର ସର୍ବସ୍ୱାନ୍ତ ପାଇଁ ନାଜର ନଟବର ଚକ୍ରାନ୍ତ କରିଛନ୍ତି । ଅନେକାଂଶରେ ସଫଳ ହେବାବେଳେ ତାଙ୍କ ଭାଗ୍ୟରେ ପ୍ରଭୁ ଦୟାଲ ପରି ଏକ ଭୂତର ଯେଉଁ ସବାର ହୋଇଛି, ସେଥିରେ ତାଙ୍କ ଭାଗ୍ୟାକାଶରେ ଧୂମ୍ରାଚ୍ଛନ୍ନ ହୋଇଯାଇଛି । ତହବିଲ ତୋଷରପାତ ଅଭିଯୋଗରେ ତାଙ୍କୁ କାରାଦଣ୍ଡ ଆଦେଶ ହୋଇଛି । ସେ ଅନୁତାପଦାବାନଳରେ ଜଳିଉଠିଛନ୍ତି । ନିଜର କୃତକର୍ମର ପାପକୁ ସ୍ୱୀକାର କରି ସେ ଅନୁଶୋଚନାରେ ଭାଙ୍ଗିପଡ଼ିଛନ୍ତି । 'ଛ'ମାଣ ଆଠଗୁଣ୍ଠ'ର ଦୈତ୍ୟ ଶକ୍ତିର ପ୍ରଭାବ ଏଠାରେ ପରିଣତିରେ ଅନୁଶୋଚନାର ଦାବାନଳରେ ଭିନ୍ନ ମୋଡ଼ ନେଇଛି । ନଚେତ୍ ଭାଷା ଓ ଭାବ ଦୃଷ୍ଟିରୁ 'ମାମୁଁ' ଅନେକାଂଶରେ 'ଛ'ମାଣ ଆଠଗୁଣ୍ଠ' ସହ ତୁଳନୀୟ ।

### (୪) ପ୍ରାୟଶ୍ଚିତ—୧୯୧୫ :

ଫକୀରମୋହନ ତାଙ୍କ ଜୀବନର ଅନ୍ତିମ ପର୍ଯ୍ୟାୟରେ ଯେଉଁ ୪ ଗୋଟି ପୂର୍ଣ୍ଣାଙ୍ଗ ଉପନ୍ୟାସ ରଚନା କରିଥିଲେ, ସେଥିମଧ୍ୟରୁ ପ୍ରାୟଶ୍ଚିତ ଥିଲା ଅନ୍ତିମତର ଅର୍ଥାତ୍ ସର୍ବଶେଷ ଉପନ୍ୟାସ । ବାଲେଶ୍ୱରରେ ସ୍ୱଗୃହରେ ଅବସ୍ଥାନ କରୁଥିବାବେଳେ ଓ ୧୯୧୪ ମସିହାରେ ରୋଗଶଯ୍ୟାରେ ପଡ଼ିରହିଥିଲା ବେଳେ ଫକୀରମୋହନ ଏହି ଉପନ୍ୟାସ ରଚନାରେ ବ୍ରତୀ ଥିଲେ । ବହୁ କଷ୍ଟରେ ରୋଗଶଯ୍ୟାରେ ଥାଇ ୧୯୧୫ ମସିହା ସେପ୍ଟେମ୍ବର ମାସରେ ସେ ଏହାକୁ ସମାପ୍ତି କରିଥିଲେ ।

ଏହା ଏକ ସମସ୍ୟାମୂଳକ ଉପନ୍ୟାସ । 'ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଭାରତର ପରମ୍ପରାଗ୍ରସ୍ତ ସମାଜରେ ସଂସ୍କାରର ବାତ୍ୟା ବହିଯାଉଥିଲା । ଇଂରେଜୀ ସଭ୍ୟତା, ଚଳାଣି-ଧାରା, ସମାଜ ସଂସ୍କାର, ସଂସ୍ପର୍ଶରେ ଆସି ନବ୍ୟଶିକ୍ଷିତ ଯୁବକମାନେ ସମାଜ ସଂସ୍କାରରେ ଲାଗିପଡ଼ିଥିଲେ । ବଙ୍ଗଳାରେ ସେ ସମୟରେ ଏକ ଧାରଣା ଜନ୍ମିଥିଲା, ହିନ୍ଦୁଧର୍ମ ତ୍ୟାଗ କରି ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ନହେଲେ ଓ ହିନ୍ଦୁ ସମାଜର ସଂସ୍କାର, ଚଳଣି ତୁଚ୍ଛ କରି ପାଶ୍ଚାତ୍ୟ ଚଳଣି ଅନୁସରଣ ନକଲେ ସଭ୍ୟତାର ଆସ୍ୱାଦନ ଅସମ୍ଭବ । ଏହାର ସଂକ୍ରମଣ ଓଡ଼ିଶାକୁ ମଧ୍ୟ ଖୁବ୍ ପ୍ରବଳ ଭାବରେ ବ୍ୟାପିଥିଲା । ସମାଜ ଓ ଚଳାଧାରାର ଏହି ପୃଷ୍ଠ-ଭୂମିରେ 'ପ୍ରାୟଶ୍ଚିତ' ଉପନ୍ୟାସ ରଚିତ ହୋଇଅଛି । ଉପନ୍ୟାସର ନାୟକ ଗୋବିନ୍ଦ ଚନ୍ଦ୍ର ସମାଜ ସଂସ୍କାର ଓ ପ୍ରଗତିର ନାମରେ ମାତିଯାଇଁ ପ୍ରତିଷ୍ଠିତ ପରମ୍ପରା ଓ ବିଧିନିଷେଧ ଆଦି ପାଦରେ ଦଳି ଏକ ନୂତନ ପରମ୍ପରା ଗଢ଼ିବାକୁ ବସିଲେ । ମାତ୍ର ସେଥିରେ

ଅନୁଶୋଚନାରେ ସାରହେଲ । ଏ ଅନୁଶୋଚନା ଯେପରିକି ଗୋବିନ୍ଦଚନ୍ଦ୍ରଙ୍କ କୃତ ପାପର ପ୍ରାୟଶ୍ଚିତ ।"

"ପ୍ରାୟଶ୍ଚିତ" ଉପନ୍ୟାସ ଏହି କଥାବସ୍ତୁକୁ ଆଧାର କରି ରଚିତ । କିନ୍ତୁ ଏହାର ସର୍ବପ୍ରଥମ ସଂସ୍କରଣ ଫକୀରମୋହନଙ୍କ ପୁତ୍ର ମୋହିନୀମୋହନଙ୍କ ଦ୍ୱାରା ଖଣ୍ଡିତ ହୋଇ ଦ୍ୱିତୀୟ ସଂସ୍କରଣରେ ରୂପ ପାଇଲାବେଳକୁ ଏହାର ଅନେକ ପରିବର୍ତ୍ତନ ହୋଇଯାଇଥିଲା । ଏହା କରିବାର କାରଣ ହେଉଛି ଏହି ଉପନ୍ୟାସର ପିତାମାତା ଅବାଧ୍ୟ ପୁତ୍ର ଗୋବିନ୍ଦଚନ୍ଦ୍ର କାଳେ ମୋହିନୀମୋହନଙ୍କ ସ୍ୱଭାବରେ ଲକ୍ଷିତ । ତେଣୁ ନିଜକୁ ଯଥାସମ୍ଭବ ଗୋବିନ୍ଦ ଚନ୍ଦ୍ରଙ୍କ ଚରିତ୍ରରୁ ଦୂରେଇ ରଖିବାପାଇଁ ମୋହିନୀମୋହନ ଏହି ଅଭିନବ ଉପାୟ ଅବଲମ୍ବନ କରିପାରିଥା'ନ୍ତି । କିନ୍ତୁ ପ୍ରକୃତପକ୍ଷେ ସେ ସଫଳ ହୋଇପାରିନାହାନ୍ତି । ପାଠକମାନେ ଅତି ଅନ୍ତରଙ୍ଗ ଭାବେ ଲକ୍ଷ୍ୟ କଲେ ଜାଣିପାରିବେ ଗୋବିନ୍ଦଚନ୍ଦ୍ରଙ୍କ ଶିକ୍ଷା, ଦୀକ୍ଷା, ଚାଲିଚଳଣି ଓ ଅବାଧ୍ୟତା ଭିତରେ ନିଶ୍ଚିତ ଭାବେ ମୋହିନୀମୋହନ ହିଁ ପ୍ରତିଫଳିତ ହୋଇଉଠିଛନ୍ତି । [ ଏହି ଉପନ୍ୟାସ ସମ୍ପର୍କରେ "ଅଧ୍ୟାୟ-୫ମ"ରେ ବିଶଦ ଭାବେ ଆଲୋଚନା ହେବାକୁ ଥିବାରୁ ଏଠାରେ ତାର ସଂକ୍ଷିପ୍ତ ସୂଚନା ମାତ୍ର ଦିଆଯାଇଛି ।)

ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ'କୁ ଅପୂର୍ଣ୍ଣ ଉପନ୍ୟାସ ବୋଲି କେତେକ ସମାଲୋଚକ କହିଥାନ୍ତି । କିନ୍ତୁ ଏହା ଅପ୍ରକାଶିତ ଓ ଅପୂର୍ଣ୍ଣ ଥିବାରୁ ଏହାର ଆଲୋଚନା କୌଣସି ଦୃଷ୍ଟିରୁ ଯଥାଯଥ ନୁହେଁ । ତେଣୁ ଏ କ୍ଷେତ୍ରରେ ଏହା ପରିତ୍ୟାଜ୍ୟ ।

ଫକୀରମୋହନଙ୍କର ଅନ୍ୟ ଏକ ସାହିତ୍ୟକୃତି ହେଉଛି ତାଙ୍କ 'ଆତ୍ମଜୀବନ ଚରିତ' । ଏଥିରେ ଫକୀରମୋହନ ତାଙ୍କ ଜୀବନ ପର୍ଯ୍ୟାୟରେ ଓଡ଼ିଶାରେ ଘଟିଯାଇଥିବା ତତ୍କାଳୀନ ସାମାଜିକ, ରାଜନୈତିକ, ସାହିତ୍ୟିକ ତଥା ସାଂସ୍କୃତିକ ଇତିହାସ ଓ ସ୍ୱ ଜୀବନର କରୁଣ କାହାଣୀକୁ ଲିପିବଦ୍ଧ କରିଯାଇଅଛନ୍ତି । ଓଡ଼ିଶାର ସାମାଜିକ ଓ ରାଜନୈତିକ ଜୀବନକୁ ଦୋହଲାଇ ଦେଇଥିବା ୧୮୬୬ ମସିହାର 'ନଅଙ୍କ ଦୁର୍ଭିକ୍ଷ'ର ପ୍ରତ୍ୟକ୍ଷଦର୍ଶୀ କରୁଣ ବିବରଣୀକୁ ଏଥିରେ ଫକୀରମୋହନ ସ୍ଥାନ ଦେଇଛନ୍ତି । ଏହା ସହିତ ବିଦେଶୀମାନଙ୍କର ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ', ଓଡ଼ିଶାର ବିଭିନ୍ନ ଗଡ଼ଜାତ ଅଞ୍ଚଳର ଅବସ୍ଥା ଏବଂ ସେଗୁଡ଼ିକର ଶାସନ, ବ୍ରିଟିଶମାନଙ୍କର ଓଡ଼ିଶାରେ ପ୍ରଶାସନିକ ବ୍ୟବସ୍ଥା, ଓଡ଼ିଶାରେ ଓଡ଼ିଆ ସାହିତ୍ୟର ବିକାଶ ଦିଗରେ ଦେଶପ୍ରେମୀ ସାହିତ୍ୟିକଗଣଙ୍କ ଅଭ୍ୟୁଦୟ ସମ୍ପର୍କୀୟ ସ୍ଥୂଳ ବିବରଣୀ—ଫକୀରମୋହନଙ୍କ 'ଆତ୍ମଜୀବନ ଚରିତ'ରେ ସନ୍ନିବିଷ୍ଟ ।

ଫକୀରମୋହନଙ୍କ ବ୍ୟକ୍ତିଗତ ଜୀବନ ସହ ତାଙ୍କର ସାହିତ୍ୟିକ ଜୀବନର ନିବିଡ଼ ଯୋଗାଯୋଗ ରହିଛି । ଜୀବନର ଯନ୍ତ୍ରଣାମୟ ମୁହୂର୍ତ୍ତ ଓ ସଂଘର୍ଷ, ସଙ୍ଘାତ ପରିସ୍ଥିତିରେ

ତାଙ୍କର ସାହିତ୍ୟିକ ଜୀବନର ଅଭ୍ୟୁଦୟ ହୋଇଥିଲା ଓ ସେହି ପ୍ରତିଭା ନାନା ଘାତ ପ୍ରତିଘାତ ସହି ଜୀବନର ଅନ୍ତିମକାଳ (୧୯୧୮) ପର୍ଯ୍ୟନ୍ତ ବିକଶିତ ହେବା ସଙ୍ଗେ ସଙ୍ଗେ ତାଙ୍କର ନିଃସଙ୍ଗ ଜୀବନ ସହ ବିଳୟ ଭଜିଥିଲା । ଅତଏବ ଫକୀରମୋହନଙ୍କ ଅଶୃଙ୍ଖଳ ଜୀବନର ଦରିଦ୍ର କାହାଣୀ ତାଙ୍କର ସାହିତ୍ୟ, ଏହାକୁ ନେଇ ଜାତି ଯେପରି ଗର୍ବ କରିପାରେ, ଦେଶ ମଧ୍ୟ ସେହିପରି ଗର୍ବ ଅନୁଭବ କରେ । କାରଣ ଆଜି ଫକୀରମୋହନ ଏକ ବ୍ୟକ୍ତି ନୁହନ୍ତି ଏକ ସାରସ୍ୱତ ଅନୁଷ୍ଠାନ । ପ୍ରତିଭାଧରଙ୍କ ଆବିର୍ଭାବ କାଳ ଓ ଜୀବନୀ ବୃତ୍ତି ସହ ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣଙ୍କର ଯେପରି ଅଦ୍ଭୁତ ସାମ୍ୟ ଦେଖାଯାଏ ସେହିପରି ତାଙ୍କ ସାହିତ୍ୟ ସୃଷ୍ଟି ସହ ମଧ୍ୟ ହଥର୍ଣ୍ଣଙ୍କ ସାହିତ୍ୟ ସୃଷ୍ଟିର ଅଦ୍ଭୁତ ସାମ୍ୟ ପରିଲକ୍ଷିତ ହୁଏ । ତେଣୁ ଏହି ଉଭୟ ଔପନ୍ୟାସିକଙ୍କ ସାହିତ୍ୟିକ ଜୀବନର ଏହି ଅନୁଧ୍ୟାନ ପରେ ଓ ତାଙ୍କ ସୃଷ୍ଟି ସମ୍ପଦର ଏହି ସମୀକ୍ଷା ପରେ ଏବେ ଉଭୟଙ୍କ ସାହିତ୍ୟ ସୃଷ୍ଟିରେ କି ପ୍ରକାର ସାମ୍ୟ ରହିଛି ତାହା ଆମର ବିଚାର୍ଯ୍ୟ ।

## ହଥର୍ଣ୍ଣ ଓ ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟିର ସାମ୍ୟ ବା ତୁଳନାତ୍ମକ ବିଚାର :

ପିତୃମାତୃହରା ହୋଇ ଫକୀରମୋହନ ଯେପରି ଏକ ଅନିଶ୍ଚିତ ସାମାଜିକ ଭିତ୍ତି-ଭୂମି ଉପରେ କଣ୍ଟରହି ବହୁ କ୍ଳେଶ ସ୍ୱୀକାର କରି ନିଜର ସାହିତ୍ୟ ସୌଧ ନିର୍ମାଣ କରି-ପାରିଥିଲେ, ସେହିପରି ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣ ନିଜ ବାପାଙ୍କ ମୃତ୍ୟୁ ଓ ତଜ୍ଜନିତ ପାରିବାରିକ ଅବକ୍ଷୟତାର ଶିକାର ହୋଇ, ନାନା ସମସ୍ୟାର ସମ୍ମୁଖୀନ ହୋଇ ଆପଣାର ସାହିତ୍ୟ ଅଟ୍ଟାଳିକା ନିର୍ମାଣ କରିପାରିଥିଲେ । ଏହି ଉଭୟ ଔପନ୍ୟାସିକଙ୍କ ଜୀବନୀ ସହିତ ସେମାନଙ୍କ ସାହିତ୍ୟିକ ଜୀବନ ଓତଃପ୍ରୋତ ଭାବେ ଜଡ଼ିତ । ଏମାନଙ୍କ ସୃଷ୍ଟି ସାହିତ୍ୟ ଏମାନଙ୍କ ଜୀବନର ପ୍ରତ୍ୟକ୍ଷ ବିଶ୍ଳେଷଣ ନହେଲେ ବି ସେମାନଙ୍କ ସାହିତ୍ୟ ଯେ ସେମାନଙ୍କ ଜୀବନର ପରୋକ୍ଷ ବିଶ୍ଳେଷଣ ଏକଥା ଅସ୍ୱୀକାର କରିହେବ ନାହିଁ । ତେଣୁ ଉଭୟ ଔପନ୍ୟାସିକଙ୍କ ଜୀବନରେ ଯେପରି ନାନା ଭାବେ ସାମ୍ୟ ବିଦ୍ୟମାନ, ସେହିଭଳି ସାମ୍ୟ ସେମାନଙ୍କ ସାହିତ୍ୟ ସୃଷ୍ଟିରେ ମଧ୍ୟ ପରିଲକ୍ଷିତ ହୁଏ । ନିମ୍ନ ଭାବେ ସେ ସବୁର ଅନୁଶୀଳନ କରାଯାଇପାରେ—

(୧) ଔପନ୍ୟାସିକ ହଥର୍ଣ୍ଣ ପ୍ରଥମେ କେତେକ ପ୍ରବନ୍ଧ ରଚନା କରି ସ୍ୱ ସାହିତ୍ୟିକ ଜୀବନର ଅସ୍ମାରମ୍ଭ କରିଥିଲେ । ବୋଡ୍‌ଓ୍ୱିନ୍ କଲେଜରେ ପଢ଼ିବା ସମୟରେ ସେ କେତେକ ପ୍ରବନ୍ଧ ପ୍ରତିଯୋଗିତାରେ ଯୋଗ ଦେଇ କେତୋଟି ପ୍ରବନ୍ଧ ରଚନା କରିଥିଲେ; ମାତ୍ର ସେ ସବୁ ପ୍ରକାଶିତ ପୁସ୍ତକ ଆକାରରେ ବାହାରି ପାରିନଥିବାରୁ ହଥର୍ଣ୍ଣଙ୍କ ପ୍ରବନ୍ଧ-ଗୁଡ଼ିକର ମୂଲ୍ୟାୟନ ସମ୍ଭବ ହୋଇପାରୁ ନାହିଁ । ଠିକ୍ ହଥର୍ଣ୍ଣଙ୍କ ପରି ଫକୀରମୋହନଙ୍କ ଜୀବନର ଆଦ୍ୟ ପର୍ଯ୍ୟାୟର ଲେଖା 'ଭାରତବର୍ଷର ଇତିହାସ', 'ବ୍ୟାକରଣ' କିମ୍ବା 'ବିଦ୍ୟା-

ସାଗରଙ୍କ ଜୀବନ ଚରିତ' ଆଦି ଗଦ୍ୟ ରଚନାଗୁଡ଼ିକ ତାଙ୍କ ପରବର୍ତ୍ତୀ ସାହିତ୍ୟିକ ଜୀବନ ସମ୍ପର୍କରେ କୌଣସି ନିର୍ଭର ପ୍ରତିଶ୍ରୁତି ବହନ କରିପାରିନଥିଲେ । ଅତଏବ ଏହି ଉଭୟ ଔପନ୍ୟାସିକଙ୍କ ସାହିତ୍ୟିକ ଜୀବନର ଆଦିପର୍ଯ୍ୟାୟରେ ଗଦ୍ୟ ରଚନାର ଭୂମିକା ଦେଖିବାକୁ ମିଳିଲେ ହେଁ ଏସବୁ ସେମାନଙ୍କ ପରବର୍ତ୍ତୀ ସାହିତ୍ୟିକ ଜୀବନ ମୂଲ୍ୟାୟନରେ କୌଣସି ସହାୟକ ହୁଅନ୍ତି ନାହିଁ ।

(୨) ଔପନ୍ୟାସିକ ହଥର୍ଣ୍ଣ କଲେଜରେ ପଢ଼ୁଥିବା ସମୟରେ କେତେକ ଗଳ୍ପ ଲେଖିଥିଲେ । ସେ ସବୁର ପ୍ରକାଶନ ପାଇଁ ସେ **'Seven-Tales of my native Land'** ନାମକ ଏକ ସଙ୍କଳନର ପ୍ରସ୍ତୁତ କରିଥିଲେ; ମାତ୍ର ସେତେବେଳେ ତାଙ୍କର ଏହି ସାହିତ୍ୟକୃତିକୁ କୌଣସି ପ୍ରକାଶକ ପ୍ରକାଶ କରିବାକୁ ଇଚ୍ଛା ପୋଷଣ କରିନଥିଲେ । ପ୍ରକାଶକଙ୍କ ଦ୍ୱାରସ୍ଥ ହୋଇ ସେ ନିରାଶରେ ପ୍ରତ୍ୟାବର୍ତ୍ତନ କରିବା ପରେ ସେହି ଗଳ୍ପ ସଙ୍କଳନର ପାଣ୍ଡୁଲିପିଟିକୁ ନିଆଁରେ ପୋଡ଼ି ଦେଇଥିଲେ, ଅତଏବ ତାଙ୍କ ସାହିତ୍ୟିକ ଜୀବନରେ ପ୍ରଥମକରି ପ୍ରକାଶ ପାଇବାକୁ ଯାଉଥିବା ଗଳ୍ପ ସୂର୍ଯ୍ୟାଲୋକ ଦେଖିପାରିଲା ନାହିଁ । ଠିକ୍ ସେହିପରି ଆମର ସମ୍ମାନାସ୍ପଦ ଔପନ୍ୟାସିକ ଫକୀରମୋହନ ବାଲେଶ୍ୱର ମିଶନ୍ ସ୍କୁଲରେ ଶିକ୍ଷକତା କରୁଥିବାବେଳେ 'ରାଜପୁତନର ଇତିହାସ' ନାମକ ଏକ ଗଦ୍ୟଗ୍ରନ୍ଥ ରଚନା କରିଥିଲେ । କିନ୍ତୁ ତାହା ମଧ୍ୟ ସେ ପ୍ରକାଶ କରିବାକୁ ସମର୍ଥ ହୋଇ-ପାରିନଥିଲେ । ଓଡ଼ିଶାରେ ଥିବା ତତ୍କାଳୀନ ଏକମାତ୍ର ପ୍ରେସ୍ 'କଟକମିଶନ ପ୍ରେସ୍'ରୁ ଫକୀରମୋହନ ବୁଝିଲେ ଯେ, ଏହି ପୁସ୍ତକଟିର ଛପାପାଇଁ ତିନିଶହ ଟଙ୍କା ଆବଶ୍ୟକ । ଅତଏବ ସେ ଜଣେ ଦରିଦ୍ର ଶିକ୍ଷକ, ମାସକୁ ଦରମା ଦଶ ଟଙ୍କା । ତେଣୁ ତାଙ୍କ ପାଇଁ ସେ ସମୟରେ ଏତେ ଟଙ୍କା ଖର୍ଚ୍ଚ କରି ପୁସ୍ତକଟିକୁ ଛପାଇବା ସମ୍ଭବପର ହେଲାନାହିଁ କିମ୍ବା ସେତେବେଳେ ଆଜିପରି କୌଣସି ପ୍ରକାଶନ ସଂସ୍ଥା ନଥିଲା ବହିଟିକୁ ଛାପିବା ପାଇଁ । କିଛି ବର୍ଷ ପରେ ଏହାର ପାଣ୍ଡୁଲିପି ମଧ୍ୟ ହଜିଯାଇଥିଲା । ତେଣୁ ଫକୀରମୋହନଙ୍କ ଜୀବନର ଆଦ୍ୟ ସାହିତ୍ୟକୃତି ଭାବେ ପରିଚିତ ଏଇ 'ରାଜପୁତନର ଇତିହାସ' ମଧ୍ୟ ପ୍ରକାଶିତ ହୋଇପାରିଲା ନାହିଁ । ଏହିପରି ଭାବେ ଔପନ୍ୟାସିକ ହଥର୍ଣ୍ଣ ଓ ଫକୀରମୋହନ ସ୍ୱ ସାହିତ୍ୟିକ ଜୀବନର ଆଦିପର୍ଯ୍ୟାୟର ଲେଖାଗୁଡ଼ିକୁ ପୁସ୍ତକାକାରରେ ପ୍ରକାଶିତ କରିବାର ସୌଭାଗ୍ୟରୁ ବଞ୍ଚିତ ହୋଇଥିଲେ ।

(୩) ଉଭୟ ଔପନ୍ୟାସିକ କିନ୍ତୁ ପରବର୍ତ୍ତୀ ଜୀବନରେ ଆପଣାର ମାତୃଭାଷା ହିତୈଷୀ ପତ୍ରପତ୍ରିକାମାନଙ୍କରେ ସ୍ୱ ସ୍ୱ ଲେଖା ପ୍ରକାଶନ କରିବାର ଗୌରବ ଅର୍ଜନ କରିଥିଲେ । ଦିନେ ଯେଉଁ ହଥର୍ଣ୍ଣ ନିଜର କେତୋଟି ଗଳ୍ପକୁ ପ୍ରକାଶ କରିବାପାଇଁ ପ୍ରକାଶକଙ୍କ ଦ୍ୱାରସ୍ଥ ହୋଇଥିଲେ, ସେହି ହଥର୍ଣ୍ଣ ପରବର୍ତ୍ତୀ ଜୀବନରେ ଉଚ୍ଚକୋଟୀର ଗଳ୍ପମାନ ତାଙ୍କ ଦେଶର ସାହିତ୍ୟ ପତ୍ରିକାରେ ପ୍ରକାଶିତ କରାଇ ପାରିଥିଲେ । ହଥର୍ଣ୍ଣଙ୍କ

ପ୍ରକାଶକ 'Goodrich'ଙ୍କ ସାହାଯ୍ୟରେ ହଥର୍ଣ୍ଣ 'The Token' ଓ 'New England' ନାମକ ମାଗାଜିନ୍‌ରେ ନିଜର ଅସଂଖ୍ୟ ଲେଖାମାନ ପ୍ରକାଶିତ କରିଥିଲେ । ହଥର୍ଣ୍ଣଙ୍କ ସାହିତ୍ୟିକ ଜୀବନରେ ପ୍ରକାଶକ ତଥା ସଂପାଦକ Goodrichଙ୍କ ପ୍ରେରଣା କଦାପି ଭୁଲିବାର ନୁହେଁ । ଠିକ୍ ସେହିପରି ଫକୀରମୋହନଙ୍କ ଜୀବନରେ 'ଉତ୍କଳ ସାହିତ୍ୟ' ପତ୍ରିକାର ସଂପାଦକ ତଥା ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଭୀଷ୍ମଦେବ ବାଗ୍ମୀ ବିଶ୍ୱନାଥକରଙ୍କ ଭୂମିକା ମଧ୍ୟ ଅନସ୍ୱୀକାର୍ଯ୍ୟ । ହଥର୍ଣ୍ଣଙ୍କ ପରି ଫକୀରମୋହନ ବିଶ୍ୱନାଥ କରଙ୍କ ସାହାଯ୍ୟ ସହାନୁଭୂତିରେ ନିଜର ଯନ୍ତ୍ରଣାମୟ ଜୀବନକୁ ଯେପରି କିଛିଟା ଉପଶମ ହେବାର ମନେକରୁଥିଲେ । ନିଜର ସାହିତ୍ୟିକ ଜୀବନର ପ୍ରକୃତ ବିଜ୍ଞାପନ ମଧ୍ୟ ସେ ତାଙ୍କ ମାଧ୍ୟମରେ ପ୍ରକାଶ କରିପାରିଥିଲେ । 'ରାଜପୁତର ଇତିହାସ' ଅପ୍ରକାଶିତ ଓ ପରେ ଅପ୍ରାପ୍ତ ହେବାପରେ ଫକୀରମୋହନ ଦୀର୍ଘଦିନ ସାହିତ୍ୟ କ୍ଷେତ୍ରରେ ନୀରବ ରହିଥିଲେ । ମାତ୍ର ତାଙ୍କର ପ୍ରଥମ ପୁତ୍ର ଓ ସ୍ତ୍ରୀ ବିୟୋଗ ପରେ ତାଙ୍କ ସାହିତ୍ୟିକ ପ୍ରତିଭାର ଅଭ୍ୟୁଦୟ ଘଟିଲା ଅତି ଆଶ୍ଚର୍ଯ୍ୟ ଭାବରେ । ସେହିପରି ଅସମ୍ଭବ ଭାବରେ ତାଙ୍କର ଲେଖାମାନ ଧାରାବାହିକ ରୂପେ ପ୍ରକାଶିତ ହେଲା "ଉତ୍କଳ ସାହିତ୍ୟ" ପତ୍ରିକାରେ ଓ ଏହା ତାଙ୍କୁ ପାଠକମାନଙ୍କ ନିକଟରେ ବିପୁଳଭାବରେ ଆଦୃତ କରିପାରିଥିଲା । ୧୮୯୮ ମସିହାରେ ପ୍ରକାଶିତ 'ରେବତୀ' ଓ '୧୮୯୭' ମସିହାରେ ରଚିତ 'ଛମାଣ ଆଠଗୁଣ୍ଠ' ଠାରୁ ଜୀବନର ଅନ୍ତିମ କାଳ ପର୍ଯ୍ୟନ୍ତ ଫକୀରମୋହନ ବିଶ୍ୱନାଥକରଙ୍କ 'ଉତ୍କଳ ସାହିତ୍ୟ' ସହ ଓତଃ-ପ୍ରୋତ ଭାବେ ଜଡ଼ିତ ଥିଲେ ।

ଅତଏବ କୁହାଯାଇପାରେ ଯେ, ହଥର୍ଣ୍ଣ ଓ ଫକୀରମୋହନଙ୍କ ସାହିତ୍ୟିକ ଜୀବନର ପ୍ରଥମ ଲେଖାମାନ ପ୍ରକାଶନରେ ବିଡ଼ମ୍ବିତ ହେବା ପରେ ଉଭୟ ଔପନ୍ୟାସିକ ପତ୍ର-ପତ୍ରିକା ମାଧ୍ୟମରେ ସ୍ୱ ସାହିତ୍ୟିକ ଜୀବନର ପ୍ରକୃତ ପରାକାଷ୍ଠା ପ୍ରଦର୍ଶନ କରିପାରିଥିଲେ ଓ ପରେ ନିଜ ନିଜ ସାହିତ୍ୟର ଜଣେ ଜଣେ ପ୍ରତିନିଧି ଶ୍ରେଣୀସ୍ଥ ସାହିତ୍ୟିକ ଭାବେ ସ୍ୱତନ୍ତ୍ର ଆସନର ଅଧିକାରୀ ହୋଇପାରିଥିଲେ ।

(୪) ହଥର୍ଣ୍ଣ 'The Token' ଓ 'New England' Magazine ରେ ପ୍ରକାଶ କରିଥିବା ଅସଂଖ୍ୟ ଗଳ୍ପଗୁଡ଼ିକ ମଧ୍ୟରୁ ଅଧିକାଂଶ ତାଙ୍କ ଛଦ୍ମନାମରେ ପ୍ରକାଶିତ ହୋଇଥିଲା । ଠିକ୍ ସେହିପରି ଫକୀରମୋହନ ମଧ୍ୟ 'ଧୂର୍ଜ୍ଜଟୀ' ଛଦ୍ମନାମରେ ଆପଣାର ଅନେକ ସାହିତ୍ୟ କୃତିକୁ ପତ୍ର-ପତ୍ରିକା ମାଧ୍ୟମରେ ପ୍ରକାଶିତ କରାଇଥିଲେ । ତେଣୁ କୁହାଯାଇପାରେ ଯେ, କୌଣସି ଯୋଜନାବଦ୍ଧଭାବେ ଏହି ଔପନ୍ୟାସିକ ଦ୍ୱୟ ସାହିତ୍ୟିକ ହେବାର ଗୌରବକୁ ଆଶା କରିନଥିଲେ । ତେଣୁ ଆପଣାର ନାମ ଅପେକ୍ଷା ନିଜର ସୃଷ୍ଟିକୁ ଛଦ୍ମନାମରେ ପ୍ରକାଶ କରି ସେମାନେ ନିଜର ଗର୍ବ, ଅହଂକାରହୀନ ମାନସିକ ପ୍ରବୃତ୍ତିର ପରିଚୟ ପ୍ରଦାନ କରିଯାଇଅଛନ୍ତି ।

(୫) ସ୍ୱଥର୍ଣ୍ଣଙ୍କ ପ୍ରବନ୍ଧ ରଚନାକୁ ବାଦ୍‌ଦେଲେ ତାଙ୍କର ପ୍ରକୃତ ସାହିତ୍ୟିକ ଜୀବନର ଉତ୍କର୍ଷକାଳୀୟ ପରେଓ୍ୱ ତାଙ୍କ ଗଳ୍ପ ଓ ଉପନ୍ୟାସ ଜଗତରେହିଁ ଲକ୍ଷ୍ୟକରାଯାଏ । ସ୍ୱଥର୍ଣ୍ଣ ପ୍ରବନ୍ଧ ରଚନାରେ ଆପଣାର ଦକ୍ଷତା ପ୍ରକାଶ କରିଥିଲେହେଁ ଆଜିରୁ ଲୁହାଯାଇଛୁ ଏହରୁ ତାଙ୍କ ସାହିତ୍ୟିକ ଜୀବନର ମୂଲ୍ୟାୟନରେ କୌଣସି ଦିଗରୁ ସହାୟକ ହୋଇପାରିନାହାନ୍ତି । ତେଣୁ ସ୍ୱଥର୍ଣ୍ଣଙ୍କୁ ଯଦି ବିଶ୍ୱସାହିତ୍ୟ ଜଣେ ମାନ୍ୟଗଣ୍ୟ ସାହିତ୍ୟିକ ଭାବେ ଜାଣିଥାଏ, ତେବେ ତାଙ୍କର ଗଳ୍ପ ଓ ଉପନ୍ୟାସ ସୃଷ୍ଟି ପାଇଁ ଠିକ୍ ସେହିପରି ଫକୀରମୋହନ ତାଙ୍କର ସାହିତ୍ୟିକ ଜୀବନରେ ଆଦ୍ୟପର୍ଯ୍ୟାୟରେ, ପାଠ୍ୟପୁସ୍ତକ ପ୍ରେଣେତା, ଅନୁବାଦକ ଓ କବି ଭାବରେ ପରିଚିତ ହେଲେହେଁ ସେ ଏକାନ୍ତ ସ୍ମରଣୀୟ ତାଙ୍କର ଗଳ୍ପ ଓ ଉପନ୍ୟାସ ପାଇଁ । ତେଣୁ ଏହି ଉଭୟ ଔପନ୍ୟାସିକ ଆଦି-ସାହିତ୍ୟିକ ଜୀବନ ଯାହା ହେଉନା କାହିଁକି ସମାଲୋଚକମାନେ ଏମାନଙ୍କର ମୂଲ୍ୟାୟନ ବିଶେଷକରି ସେମାନଙ୍କ ଗଳ୍ପ ଓ ଉପନ୍ୟାସ-ରୁହିଁ ଆରମ୍ଭ କରିଥାଆନ୍ତି । ତେଣୁ ଏହି ଔପନ୍ୟାସିକ ଦ୍ୱୟ ସେମାନଙ୍କ ସାହିତ୍ୟଜଗତର ଜଣେ ଜଣେ ପ୍ରଖ୍ୟାତ ଗାଳ୍ପିକ ଓ ଔପନ୍ୟାସିକ ହେବାର ଯେଉଁ ଗୌରବ ଅର୍ଜନ କରିଛନ୍ତି, ତାହା ସେମାନଙ୍କ ଅନ୍ୟସୃଷ୍ଟି ବ୍ୟତୀତ ସେମାନଙ୍କ ଗଳ୍ପ ଓ ଉପନ୍ୟାସରେ ହିଁ ଅଧିକ ମାତ୍ରାରେ ଅନୁରଣିତ ।

(୬) ସ୍ୱଥର୍ଣ୍ଣ ତାଙ୍କ କଲେଜପଢ଼ା ସମୟରୁ ଗଳ୍ପ ରଚନା କରିଥିଲେ । ଏହି ଗଳ୍ପ ଗୁଡ଼ିକରେ ତାଙ୍କ ଜୀବନର ଦୁଃଖ ଦୁର୍ଦ୍ଦଶା, ସମାଜ ସଂସ୍କାର, ତାଙ୍କ ନିଃସଙ୍ଗ ଜୀବନର ଦାବାନଳ, ସାମାଜିକ ଅନ୍ଧକୁଳାଗ୍ରହ, ରକ୍ଷଣଶୀଳ ଆମେରିକୀୟ ସମାଜର ଚିତ୍ର ପ୍ରତିଫଳିତ । ବିଶେଷକରି ଆମେରିକୀୟ ସମାଜର ଅନ୍ଧକୁଳାଗ୍ରହ ଓ ରକ୍ଷଣଶୀଳ ଭାବକୁ ନାନା ପରୀକ୍ଷାନିରୀକ୍ଷା ମାଧ୍ୟମରେ ସ୍ୱଥର୍ଣ୍ଣ ତାଙ୍କ ଗଳ୍ପରେ ସ୍ଥାନ ଦେଇଛନ୍ତି । ଠିକ୍ ସେହିପରି ଫକୀରମୋହନ ୧୮୬୮ମସିହାରେ 'ବୋଧଦାୟିନୀ' ପତ୍ରିକାରେ 'ଲଛମନିଆ' ନାମକ ଏକ ଗଳ୍ପ ରଚନା କରିଥିଲେ । ସେହିଦିନଠାରୁ ତାଙ୍କ ଗାଳ୍ପିକ ଜୀବନର ସୂତ୍ରପାତ ହୋଇଥିଲା । କିନ୍ତୁ ଏହି ଗଳ୍ପଟି ଅପ୍ରାପ୍ତ ହେବାରୁ ଫକୀରମୋହନଙ୍କ ୧୮୯୮ ମସିହାରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ 'ରେବତୀ' ଗଳ୍ପକୁ ପ୍ରଥମ ଗଳ୍ପ ବୋଲି ଧରିନିଆଯାଏ । ତେଣୁ ସ୍ୱଥର୍ଣ୍ଣଙ୍କ ପରି ତରୁଣ ଅବସ୍ଥାରେ ଫକୀରମୋହନ ଗଳ୍ପ ନଲେଖିଲେ ବି ଜୀବନର ଅନ୍ତିମ ସମୟରେ ସେ ଯେଉଁ ଗଳ୍ପଗୁଡ଼ିକ ରଚନା କରିଯାଇ-ଅଛନ୍ତି, ସେଥିରେ ତତ୍‌କାଳୀୟ ଓଡ଼ିଶାର ଐତିହାସିକ ଅବକ୍ଷୟତା, ଇଂରେଜ ସଭ୍ୟତା ପ୍ରଭାବିତ ଓ ବିକଳ ଅନୁକରଣ କରି ତଜ୍ଜନିତ କୁପରିଣାମ ଭୋଗ କରୁଥିବା ସମାଜର ଅବସ୍ଥା ସାମାଜିକ ସଂସ୍କାର, ଅନ୍ଧବିଶ୍ୱାସ, ନାରୀ ଜାତି ପ୍ରତି ଥିବା ନାନା ବାଧାବନ୍ଧନ ଜନିତ ସାମାଜିକ ଅନ୍ଧକୁଳାଗ୍ରହର ନିଖୁଣ ଚିତ୍ର ପ୍ରତିପାଦିତ କରିଯାଇଛନ୍ତି । କେବଳ ସେତିକି ନୁହେଁ ଉଭୟ ଔପନ୍ୟାସିକଙ୍କ ଗଳ୍ପରେ ସେମାନଙ୍କ ସଂଘର୍ଷମୟ ଜୀବନର ଚିତ୍ର ଅତି ଉତ୍କଟ ଭାବରେ ପ୍ରତିଫଳିତ ହୋଇଛି ।

ସଂଖ୍ୟା ଦୃଷ୍ଟିରୁ ବିଚାର କଲେ ହଥର୍ଣ୍ଣ ପ୍ରାୟ ଅର୍ଦ୍ଧଶତ ଗଳ୍ପର ରଚୟିତା । ମାତ୍ର ଫକୀରମୋହନ ୨୦ଟି ଗଳ୍ପର ସ୍ରଷ୍ଟା । କିନ୍ତୁ ଗୁଣାତ୍ମକ ଦୃଷ୍ଟିରୁ ଏହି ଗଳ୍ପଗୁଡ଼ିକର ଭାବ, ଶୈଳୀ, ଅନ୍ତର୍ନିହିତ ପରସ୍ପରର ନିକଟବର୍ତ୍ତୀ ମନେହୁଅନ୍ତି । ହଥର୍ଣ୍ଣ ୧୮୫୦ ମସିହାବେଳକୁ ଗଳ୍ପ ରଚନାରେ ଏକ ପ୍ରକାର ପୂର୍ଣ୍ଣତା ଆଣି ଉପନ୍ୟାସ ରଚନାରେ ବ୍ରତୀ ହୋଇଥିଲା-ବେଳେ ଫକୀରମୋହନ ଏ କ୍ଷେତ୍ରରେ ଉପନ୍ୟାସ ଓ ଗଳ୍ପକୁ ସମଭାବରେ ରଚନାରେ ନିବିଷ୍ଟ ହୋଇଥିଲେ । କିନ୍ତୁ ଏକଥା ସତ୍ୟ ଯେ, 'ଲଛମନିଆ' ଗଳ୍ପ ରଚନାର ପରି-କଳ୍ପନା ଦୃଷ୍ଟିରୁ ବିଚାର କଲେ ହଥର୍ଣ୍ଣଙ୍କ ପରି ଫକୀରମୋହନ ହେବେ ପ୍ରଥମେ ଗାଳ୍ପିକ ଓ ପରେ ଔପନ୍ୟାସିକ ।

(୭) ଔପନ୍ୟାସିକ ହଥର୍ଣ୍ଣଙ୍କ ଉପନ୍ୟାସ ରଚନାର ପୃଷ୍ଠଭୂମି ତାଙ୍କ ଗଳ୍ପ ରଚନା ଉପରେହିଁ ପ୍ରତିଷ୍ଠିତ । ହଥର୍ଣ୍ଣ ଯେଉଁସବୁ ଗଳ୍ପ ରଚନା କରିଥିଲେ, ସେଗୁଡ଼ିକ ପ୍ରକୃତ-ପକ୍ଷେ ବିଚାର କଲେ ଦେଖାଯିବ ଯେ, ଏହିସବୁ ଗଳ୍ପ ହଥର୍ଣ୍ଣଙ୍କୁ ପରବର୍ତ୍ତୀ କାଳରେ ଔପନ୍ୟାସିକ ହେବାର ପ୍ରେରଣା ଯୋଗାଇଛି । ସେହି ସବୁ ଗଳ୍ପରେ ହଥର୍ଣ୍ଣ ଆମେରିକୀୟ ଜୀବନଧାରାର ଯେଉଁ ଅବକ୍ଷୟ ଚିତ୍ର, ସମାଜ ସଂସ୍କାରର ଯେଉଁ ଯୁଗପ୍ରଥା, ଅନ୍ଧକୁଳାଗ୍ରହ ବିରୁଦ୍ଧରେ ଯେଉଁ ବୈପ୍ଳବିକ ସ୍ୱର ଉଠାଇଥିଲେ ତାହା ଅବିକଳ ଭାବରେ ତାଙ୍କର ଉପନ୍ୟାସ ରଚନାରେ ହିଁ ପ୍ରତିଫଳିତ ହୋଇଛି ।

ଔପନ୍ୟାସିକ ହଥର୍ଣ୍ଣଙ୍କ ପରି ଏହି ଘଟଣା ସମଧର୍ମୀ ଭାବେ ଔପନ୍ୟାସିକ ଫକୀର-ମୋହନଙ୍କ ସାହିତ୍ୟିକ ଜୀବନରେ ମଧ୍ୟ ଲକ୍ଷ୍ୟ କରାଯାଏ । ଫକୀରମୋହନ ତାଙ୍କ ଗଳ୍ପରେ ଓଡ଼ିଶାର ଯେଉଁ ସମାଜ ଚିତ୍ର, ଆପଣା ଜୀବନର ନିଃସଙ୍ଗତା, ମଣିଷ ମନର ଅନ୍ଧବିଶ୍ୱାସ, ଇଂରେଜ ଶିକ୍ଷାର କୁ ଓ ସୁ ପରିଣାମ, ଶିକ୍ଷିତ ଯୁବକମାନଙ୍କର ବୃଦ୍ଧ ପିତାଙ୍କ ପ୍ରତି ଅବାଧ୍ୟ ହେବାର ଯେଉଁ କାରଣ ଆଦିର ଚିତ୍ର ପ୍ରଦାନ କରିଛନ୍ତି, ତାହା ଠିକ୍ ହଥର୍ଣ୍ଣଙ୍କ ପରି ମଧ୍ୟ ତାଙ୍କ ଉପନ୍ୟାସରେ ରୂପ ପାଇଛି । ଅତଏବ ଉଭୟ ଔପନ୍ୟାସିକଙ୍କ ଉପନ୍ୟାସ ରଚନାର ପୃଷ୍ଠଭୂମିରେ ତାଙ୍କ ଗଳ୍ପଗୁଡ଼ିକର ବିଷୟବସ୍ତୁ, ଶୈଳୀ ଓ ପ୍ରଭାବ ଅତି ଅନ୍ତରଙ୍ଗ ଭାବରେ ହିଁ ଅନୁଭୂତ ହୋଇଉଠିଛି ।

(୮) ହଥର୍ଣ୍ଣ ୧୮୫୦ ମସିହା ପର୍ଯ୍ୟନ୍ତ ଗଳ୍ପ ରଚନାରେ ବ୍ରତୀ ଥିଲେ । ଅବଶ୍ୟ ଏହାପରେ ତାଙ୍କର ଏକ ଗଳ୍ପସଙ୍କଳନ ପ୍ରକାଶିତ; କିନ୍ତୁ ଏହି ଗଳ୍ପଗୁଡ଼ିକର ରଚନାକାଳ ୧୮୫୦ ପୂର୍ବବର୍ତ୍ତୀ । ଅର୍ଥାତ୍ ୧୮୫୦ ମସିହାବେଳକୁ ହଥର୍ଣ୍ଣ ଜଣେ ଔପନ୍ୟାସିକ ହେବାର ଗୌରବ ଅର୍ଜନ କରିଥିଲେ । ଏହି ସମୟରେ ତାଙ୍କର ପ୍ରଥମ ଉପନ୍ୟାସ 'The Scarlet Letter' ପ୍ରକାଶିତ ହୋଇ ତାଙ୍କୁ ଏ ଗୌରବ ପ୍ରଦାନ କରିଥିଲା । ଏହି ଉପନ୍ୟାସ ରଚନା କାଳକୁ ହଥର୍ଣ୍ଣଙ୍କୁ ୪୬ ବର୍ଷ । କିନ୍ତୁ ଏହା ତାଙ୍କ ମୃତ୍ୟୁର ମାତ୍ର ୧୪

ନର୍ଭ ପୂର୍ବର ରଚନା । ଏହାପରେ ହଥର୍ଣ୍ଣ ୧୮୫୧ ମସିହାରେ ତାଙ୍କର ଦ୍ୱିତୀୟ ଉପନ୍ୟାସ 'The House of the Seven Gables' ୧୮୫୨ରେ ତାଙ୍କର ତୃତୀୟ ଉପନ୍ୟାସ 'The Blithedale Romance ଓ ଏହାର ଦୀର୍ଘ ଆଠବର୍ଷ ପରେ ୧୮୬୦ରେ ତାଙ୍କର ଚତୁର୍ଥ ଓ ଶେଷ ଉପନ୍ୟାସ 'The Marble Faun'କୁ ପ୍ରକାଶିତ କରିଥିଲେ । ହଥର୍ଣ୍ଣ ତାଙ୍କ ଜୀବଦ୍ଦଶାରେ ଏହି ଗୁଡ଼ିଏ ପୂର୍ଣ୍ଣାଙ୍ଗ ଉପନ୍ୟାସ ରଚନା କରିଯାଇଛନ୍ତି ।

ଠିକ୍ ହଥର୍ଣ୍ଣଙ୍କ ପରି ଫକୀରମୋହନ ମଧ୍ୟ ୪ଟି ପୂର୍ଣ୍ଣାଙ୍ଗ ଉପନ୍ୟାସର ସ୍ରଷ୍ଟା । ହଥର୍ଣ୍ଣ ଯେପରି ଜୀବନର ଅନ୍ତିମ କାଳରେ ୧୪ ବର୍ଷ ମଧ୍ୟରେ ଏଗୁଡ଼ିକ ରଚନାକରି ନିଜର ବୌଦ୍ଧିକତା ତଥା ପ୍ରଚଣ୍ଡ ସାମାଜିକ ଅନୁଭୂତିର ଛାପ ପ୍ରଦାନ କରିଯାଇଛନ୍ତି, ଠିକ୍ ସେହିପରି ଫକୀରମୋହନ ମଧ୍ୟ ଜୀବନର ଅନ୍ତିମ ଭାଗର ୧୮ ବର୍ଷ ମଧ୍ୟରେ ଏହି ୪ଟି ଉପନ୍ୟାସକୁ ରଚନା କରି ଆପଣାର ଗଭୀର ଅନୁଭୂତି ତଥା ଓଡ଼ିଶାର ସାମାଜିକ ଜୀବନର ଦୀର୍ଘ ଦୁଇ ଶତ ବର୍ଷର ଇତିହାସକୁ ଏଥିରେ ସ୍ଥାନ ଦେଇଛନ୍ତି । ଫକୀରମୋହନଙ୍କର ପ୍ରଥମ ଉପନ୍ୟାସ 'ଛ'ମାଣ ଆଠଗୁଣ୍ଠ' ୧୮୯୭ ମସିହାରେ, ଦ୍ୱିତୀୟ ଉପନ୍ୟାସ 'ଲଛମା' ୧୯୦୧ ମସିହାରେ, 'ମାମୁଁ' ତୃତୀୟ ଉପନ୍ୟାସ ଭାବେ ୧୯୧୩ ମସିହାରେ ଓ ଶେଷ ଉପନ୍ୟାସ ଭାବେ 'ପ୍ରାୟଶ୍ଚିତ' ୧୯୧୫ ମସିହାରେ ପ୍ରକାଶିତ ହୋଇଥିଲା । ହଥର୍ଣ୍ଣ ଯେପରି ତାଙ୍କର ଶେଷ ଉପନ୍ୟାସ 'Marble Faun'କୁ ତାଙ୍କର ତୃତୀୟ ଉପନ୍ୟାସ ରଚନାର ଦୀର୍ଘ ଆଠ ବର୍ଷ ପରେ ରଚନା କରିଥିଲେ, ଫକୀରମୋହନ ମଧ୍ୟ ସେହିପରି ନାନା ଜଞ୍ଜାଳ ଦୁଃଖ ଯନ୍ତ୍ରଣା ଓ ନିଃସଙ୍ଗତା ମଧ୍ୟଦେଇ ତାଙ୍କର ଅନ୍ତିମ ଦୁଇ ଉପନ୍ୟାସକୁ ପ୍ରଥମ ଦୁଇ ଉପନ୍ୟାସ ରଚିତ ହେବାର ୧୨ ବର୍ଷ ପରେ ରଚନା କରିଥିଲେ ।

ଏଣୁକରି ଦେଖିବା ଗଲେ ଉଭୟ ଔପନ୍ୟାସିକଙ୍କ ଜୀବନର ଅନ୍ତିମ କାଳରେ ହିଁ ସେମାନଙ୍କ ଉପନ୍ୟାସ ରଚନା ସମ୍ଭବ ହୋଇପାରିଛି । ଉଭୟ ପୁଣି ୪ଟି ପୂର୍ଣ୍ଣାଙ୍ଗ ଉପନ୍ୟାସର ସ୍ରଷ୍ଟା, ପୁଣି ଏହିସବୁ ଉପନ୍ୟାସର ପ୍ରକାଶଗତ ବ୍ୟବଧାନ ଦୃଷ୍ଟିରୁ ବିଚାର କଲେ ଦେଖାଯିବ ଯେ ଏହି ବ୍ୟବଧାନ ସୃଷ୍ଟି ସମୟରେ ଉଭୟ ଔପନ୍ୟାସିକ ନିଜର ବ୍ୟକ୍ତିଗତ ସମସ୍ୟା ମଧ୍ୟରେ ନିମଜ୍ଜିତ ଥିଲେ । ତେଣୁ ଉପନ୍ୟାସ ରଚନାରେ ସମଧର୍ମୀ ହିଁ ଯେ, ଏହି ଦୁଇ ଔପନ୍ୟାସିକଙ୍କ ସାହିତ୍ୟିକ ଜୀବନରେ ସାମ୍ୟ ସ୍ଥାପନ କରିଛି, ଏକଥା ଅସ୍ୱୀକାର କରିହେବ ନାହିଁ ।

(୧) ଫକୀରମୋହନଙ୍କର 'ଛ'ମାଣ ଆଠଗୁଣ୍ଠ', 'ମାମୁଁ' ଓ 'ପ୍ରାୟଶ୍ଚିତ' ଉପନ୍ୟାସ ତ୍ରୟରେ ନାନା ସାମାଜିକ ସମସ୍ୟା, ଶୋଷଣ ପେଷଣର ଛାପ ପ୍ରଦାନ କରାଯାଇଛି । ହଥର୍ଣ୍ଣ ମଧ୍ୟ ଠିକ୍ ଏହିପରି ଭାବେ ନିଜର ପ୍ରଥମ ତିନିଟି ଉପନ୍ୟାସ—"The Scarlet

Letter', The House of the Seven Gables', 'The Blithedale Romance'ରେ ସମାଜର ଚିତ୍ର ଅବତାରଣା କଲାପରେ ତାଙ୍କର ୪ର୍ଥ ଉପନ୍ୟାସ 'The Marble Faun'ରେ ଐତିହାସିକ ଚିତ୍ରର ଅବତାରଣା କରିଯାଇଛନ୍ତି । ଅନୁରୂପ ଭାବେ ଫକୀରମୋହନ ମଧ୍ୟ ତାଙ୍କର 'ଲଛମା' ଉପନ୍ୟାସରେ ଐତିହାସିକ ଘଟଣାର ବର୍ଣ୍ଣନା କରିଅଛନ୍ତି । ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଓ 'ମାମୁଁ'ରେ ଯେପରି ସାମାଜିକ ସମସ୍ୟା ସମଧର୍ମୀ ଭାବେ ଚିତ୍ରିତ, ଔପନ୍ୟାସିକ ହଥର୍ଣ୍ଣଙ୍କ ପ୍ରଥମ ଦୁଇ ଉପନ୍ୟାସରେ ମଧ୍ୟ ତାହାହିଁ ଘଟିଛି । ପୁଣି ହଥର୍ଣ୍ଣଙ୍କ 'The House of the Seven Gables'ରେ ଯେଉଁ ଭୂମିକୈନ୍ଦ୍ରିକ ଚକ୍ରାଧାର୍ଯ୍ୟ ଦେଖାଯାଇଛି ଓ ଲକ୍ଷ୍ମଣତ ବିଷମୟ ପରିଣତିର ସୂଚନା ଦିଆଯାଇଛି ତାହାର ଏକ ନିଚ୍ଛକ ପ୍ରତିଫଳନ ଘଟିଛି ଫକୀର-ମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ । ଏଣୁ ଏହି ଦୁଇ ଉପନ୍ୟାସର ତୁଳନାତ୍ମକ ବିଚାର ଅନେକାଂଶରେ ସେମାନଙ୍କ ସମଧର୍ମୀ ଭାବକୁ ପ୍ରତିପାଦିତ କରୁଥିବାରୁ ତାହା ଆଲୋଚନା ପାଇଁ ଅନ୍ୟ ଏକ ଅଧ୍ୟାୟର ଅପେକ୍ଷା ରଖେ ।

ଶୈଳୀ ଦୃଷ୍ଟିରୁ ବିଚାର କଲେ ହଥର୍ଣ୍ଣଙ୍କ ଉପନ୍ୟାସ ଶୈଳୀ ଓ ଫକୀରମୋହନଙ୍କ ଉପନ୍ୟାସ ଶୈଳୀ ମଧ୍ୟ ଅନେକାଂଶରେ ସମଧର୍ମୀ ଭାବ ପ୍ରଦର୍ଶନ କରିଏ । କେବଳ ଏତିକ ନୁହେଁ ଚରିତ୍ର ଚିତ୍ରଣରେ ମଧ୍ୟ ଉଭୟ ଔପନ୍ୟାସିକଙ୍କ ସମଧର୍ମିତା ପରିଲକ୍ଷିତ ହୁଏ ।

(୧୦) ହଥର୍ଣ୍ଣ ତାଙ୍କ ଜୀବଦ୍ଦଶାରେ ୪ଟି ଉପନ୍ୟାସର ପୂର୍ଣ୍ଣାଙ୍ଗ ରୂପରେଖ ଟାଣି ପାରିଥିଲେ । କିନ୍ତୁ ଅନେକ ରଚନାକୁ ଅସମ୍ପୂର୍ଣ୍ଣ ରଖିଯାଇଥିଲେ ବୋଲି ପୂର୍ବବର୍ତ୍ତୀ ଆଲୋଚନାରେ କୁହାଯାଇଛି । ଠିକ୍ ସେହିପରି ଫକୀରମୋହନ ୪ଟି ଉପନ୍ୟାସକୁ ପୂର୍ଣ୍ଣାଙ୍ଗ କରିଥିଲାବେଳେ ତାଙ୍କର 'ବିଷମଞ୍ଜି' ନାମକ ଏକ ଉପନ୍ୟାସକୁ ଅପୂର୍ଣ୍ଣ ରଖି-ଯାଇଛନ୍ତି । ହଥର୍ଣ୍ଣଙ୍କ ଅନ୍ୟାନ୍ୟ ଅପୂର୍ଣ୍ଣ ଉପନ୍ୟାସର ପାଣ୍ଡୁଲିପି ପରି ଏହା ମଧ୍ୟ ଆଜି ବିଲୁପ୍ତ । ଏହିପରି ବହୁ ଦୃଷ୍ଟିରୁ ଦେଖିବାକୁ ଗଲେ ଉଭୟ ଔପନ୍ୟାସିକଙ୍କ ସାହିତ୍ୟିକ ଜୀବନରେ ଅଦ୍ଭୁତ ସାମ୍ୟ ପରିଲକ୍ଷିତ ହୁଏ ।

ହଥର୍ଣ୍ଣ କେବଳ ଗଳ୍ପ, ଉପନ୍ୟାସ ଓ କେତେକ ଅପ୍ରକାଶିତ ପ୍ରବନ୍ଧର ରଚୟିତା । କିନ୍ତୁ ଫକୀରମୋହନ ଏକାଧାରରେ ପାଠ୍ୟପୁସ୍ତକ ଲେଖକ, ଅନୁବାଦକ, କବି, ଗାଳ୍ପିକ, ଔପନ୍ୟାସିକ ଓ ଜୀବନ ଚରିତର ସ୍ରଷ୍ଟା । ମାତ୍ର ତାଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦିତ ଗଳ୍ପ ଓ ଉପନ୍ୟାସରେ । ସେଥିପାଇଁ ସେ ଏହି ଗଳ୍ପ ଓ ଉପନ୍ୟାସ ଦୃଷ୍ଟିରୁ ହଥର୍ଣ୍ଣଙ୍କ ସହ ତୁଳନୀୟ । ଏହା ସତ୍ତ୍ୱେ ସେମାନଙ୍କ ସାହିତ୍ୟିକ ଜୀବନରେ ଅନେକ ବୈଷାଦୃଶ୍ୟ ମଧ୍ୟ ପରିଲକ୍ଷିତ ହୁଏ । କିନ୍ତୁ ଏହିରୁ ସେମାନଙ୍କ କାଳର ପ୍ରଭାବ, ତତ୍କାଳୀନ ସମାଜର

ଅନୁରୋଧ ଓ ବ୍ୟକ୍ତିଗତ ଜୀବନର ନାନା କାରଣ ହେତୁ ଅବହେଳିତ ହୋଇପଡ଼ିଛି । ତେଣୁ କେଶାଦ୍ୱୟଙ୍କ ସେମାନଙ୍କ ଜୀବନର ସାମ୍ୟ ଜନିତ ସ୍ୱଚ୍ଛାବାସ ଭିତରେ କାହିଁ ମ୍ଳାନ ହୋଇଯାଇଛି କହିଲେ ଚଳେ ।

ପୁଣି ଉଭୟ ଔପନ୍ୟାସିକ ଜୀବନର ନାନା ବିଡ଼ମ୍ବିତ ମୁହୂର୍ତ୍ତି ଦେଇ ଗତି କରିଥିବାରୁ ଓ ତଜ୍ଜନିତ ଚିନ୍ତା ଚେତନାକୁ ସେମାନଙ୍କ ଉପନ୍ୟାସମାନଙ୍କରେ ଚିତ୍ରିତ କରିଥିବାରୁ ସେମାନଙ୍କ ଔପନ୍ୟାସିକ ଚିନ୍ତାଚେତନାରେ ମଧ୍ୟ ନାନା ସାମ୍ୟ ପରିଲକ୍ଷିତ ହୁଏ । ଏହାର ବିଚାର ଅନ୍ୟ ଏକ ଅଧ୍ୟାୟର ଅପେକ୍ଷା ରଖୁଥିବାରୁ ତାହା ପରବର୍ତ୍ତୀ ଅଧ୍ୟାୟରେ ଆମର ବିଚାର୍ଯ୍ୟ ।

□□□

# ଔପନ୍ୟାସିକ ହଥର୍ଣ୍ଣ ଓ ଫକୀର-ମୋହନଙ୍କ ଉପନ୍ୟାସ ସୃଷ୍ଟିରେ ଚିନ୍ତା ଓ ଚେତନାର ସାମଂଜସ୍ୟ ଓ ପାର୍ଥକ୍ୟ

(କ) ହଥର୍ଣ୍ଣ :

ହଥର୍ଣ୍ଣଙ୍କ ସମୟକୁ ଆମେରିକା ଆଉ ଇଂରେଜ ଶାସନାଧୀନ ନୁହେଁ କିମ୍ବା ଏହାର ଅର୍ଥନୈତିକ ସମସ୍ୟା ଆଜିଭଳି ଯେତେ ଉତ୍କଟତର ନୁହେଁ । କିନ୍ତୁ ହଥର୍ଣ୍ଣଙ୍କ ଜନ୍ମସମୟ (୧୮୦୪)କୁ ଆମେରିକା ମାତ୍ର ୩୦ ବର୍ଷର ସ୍ୱାଧୀନ ରାଷ୍ଟ୍ର । ଏହାର ଅନେକ ସମସ୍ୟା ତଥାପି ଅସମାଧିତ । ନାନା ପ୍ରକାର କନ୍ଦଳ ତଥା କ୍ରୀତଦାସ ପ୍ରଥାର ସଙ୍ଘର୍ଷ ଶାସନରେ ଆମେରିକାର ଜଳବାୟୁ ତଥାପି ଉତ୍ତପ୍ତ । ଏହିଭଳି ଏକ ସନ୍ଧିକ୍ଷଣ ମୁହୂର୍ତ୍ତରେ ହଥର୍ଣ୍ଣ ଆମେରିକାରେ ଜନ୍ମଗ୍ରହଣ କରିଥିଲେ । ସ୍ୱଦେଶର ସନ୍ଧିକ୍ଷଣ ମୁହୂର୍ତ୍ତ ଏବଂ ନିଜର ସାମାଜିକ ଅବକ୍ଷୟିତା ଭିତରେ ହଥର୍ଣ୍ଣଙ୍କର କ୍ରମବିକାଶ ଘଟିଥିଲା । ତେଣୁ ତାଙ୍କର ତତ୍କାଳୀନ ମାନସିକ ଅବସ୍ଥା ନାନା ଚିନ୍ତା, ଚେତନାରେ ବିପର୍ଯ୍ୟସ୍ତ ହୋଇପଡ଼ିଥିଲା ।

ବାଲ୍ୟକାଳରୁ ପିତାଙ୍କୁ ହରାଇବାର ଦାରୁଣ ଯନ୍ତ୍ରଣା, କୈଶୋରରେ ଫୁଟ୍‌ବଲ୍ ଖେଳରେ ଗୋଡ଼ ଭାଙ୍ଗିବାର ମର୍ମନ୍ତୁଦ ଦୁଃଖ ଓ ନିଃସଙ୍ଗତା, ଉତ୍କଟ ଆର୍ଥିକ ସମସ୍ୟାର ସମ୍ମୁଖୀନ ହେବା, ପୁଣି କୌଣସି କ୍ଷେତ୍ରରେ ସହାନୁଭୂତି ନପାଇବା ଆଦି ଘଟଣା ହଥର୍ଣ୍ଣଙ୍କୁ ଏକ ଭିନ୍ନ ମଣିଷ କରିଦେଇଥିଲା । ତେଣୁ ତାଙ୍କର ମାନସିକ ଚେତନ ଓ ଅଚେତନ ସ୍ତରରେ ଏହିସବୁ ଘଟଣାର ପ୍ରତିକ୍ରିୟା ନାନାଭାବେ ପ୍ରକାଶ ପାଇଥିଲା । ହଥର୍ଣ୍ଣ ଜଣେ ସାଧାରଣ ମଣିଷ ହୋଇଥିଲେ ଏସବୁ ପ୍ରତିକ୍ରିୟାର ମୂଲ୍ୟ ଅଳ୍ପ ସୁଦୂର ପ୍ରସାରିତ ହୋଇଥା'ନ୍ତା, କିନ୍ତୁ ସେ ଥିଲେ ଅସାଧାରଣ ବ୍ୟକ୍ତିତ୍ୱର ଅଧିକାରୀ । ପ୍ରଚଣ୍ଡ ସାହିତ୍ୟ ପ୍ରତିଭାର ଏକ ଭଣ୍ଡାର । ତେଣୁ ତାଙ୍କ ଚିନ୍ତା ଚେତନାରେ ପ୍ରକାଶ ପାଉଥିବା ନାନା ପ୍ରତିକ୍ରିୟା ଉଦ୍-ଭାସିତ ହେଉଥିଲା ତାଙ୍କ ସାହିତ୍ୟରେ ।

ଆଗରୁ କୁହାଯାଇଛି ଔପନ୍ୟାସିକ ହଥର୍ଣ୍ଣ ପ୍ରଥମେ ଥିଲେ ଗାଳ୍ପିକ ଓ ପରେ ଔପନ୍ୟାସିକ । ତାଙ୍କ ମନଗହନର ନାନା ପ୍ରତିକ୍ରିୟା ପ୍ରଥମେ ତାଙ୍କ ଗଳ୍ପମାନଙ୍କରେ

ପ୍ରକାଶ ଲାଭ କରିଥିଲା । ପରେ ତାହା ପ୍ରକାଶିତ ହେଲା ତାଙ୍କ ଉପନ୍ୟାସରେ । ତାଙ୍କର ଏ ପ୍ରତକ୍ରିୟା ଅନ୍ୟ କୌଣସି ଘଟଣାର ପୃଷ୍ଠଭୂମି ଉପରେ ଦଣ୍ଡାୟମାନ ନୁହେଁ, ଏହା ତାଙ୍କର ପ୍ରଚଣ୍ଡ ଅନୁଭୂତ, ନଗ୍ନତା ଦୁଃଖ ତଥା ଆମେରିକୀୟ ସମାଜର ଅନ୍ଧକୂଳାଗ୍ଭରର ପୃଷ୍ଠଭୂମି ଉପରେ ଆଧାରିତ । ଏହି ପରିପ୍ରେକ୍ଷୀରେ ହଥର୍ଣ୍ଣଙ୍କ ଉପନ୍ୟାସରେ କପରି ତାଙ୍କ ଚନ୍ତା-ଚେତନା ପରିପ୍ରକାଶ ଲଭିଛି ତାହା ଆଲୋଚନା କରାଯାଇପାରେ ।

ଔପନ୍ୟାସିକ ହଥର୍ଣ୍ଣଙ୍କର ପ୍ରଥମ ଉପନ୍ୟାସ 'The scarlet Letter'ର ପ୍ରକାଶନ ଘଟେ ୧୮୫୦ ମସିହାରେ । ଏଥିରେ ଔପନ୍ୟାସିକ ହଥର୍ଣ୍ଣ ବୋଷ୍ଟନ ସହରର ଏକ ଚତ୍ର ପ୍ରଦାନ କରିଛନ୍ତି । ସମଗ୍ର ଉପନ୍ୟାସଟିର ମୂଳପିଣ୍ଡ ବୋଷ୍ଟ ସହର ଉପରେ ପର୍ଯ୍ୟବସିତ । ସପ୍ତଦଶ ଶତାବ୍ଦୀର ଆମେରିକୀୟ ରକ୍ଷଣଶୀଳ ସମାଜର ନିଷ୍ଠୁର ନର୍ଯ୍ୟାତନାକୁ ରୂପ ଦେବାକୁ ଯାଇଁ ହଥର୍ଣ୍ଣ ଏଥିରେ ବୋଷ୍ଟନ ସହରର ତତ୍କାଳୀନ ଦୁର୍ନୀତଗ୍ରସ୍ତ ଶାସକ, ବଣ୍ଣିକ ଓ ବୁଦ୍ଧିଜୀବୀଙ୍କୁ ଛନ୍ଦ ଦେଇଛନ୍ତି । ଏହି ଉପନ୍ୟାସର ଗ୍ଭରିଟି ମୁଖ୍ୟ ଚରିତ୍ରକୁ ନେଇ କାହାଣୀରେ ସଂଘର୍ଷ, ଦ୍ୱନ୍ଦ୍ୱ ଓ ନାଟକୀୟତା ସୃଷ୍ଟି କରିଛନ୍ତି ଔପନ୍ୟାସିକ ହଥର୍ଣ୍ଣ । ମୁଖ୍ୟ ନାୟିକା Hester Prynneର ସ୍ୱାମୀ Chiling worth ଜଣେ ଡାକ୍ତର । ତାଙ୍କର ଦୀର୍ଘଦନ ଅନୁପସ୍ଥିତର ସୁଯୋଗ ନେଇ Bostonର ଜଣେ ଯୁବନେତା ତଥା ଡାକ୍ତରଙ୍କର ବନ୍ଧୁ Dimmesdaleଙ୍କ ଦ୍ୱାରା Hester ଅବୈଧଭାବେ Pearl ନାମକ ଏକ ଶିଶୁକୁ ଜନ୍ମ ଦେଇଛି ।

ଅବୈଧଭାବେ Pearlକୁ ଜନ୍ମ ଦେଇଥିବା ହେତୁ ଏବଂ ଏହି ଶିଶୁର ଜନକର ପରିଚୟ ଗୋପନ ରଖିଥିବା ଦୃଷ୍ଟିରୁ କାହାଣୀର ଆରମ୍ଭରେ ନାଟକୀୟ ଭାବେ Hester ତାର ତନମାସର ଶିଶୁ Pearlକୁ ଧରି ଜେଲ୍ ସାମ୍ନାରେ ଥିବା ଗୋଟିଏ ସ୍ତମ୍ଭ (Pelar) ପାଖରେ ଠିଆହୋଇଛି । ଏହା ହେଉଛି ତାର ଦଣ୍ଡ । ଏହି ଦଣ୍ଡାଦେଶକୁ ସେ ପିନ୍ଧିଥିବା ପୋଷାକରେ ଏକ ବାଇଗଣୀ ରଙ୍ଗର କାଗଜରେ ଲେଖା ହୋଇ ମାରିଦିଆଯାଇଥିଲା । ଏହି କାଗଜ ଖଣ୍ଡିକ ହେଉଛି 'The scarlet letter.''

କଛିଦନ ପରେ Dr. Chilling worth ଫେରିଆସିଛନ୍ତି ଓ ନଜ ସ୍ତ୍ରୀର ଏତାଦୃଶ କାର୍ଯ୍ୟକଳାପ ପାଇଁ ଦାୟୀ ଥିବା ଯୁବନେତା—Demmesdaleକୁ ଉପ-ଯୁକ୍ତ ଶାସ୍ତି ଦେବା ପାଇଁ ଗ୍ଭହିଁଛନ୍ତି ଏବଂ ଏହି ଯୁବକ ମନ୍ତ୍ରୀ (ନେତା ପରେ ମନ୍ତ୍ରୀ)ଙ୍କର ଦେହ ଖରାପ ଥିବାବେଳେ ସେ ତାଙ୍କର ବ୍ୟକ୍ତିଗତ ଡାକ୍ତର ଭାବେ ନଯୁକ୍ତ ହୋଇ ତାଙ୍କ ଉଦ୍ଦେଶ୍ୟ ସାଧନ କରିଛନ୍ତି । ପରିଶେଷରେ ହେଷ୍ଟାର୍ ଓ ପିଅଲ୍. ଏକ ନୂଆ ଜାଁଧରି ଅନ୍ୟ ସ୍ଥାନକୁ ଗ୍ଭଲିଯାଇଛନ୍ତି । କନ୍ତୁ Hester ତାର ପ୍ରେମିକ Demmes-daleକୁ ଭୁଲିପାରି ନାହିଁ । କନ୍ତୁ Pearlକୁ ଜନ୍ମଦେବାର ୭ ବର୍ଷ ବିତିଯାଇଥିଲେ ବି ସେ ତାଙ୍କ ସହିତ ଆଉ ସଂପର୍କ ରଖିପାରିନାହିଁ । (୧)

(୧) 'This points to the theme of the novel : that it is

ଏହି ଉପନ୍ୟାସରୁ ହଥର୍ଣ୍ଣଙ୍କ ପାପ ପ୍ରତି ଥିବା ଚେତନାବୋଧ ଓ ଐଶୀଶକ୍ତି ପ୍ରତି ଥିବା ଅନ୍ତରଙ୍ଗ ବିଶ୍ୱାସ କଥା ସ୍ପଷ୍ଟ ଜଣାପଡ଼େ । ଅର୍ଥାତ୍ ହଥର୍ଣ୍ଣ ଥିଲେ ଈଶ୍ୱରବିଶ୍ୱାସୀ ଓ ସତ୍ୟବାଦୀ । ସତ୍ୟ-ଭଗବାନ ଉପରେ ସେ ବିଶ୍ୱାସ ରଖି, ପାପୀ ଯେ ଦିନେନା ଦିନେ ଦଣ୍ଡିତ ହେବ ଏକଥାକୁ ସେ ତାଙ୍କ ପାଠକମାନଙ୍କ ଆଗରେ ସ୍ପଷ୍ଟ କରିଦେଇଥିଲେ । ତାଙ୍କ ଦୃଷ୍ଟିରେ ପାପ ବା ପାପୀ କେହି ଲୁଚି ରହିପାରିବେ ନାହିଁ । ଏମାନଙ୍କ ପାପ ଭଗବାନଙ୍କ ଚକ୍ଷୁ ଏଡ଼ାଇଯାଇ ନପାରେ । ଏହି ସବୁ ଦୃଷ୍ଟିରୁ କୁହାଯାଇପାରେ ହଥର୍ଣ୍ଣ ଏକ ଅବକ୍ଷୟୀ ସମାଜ, ବିପର୍ଯ୍ୟସ୍ତ ପରିବାର ତଥା ରକ୍ଷଣଶୀଳ ସଂସ୍କୃତିରେ ଜନ୍ମ ହୋଇ ସତ୍ୟ, ଭଗବାନ, ପାପ-ପୁଣ୍ୟ ତଥା ଜନ୍ମ ମୃତ୍ୟୁରେ ଗଭୀର ବିଶ୍ୱାସୀ ହୋଇପଡ଼ିଥିଲେ ।

କେବଳ 'The Scarlet Letter' ଉପନ୍ୟାସରେ ନୁହେଁ ତାଙ୍କର ଦ୍ୱିତୀୟ ଉପନ୍ୟାସ 'House of the Seven Gables'ରେ ମଧ୍ୟ ସେ ଏହି ଚିନ୍ତାକୁ ଅତି

---

vainto Concel Guilt in order to avoid punishment, for sin can not be hidden from God and it is God's justice alone that the sinner should fear" ××× The central view point supplied by the historical setting and situation, is the doctrine of puritanism which regards man as a creation of God. But born in depravity as a result of original sin of Adamdeserving of dammation and ulterly dependent upon God's mercy for sulvation. Dimmesdel and Boston community generally stand for his point of view. A second point of view, that of romantic, naturalism, assumes that human beings have "A right to happiness." and that such a love as that of Arthur and Hester. So sinful from the puritan point of view is sacred. This is Hester Savoid belief and many Romantic Modern Readers who sympathise with her, she her as a Romantic heroine, that central figure of the book, disregarding the central role which demmesdale actually plays" (Abel—American literature, vol-2

ଉତ୍କଟ ଭାବରେ ଉଦ୍‌ଭାସିତ କରାଇଅଛନ୍ତି । ଏହି ଉପନ୍ୟାସରେ ସେ ଆପଣା ପରିବାରର ଅବକ୍ଷୟର ଚିତ୍ରକୁ ପିନ୍‌ଚନ୍ ପରିବାରର ଛାୟାରେ ଅନୁରଣିତ କରିଅଛନ୍ତି । ଏହି ଉପନ୍ୟାସରେ ଅଭିବ୍ୟକ୍ତ ଦୃଷ୍ଟିରୁ ମନୁଷ୍ୟ କେତେକ ପ୍ରବୃତ୍ତିର ଦାସ । ଏହି ପ୍ରବୃତ୍ତିର ପ୍ରବାହରେ ମନୁଷ୍ୟ ଭାସି ଯାଇଁ ପରେ ଯେଉଁ ଅଲଙ୍ଘନୀୟ କର୍ମଫଳ ଭୋଗ କରେ, ତାହା ବାସ୍ତବିକ କରୁଣଧର୍ମୀ । ଏହି ଉପନ୍ୟାସରେ ବର୍ଣ୍ଣିତ ପିନ୍‌ଚନ୍ ପରିବାରର ପ୍ରାୟ ପିନ୍‌ଚନ୍ ଏହି ପ୍ରବୃତ୍ତିର ପ୍ରବାହରେ ଭାସିଯାଇଁ କପରି କର୍ମଫଳକୁ ଅତି ଯନ୍ତ୍ରଣାଜର୍ଜରିତ ଭାବେ ଅଙ୍ଗେ ଲଭିଛନ୍ତି ତାହାକୁ ହଥର୍ଣ୍ଣ ଏଥିରେ ପ୍ରାଞ୍ଜଳ ଭାବରେ ଦର୍ଶାଇଅଛନ୍ତି । ପିନ୍‌ଚନ୍ ପରିବାରର କର୍ଣ୍ଣେଲ୍ ପିନ୍‌ଚନ୍, ମାଥିଉ ମାଉଲେଙ୍କ ଜମି ଖଣ୍ଡିକୁ ନେବା-ପାଇଁ ଷଡ଼ଯନ୍ତ୍ର କରି ତାଙ୍କୁ ଫାଶୀ ଦେବାକୁ ଯାଇଁ ଯେଉଁ ସୁଚିନ୍ତିତ ଯୋଜନା କରିଥିଲେ ଓ ମାଉଲେଙ୍କ ବିଶ୍ୱାସ ତଥା ଆତ୍ମାର ଅଭିଶାପଜନିତ ପରିଣତିରେ ସେ ଅଭିଶପ୍ତ ହୋଇ-ଯାଇ ପରବର୍ତ୍ତୀ ବଂଶଧରମାନଙ୍କୁ ସେଥିରେ ଯେପରି ଜଡ଼ିତ କରିଗଲେ, ତାହା ବାସ୍ତବିକ କର୍ଣ୍ଣେଲ୍ ପରିବାରର କଳଙ୍କ ଭାବେ ଦେଖାଯିବା ସଙ୍ଗେ ସଙ୍ଗେ ତାଙ୍କ ବଂଶର ଅବକ୍ଷୟତାକୁ ଡାକିଆଣିଛି । ଏହାର ଫଳ ତାଙ୍କୁ ଓ ତାଙ୍କର ପରବର୍ତ୍ତୀ ବଂଶଧରମାନଙ୍କୁ ମଧ୍ୟ ଭୋଗ କରିବାକୁ ପଡ଼ିଛି ।

ମାଉଲେଙ୍କ ପରବର୍ତ୍ତୀ ଉତ୍ତରାଧିକାରୀମାନେ ପିନ୍‌ଚନ୍ ପରିବାରଠାରୁ ଜମି ଫେରାଇ ନେବାପାଇଁ ନିଜ ମାନବିକତାର ବଳିଦାନ, ପିନ୍‌ଚନ୍ ପରିବାରର ଏହି ଜମିକୁ ନେଇ କ୍ରମଶଃ ବିଳୟ ହେବାର ଚିତ୍ର, ବୃଦ୍ଧ ଜାଫେରୀଙ୍କ ରହସ୍ୟଜନକ ମୃତ୍ୟୁ ଚିତ୍ର, ହେପ୍-ଜିବାଙ୍କର ଜଣେ ସମ୍ଭ୍ରାନ୍ତ ମହିଳା ହେବା ଅପେକ୍ଷା ଜଣେ ସାଧାରଣ ମହିଳା ହେବାକୁ ବିବେକର ବାଧା ସତ୍ତ୍ୱେ ବାଧ୍ୟବାଧକ-ସାଧନା, ପୁଣି କ୍ଲିଫର୍ଡ଼ଙ୍କ ନିରୀହ ତଥା ସରଳତାର ସୁଯୋଗ ନେଇ ତାଙ୍କୁ ଶୋଷଣ କରି ଜର୍ଜ ପିନ୍‌ଚନ୍ ଯେପରି ଅସମୟରେ, ଅସହାୟ ଭାବେ ମୃତ୍ୟୁବରଣ କରିଛନ୍ତି—ତାହା ବାସ୍ତବିକ କର୍ମଫଳ ଭୋଗର ଅନ୍ୟନାମ କହିଲେ ଅତ୍ୟୁକ୍ତି ହେବ ନାହିଁ । ହଥର୍ଣ୍ଣଙ୍କର କର୍ମଫଳରେ ଥିବା ଗଭୀର ବିଶ୍ୱାସ ଏହି ଉପନ୍ୟାସର ମୁଖ୍ୟ ଚେତନା ଭାବେ ପ୍ରବାହିତ ହୋଇଛି ।

ବିଳୟମୁଖୀ ପିନ୍‌ଚନ୍ ପରିବାରର ବୁନିଆଦି, କପରି କେଉଁ ଦୃଷ୍ଟିରୁ ଭୂଷୁଡ଼ି ପଡ଼ିଲା, ସେହି ଦୃଷ୍ଟିକୋଣକୁ ବ୍ୟକ୍ତ କରିବା ଉପନ୍ୟାସଟିର ଅନ୍ୟତମ ଚିନ୍ତା ଓ ଚେତନା । ଏହି ବୁନିଆଦ ବିଳୟ କାଳରେ ଯେଉଁ ପୁରାତନ ବୁନିଆଦର ନୂତନ ଦାୟାଦ-ମାନେ ନିଜର ସାମାଜିକ ସ୍ଥିତି ପାଇଁ ମୋହାନ୍ଧ ହୋଇପଡ଼ୁଥିଲେ, ସେମାନେ ଅନ୍ୟର ହାନି ଲାଭ ପ୍ରତି ଉଲେହେଲେ ଦୃଷ୍ଟି ନଦେଇ ସଙ୍କୀର୍ଣ୍ଣତା, ଲୋଭ, ହିଂସା, ଅସୂୟା, ପରସ୍ୱତ୍ୱ ଅପହରଣର ହୀନପ୍ରବୃତ୍ତିକୁ ସେମାନଙ୍କ ଅଗ୍ରଗତିର ଚରମ ତଥା ପରମ ପଥ ବୋଲି ଧରିନେଇଥିଲେ । 'The House of the Seven Gables'

ଉପନ୍ୟାସଟିରେ ଜର୍ଜ ପିନ୍‌ଚନ୍ ନିଜର କକାପୁଅ ଭାଇ କ୍ଲିଫର୍ଡ଼ ଓ ଭଉଣୀ ହେପ୍‌ଜିବାଙ୍କୁ ଏକ ପ୍ରହସନମୂଳକ ଜାଲଅଣ୍ଡରେ ସୁବିଧା ସୁଯୋଗର ଅଳି ଦେଖାଇ ନିଜର ବ୍ୟକ୍ତିଗତ ସୁବିଧା ହାସଲ କରିବାକୁ ଚାହିଁଛନ୍ତି । ଯେଉଁଠି ଏ ସ୍ୱାର୍ଥ ହୋଇଛି ବାଧାପ୍ରାପ୍ତ, ସେଠି ଜର୍ଜ କ୍ଲିଫର୍ଡ଼ଙ୍କୁ 'ପାଗଳ କରିଦେବାର ଧମକ୍ ଦେଇଛନ୍ତି । ପ୍ରତିପତ୍ତି, କ୍ଷମତାଶାଳୀ ଜର୍ଜ ଜୀବନର ଶେଷ ପର୍ଯ୍ୟାୟରେ ଯେପରି ଶୋଷଣର ଗମ୍ଭୀର ଦରଦୀ ତଥା ଚରମ ଅନୁରାଗୀ ଭାବେ ଦେଖାଦେଇଛନ୍ତି, ତାହା ସେଂଆ ନିନ୍ଦନୀୟ ଓ ତୀବ୍ର ଜାଲଅଣ୍ଡର ଏକ ନପୁଂସକ ମୋହ ବ୍ୟତୀତ ଅନ୍ୟ କିଛି ନୁହେଁ । କ୍ଲିଫର୍ଡ଼ ଓ ହେପ୍‌ଜିବାଙ୍କ ମର୍ମଭେଦୀ ହାହାକାର ଓ ଅଶ୍ରୁପାତରେ ଜର୍ଜଙ୍କ ଜୀବନ ଯେ, ଅଭିଶାପ ଓ ଅକାଳ ବିୟୋଗକୁ ଡାକିଆଣିଛି ଏକଥା ଅସ୍ୱୀକାର କରାଯାଇ ପାରିବ ନାହିଁ । ଏପରି ପାପୀ କୁଚକ୍ରୀ, ଶୋଷଣ-କାରୀ ବ୍ୟକ୍ତିର ଯେ, ଅକାଳ ପତନ ନିଶ୍ଚିତ ହଥର୍ଣ୍ଣ ଏକଥା ଆଲୋଚ୍ୟ ଉପନ୍ୟାସରେ ଦର୍ଶାଇଛନ୍ତି ।

ଅନୁକୂଳାଗ୍ନିର, ସଂସ୍କାରଗତ ଅଭିପ୍ସା ଏହି ଉପନ୍ୟାସଟିରେ ହଥର୍ଣ୍ଣଙ୍କ ଚେତ୍ୟା-ଚେତନା ଦେଇ ବେଶ୍ ଯଥାର୍ଥ ଭାବେ ପରିପ୍ରକାଶ ଲଭିଛି । ପୁଣି ଆମେରିକୀୟ ସମାଜରେ ରକ୍ଷଣଶୀଳ ଗୋଷ୍ଠୀଭାବେ ପିନ୍‌ଚନ୍ ପରିବାର ନିଜର ଅହଂ, ଦ୍ୱେଷ, ଲୋଭ ଓ କ୍ଷମତାରେ ବେଶ୍ ଉନ୍ମତ୍ତ ଥିଲେ । ଯେଥିପାଇଁ ସେମାନଙ୍କ ସ୍ତ୍ରୀଲୋକମାନେ କିଛି କାମ କରିବାକୁ ଆପଣାର ପଦମର୍ଯ୍ୟାଦା ହାନି ବୋଲି ମନେକରୁଥିଲେ । ଆଲୋଚ୍ୟ ଉପନ୍ୟାସରେ ହେପ୍‌ଜିବା ଏହିପରି ଏକ ନାରୀଚରିତ୍ରର ମୂର୍ତ୍ତିମନ୍ତ ବିଗ୍ରହ । ଘୋର ଦୁଃଖ, ଅନୁଶୋଚନା ସହ ଅର୍ଥିକ ଦୁରାବସ୍ଥାକୁ ଏଡ଼ାଇ ଜୀବନ ଭରଣପୋଷଣ କରିବାକୁ ଚାହୁଁଥିଲେ, ହେପ୍‌ଜିବା ନିଜର ଏହି ପଦମର୍ଯ୍ୟାଦା, ବଂଶଗତ ମର୍ଯ୍ୟାଦା, କ୍ଷୁଣ୍ଣ ପାଇଁ ବେଶ୍ କିଛିଟା ବିଚଳିତ ହୋଇପଡ଼ିଛନ୍ତି । ଏହିପରି ଏକ ରକ୍ଷଣଶୀଳ ପରିବାରରେ ଜନ୍ମ ହୋଇ ହେପ୍‌ଜିବା ସର୍ବଓ ପରିସ୍ଥିତିର ତାଡ଼ନାରେ ପଡ଼ି ରକ୍ଷଣଶୀଳତାର ବନ୍ଧନ ପର୍ଦାକୁ ଏଡ଼ାଇ ବାହାରକୁ ଆସିବାର ପ୍ରୟାସ କରିଛନ୍ତି ଓ ବାଧ୍ୟ ହୋଇଛନ୍ତି, ତେବେ ଏ ବାଧ୍ୟ-ବାଧକତା ପରିସ୍ଥିତିର ଚାପ ଅପେକ୍ଷା ହଥର୍ଣ୍ଣଙ୍କ ସଂସ୍କାରଧର୍ମୀ ଲେଖନୀର ଚାପରେ ଅଧିକ ପ୍ରତିଫଳିତ । ସମାଜ ସଂସ୍କାରର ପ୍ରଚ୍ଛନ୍ନ ଅଭିପ୍ସା ନେଇ ହଥର୍ଣ୍ଣ 'The House of the Seven Gables' ଉପନ୍ୟାସଟିକୁ ଯଥାର୍ଥ ରୂପ ଦେଇଛନ୍ତି ।

ମାଉଲେଙ୍କ ଶ୍ରେଷ୍ଠ ଜମି ଖଣ୍ଡିକୁ ଚକ୍ରାନ୍ତ କରିନେଇ ଏବଂ ତାଙ୍କୁ ଫାଶୀଖୁଣ୍ଟରେ ଝୁଲାଇ କର୍ଣ୍ଣେଲ୍ ଯେଉଁ ନିରୀହ ପରିବାରକୁ ଧ୍ୱଂସପ୍ରାନ୍ତ କରିଦେଇଥିଲେ, ତାହାର ନିଃଶ୍ୱାସରେ ସେହି ଜମି ଉପରେ ତିଆରି ହୋଇଥିବା ଘରଟି ପୁରୁଷ ପୁରୁଷ ଧରି 'ସାତ ପୁରୁଷ' ପର୍ଯ୍ୟନ୍ତ ତହିଁରେ ବାସ କରୁଥିବା କର୍ଣ୍ଣେଲଙ୍କ ବଂଶଧରମାନଙ୍କୁ ଯନ୍ତ୍ରଣା, ହତାଶା, ସର୍ବୋପରି ମୃତ୍ୟୁ ମୁଖକୁ ଠେଲିଦେଇଛି । ଆମ ଓଡ଼ିଆ ଉପନ୍ୟାସ 'ଛ'ମାଣ ଆଠଗୁଣ୍ଠ'ର କଥାବସ୍ତୁ, ଶୈଳୀ ଓ ଚରିତ୍ର ଦୃଷ୍ଟିରୁ ଏହି ଉପନ୍ୟାସ ତୁଳନୀୟ ।

ହଥର୍ଣ୍ଣଙ୍କର ଅନ୍ୟ ଯେଉଁ ଦୁଇଟି ଉପନ୍ୟାସ ଅଛି, ସେଥିରେ ତାଙ୍କର ସାମାଜିକ ଦୃଷ୍ଟିଭଙ୍ଗୀ, ଆଦର୍ଶବୋଧ ଓ ତୀବ୍ର ମାନବିକ ସମ୍ବେଦନଶୀଳତା ସହ ସଂସ୍କାରଧର୍ମୀ ଚେତନା ରୂପାୟିତ ହୋଇଛି ।

ପରିସର ଓ ପରିବେଶ ନେଇ ହଥର୍ଣ୍ଣ ଥିଲେ ଜଣେ ଭିନ୍ନ ମଣିଷ ଏବଂ ଏହି ଭିନ୍ନ ମଣିଷର ଏକ ଭିନ୍ନ ଚିନ୍ତାଧାରା ତାଙ୍କ ଉପନ୍ୟାସର ପ୍ରତ୍ୟେକ ପୃଷ୍ଠାରେ ଲକ୍ଷ୍ୟଣୀୟ ହୋଇପଡ଼ିଛି । ଜଣେ ଚରମ ପ୍ରଗତିବାଦୀ ସଂସ୍କାରକ ଭାବେ ସେ ତାଙ୍କ ଉପନ୍ୟାସ ଜଗତରେ ସହଜରେ ଧରି ହୋଇଯାଆନ୍ତି । ତାଙ୍କ ଉପନ୍ୟାସ ସୃଷ୍ଟି ପାଇଁ ତାଙ୍କ ଆଗରେ ଥିଲା ଗୋଟିଏ କୁସଂସ୍କାର ଭ୍ରଷ୍ଟ ଜରାଜୀର୍ଣ୍ଣ, ପତନଶୀଳ ସମାଜ । ଯୁଗ ଯୁଗ ଧରି ପରାଧୀନତା, କୂପମଣ୍ଡୁକତା, ଅନ୍ଧବିଶ୍ୱାସ, ଅଜ୍ଞତା, ଅବସାଦ ଓ ଜଡ଼ତାର ପାଷାଣ ପାଚେରୀ ତଳେ ଶୃଙ୍ଖି-ହୋଇ ଏ ସମାଜରେ ଯାହା କିଛି କଲ୍ୟାଣମୟୀ ଏବଂ ସୃଷ୍ଟିଧର୍ମୀ, ତାହା ବିସ୍ମୃତିର ଅତଳ ଗହ୍ୱରରେ ବିଲୟ ହୋଇଥିଲା । ସମାଜର ରଥଚକ୍ର ତଳେ ଶୋଷିତ ନିଷ୍ପେଷିତ ମଣିଷ, ଜୀବନର ମୋହ ଛାଡ଼ି ନପାରି ଧୀରେ ଧୀରେ ତାକୁ ଛାଡ଼ୁଥିଲା । ଏହିପରି ଏକ ଅଧୋଗତ ସମାଜ ଓ ମାନବିକତାର ପରାଜୟର ସଂକ୍ଷିପ୍ତ ଇତିହାସ ହଥର୍ଣ୍ଣଙ୍କ ପ୍ରତ୍ୟେକ ଉପନ୍ୟାସରେ ଉଦ୍‌ଭାସିତ ହୋଇଉଠିଥିଲା ।

ଆମେରିକାର ଊନବିଂଶ ଶତାବ୍ଦୀର ଜ୍ୱାଳାମୟ ଜୀବନଧାରାର ଏକ ସନ୍ଧିକ୍ଷଣରେ, ଅନିଶ୍ଚିତ ସାମାଜିକ ପୃଷ୍ଠଭୂମି ଉପରେ ହଥର୍ଣ୍ଣଙ୍କର ବିକାଶ ଘଟିଥିଲା । ସାଂପ୍ରତିକ ଶାନ୍ତ ଚେତନା ଯେତେବେଳେ କୌଣସିଥିରେ ନିଜର ଆଧିପତ୍ୟ ବିସ୍ତାର କରିବା ପୂର୍ବରୁ ସମସ୍ତର ନିଷ୍ଠୁର ଜାବରେ ଯେପରି ଭାଙ୍ଗିରୁଜି ଛାରଖାର ହୋଇଯାଉଥିଲା । ତେଣୁ ସାଂପ୍ରତିକ ଜୀବନର ସହଜ ମୂଲ୍ୟବୋଧ ଅପେକ୍ଷା ଅତୀତର ପରୀକ୍ଷିତ ଓ ପ୍ରତିଷ୍ଠିତ ପରମ୍ପରାକୁ ନେଇ ହଥର୍ଣ୍ଣଙ୍କ ଉପନ୍ୟାସ ଜଗତ ଗଢ଼ିଉଠିବା ଆଦୌ ଅସ୍ୱାଭାବିକ ଘଟଣା ନୁହେଁ । ସେଥିପାଇଁ ହଥର୍ଣ୍ଣ ତାଙ୍କ ଉପନ୍ୟାସର କଥାବସ୍ତୁ ନିର୍ବାଚନରେ ବିଗତ ଅତୀତ ସହ ଚଳନ୍ତି ବର୍ତ୍ତମାନର ଏକ ନିବିଡ଼ ଯୋଗାଯୋଗ ରକ୍ଷା କରିପାରିଛନ୍ତି ।

ଠିକ୍ ହଥର୍ଣ୍ଣଙ୍କ ପରି ଆମ ଉପନ୍ୟାସ ଜଗତର ଜନକ ଔପନ୍ୟାସିକ ଫକୀରମୋହନ ତାଙ୍କ ଉପନ୍ୟାସ ସୃଷ୍ଟିରେ ସମସାମୟିକ କାଳର ମୂଲ୍ୟବୋଧ, ସମାଜର ବାସ୍ତବ ଚିତ୍ର, ସଂସ୍କାର ପ୍ରୟାସ, ବ୍ୟକ୍ତିଗତ ସମସ୍ୟାବଳୀର ନିଖୁଣଚିତ୍ର ପ୍ରଦାନ କରିଯାଇଛନ୍ତି । ତେଣୁ ହଥର୍ଣ୍ଣଙ୍କ ସହ ଏ କ୍ଷେତ୍ରରେ ମଧ୍ୟ ତାଙ୍କର ସାମ୍ୟ ପରିଲକ୍ଷିତ ହୁଏ । ତାଙ୍କ ଉପନ୍ୟାସ ସୃଷ୍ଟିର ଚିନ୍ତା-ଚେତନାରେ ଏହା ଅନୁଶୀଳନ କରାଯାଇପାରେ । ନିମ୍ନରେ ତାହା ଆମର ଆଲୋଚ୍ୟ ।

## (ଖ) ଫକୀରମୋହନ :

ଊନବିଂଶ ଶତାବ୍ଦୀର ଶେଷଭାଗରେ ଯେଉଁବେଳେ ଓଡ଼ିଆଭାଷା ଓ ସାହିତ୍ୟ କ୍ଷେତ୍ରରେ ଦେଖାଦେଇଥିଲା ଘୋର ସଙ୍କଟ, ସେତିକବେଳେ ବ୍ୟାସକବି ଫକୀରମୋହନ ସେନାପତିଙ୍କ ଆବିର୍ଭାବ ବାସ୍ତବିକ ଏ ଜାତିର ଅନ୍ତରରେ ସୃଷ୍ଟି କରିଥିଲା ଏକ ନୂତନ ଆଶା ଓ ଚେତନା । 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହଁ', ୧୮୬୮ ମସିହାର ପଡ଼ୋଶୀ ବଙ୍ଗ ଭାଷୀଙ୍କର ଏହି ଆହ୍ୱାନ କେବଳ ଯୁବକ ଫକୀରମୋହନଙ୍କୁ ଜାତୀୟ ଭାବରେ ଉଦ୍ଦୀପିତ କରିନଥିଲା—ତାର ସଙ୍ଗେ ସଙ୍ଗେ ସମଗ୍ର ଓଡ଼ିଆଜାତିକୁ ଐକ୍ୟ ଓ ସଂହତି ସୂତ୍ରରେ ଆବଦ୍ଧ କରିଥିଲା । ଏହି ଆହ୍ୱାନ ବାସ୍ତବିକ ଓଡ଼ିଆ ସାହିତ୍ୟରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କଲା । ଓଡ଼ିଆ ସାହିତ୍ୟ ହେଲା ପ୍ରାଣବନ୍ତ । ଓଡ଼ିଆ ଉପନ୍ୟାସ ହେଲା ଚିର ଚଞ୍ଚଳ ଓ ସମାଜର ଜୀବନ୍ତ ଇତିହାସକୁ ଫକୀରମୋହନ ଏଥିରେ ପ୍ରକାଶ କରିବାକୁ ସୁଯୋଗ ପାଇଲେ ।

ଓଡ଼ିଆ ଉପନ୍ୟାସର ଆଦିକାଳର ଅନ୍ତିମ ପର୍ଯ୍ୟାୟରେ ଯୁଗଜନ୍ମା ବ୍ୟାସକବି ଫକୀରମୋହନଙ୍କ ଆବିର୍ଭାବ ଓଡ଼ିଆ ଉପନ୍ୟାସରେ ଏକ ନୂତନ ଦିଗ୍‌ଦର୍ଶନ ପ୍ରଦାନ କଲା । ତେଣୁ ଫକୀରମୋହନ ହିଁ ଯଥାର୍ଥରେ ଓଡ଼ିଆ ଉପନ୍ୟାସର ଓ କ୍ଷୁଦ୍ରଗଳ୍ପର ପ୍ରାଣ ପ୍ରତିଷ୍ଠାତା । କାବ୍ୟକବିତା ଓ ଅନୁବାଦାଦି ରଚନା ପରେ ବାସ୍ତବରେ ସେନାପତି ପ୍ରତିଭାର ମୌଳିକ ବିକାଶ ଘଟିଲା; ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପ ରଚନାରେ । ସମଗ୍ର ବିଶ୍ୱ ସହିତ ତାଳ ରଖି ଫକୀରମୋହନଙ୍କ ପ୍ରଚଣ୍ଡ ପ୍ରତିଭାର ଯେଉଁ ଉନ୍ମେଷ ଘଟିଲା, ଉପନ୍ୟାସ ଓ ଗଳ୍ପ ରଚନାରେ ତାହା ଓଡ଼ିଆ ସାହିତ୍ୟର ଦାରିଦ୍ର୍ୟ ଦୂର କରିବା ସଙ୍ଗେ ସଙ୍ଗେ ନୂତନଯୁଗର ସଙ୍କେତ ଦେଲା ।

ଫକୀରମୋହନ ଉଗ୍ର ଜାତୀୟତାବାଦୀ କବି, ଗାଳ୍ପିକ ଓ ଔପନ୍ୟାସିକ । ଓଡ଼ିଆ ଜାତିର ଭାଷା ଓ ସାହିତ୍ୟର ଅଧଃପତନରେ ତାଙ୍କର ପ୍ରାଣତନ୍ତ୍ରୀ ହାହାକାର କରିଉଠିଛି । ଓଡ଼ିଆ ଜାତିକୁ ସଙ୍ଗଠନ କରିବା ପାଇଁ ସେ ଉତ୍କଳ ସମ୍ମିଳନୀରେ ଜ୍ୱାଳାମୟୀ ଭାଷଣ ପ୍ରଦାନ କରିଛନ୍ତି । ସେନାପତି ପ୍ରତିଭା ଦାରିଦ୍ର୍ୟର କଷାଘାତରେ, ଦୈବୀ ଦୁର୍ବିପାକର କରୁଣ ପରିବେଶରେ, ଗୃହକରି ଜୀବନର ନାନା ଜଞ୍ଜାଳ ମଧ୍ୟରେ କମ୍ପ୍ରା କ୍ଷଃସଙ୍ଗ ଜୀବନର ହା, ହୁତାଶ ଭିତରେ ଲୁଚିରହି ପାରିନଥିଲା, ବରଂ ମୁକ୍ତବିହଙ୍ଗ ପରି ତାହା ଗଗନ ପବନ ମୁଖରିତ କରି ଘୂରିବୁଲିଥିଲା ଓଡ଼ିଆସାହିତ୍ୟାକାଶରେ ।

ସେନାପତି ସାହିତ୍ୟର ପୃଷ୍ଠଭୂମି ହେଉଛି ଦୀର୍ଘ ଦୁଇଶତବର୍ଷର ଓଡ଼ିଶାର ସାମାଜିକ, ରାଜନୀତିକ ଓ ଅର୍ଥନୈତିକ ଜୀବନର ଇତିବୃତ୍ତ । ବିଶେଷକରି ତାଙ୍କ ଉପନ୍ୟାସ ସୃଷ୍ଟିର ଚିନ୍ତା-ଚେତନା କ୍ଷେତ୍ରରେ ଏହାର ସତ୍ୟତା ଅଧିକ ଅନୁଭୂତ । ୧୭୭୧ ମସିହାଠାରୁ

୧୮୦୦ ମସିହା ପର୍ଯ୍ୟନ୍ତ ମରହଟ୍ଟାମାନଙ୍କର ଅତ୍ୟାଗ୍ଚର ଓ ତଜ୍ଜନିତ ଦେଶର ଲୋକ-ମାନଙ୍କର କରୁଣ ଚିତ୍କାର, ୧୮୦୩ରୁ ୧୮୪୦ ପର୍ଯ୍ୟନ୍ତ ସମୟ ମଧ୍ୟରେ ଇଂରେଜମାନଙ୍କର ଓଡ଼ିଶା ଅଧିକାର, ଶାସନ ବିସ୍ତାରିତ ଓ ଶିକ୍ଷା ପ୍ରସାର ପାଇଁ ଚେଷ୍ଟା, ନୂତନ ସୃଷ୍ଟ ଜମିଦାର ଓ ପାରଂପରିକ ଜମିଦାରମାନଙ୍କ ମଧ୍ୟରେ ଆଦର୍ଶଗତ ବ୍ୟବସାୟିକ ସଂଘର୍ଷ, ନୂତନ ସୃଷ୍ଟ ଜମିଦାରମାନଙ୍କର ଜମିପ୍ରତି ଲୋଭ, ବଙ୍ଗାଳୀ ଜମିଦାରଙ୍କ ଦ୍ୱାରା ଓଡ଼ିଆ-ଗଣଜୀବନର ହାହାକାର, ୧୮୪୧ଠାରୁ ୧୮୮୧ ପର୍ଯ୍ୟନ୍ତ ସମୟ ମଧ୍ୟରେ ଇଂରେଜ ଶିକ୍ଷା ପାଇଁ ଆଗ୍ରହ ଓ ସରକାରୀ ଚାକିରି ପାଇଁ ଲାଳସା, ଅର୍ଥପିଶାଚ ହେବାକୁ ନୂତନ କୁଟନୀତି ପ୍ରୟୋଗ ଇଂରେଜୀ ଶିକ୍ଷା ଓ ସଭ୍ୟତା ଦ୍ୱାରା ଦେଶରେ ମଦ୍ୟପାନ ଓ ବେଶ୍ୟାବୃତ୍ତିର ପ୍ରସାର,—୧୮୮୧ଠାରୁ ୧୯୧୦ ମସିହା ମଧ୍ୟରେ ଓଡ଼ିଶାରେ କଲେଜ ପ୍ରତିଷ୍ଠା, ଶିକ୍ଷିତ ଯୁବକ ମାନଙ୍କ ମଧ୍ୟରେ ସଂସ୍କାର ପ୍ରୟାସ, ଅଭିଜାତ୍ୟ ବୃଦ୍ଧି ପାଇଁ ଜମିଦାରୀ ମନୋବୃତ୍ତି ପ୍ରବୃତ୍ତି ବିଭିନ୍ନ ଘଟଣା ଫକୀରମୋହନଙ୍କ ସାହିତ୍ୟିକ ମାନସକୁ ସଂକ୍ରାନ୍ତ କରିଦେଇଥିଲା । ଏହାର ପ୍ରତିକ୍ରିୟା ସ୍ୱରୂପ ସେ ଯେଉଁ ୪ଟି ଉପନ୍ୟାସ ରଚନା କଲେ, ସେଥିରେ ଉପରୋକ୍ତ ବିଭିନ୍ନ ଘଟଣାକୁ ନାନା ଚିନ୍ତା ଓ ଚେତନା ମାଧ୍ୟମରେ ସେ ବିଚାର ତଥା ବର୍ଣ୍ଣିତ କରି-ଯାଇଛନ୍ତି ।

କେବଳ ସେତିକି ନୁହେଁ, ନିଜ ଜୀବନକାଳ ମଧ୍ୟରେ ଫକୀରମୋହନ ଯେଉଁ ଜୀବନଧର୍ମୀ ପ୍ରଚଣ୍ଡ ଅନୁଭୂତି ଓ ଜ୍ଞାନ ଆଦି ଅର୍ଜନ କରିଥିଲେ, ତାକୁ ମଧ୍ୟ କୌଶଳକ୍ରମେ ତାଙ୍କ ଉପନ୍ୟାସମାନଙ୍କରେ ସେ ପ୍ରୟୋଗ କରିଯାଇଛନ୍ତି । ଫକୀରମୋହନ ଲୋକଚରିତ୍ର ରୂପାୟନରେ ଏକ ବାସ୍ତବ କଳାକାର । ତାଙ୍କର ନିବିଡ଼ ଅନୁଭୂତି, ତାଙ୍କ ଜୀବନର ବିଭିନ୍ନ ଦୁଃଖମୟ କାହାଣୀ ତାଙ୍କ ଉପନ୍ୟାସର ବିଭିନ୍ନ ଚରିତ୍ର ମାଧ୍ୟମରେ ସନ୍ନିବେଶିତ ହୋଇଛି । ଫକୀରମୋହନ କର୍ମମୟ ଜୀବନରେ ଯେପରି କୁଟନୀତି ସମ୍ପନ୍ନ ବ୍ୟକ୍ତି ଥିଲେ, ସେହିପରି କୌଶଳୀ ମଧ୍ୟ ଥିଲେ । ସେ ତାଙ୍କର ଉପନ୍ୟାସ ମଧ୍ୟରେ କେତେକ କ୍ଷେତ୍ରରେ ନିଜକୁ ରୂପାୟନ କରିଥିବା ପରି ମନେହୁଏ ।

ଫକୀରମୋହନ ତାଙ୍କ ଚିନ୍ତା ଚେତନାରେ ମଣିଷର ଯେଉଁ ସ୍ୱରୂପ ଉଦ୍‌ଘାଟନ କରିଛନ୍ତି, ତାକୁ ତାଙ୍କର ପ୍ରାୟ ଉପନ୍ୟାସରେ ରୂପ ଦେଇଛନ୍ତି । ତାଙ୍କ ମତରେ ଏହି ମଣିଷ ମଧ୍ୟରେ ଅଛନ୍ତି ଦେବତା, ପୁଣି ଏହି ମଣିଷ ମଧ୍ୟରେ ଅଛନ୍ତି ରାକ୍ଷସ । ମଣିଷ ବାହାରେ ସାଧୁସନ୍ଥ ବିନୟର ଅଭିନୟ ଦେଖାଇ ଭିତରେ ହଳାହଳମୟ ପରିସ୍ଥିତି ସୃଷ୍ଟି କରେ । ଉପରେ ଅମୃତର ବାରି ସିଞ୍ଚନ କରି ଭିତରେ ବିଷପାନ କରାଏ । ମଣିଷ ତାର ସାମାନ୍ୟ ସ୍ୱାର୍ଥ ସାଧନ ପାଇଁ ଭୟଙ୍କର ବି ହୋଇପାରେ । ଫକୀରମୋହନ ତାଙ୍କର ସୂକ୍ଷ୍ମ ଅନୁଭୂତି ଫଳରେ ଏହି ଚିନ୍ତା ଚେତନାକୁ ତାଙ୍କର ପ୍ରଖ୍ୟାତ ଉପନ୍ୟାସ' ଛ'ମାଣ ଆଠଗୁଣ୍ଠ 'ମାମୁ', ଓ 'ପ୍ରାୟଶ୍ଚିତ' ଆଦି ଉପନ୍ୟାସରେ ବର୍ଣ୍ଣିତ କରିଯାଇଅଛନ୍ତି । ପୁଣି

ଫକୀରମୋହନଙ୍କ ତୀକ୍ଷ୍ଣ ଦୃଷ୍ଟି ସୁଦୂରପ୍ରସାରୀ । ସହରଠାରୁ ପଲ୍ଲୀ ପର୍ଯ୍ୟନ୍ତ, ରାଜପ୍ରାସାଦ ଠାରୁ ଦରିଦ୍ରର ପର୍ଣ୍ଣକୁଟୀର ପର୍ଯ୍ୟନ୍ତ ତାଙ୍କର ବିସ୍ତୃତ କର୍ମକ୍ଷେତ୍ର ଥିଲା । ତେଣୁ ଗାଁ ଗାଧୁଆ ତୁଠଠାରୁ ଆରମ୍ଭକରି ଅନ୍ତଃପୁର ପର୍ଯ୍ୟନ୍ତ ନାରୀମହଲର ବିଭିନ୍ନ ରହସ୍ୟ ଉଦ୍‌ଘାଟନ କରିବାରେ ସେ ସିଦ୍ଧହସ୍ତ ହୋଇଛନ୍ତି । ଏହାକୁ ସେ ତାଙ୍କର ବିଭିନ୍ନ ଉପନ୍ୟାସରେ ଅତି ମନୋଜ୍ଞ ଭାବରେ ବର୍ଣ୍ଣନା କରିଅଛନ୍ତି ।

ଫକୀରମୋହନଙ୍କ ଚରିତ୍ର ଚିତ୍ରଣ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ବିଶେଷକରି ସଇତାନୀ ଚରିତ୍ର ଚିତ୍ରଣ କରିବାରେ ଫକୀରମୋହନ ଅସାଧାରଣ ପ୍ରତିଭା ଦେଖାଇଛନ୍ତି । ଫକୀର-ମୋହନଙ୍କ ସୃଷ୍ଟ ଚରିତ୍ରମାନଙ୍କ ମଧ୍ୟରେ ଦଳେ ନିର୍ମମ, ସ୍ୱାର୍ଥଲିପ୍ସୁ ଟାଉଟର, ଦମନକାରୀ ବ୍ୟକ୍ତି । ଆଉ ଦଳେ ସହନଶୀଳ ପ୍ରତିବାଦ ପରାଙ୍ମୁଖ । ଫକୀରମୋହନଙ୍କ ସାଧାରଣ ଜନତା ଅତ୍ୟାଚାର ବିରୁଦ୍ଧରେ ବିପ୍ଳବ କରି ପାରିନାହିଁ । ସମାଜରେ ମୁଣ୍ଡ ଟେକି ଠିଆ ହୋଇ ପାରିନାହିଁ । ନିର୍ମମ ଅତ୍ୟାଚାରରେ ସେ ଛିନ୍ନଭିନ୍ନ ହୋଇଯାଇଛି । କିନ୍ତୁ ପରକ୍ଷଣରେ ଶୋଷଣକାରୀ ଶୋଷିତର ସତ୍ତାକୁ ସ୍ୱୀକାର କରିଛି । ତାକୁ ଦଣ୍ଡ ଦେଇଥିବା ହେତୁ, ତା' ବିରୁଦ୍ଧରେ ଷଡ଼ଯନ୍ତ୍ର କରିଥିବା ହେତୁ ଶୋଷଣକାରୀ ତାର କର୍ମଫଳ ଭୋଗ-କରିଛି । ଭଗିଆର 'ଛ'ମାଣ ଆଠଗୁଣ୍ଠ' ନେବାବେଳେ ପ୍ରତିପତ୍ତିଶାଳୀ ଜମିଦାର ରାମଚନ୍ଦ୍ର ମଙ୍ଗରାଜ ବିରୁଦ୍ଧରେ ସ୍ୱର ଅତି ଅସ୍ପଷ୍ଟ । କିନ୍ତୁ ଏହି ଶୋଷଣର ପରିଣତି ରାମଚନ୍ଦ୍ର ମଙ୍ଗରାଜ ପାଇଁ ଅତି ଭୟଙ୍କର ହୋଇଉଠିଛି । ତାର ପରିବାର ବିପର୍ଯ୍ୟସ୍ତ ହୋଇଯାଇଛି । ସେ ଅନୁ-ଶୋଚନାର ଦାବାନଳରେ ଦଗ୍ଧ ହୋଇ ମୃତ୍ୟୁବରଣ କରିଛି । ଠିକ୍ ଏହିପରି ଏକ ଚରିତ୍ର 'ମାମୁଁ' ଉପନ୍ୟାସର ନାଜର ନଟବର ଦାସ । ଭଣଜାର ସର୍ବସ୍ୱ ଅପହରଣ କରିବାର ଚକ୍ରାନ୍ତକରି ଶେଷରେ ସେ ଯେଉଁ ଦୈବୀ ଚକ୍ରାନ୍ତର ଶୀକାର ହୋଇଛି ତାହା ତାର ପୂର୍ବକୃତ କର୍ମଫଳକୁ ହିଁ ମନେପକାଇ ଦେଇଛି । ତେଣୁ ଜେଲ୍‌ଖାନାର ପ୍ରସ୍ତର କକ୍ଷରେ ପାଗଳପରି ପ୍ରଳାପ କରିବା ସଙ୍ଗେ ସଙ୍ଗେ ତାର ଗଭୀର ଅନୁଶୋଚନା ଦେଖାଦେଇଛି । ଏହିପରି ଫକୀରମୋହନ ତାଙ୍କର ଉପନ୍ୟାସରେ କର୍ମଫଳର ରୂପରେଖ ଓ ଦୈବୀ ଶକ୍ତି ଉପରେ ଥିବା ଆପଣାର ଅତୁଟ, ଅଗାଧ ବିଶ୍ୱାସକୁ କୌଶଳକ୍ରମେ ପ୍ରୟୋଗ କରି ସ୍ୱ ଚିନ୍ତା ଚେତନାର ଅପୂର୍ବ ସାଫଲ୍ୟ ଦର୍ଶାଇ ପାରିଛନ୍ତି ।

ଫକୀରମୋହନଙ୍କ ଉପନ୍ୟାସରେ ବିଶେଷକରି ତତ୍‌କାଳୀନ ସମାଜଚିତ୍ର, କୁସଂସ୍କାର, କର୍ମଫଳ, ପାପପୁଣ୍ୟ, ଭାଗ୍ୟ ଭଗବାନ୍ ଆଦିର ବର୍ଣ୍ଣନା ଦେଖିବାକୁ ମିଳେ । ଏହା ସାଂଗକୁ ତାଙ୍କର ଔପନ୍ୟାସିକ ଚେତନାକୁ ଭୂମି କୈନ୍ଦ୍ରିକ ଚିନ୍ତାଧାରା ମଧ୍ୟ କମ୍ ପ୍ରଭାବିତ କରି-ନାହିଁ । ଏହି ଭୂମି ଅପହରଣ ବା ପରସ୍ୱତ୍ୱ ଅପହରଣର କୁ ପରିଣାମ ଯେ ମଣିଷକୁ ଭୋଗକରିବାକୁ ପଡ଼େ, ତାହା ସେ ତାଙ୍କର 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ରାମଚନ୍ଦ୍ର

ମଂଗରାଜ ଓ 'ମାମୁ' ଉପନ୍ୟାସର 'ନାଜର ନଟବର ଦାସ' ଚରିତ୍ର ମାଧ୍ୟମରେ ଦର୍ଶାଇଛନ୍ତି ।

ଫକୀରମୋହନ ଥିଲେ ପରମ ଭାଗ୍ୟବାଦୀ । ସତ୍ୟ, ଧର୍ମ ଓ ନ୍ୟାୟ ତାଙ୍କ ଜୀବନର ବ୍ରତ ଥିଲା; କିନ୍ତୁ ବହୁ କ୍ଷେତ୍ରରେ ତାଙ୍କୁ ନାନା କୁଟନୀତି ଖେଳିବାକୁ ହୋଇଥିଲା । ସେଥି-ପାଇଁ ତାଙ୍କ ମନରେ ଦାରୁଣ ଆଘାତ ହୋଇଥିଲା । ମଣିଷ ଅନ୍ୟାୟ କଲେ, ପାପକଲେ, ଅଦୃଶ୍ୟ ଶକ୍ତିଦ୍ୱାରା ଦଣ୍ଡପାଏ । ଫକୀରମୋହନଙ୍କ ଉପନ୍ୟାସରେ ଠିକ୍ ଏହି ଆଦର୍ଶ ରୂପାୟିତ ହୋଇଛି । ପୁଣି କର୍ମଫଳକୁ ମଣିଷ ଏହି ପାର୍ଥିବ ଜଗତରେ କିପରି ଭୋଗ-କରେ ତାହା ସେ ତାଙ୍କର ବିଭିନ୍ନ ଉପନ୍ୟାସର ମଂଗରାଜ, ନଟବର, ଚମ୍ପା ଚନ୍ଦ୍ରକଳା ଆଦି ଦୁଷ୍ଟ ଚରିତ୍ରମାନଙ୍କ ମାଧ୍ୟମରେ ଉପସ୍ଥାପିତ କରିଅଛନ୍ତି ।

ଅନ୍ଧକୁଳାଚାର ଓ ପ୍ରଚଣ୍ଡ ସଂସ୍କାର ପ୍ରଭାବ ମଧ୍ୟ ଫକୀରମୋହନଙ୍କ ଔପନ୍ୟାସିକ ଚିନ୍ତାଚେତନାର ଅନ୍ୟତମଦିଗ । ବୁଢ଼ୀ ମଂଗଳାର ପୂଜା, ସନ୍ତାନ ପାଇଁ ବୁଢ଼ୀ ମଂଗଳା ଦେଉଳତୋଳା ଆଦି ଘଟଣା ବର୍ଣ୍ଣନାରେ ଫକୀରମୋହନ ତତ୍କାଳୀନ ସମାଜର ଅନ୍ଧ-କୁଳାଚାର ଉପରେ ଦୃଷ୍ଟିପାତ କରିଛନ୍ତି । ଏହିପରି ଭାବେ ଫକୀରମୋହନଙ୍କ ଔପନ୍ୟାସିକ ଚିନ୍ତା ନାନାଭାବେ ତାଙ୍କର ଚାରୋଟି ଉପନ୍ୟାସରେ ପ୍ରତିଫଳିତ ହୋଇଛି । ଏହିସବୁ ଦୃଷ୍ଟିରୁ ଦେଖିବାକୁ ଗଲେ ଔପନ୍ୟାସିକ ହଥର୍ଣ୍ଣଙ୍କ ଉପନ୍ୟାସର ଚିନ୍ତା ଚେତନା ସହିତ ଫକୀରମୋହନଙ୍କ ଉପନ୍ୟାସର ଚିନ୍ତା-ଚେତନାର ଅପୂର୍ବ ସାମ୍ୟ ରହିଛି । ପରବର୍ତ୍ତୀ ପର୍ଯ୍ୟାୟରେ ତାହା ଆମର ଆଲୋଚନା ।

**ଚିନ୍ତାଚେତନାର ସାମଞ୍ଜସ୍ୟ :**

(୧) ହଥର୍ଣ୍ଣଙ୍କ ସାମାଜିକ ଜୀବନର ଅବକ୍ଷୟତା ତଥା ତଜ୍ଜନିତ ଅନୁଭୂତି ତାଙ୍କୁ ଉପନ୍ୟାସ ରଚନାରେ ଯେଉଁ ପ୍ରେରଣା ଦେଇଥିଲା ତଜ୍ଜନିତ ଚିନ୍ତା ଚେତନାର ପ୍ରତିଫଳନ ତାଙ୍କ ଉପନ୍ୟାସରେ ସେହି ଅନୁପାତରେ ଘଟିଥିଲା କହିଲେ ଅତ୍ୟୁକ୍ତି ହେବ-ନାହିଁ । ହଥର୍ଣ୍ଣଙ୍କ ପରିବାର ଥିଲା ଏକ ସମ୍ଭ୍ରାନ୍ତ ପରିବାର । କିନ୍ତୁ ତାଙ୍କ ପରିବାର ମଧ୍ୟରୁ ଅତୀତକାଳରେ ଜଣେ ବ୍ୟକ୍ତି 'ଜର୍ଜହେବାର ଗୌରବ ଅର୍ଜନ କରିଥିଲେ । ଆଗରୁ କୁହାଯାଇଛି ହଥର୍ଣ୍ଣ ଥିଲେ ଭାଗ୍ୟବାଦୀ' କର୍ମଫଳରେ ବିଶ୍ୱାସୀ । ଏହି ଜର୍ଜ ଜଣକ ହୁଏତ ତାଙ୍କ ଜୀବନରେ ଅସଂଖ୍ୟ ଲୋକଙ୍କୁ ପ୍ରାଣଦଣ୍ଡ ଦେଇଥିବେ ସେମାନଙ୍କ ବିଶ୍ୱାସ ବଳରେ ଏହି ଜର୍ଜଙ୍କ ପରବର୍ତ୍ତୀ ବଂଶଧର ବୋଧେ ଅଭିଶପ୍ତ ହୋଇଥିଲେ ବୋଲି ହଥର୍ଣ୍ଣ ଅନୁଭବ କରୁଥିଲେ । ସେ ଥିଲେ ଏହି ଜର୍ଜଙ୍କର ଜଣେ ବଂଶଧର ଯାହାଙ୍କର ସାମାଜିକ ଅବକ୍ଷୟତା କ୍ରମଶଃ ଲାଗିରହିଥିଲା । ଏହି ଚିନ୍ତାଚେତନାକୁ ସେ ତାଙ୍କର 'The House of the Seven Gables' ଉପନ୍ୟାସରେ ବର୍ଣ୍ଣିତ ପିନ୍‌ଚନ୍ ପରିବାରର

ଅଭିଶାପ୍ରଗ୍ରସ୍ତ ବଳସ୍ୱ ଭିତରେ ରୂପାୟିତ କରିଛନ୍ତି । ଠିକ୍ ସେହିଭଳି ଔପନ୍ୟାସିକ ଫକୀରମୋହନ 'ମଲ୍ଲ' ପରିବାରରେ ଜନ୍ମଗ୍ରହଣ କରିଥିଲେ । କିନ୍ତୁ ଏହି 'ମଲ୍ଲ' ବଂଶର ଅକାଳ ବଳସ୍ୱ ଦୃଶ୍ୟକୁ ଆଖି ଆଗରେ ରଖି ହଥର୍ଣ୍ଣଙ୍କ ପରି ସେ ମଧ୍ୟ ନିଜର 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ 'ବାଘସିଂହ ବଂଶ'ର ବଳସ୍ୱ ଘଟାଇଛନ୍ତି । ଅତଏବ ଉଭୟ ଔପନ୍ୟାସିକଙ୍କ ଚେତନାକୁ ସ୍ୱବଂଶର ଯେଉଁ କୃତକର୍ମ ଜନିତ କାଳିମା ସ୍ପର୍ଶ କରିଥିଲା, ତାର ଉପଯୁକ୍ତ ଶାସ୍ତି ଭାବେ ସେ ତାଙ୍କର ଉପନ୍ୟାସର ବିଭିନ୍ନ ଚରିତ୍ର ତଥା ବଂଶ ମାଧ୍ୟମରେ ତାର ବିଷମୟ ପରିଣତିକୁ ସୂଚାଇ ଅଛନ୍ତି । ଉଭୟ ଔପନ୍ୟାସିକ ଏଣୁ ଏ କ୍ଷେତ୍ରରେ ଆପଣାର ଚିନ୍ତା-ଚେତନାରେ ଯେ ଅପୂର୍ବ ସାମ୍ୟରକ୍ଷା କରିପାରିଛନ୍ତି, ଏକଥା ଅସ୍ୱୀକାର କରିହେବ ନାହିଁ ।

(୨) ହଥର୍ଣ୍ଣ ଥିଲେ ଆଜୀବନ ଦୁଃଖୀ । ପାରିବାରିକ ବିପର୍ଯ୍ୟୟ ସାଙ୍ଗକୁ ଅର୍ଥନୀତି ଦୁରବସ୍ଥା ଓ ତଜ୍ଜନିତ ପ୍ରଚଣ୍ଡ ଅନୁଭୂତିକୁ ସେ ନିଜର ଉପନ୍ୟାସ ମାଧ୍ୟମରେ ରୂପ ଦେଇ ଅଛନ୍ତି । ଅର୍ଥ ନଥିଲେ ମଣିଷ କି ପ୍ରକାର ଦୁରବସ୍ଥାର ସମ୍ମୁଖୀନ ହୁଏ ତାର ଏକ ନିଖୁଣ ଚିତ୍ର ସେ ଦର୍ଶାଇଛନ୍ତି—'The House of the Seven Gables" ଉପନ୍ୟାସରେ । ପୁଣି ମଣିଷ ପ୍ରତିପତ୍ତିଶାଳୀ ନହେଲେ ଜୀବନରେ କିପରି ପ୍ରତିପତ୍ତିଶାଳୀର ସକଳ ନିର୍ଯ୍ୟାତନା ସହିବାକୁ ପଡ଼େ ତାର ଏକ ନିଖୁଣଚିତ୍ର ମଧ୍ୟ ହଥର୍ଣ୍ଣ ଏହି ଉପନ୍ୟାସ ମାଧ୍ୟମରେ ପ୍ରଦାନ କରିଯାଇଛନ୍ତି । ହଥର୍ଣ୍ଣଙ୍କ ପରି ଔପନ୍ୟାସିକ ଫକୀର-ମୋହନ ମଧ୍ୟ ନିଜର ଅସହାୟ, ନିଃସଙ୍ଗ, ଜୀବନର ଚିତ୍ର ଓ ଆର୍ଥିକ ଦୁରବସ୍ଥା, ପ୍ରତିପତ୍ତିହୀନତାର ଚିତ୍ରକୁ ଆପଣାର 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ ଅବିକଳ ଭାବେ ବର୍ଣ୍ଣନା କରିଯାଇଛନ୍ତି । ଅତଏବ ଏ କ୍ଷେତ୍ରରେ ଉଭୟ ଔପନ୍ୟାସିକଙ୍କ ଚିନ୍ତାଚେତନା ଯେ ଏକ, ଏକଥା ଅସ୍ୱୀକାର କରିବାର କିଛି କାରଣ ନାହିଁ ।

(୩) ହଥର୍ଣ୍ଣ ଥିଲେ ପ୍ରଚ୍ଛନ୍ନ ସଂସ୍କାରବାଦୀ । ଆମେରିକୀୟ ରକ୍ଷଣଶୀଳ ସମାଜ ବିରୁଦ୍ଧରେ ସେ ଆପଣାର ସଂସ୍କାରଧର୍ମୀ ସ୍ୱର ଉତ୍ତୋଳନ କରିଥିଲେ । ଏହା ତାଙ୍କର 'The House of the Seven Gables', ଉପନ୍ୟାସରୁ ସ୍ପଷ୍ଟ ପ୍ରତିଭାତ ହୁଏ । ଆମେରିକୀୟ ସମାଜର ନାରୀମାନେ ଏପରି ରକ୍ଷଣଶୀଳ ଥିଲେ ଯେ, ସେମାନେ ସଦାକୁ ଆସି କୌଣସି କାମ କରିବାକୁ ନିଜର ପଦମର୍ଯ୍ୟାଦା ହାନି ବୋଲି ମନେକରୁଥିଲେ । 'The House of the Seven Gablesର ହେପ୍‌ଜିବା ନାରୀ ଚରିତ୍ରଟି ଏହା ଉଦାହରଣ । ତାକୁ ଘରୁ କାଢ଼ି ଆଣି କାର୍ଯ୍ୟକରିବାର ଯେଉଁ ଇଙ୍ଗିତ ହଥର୍ଣ୍ଣ ପ୍ରଦାନ କରିଛନ୍ତି, ତାହା ପ୍ରକୃତରେ ତାଙ୍କ ସଂସ୍କାରଧର୍ମୀ ଚିନ୍ତାଚେତନାର ପରିଚ୍ୟାୟକ ହଥର୍ଣ୍ଣଙ୍କ ପରି ଫକୀରମୋହନ ମଧ୍ୟ ଥିଲେ ପ୍ରଚ୍ଛନ୍ନ ସଂସ୍କାରବାଦୀ । ତାଙ୍କ ଆଗରେ ଥିଲା ଉତ୍କଳୀୟ ସମାଜର ଅନ୍ଧବିଶ୍ୱାସ ଜନିତ ପତନର ଚିତ୍ର । ଏହି ଅନ୍ଧବିଶ୍ୱାସରେ ଜଡ଼ିତ ହୋଇ

କ୍ରମଶଃ ବିଳୟ ଭଜିବାକୁ ଯାଉଥିବା ସମାଜକୁ ସେ ନିଜ ଲେଖନୀ ମୁନରେ ସଂସ୍କାର କରିବାକୁ ଚାହିଁଥିଲେ । ତେଣୁ ସେ ତାଙ୍କ 'ଛମାଣ ଆଠଗୁଣ୍ଠ'ରେ 'ବୁଢ଼ୀମଙ୍ଗଳା' ପ୍ରସଙ୍ଗର ଉତ୍ଥାପନ କରି ମଣିଷ ମନରେ ବାସ୍ତବ ଚେତନା ଜାଗ୍ରତ କରିବାର ପ୍ରଚେଷ୍ଟା କରିଥିଲେ । କେବଳ 'ଛ'ମାଣ ଆଠଗୁଣ୍ଠ' ନୁହେଁ ତାଙ୍କର 'ମାମୁଁ' 'ପ୍ରାୟଶ୍ଚିତ' ଆଦି ଉପନ୍ୟାସରେ ମଧ୍ୟ ତାଙ୍କ ସଂସ୍କାର ପ୍ରୟାସୀ ମନକୁ ପାଠକ ବାରମ୍ବାର ଭେଟେ । ତେଣୁ ସଂସ୍କାର କ୍ଷେତ୍ରରେ ବା ଅନ୍ଧକୁଳାଚାରର ବିରୁଦ୍ଧରେ ସଂଗ୍ରାମ ବା ବିପ୍ଳବର ସ୍ୱର ଉଠାଇବା ଦିଗରେ ଫକୀରମୋହନ ଓ ହଥର୍ଣ୍ଣଙ୍କର ଚିନ୍ତା ଚେତନାରେ ଯେ ବହୁ ସାମ୍ୟ ପରିଲକ୍ଷିତ ହୁଏ—ଏହା ନିଃସନ୍ଦେହରେ କୁହାଯାଇପାରେ ।

(୪) ହଥର୍ଣ୍ଣ ଥିଲେ କର୍ମଫଳରେ ବିଶ୍ୱାସୀ । ମନୁଷ୍ୟ ଯେଉଁ କର୍ମ କରେ, ତାର ଫଳ ସେ ସେ ସେହି ଜନ୍ମରେ ଭୋଗକରେ ଏହି ବିଶ୍ୱାସରେ ସେ ଥିଲେ ଦୃଢ଼ 'The House of the Seven Gables" କିମ୍ବା 'The Sarlet Letter' ଆଦି ଉପନ୍ୟାସରେ ସେ ଏହି କର୍ମଫଳରେ ବିଷମୟ ପରିଣତି ସମ୍ପର୍କରେ ବର୍ଣ୍ଣନା କରିଅଛନ୍ତି । 'The House of the Seven Gables" ଉପନ୍ୟାସଟିରେ କର୍ଣ୍ଣେଲ୍ ପିନ୍‌ଚନ୍ ଷଡ଼ଯନ୍ତ୍ର କରି ମାଥିଉ ମାଉଲେଙ୍କୁ ଫାଶୀଖୁଣ୍ଟରେ ଝୁଲାଇ ତାଙ୍କର ଜମି ଖଣ୍ଡିକ ନେବାପରେ ତା'ଉପରେ ଯେଉଁ ଘର ଖଣ୍ଡିକ କରିଗଲେ ସେଥିରେ ସେ କିମ୍ବା ତାଙ୍କର ପରିବାରର କେହି ଜଣେ ଶାନ୍ତିରେ ରହିପାରିଲେ ନାହିଁ । ମୃତ୍ୟୁ, ଅବସାଦ, ସେହି ପରିବାରକୁ ଧ୍ୱଂସ ମୁଖକୁ ଟାଣିନେଲା । କର୍ଣ୍ଣେଲ୍ ଏହି କର୍ମର ଫଳ ସ୍ୱରୂପ ନିଜେ ତ ମୃତ୍ୟୁବରଣ କଲେ, ତତ୍ସଙ୍ଗେ ସଙ୍ଗେ ଆପଣାର ପରିବାରକୁ ମଧ୍ୟ କ୍ରମାଗତ ଭାବେ ମୃତ୍ୟୁ ମୁଖକୁ ଠେଲି ଦେଇଗଲେ । ପୁଣି 'The Scarlet Letter' ଉପନ୍ୟାସର ନାୟିକା ଅବୈଧ ଭାବରେ ଏକ ଶିଶୁକୁ ଜନ୍ମ କରିଥିବାରୁ ତାର କୃତକର୍ମର ଫଳସ୍ୱରୂପ ଦଣ୍ଡ ପାଇଛି । ଠିକ୍ ସେହିପରି ଔପନ୍ୟାସିକ ଫକୀରମୋହନ ମଧ୍ୟ ଥିଲେ କର୍ମଫଳରେ ପ୍ରଚଣ୍ଡ ବିଶ୍ୱାସୀ ତେଣୁ ତାଙ୍କର 'ଛମାଣ ଆଠଗୁଣ୍ଠ' 'ମାମୁଁ' ବା 'ପ୍ରାୟଶ୍ଚିତ', ଆଦି ଉପନ୍ୟାସରେ କୃତକର୍ମର ଅଲଙ୍ଘନୀୟ ଫଳକୁ ଏହି ଉପନ୍ୟାସର ଚରିତ୍ରମାନେ ଭୋଗ କରିବାକୁ ବାଧ୍ୟ ହୋଇଛନ୍ତି । ଅତଏବ କର୍ମଫଳ ବିଶ୍ୱାସଜନିତ ଔପନ୍ୟାସିକ ଚିନ୍ତା-ଚେତନାରେ ଏହି ଉଭୟ ଔପନ୍ୟାସିକଙ୍କର ଯେ ଅପୂର୍ବ ସାମ୍ୟ ରହିଛି ତାହା ନିଃସନ୍ଦେହରେ କୁହାଯାଇପାରେ ।

(୫) ହଥର୍ଣ୍ଣ ଥିଲେ ପାପ-ପୁଣ୍ୟରେ ବିଶ୍ୱାସୀ । ପାପୀକୁ ଭଗବାନ ଦଣ୍ଡ ଦିଅନ୍ତି ଏ କଥାକୁ ସେ ତାଙ୍କର ପ୍ରାୟ ଉପନ୍ୟାସର ବର୍ଣ୍ଣନା କରିଯାଇଛନ୍ତି । ନିରୀହ ମାଥିଉ ମାଉଲେର ଜମିଖଣ୍ଡିକୁ ନେଇ, ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରି ତାଙ୍କୁ ଫାଶୀଖୁଣ୍ଟରେ ଝୁଲାଇ ଦେବା ଘଟଣାକୁ ହଥର୍ଣ୍ଣ କର୍ଣ୍ଣେଲ୍‌ଙ୍କର ପାପ ବୋଲି ଧରି ନେଇଛନ୍ତି । ତେଣୁ

କଲୋନେଲ୍‌ଙ୍କ ପରିବାର ଏହି ପାପର ପ୍ରାୟଶ୍ଚିତ୍ତ କରିଛି ସ୍ୱବଂଶର ଅକାଳ ବିଲୟ ଚରିତରେ । ଠିକ୍ ସେହିପରି ସ୍ୱାମୀ ବିଦେଶରେ ଥିବାବେଳେ Scarlet Letter ଉପନ୍ୟାସର ନାୟିକା ଅବୈଧ ପ୍ରଣୟରେ ମତ୍ତ ରହି ଏକ ସନ୍ତାନ ମଧ୍ୟ ଜନ୍ମ କରିଛି । ଏହା ଆମ ହିନ୍ଦୁ ଶାସ୍ତ୍ରରେ ମଧ୍ୟ ପାପ ଭାବେ ପରିଗଣିତ । ଏହି ପାପକୁ ହଥର୍ଣ୍ଣ ତାଙ୍କ ସାହିତ୍ୟରେ ମଧ୍ୟ ଗ୍ରହଣ କରିଛନ୍ତି । ଆଲୋଚ୍ୟ ଉପନ୍ୟାସର ନାୟିକା ସ୍ୱପାପର ଦଣ୍ଡ ସ୍ୱରୂପ ଜେଲ୍ ସାମ୍ନାରେ ଥିବା ଏକ ଖୁଣ୍ଟ ନିକଟରେ ପ୍ରବନ୍ଧକ ଜନସମ୍ମୁଖରେ ଠିଆହେବାର ଦଣ୍ଡରେ ଦଣ୍ଡିତ ହୋଇଛି । ହଥର୍ଣ୍ଣଙ୍କ ପରି ଔପନ୍ୟାସିକ ଫକୀରମୋହନ ମଧ୍ୟ ପାପ ଉପରେ ଗୁରୁତ୍ୱ ପ୍ରଦାନ କରିଯାଇଛନ୍ତି । ମଣିଷ ପାପ କଲେ ତାକୁ ଉଚିତ୍ ଶାସ୍ତି ମିଳେ ଏକଥା ସେ ତାଙ୍କର ବିଭିନ୍ନ ଉପନ୍ୟାସରେ ପ୍ରମାଣିତ କରିଦେଇଯାଇଛନ୍ତି । 'ଛମାଣ ଆଠଗୁଣ୍ଠ'ର ରାମଚନ୍ଦ୍ର ମଙ୍ଗରାଜ, ଚମ୍ପା, 'ମାମୁଁ'ର ନାଜର ନଟବର ଦାସ, ଚନ୍ଦ୍ରକଳା, ଏମାନେ ସବୁ ପାପୀ । ଏମାନଙ୍କ ପାପ ପାଇଁ ଏମାନେ ମଧ୍ୟ ଉପଯୁକ୍ତ ଶାସ୍ତି ପାଇଥିବା କଥା ଫକୀରମୋହନ ତାଙ୍କ ଔପନ୍ୟାସିକ ଚିନ୍ତା ଚେତନା ମାଧ୍ୟମରେ ବ୍ୟକ୍ତ କରିଯାଇ-ଛନ୍ତି । ଅତଏବ ଉଭୟ ଔପନ୍ୟାସିକ ଏ କ୍ଷେତ୍ରରେ ମଧ୍ୟ ନିଜର ଅପୂର୍ବ ସାମ୍ୟ ଦର୍ଶାଇ-ଛନ୍ତି ।

(୬) ଚରିତ୍ର ଚିତ୍ରଣରେ ହଥର୍ଣ୍ଣ ଜଣେ କୁଶଳୀ ଶିଳ୍ପୀ । ସେ ତାଙ୍କ ଉପନ୍ୟାସର ଚରିତ୍ରମାନଙ୍କର ଯେଉଁ ବିଚିତ୍ର ସମାଗମ ଓ ତାର ଯଥାଯଥ ଚିତ୍ରଣ କରିଛନ୍ତି, ତାହା ଅତୁଳନୀୟ । ପ୍ରତ୍ୟେକ ଚରିତ୍ର ନିଜ ନିଜ ଭୂମିକାରେ ଜଣେ ଜଣେ ସଫଳ କଳାକାର । ଜର୍ଜ ପିନ୍‌ଚନ୍, କ୍ଲିଫର୍ଡ଼, ମାଉଲେ, ହୋଲ୍‌ଗ୍ରେଭ୍, ହେପ୍ ଥିବା ଆଲିସେ, ଫୋଏବ୍, ହେଷ୍ଟର, ଚିଲିଂଓ୍ୱାର୍ଥ ଓ ପିଅର୍ଲ ଆଦି ଚରିତ୍ରମାନେ ପାଠକ ଆଗରେ ବେଶ୍ ଜୀବନ୍ତ ହୋଇପାରିଛନ୍ତି । ଏହା କେବଳ ହଥର୍ଣ୍ଣଙ୍କ ଚରିତ୍ରଚିତ୍ରଣ ଜନିତ ଦକ୍ଷତା ହେଉ ସମ୍ଭବ ହୋଇପାରିଛି । ହଥର୍ଣ୍ଣଙ୍କ ପରି ଫକୀରମୋହନ ମଧ୍ୟ ଅପୂର୍ବ କୁଶଳତା ଓ କଳାପାଟବତା ପ୍ରଦର୍ଶନ କରିଅଛନ୍ତି ତାଙ୍କ ଉପନ୍ୟାସର ଚରିତ୍ର ଚିତ୍ରଣ କରିବାରେ । 'ଛ'ମାଣ ଆଠଗୁଣ୍ଠ'ର ଚମ୍ପା, ରାମଚନ୍ଦ୍ର ମଙ୍ଗରାଜ, ଶାରିଆ ଓ ଭଗିଆ ଏବଂ 'ମାମୁଁ'ର ନାଜର ନଟବର, ଚନ୍ଦ୍ରକଳା, ପ୍ରଭୁଦୟାଲ୍ ଆଦି ଚରିତ୍ରମାନେ ବିଶ୍ୱସାହିତ୍ୟରେ ଏକ ଏକ unic ଚରିତ୍ର । ଅତଏବ ଚରିତ୍ର ଚିତ୍ରଣରେ ଉଭୟ ଔପନ୍ୟାସିକଙ୍କ ଦକ୍ଷତା ବେଶ୍ ଅଖିରେ ପଡ଼େ ।

(୭) ସାମାଜିକ ଦୃଷ୍ଟିରୁ ବିଚାରକଲେ ହଥର୍ଣ୍ଣ ଆମେରିକୀୟ ରକ୍ଷଣଶୀଳ ସମାଜର ଚିତ୍ରକୁ ତାଙ୍କର 'The House of the Seven Gables'' ଓ 'The Scarlet Letter' ଉପନ୍ୟାସରେ ପ୍ରକାଶ କରିଅଛନ୍ତି । ଏଥିରେ ଆମେରିକୀୟ ସମାଜର ଚଳଣି, ରୀତିନୀତି, ଆଦି ବେଶ୍ ପ୍ରାଞ୍ଜଳଭାବେ ପରିପ୍ରକାଶ ଲାଭ କରିଛି । ହଥର୍ଣ୍ଣଙ୍କ ପରି ଔପନ୍ୟାସିକ ଫକୀରମୋହନ ମଧ୍ୟ ସମକାଳୀନ ସମାଜର ନିଖୁଣ ଚିତ୍ର

ତାଙ୍କର 'ଛମାଣ ଆଠଗୁଣ୍ଠ' 'ମାମୁଁ' 'ଲଛମା,' 'ପ୍ରାୟଶ୍ଚିତ,' ଆଦି ଉପନ୍ୟାସ ମାନଙ୍କରେ ଅତି ନିଖୁଣ ଭାବରେ ଚିତ୍ରିତ କରିଅଛନ୍ତି । ବିଭିନ୍ନ ଦେଶର ସାମାଜିକ ଚଳଣି ଭିନ୍ନ ଭିନ୍ନ ହେଲେ ମଧ୍ୟ ବର୍ଣ୍ଣନାର ଚଟୁଳତାରେ ଏହି ଦୁଇ ଔପନ୍ୟାସିକଙ୍କ ସାମ୍ୟ ଏ କ୍ଷେତ୍ରରେ ବେଶ୍ ପରିଲକ୍ଷିତ ହୁଏ ।

(୮) ହଥର୍ଣ୍ଣ ଅଭିଶାପ, ଅଶ୍ରୁ ଆଦିରେ ଦୃଢ଼ ବିଶ୍ୱାସୀ ଥିଲେ । ଏହାକୁ ସେ ମଧ୍ୟ ତାଙ୍କର 'The House of the Seven Gables' ଉପନ୍ୟାସରେ ପିନ୍‌ଚନ୍ ପରିବାର ଓ ମାଥିଉ ମାଉଲେ ଚରିତ୍ର ଭିତରେ ପ୍ରକାଶ କରିଅଛନ୍ତି । ଫକୀରମୋହନ ମଧ୍ୟ ଏଥିରେ ବିଶ୍ୱାସୀ । ତାଙ୍କ 'ଛ'ମାଣ ଆଠଗୁଣ୍ଠ'ର ମଂଗରାଜ ପରିବାରର ବିଲୟ ଯେ, ଭଗିଆ-ଶାରିଆଙ୍କ ନିଃଶ୍ୱାସ ଅତୃପ୍ତ ଆତ୍ମାର ଫଳ ଏକଥା ଅସ୍ୱୀକାର କରିହୁଏ ନାହିଁ । ଏହି ଦୁଇ ଅସହାୟ ପ୍ରାଣୀଙ୍କ ପାଇଁ ଏହି ଉପନ୍ୟାସରେ ପ୍ରଳୟର ତାଣ୍ଡବଲୀଳା ମଧ୍ୟ ସୃଷ୍ଟି ହୋଇଛି । ତେଣୁ ଏ କ୍ଷେତ୍ରରେ ଉଭୟ ଔପନ୍ୟାସିକଙ୍କ ସାମ୍ୟ ବେଶ୍ ଅନୁମେୟ ।

(୯) ପରସ୍ୱତ୍ୱ ଅପହରଣ ଓ ପରନାରୀ ଉପଭୋଗ ଜନିତକୁ ପରିଣତିକୁ ହଥର୍ଣ୍ଣ ତାଙ୍କର 'The House of the Seven Gables" ଓ 'The Scarlet Letter' ଉପନ୍ୟାସରେ ପ୍ରକାଶକରି ଆପଣାର ଔପନ୍ୟାସିକ ଚେତନାରେ ଏହି ଦୁଇ ବିଷୟ ପ୍ରତି ଯେ କିପରି ସଜାଗ ଥିଲେ, ତାହାର ସୂଚନା ଦେଇଛନ୍ତି । 'The House of the Seven Gables"ରେ ପରସ୍ୱତ୍ୱ ଅପହରଣ କରି ପିନ୍‌ଚନ୍ ପରିବାରର ଯେଉଁ ଦୁର୍ଦ୍ଦଶା ତାର ଠିକ୍ ଅବିକଳ ପ୍ରତିରୂପ ହେଉଛି ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ'ର ରାମଚନ୍ଦ୍ର ମଙ୍ଗରାଜର ପରିବାର । ପିନ୍‌ଚନ୍ ପରିବାର ମାଥିଉ ମାଉଲେର ଜମି ଅପହରଣ କରି ଯେପରି ବିଲୟ ଭଜିଲେ ଠିକ୍ ସେହିପରି 'ଛ'ମାଣ ଆଠଗୁଣ୍ଠ'ର ରାମଚନ୍ଦ୍ର ମଙ୍ଗରାଜ ଓ 'ମାମୁଁ'ର ନାଜର ନଟବର ଦାସ ଯଥାକ୍ରମେ ସାରିଆ ଓ ଭଗିଆର 'ଛ'ମାଣ ଆଠଗୁଣ୍ଠ' ଓ ଭଣଜା ନାରୁ ବାବୁର ଜମିଦାରୀ ଆତ୍ମସାତ୍ କରିବାକୁ ଯାଇଁ ଅତି ଶୋଚନୀୟ ଅବସ୍ଥାରେ ଧ୍ୱଂସୀଭୂତ ହୋଇଛନ୍ତି । ସେହିପରି ପରନାରୀ ପ୍ରତି ଉପଭୋଗର ବାସନାରେ ମଣିଷ ଅନ୍ଧ ହୋଇଯାଏ; ମାତ୍ର ତାର ବିଚାର ଭଗବାନ ଠିକ୍ ସମୟରେ କରନ୍ତି—ଏଇ ଯେଉଁ କଥା ହଥର୍ଣ୍ଣ ତାଙ୍କ 'The Scarlet Letter' ଉପନ୍ୟାସରେ ଦର୍ଶାଇଛନ୍ତି, ଫକୀରମୋହନ ତାହାର ସ୍ପଷ୍ଟ ଚିତ୍ର ତାଙ୍କର କୌଣସି ଉପନ୍ୟାସରେ ନଦେଲେ ବି—ଚମ୍ପା ସହ ରାମଚନ୍ଦ୍ର ମଙ୍ଗରାଜଙ୍କର ଓ ଚନ୍ଦ୍ରକଳା ସହ ନାଜର ନଟବର ଏବଂ ପ୍ରଭୁଦୟାଳର ସମ୍ପର୍କ ଯେ, ପରୋକ୍ଷରେ ଉଗ୍ର ଦେହଜ କାମନାର ଅଭିବ୍ୟକ୍ତି, ଏକଥା ସୂଚାଇଛନ୍ତି । ଏହି ଦୃଷ୍ଟିରୁ ବିଚାରକଲେ ଉଭୟ ଔପନ୍ୟାସିକଙ୍କ ଚିନ୍ତା ଚେତନା ଏ କ୍ଷେତ୍ରରେ ମଧ୍ୟ ସାମଂଜସ୍ୟ ଦର୍ଶାଇଛି ।

(୧୦) ଜମି ପ୍ରତି ମୋହ ପ୍ରତି ଯୁଗରେ, ପ୍ରତି ଦେଶରେ, ପ୍ରତିସ୍ତରରେ ମଣିଷକୁ ଅନ୍ଧ କରିଦେଇଛି । କିନ୍ତୁ ଏହାର ବିଷମୟ ପରିଣତି ସମ୍ପର୍କରେ ସେ ସଚେତନ ନୁହେଁ । ଜମିପ୍ରତି ମୋହ ଯେ କେବଳ ଆମ ଦେଶର ଏକଥା ନୁହେଁ, ପ୍ରତି ଦେଶରେ ଏହି ମୋହ ରହିଛି ମଣିଷ ପ୍ରବୃତ୍ତି ସହ ଏକାନ୍ତ ନିବିଡ଼ ସମ୍ପର୍କ ସ୍ଥାପନକରି । ହଥର୍ଣ୍ଣ ଏହିପରି ଏକ ଭୂମିକେନ୍ଦ୍ରିକ ଚିନ୍ତାଧାରାକୁ ତାଙ୍କ 'The House of the Seven Gables' ଉପନ୍ୟାସରେ ରୂପ ଦେଇ ଭୂମିପ୍ରତି ଥିବା ମଣିଷର ଅସମ୍ଭବ ମୋହକୁ ଦର୍ଶାଇଲାବେଳେ ଔପନ୍ୟାସିକ ଫକୀରମୋହନ ମଧ୍ୟ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ରାମଚନ୍ଦ୍ର ମଙ୍ଗରାଜର ଚରିତ୍ର ମାଧ୍ୟମରେ ଜମିପ୍ରତି ଥିବା ମଣିଷର ଅସମ୍ଭବ ଲୋଭ ଓ ତଜ୍ଜନିତ କୁପରିଣତିକୁ ଦର୍ଶାଇଛନ୍ତି । ତେଣୁ ଏ କ୍ଷେତ୍ରରେ ମଧ୍ୟ ଉଭୟ ଔପନ୍ୟାସିକଙ୍କ ଚିନ୍ତା-ଚେତନାରେ ଅପୂର୍ବ ସାମ୍ୟ ପରିଲକ୍ଷିତ ହୁଏ ।

ଏହିସବୁ ସାମ୍ୟ ସତ୍ତ୍ୱେ ଫକୀରମୋହନଙ୍କ ସହ ହଥର୍ଣ୍ଣଙ୍କର ମଧ୍ୟ ଅନେକ ବୈଷମ୍ୟ ରହିଛି; କିନ୍ତୁ ସାମ୍ୟ ତୁଳନାରେ ଏହା ନିହାତି ନଗଣ୍ୟ । ତେବେ କେତେକ ବୈଷମ୍ୟ ସମ୍ପର୍କରେ ଏଠାରେ ସୂଚନା ମାତ୍ର ଦିଆଯାଇ ପାରେ । ହଥର୍ଣ୍ଣଙ୍କ ଉପନ୍ୟାସରେ ଅନ୍ୟତମ ବିଭବ ହୋଇଛି ପ୍ରେମ । ସେ ତାଙ୍କ ଉପନ୍ୟାସରେ ଏହାକୁ ସିଧାସଳଖଭାବେ ବର୍ଣ୍ଣନା କଲାବେଳେ ଫକୀରମୋହନଙ୍କ ଉପନ୍ୟାସରେ ଏ ଧରଣର ପ୍ରେମ ପରିଲକ୍ଷିତ ହୁଏନାହିଁ । ପୁଣି ଫକୀରମୋହନ ତାଙ୍କର ଉପନ୍ୟାସରେ ବ୍ୟଙ୍ଗ ବିଦ୍ରୂପ ହାସ୍ୟରସର ଯେଉଁ ସମୁଜ୍ଜ୍ୱଳ ଚିତ୍ର ଦେଇଛନ୍ତି, ତାହା ହଥର୍ଣ୍ଣଙ୍କ ଉପନ୍ୟାସରେ ସେହି ମାତ୍ରାରେ ପାଠକ ଖୋଜିଲେ ନିରାଶ ହେବ । ସାମାଜିକ ଦୃଷ୍ଟିକୋଣରୁ ଉଭୟ ଔପନ୍ୟାସିକଙ୍କ ଚିନ୍ତା-ଚେତନାରେ ମଧ୍ୟ କିଛିଟା ବୈଷମ୍ୟ ପରିଲକ୍ଷିତ ହୁଏ । କାରଣ ଏ କ୍ଷେତ୍ରରେ ପୃଥକ୍ ପୃଥକ୍ ଦେଶର ଭୂମିକା ଅତ୍ୟନ୍ତ ସ୍ପଷ୍ଟ । ତେବେ ହଥର୍ଣ୍ଣ ଓ ଫକୀରମୋହନଙ୍କ ଔପନ୍ୟାସିକ ଚିନ୍ତାଚେତନାରେ ସାମ୍ୟ ଯେପରି ଅତି ନିବିଡ଼ ଭାବେ ପରିଲକ୍ଷିତ ହୁଏ, ବୈଷମ୍ୟ ସେପରି ପରିଲକ୍ଷିତ ହୁଏ ନାହିଁ । ତେଣୁ ଏହି ସମଧର୍ମୀ ଔପନ୍ୟାସିକଙ୍କ ଚିନ୍ତାଚେତନାକୁ ଅଧିକ ସ୍ପଷ୍ଟ ଓ ପ୍ରାଞ୍ଜଳ କରିଦେବା ପାଇଁ ସେମାନଙ୍କର ଏକ ପ୍ରତିନିଧି ଶ୍ରେଣୀସ୍ଥ ଉପନ୍ୟାସର ତୁଳନାତ୍ମକ ବିଚାର କରିବା ଅଧିକ ଯୁକ୍ତିଯୁକ୍ତ ମନେହୁଏ । ଏ କ୍ଷେତ୍ରରେ ହଥର୍ଣ୍ଣଙ୍କ 'The House of the Seven Gables' ସହ ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ, ଉପନ୍ୟାସର ତୁଳନାତ୍ମକ ବିଚାର କରାଯାଇପାରେ ।

# ତୁଳନାତ୍ମକ ବିଚାରଧାରାରେ—ହଥର୍ଣ୍ଣଙ୍କ ଉପନ୍ୟାସ—'The House of the Seven Gables' ଓ ଫକୀରମୋହନଙ୍କ ଉପନ୍ୟାସ—"ଛ'ମାଣ ଆଠଗୁଣ୍ଠ"

"Howthorne evinces extraordinary genius, having no rival either in America or elsewhere......he has the purest stvle, the finest taste, the most available scholarship, the most radiant imagination, the most consummate ingenuity"

[ Edger Allan Poe ]

ଔପନ୍ୟାସିକ ହଥର୍ଣ୍ଣ ଓ ତାଙ୍କ କଳାକୃତି ପାଇଁ ଖ୍ୟାତନାମା ଗାଳ୍ପିକ ଏଡ୍‌ଗାର୍ ଆଲନ୍ ପୋ'ଙ୍କ ଏହି ଉକ୍ତି ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ବିଶେଷକରି ହଥର୍ଣ୍ଣଙ୍କ ଦ୍ୱିତୀୟ ଉପନ୍ୟାସ 'The House of the Seven Gables'ରେ ଏହି ସତ୍ୟକୁ ପାଠକ ବାରମ୍ବାର ଭେଟେ । ତେଣୁ ଏ କ୍ଷେତ୍ରରେ ଏହି ଉପନ୍ୟାସର କଥାବସ୍ତୁର ସମ୍ୟକ୍ ସୂଚନା ଦେବା ନିତାନ୍ତ ଆବଶ୍ୟକ । ଏହି ଉପନ୍ୟାସଟି ଏକ ବିଦେଶୀ ତଥା ଭିନ୍ନ ଭାଷୀ ଉପନ୍ୟାସ ହୋଇଥିବାରୁ ଏହାର କଥାବସ୍ତୁକୁ ପ୍ରଥମେ ଇଂରାଜୀ ଓ ପରେ ଓଡ଼ିଆ ଭାଷାରେ ଉଲ୍ଲେଖ କରାଯାଇପାରେ । ନିମ୍ନରେ ତାହା ପ୍ରଦତ୍ତ ହେଲା—

**"The House of the Seven Gables" ଉପନ୍ୟାସର ସଂକ୍ଷିପ୍ତ ଇଂରାଜୀ କଥାବସ୍ତୁ :**

In 1851 Howthorne Published 'The House of the Seven Gables" This Romance had a better sale and a more hearty reception than the 'Scarlet Letter' but is now considered to be hawthorne's second best Romance. It is easy to account for its being more papular with early readers than 'The Scarlet better' for it is its authors most genial book, written at the most happy and successful period of his life. It's tone is melancholy, but pleasantly melancholy, it 'renders', as Henery James said, "the impression of a summer afternoon in an elm-sadowed New

England town." It contains alove offair which ends happily; Poetic Justice is meted out to the villain and so far as possible, the wrongs he has done are righted.

'The House of the Seven Gables' utilizes meterials from hawthorne's family history which had hunted his imagination. One of the Hathorne ancestors had been a Judge in the salem witch—trials and Hawthorne was impressed by the tradition of a curse laid upon him and his descendants by one of the victims of the witch craft delusion. Hawthorne used the ancestral curse as avind of allegorical made of expressing the way in which the dead hand of the past bears upoun affairs the present.

The re-embodiment of the past in the present is repre sented in 'The House of the Seven Gables' by successive generation of the Pycheon and Maule families. The main characters are three elderly Pyncheons' their young lady cousion, and a young man named Holgrave who is a descendant of the Moules." The older Pyncheons illustrate in various ways the dengeration of a formerly vigorous and aristocratic family, which has lost its vitality and worth by insisting an its Preten-sion to social superiority in a society that has grown steadily more democratic. Since what is real and vital belongs to humanity at large, not to the archaic tradition to which the Pyncheons adher, their exclusiveness finally results in their excluding themselves from all that is normal and life sustaining. The Maules represent common humanity, spurned and exploit-ed by the aristocratic Pyncheons. Possessing as their birth right not position nor properly nor privilege but normality and sanity.

The villain of the story is Judge Pyncheon whose ruthless ambition has carried him through actual criminality and fraud to worldly success, but who Lacks the traditional pyncheon culture. His cousins Hepzibah and clifford are not evil, but merely grotesque and in effectual. Hepzibah a rusty and ridi-culous old Maid, has the Pyncheon pride without any graces or

Matarial advantages to justify it. Clifford, a weak, over sensitive man with an artist's sense of beauty, is nearly in sane in consequence of having spent many years in prision on a wrongful conviction of Murder, through the contrivance of his cousin the Judge, who had thus supplanted him as the inheritor of the Pyncheon property.

When the story opens Hepzibah is living in the ruinous old Pyncheon mansion. 'The House of the Seven Gables." Which represents the aristocratic tradition of the Pyncheons, once sound and imposing but now decedent. 'The House of the Seven Gables' stands an ground which had been the original homestead of the first maule in America, This Maule had been convicted of witch craft by the original Pyncheon and thus dispossessed of his property and privilege. It was this Mathew Maule who was reputed to have laid a curse on the pyncheon family. Throughout many generations this significant story of the denial .of Maule rights by Pyncheons had been repeated.

Hepzibah has a lodger, Holgrave a descendant of the Maules, although Hepzibah does not know he is a Maule. Soon clifford, released from his prision or asylum, returnes to live with his sister and their young cousin phoebe comes to make them a lengthy visit. The Judge does not live in the family mansion, but in a more modern and fashionable countryhouse, more suited to his status a man who has kept up with the times and is a worldly success.

There is no unifled and integrated plat in the House of the Seven Gables'. Having thus assemble his cast of characters, Hawthorne makes his book out of a number of tale like episodes which illustrate the traits of his characters and show whar they stand for as embodiments of influences reaching into the present from the past. In the end· phoeba and Holgrave marry, their marriage signifying the necessary abandonment of aristocratic

pretention to superiority, and the reconciliation through their common humanity of artificially apposed social classes. Judge Pyncheon dies a victim of the .ancestral curse apparently or a victim of apoplexy, if a more realistic interpretation is to be preferred to ancient superstition, His heirs, Hepzibah and cliford, are assured of as much security and contentment as they are capable of enjoying in their old age.

The man effect of 'The House of the Seven Gables' is pictorial × × The book is full of description of objects which have symbolic meaning. This is the most 'Gothio of all Howthoren's romances." (2)

ଏହି ଉପନ୍ୟାସଟି ଆମ ଓଡ଼ିଆ ଔପନ୍ୟାସିକ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର କାହାଣୀ, ଚରିତ୍ର, ବର୍ଣ୍ଣନାଶୈଳୀ ଓ ଚିନ୍ତାଧାରାର ଅଧିକ ନିକଟବର୍ତ୍ତୀ ମନେ-ହୁଏ । ଏହି ଉପନ୍ୟାସର ସଂକ୍ଷିପ୍ତ ଓଡ଼ିଆ କଥାବସ୍ତୁ ଅଧ୍ୟୟନରେ ଏହା ସ୍ପଷ୍ଟ ଭାବେ ଅନୁଭୂତ ହେବ ।

**'The House of the Seven Gables'—**

**ଉପନ୍ୟାସର ସଂକ୍ଷିପ୍ତ କଥାବସ୍ତୁ ( ଓଡ଼ିଆରେ ) :**

(୧) 'The House of the Seven Gables' ଉପନ୍ୟାସଟି ହଥର୍ଣ୍ଣଙ୍କର ଦ୍ୱିତୀୟ ଉପନ୍ୟାସ । ବେର୍କସାୟରରେ ଲେନକ୍ସ (Lenox) ଠାରେ ହଥର୍ଣ୍ଣ ଅବସ୍ଥାନ କରୁଥିବା ବେଳେ ସେ ଏହି ଉପନ୍ୟାସଟିକୁ ରଚନା କରିଥିଲେ । ସମ୍ପତ୍ତି ଓ ଧନର ମୋହ କପରି ମଣିଷର ମାନବିକତାକୁ ଲୋପକରି ତାକୁ ଧ୍ୱଂସ କରାଏ, ତାହା ଆଲୋଚ୍ୟ ଉପନ୍ୟାସରେ ବର୍ଣ୍ଣିତ ଏବଂ ଏଥିପାଇଁ ଶୋଷଣକାରୀ, ପରସ୍ୱ ଅପହରଣକାରୀକୁ ସେଉଁ ଫଳ ଭୋଗକରିବାକୁ ହୁଏ, ତାହା ହଥର୍ଣ୍ଣ ଏହି ଉପନ୍ୟାସରେ ବର୍ଣ୍ଣିତ ପିନ୍‌ଚନ୍ ପରିବାରର ଅବକ୍ଷୟତା ଭିତରେ ଦର୍ଶାଇଛନ୍ତି ।

ହଥର୍ଣ୍ଣଙ୍କ ସଂସ୍କାରବାଦୀ ମନୋବୃତ୍ତିର ପ୍ରଚ୍ଛନ୍ନପ୍ରୟାସ ହେଉଛି ଆଲୋଚ୍ୟ ଉପନ୍ୟାସଟି । ଭୂମିକୈନ୍ଦ୍ରିକ ଚିନ୍ତାଧାରାକୁ ନେଇ ଉପନ୍ୟାସଟି ପରିକଳ୍ପିତ । ଜମିଜମାର ଗଣ୍ଡଗୋଳରୁ ଉପନ୍ୟାସଟିର ଆରମ୍ଭ ହୋଇଛି । ମାଥିଉ ମାଉଲେ (Mathew

(2) Ame. lit—vol-2, Page—202 204, by—Abel.

Maule) ଙ୍କ ଶ୍ରେଷ୍ଠ ଜମି ଖଣ୍ଡିକୁ କୌଶଳକ୍ରମେ ପ୍ରତିପତ୍ତିଶାଳୀ ପିନ୍‌ଚନ୍ ପରିବାରର କର୍ଣ୍ଣେଲ୍ ପିନ୍‌ଚନ୍ (Colonel Pyncheon) ହାତକରି ନେଇଛନ୍ତି । ଏଥିପାଇଁ ଷଡ଼ଯନ୍ତ୍ର କରି ସେ ଉକ୍ତ ଜମିର ମାଲିକ ମାଥିଉ ମାଉଲେଙ୍କୁ ଫାଶୀଖୁଣ୍ଟରେ ମଧ୍ୟ ଝୁଲାଇ ଦେଇଛନ୍ତି । ଶ୍ରେଷ୍ଠ ଜମି ଖଣ୍ଡକୁ ନେବାପାଇଁ ପିନ୍‌ଚନ୍‌ଙ୍କର ମାଉଲେଙ୍କ ପ୍ରତି ଏଇ ଯେଉଁ ଅନ୍ୟାୟ, ଅତ୍ୟାଗ୍ୟର ତଥା ବର୍ବରତା ତାହା 'ଛ' ମାଣ ଆଠଗୁଣ୍ଠ'ର ରାମଚନ୍ଦ୍ର ମଙ୍ଗରାଜଙ୍କ ଯାରିଆ ଭଗିଆଙ୍କ ଜମି ନେବାପାଇଁ ତାଙ୍କ ପ୍ରତି ଦେଖାଦେଇଥିବା ବର୍ବରତା-ଠାରୁ କୌଣସି ଦୃଷ୍ଟିରୁ ନ୍ୟୁନ ନୁହେଁ । ଏଣୁକରି ଏ କ୍ଷେତ୍ରରେ ଫକୀରମୋହନଙ୍କ 'ଛ' ମାଣ ଆଠଗୁଣ୍ଠ' ସହିତ ଏହି ଉପନ୍ୟାସର ବିପୁଳ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ।

ମାଥିଉ ମାଉଲେଙ୍କ ଶ୍ରେଷ୍ଠ ଜମି ଖଣ୍ଡିକୁ ନେବାପରେ କର୍ଣ୍ଣେଲ୍ ପିନ୍‌ଚନ୍ ଯେଉଁ ଜମି ଉପରେ ଯେଉଁ ବିରାଟକାୟ ପ୍ରାସାଦତୁଲ୍ୟ ଘରଟି ନିର୍ମାଣ କରିଛନ୍ତି, ତାହା ହେଉଛି 'The House of the Seven Gables' । ଏହି ଘରେ ପିନ୍‌ଚନ୍-ମାନେ ଧାରାବାହିକ ଭାବେ ସାତପୁରୁଷ ପର୍ଯ୍ୟନ୍ତ ବସବାସ କରିବା ଆରମ୍ଭ କରିଦେଇଛନ୍ତି । ମାତ୍ର ମାଉଲେଙ୍କ ଅଭିଶାପ ତଥା ଦୀର୍ଘଶ୍ୱାସର ଉତ୍ତପ୍ତତାରେ ସମସ୍ତ ପିନ୍‌ଚନ୍ ପରିବାର ଧ୍ୱଂସମୁଖକୁ ଟାଣିହୋଇ ଯାଇଛନ୍ତି । ଏହି ଉପନ୍ୟାସରେ ଚିତ୍ରିତ ହୋଇଥିବା ପିନ୍‌ଚନ୍ ପରିବାରର କେତେକ ଚରିତ୍ରଙ୍କୁ ହୃଦୟହୀନ ଗର୍ବୀ, ଉଦ୍ଧତ, କ୍ଷମତାଲିପ୍ସୁ ଅର୍ଥଲୋଭୀ ଓ ରକ୍ଷଣଶୀଳଭାବେ ପ୍ରତିପାଦିତ କରିଅଛନ୍ତି । ମାତ୍ର ଏଥିରେ ବର୍ଣ୍ଣିତ ମାଉଲେ ଚରିତ୍ରଟି ନିରୀହ, ଆଦର୍ଶବାଦୀ ଚରିତ୍ରଭାବେ ଚିତ୍ରିତ ହୋଇଛି । ମାଉଲେ ନିରୀହ ତଥା ଜଣେ ଅଜଣା ଅଶୁଣା ବ୍ୟକ୍ତି ଥିବାରୁ ତାଙ୍କ ଶ୍ରେଷ୍ଠ ଜମି ଖଣ୍ଡିକୁ ପିନ୍‌ଚନ୍ ପରିବାର ଜବରଦସ୍ତ ଷଡ଼ଯନ୍ତ୍ର କରି ନେଇଯାଇଁ ତାଙ୍କୁ ଫାଶୀଖୁଣ୍ଟରେ ଝୁଲାଇ ଦେଇଥିଲେ ବି ସେଥିରେ ସେ ତିଳେମାତ୍ର ପ୍ରତିବାଦ କରିନାହାନ୍ତି । ମାଉଲେଙ୍କ ଚରିତ୍ର 'ଛ' ମାଣ ଆଠଗୁଣ୍ଠ'ର ଭଗିଆ ସାରିଆଙ୍କ କଥାହିଁ ମନେପକାଇଦିଏ । କିନ୍ତୁ ପରେ ମାଉଲେଙ୍କ ଅତୃପ୍ତ ଆତ୍ମା ଏହାର ପ୍ରତିବାଦ ସ୍ୱରୂପ ପିନ୍‌ଚନ୍ ପରିବାରକୁ ଭୟଭୀତ ଓ ବିପର୍ଯ୍ୟସ୍ତ କରିପକାଇଛି । ବାସ୍ତବିକ ଦେଖିବାକୁଗଲେ ଅସତ୍ ଉପାୟରେ ମାଉଲେଙ୍କ ଜମି ନେଇଥିବାରୁ ପିନ୍‌ଚନ୍‌ମାନଙ୍କୁ ସବୁବେଳେ ଏକ ଅଜଣା ଭୟ କାବୁ କରିଦେଇଥିଲା । ତେଣୁ ଏହାରୁ ପିନ୍‌ଚନ୍ ମାନଙ୍କର ମନର ବିକାର । ଦୋଷୀଭାବେ ନିଜକୁ ଅପରାଧୀ ମନେକରିବାର ଫଳ ବ୍ୟତୀତ ଅନ୍ୟ କିଛି ନୁହେଁ ।

ଫକୀରମୋହନଙ୍କ ଭଗିଆ ପାଗଳ ହୋଇଗଲେ ବି ରାମଚନ୍ଦ୍ର ମଙ୍ଗରାଜଙ୍କ ଶାସ୍ତିକୁ ସେ ସ୍ୱଚକ୍ଷୁରେ ଦେଖିଛି । ଏପରିକି ପ୍ରତିଶୋଧପରାୟଣ ହୋଇ ପାଗଳ ଅବସ୍ଥାରେ ସେ ରାମଚନ୍ଦ୍ର ମଙ୍ଗରାଜକୁ କାମୁଡ଼ି କ୍ଷତବିକ୍ଷତ କରିଦେଇଛି । କିନ୍ତୁ ଏହି ଉପନ୍ୟାସରେ (House of the Seven Gables) ମାଉଲେ ତାଙ୍କ ଆତ୍ମା ଦ୍ୱାରା କୌଣସି

ପିନଚନ୍‌ଙ୍କ ଶାନ୍ତିରେ ରହିବାକୁ ଦେଇନାହାନ୍ତି । ଏପରିକି ମାଉଲେଙ୍କ ବଂଶର ଅନ୍ୟାନ୍ୟ ମୃତ ମାଉଲେ ଓ ଜୀବନ୍ତ ମାଉଲେମାନେ ଜନ୍ମ ଜନ୍ମ ଧରି ପ୍ରତିଶୋଧପରାୟଣ ହୋଇ-ଉଠିଛନ୍ତି ଏବଂ ନିରୀହା ହେପ୍‌ଜିବା ନିଜର ରକ୍ଷଣଶୀଳ ଓ ଅହଂଭାବ ଯୋଗୁଁ ଜୀବନରେ ନାନା ନିଗ୍ରହରେ ହତକଡ ହୋଇଥିଲେ ବି ନିଜର ନିରୀହତା ଯୋଗୁ ମାଉଲେଙ୍କ କୁଦୃଷ୍ଟିରୁ ଯେ ରକ୍ଷା ପାଇଛନ୍ତି । ଛଦ୍ମବେଶୀ ମାଉଲେ ବଂଶୀୟ ହୋଲ୍‌ଗ୍ରେଭ୍ ଅଭିଜାତ୍ୟ ପିନ୍‌ଚନ୍ ପରିବାରର କନ୍ୟା ଫୋଏବ୍‌କୁ ପରିଶେଷରେ ବିବାହ କଲାପରେ ମାଉଲେଙ୍କ ଅତୃପ୍ତ ଆତ୍ମାର ତୃପ୍ତି ଆସିଛି ଓ ଦୁଇ କୋଳାହଳମୟ ପାରିବାରିକ ଜୀବନ ଏକ ହୋଇ-ଯାଇଛି ।

ଆଲୋଚ୍ୟ ଉପନ୍ୟାସଟିର ପରିସମାପ୍ତି ମିଳନାତ୍ମକ ଓ ବେଶ୍ ଚିତ୍ତାକର୍ଷକ । 'ଛ' ମାଣ ଆଠଗୁଣ୍ଠ'ର ରାମଚନ୍ଦ୍ର ମଙ୍ଗରାଜର ବଂଚକତା, ପରସ୍ୱତ୍ୱ ପ୍ରତି ଲୋଭ, ଶୋଷଣ ବା ଚକ୍ରାନ୍ତ ସହ ଏହି ଉପନ୍ୟାସର କର୍ଣ୍ଣେଲ୍ ପିନ୍‌ଚନ୍ ଓ ଜଜ୍ ପିନ୍‌ଚନ୍‌ଙ୍କ ତୁଳନା କରାଯାଇପାରେ । 'ଛ' ମାଣ ଆଠଗୁଣ୍ଠ'ରେ ଗୋଟିଏ ପୁରୁଷ ମଧ୍ୟରେ ରାମଚନ୍ଦ୍ର ମଙ୍ଗରାଜଙ୍କ କୃତକର୍ମଜନିତ କାହାଣୀର ପରିସମାପ୍ତି ହୋଇଥିଲାବେଳେ 'The House of the Seven Gables' ଉପନ୍ୟାସଟିର କାହାଣୀ ପୁରୁଷ ପୁରୁଷ ଧରି ଗଡ଼ି-ଚାଲିଛି । ସେଇ ଗୋଟିଏ ଘଟଣାକୁ କେନ୍ଦ୍ରକରି ଓ ମଙ୍ଗରାଜରୂପୀ ବହୁ ପିନ୍‌ଚନ୍ ଏହି ପରିବାରରେ ଜନ୍ମ ନେଇ ମାଉଲେଙ୍କ ଅଦୃଶ୍ୟ ଶକ୍ତି ଆଗରେ ପରାଭବ ଲଭିଛନ୍ତି ।

(୨) ପୂର୍ବରୁ କୁହାଯାଇଛି ଯେ, ଖଣ୍ଡିଏ ଜମିକୁ କେନ୍ଦ୍ରକରି 'The House of the Seven Gables' ଉପନ୍ୟାସର ପରିକଳ୍ପନା କରିଛନ୍ତି ଔପନ୍ୟାସିକ ହଥର୍ଣ୍ଣ । ଏହି ଜମିର କବଳ ପରିଶେଷରେ ଦୁଇଟି ପରିବାରର ସାମାଜିକ ସ୍ଥିତିକୁ ଦୋହଲାଇ ଦେଇଛି । ନିଉ ଇଂଲଣ୍ଡ ସହରରେ ମାଥ୍ୟୁ ମାଉଲେ ନାମକ ଜଣେ ଗରିବ, ପ୍ରତିପତ୍ତିହୀନ, ବ୍ୟକ୍ତିର ଜମିକୁ ନେବାକୁ ଯାଇଁ ପ୍ରତିପତ୍ତିଶାଳୀ କର୍ଣ୍ଣେଲ୍ ପିନ୍‌ଚନ୍ ମାଥ୍ୟୁ ମାଉଲେଙ୍କୁ ଜଣେ ଯାଦୁକର ଭାବେ ପ୍ରମାଣିତ କରି ତାଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇ ଦେଇଛନ୍ତି । (୩) ଏବଂ ପରେ ପରେ ତାଙ୍କର ଶ୍ରେଷ୍ଠ ଜମି ଖଣ୍ଡିକୁ ନେଇ ସେଠାରେ ଏକ ସୁନ୍ଦର, ବିରାଟକାୟ ଘର ନିର୍ମାଣ କରିଛନ୍ତି । ଏହି ଘରର ପ୍ରତିଷ୍ଠା ଅବସରରେ ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ଉପସ୍ଥିତିରେ ଅତି ଅସହାୟ ଓ ଆଶ୍ଚର୍ଯ୍ୟଭାବେ କର୍ଣ୍ଣେଲ୍ ମୃତ୍ୟୁ ମୁଖରେ ପଡ଼ିଛନ୍ତି । ଏହା ପରେ ପରେ ସେହି ଘରେ ରହୁଥିବା

---

(୩) Old Mathew Maule in a word was executed for the crime of witch craft." (The House of the Seven Gables." • Washington Press. 1960—Pag e-4)

ପ୍ରତ୍ୟେକ ପିନ୍‌ଚନ୍‌ଙ୍କ ମନରେ ମାଉଲେଙ୍କ ଅତୃପ୍ତ ଆତ୍ମା କଥା ଜାଗରିତ ହୋଇ ସେମାନଙ୍କୁ ଉଦ୍‌ବ୍ୟସ୍ତ କରିପକାଇଛି । ତେଣୁ ଏହି ଉପନ୍ୟାସର ଅନ୍ୟତମ ଖଳନାୟକ ଜର୍ଜ ପିନ୍‌ଚନ୍ ସେ ଘର ଛାଡ଼ି ଅନ୍ୟତ୍ର ରହୁଥିଲା ବେଳେ ତାଙ୍କ ପରିବାରର ଜଣେ ସମ୍ଭ୍ରାନ୍ତ ମହିଳା ହେପ୍‌ସିବା ସେହି 'House of the Seven Gables' ରେ ସପ୍ରତି ବସବାସ କରୁଥିଲେ । ସେହି ଘରେ ହେପ୍‌ସିବାଙ୍କ ବସବାସଠାରୁ ଉପନ୍ୟାସଟି ଗତିଶୀଳ ହୋଇଛି ।

ଜୀବନରେ ଅସଂଖ୍ୟ ଅସହ୍ୟ ଦୁଃଖ, ଲାଞ୍ଛନା, ଆର୍ଥିକ ଦୁରବସ୍ଥା—ବୃଦ୍ଧା ହେପ୍‌ସିବାଙ୍କୁ ତାଙ୍କ ଆଭିଜାତ୍ୟ ଭାବକୁ ଭୁଲାଇ ଦେଇ ଦୋକାନ କରିବା ପରି ଏକ ସାଧାରଣ କାମରେ ନିୟୋଜିତ ହେବାକୁ ବାଧ୍ୟ କରିଛି । ଏଥିପାଇଁ ଆଶ୍ୱାସନା, ସହାନୁଭୂତି ଦେବାକୁ ଯାଇଁ ହୋଲ୍‌ଗ୍ରେଭ୍ (ଯିଏକି ସେହି ଘରେ ଭଡ଼ାରେ ରହିଛନ୍ତି) ଙ୍କ ଭୂମିକାକୁ ଅସ୍ୱୀକାର କରାଯାଇ ନପାରେ । ତାଙ୍କ ସହ ନିଜର ନିଁଆସ୍ତ ( ସଂପର୍କୀୟା ) ଫୋଏବ ମଧ୍ୟ ଯୋଗଦେଇ ତାଙ୍କ ଜୀବନର ଦୁଃଖକୁ ଲାଘବ କରିବାରେ ସହାୟକ ହୋଇଛି ।

ହେପ୍‌ସିବାଙ୍କ ଭାଇ କ୍ଲିଫର୍ଡ଼—ଯିଏକି ଜର୍ଜ ପିନ୍‌ଚନ୍‌ଙ୍କ ଦ୍ୱାରା ଏକ ଷଡ଼ଯନ୍ତ୍ରର ଶିକାର ହୋଇ ଜେଲ୍ ଯାଇଥିଲେ ସେ କହୁଦିନ ପରେ ମୁକ୍ତି ପାଇଛନ୍ତି । ତାଙ୍କ ମୁକ୍ତି ପାଇବା ପରେ ପରେ ଉପନ୍ୟାସର ଖଳନାୟକ (Villain) ଜର୍ଜ ପିନ୍‌ଚନ୍‌ଙ୍କ ସ୍ଥିତି ପୁଣି ସଜାଗ ହୋଇଛି । କର୍ଣ୍ଣେଲ୍ ପିନ୍‌ଚନ୍ ମୃତ୍ୟୁ ପୂର୍ବରୁ 'ମାଇନେ' ନାମକ ରାଜ୍ୟରୁ କିଛି ଜମି ପାଇବା କଥା ସରକାରୀ ଘୋଷଣାରେ କୁହାଯାଇଥିଲା । ମାତ୍ର ସେ ମରିଗଲା ପରେ ଉକ୍ତ ଜମିର କାଗଜପତ୍ର କେଉଁଠି ରହିଲା ତାହା କେହି ପାଇଲେ ନାହିଁ । କ୍ଲିଫର୍ଡ଼ ପିଲାବେଳେ ମଜାମଜା ଗପ କହୁଥିଲେ । ସେହି ସମୟରେ ହୁଏତ ଜର୍ଜଙ୍କୁ ସେ ଏହି କାଗଜପତ୍ର ସମ୍ପର୍କରେ ଏକ କପୋଳକଳ୍ପିତ କାହାଣୀ କହିଥିଲେ । ଜର୍ଜ ସେହି କଥାକୁ ମନେରଖି ଏବଂ ତାହାକୁ ସତ ଭାବି କଥା ଆଦାୟ ପାଇଁ କ୍ଲିଫର୍ଡ଼ଙ୍କ ନିକଟକୁ ଆସିବା ପାଇଁ ବ୍ୟାକୁଳ ହୋଇଉଠିଛନ୍ତି । ଏକ ବର୍ଷଣମୁଖର ଦିନରେ ଏହି ଅର୍ଥ-ପିପାସୁ, ଷଡ଼ଯନ୍ତ୍ରକାରୀ ଜର୍ଜ ଫର୍ଡ଼ଙ୍କୁ ତାଙ୍କ ସହ ଭେଟ କରାଇବା ପାଇଁ ହେପ୍‌ସିବାଙ୍କୁ ବାଧ୍ୟ କରିଛନ୍ତି । ଯଦି ହେପ୍‌ସିବା ତାଙ୍କ ସହ କ୍ଲିଫର୍ଡ଼ଙ୍କୁ ଦେଖାକରିବାର ସୁଯୋଗ ନଦିଅନ୍ତି, ତେବେ ସେ କ୍ଲିଫର୍ଡ଼ଙ୍କୁ ପାଗଳ ବୋଲି କହିବୁଲିବେ ଏବଂ ପାଗଳଖାନାରେ ପୂରାଇ ଦେବାର ସମସ୍ତ ବନ୍ଦୋବସ୍ତ କରିଦେବେ ବୋଲି ଧମକ୍ ଦେଇଛନ୍ତି । ଏଥିରେ ହେପ୍‌ସିବା ବାଧ୍ୟହୋଇ କ୍ଲିଫର୍ଡ଼ଙ୍କୁ ଡାକିବା ପାଇଁ ତାଙ୍କ କୋଠରୀକୁ ଯାଇଛନ୍ତି । ଅପର ପକ୍ଷରେ ଜର୍ଜ ଓ ହେପ୍‌ସିବାଙ୍କ ତର୍କବିତର୍କରେ ଜର୍ଜ ଖୁବ୍ ରାଗିଯାଇଥିଲେ । ପିନ୍‌ଚନ୍ ପରିବାରର ଗୋଟିଏ ବଡ଼ ଦୁର୍ବଳତା ଥିଲା, ଯଦି ସେମାନେ ରାଗିଯାଆନ୍ତି, ତେବେ

ସେମାନଙ୍କର ରକ୍ତଗୃପ ବଢ଼ିଯାଏ ଓ ଅତି ଅସହାୟ ଭାବେ ସେମାନେ ମୃତ୍ୟୁବରଣ କରନ୍ତି । ଏହିପରି ଏକ ଏକ ଘଟଣାରେ କର୍ଣ୍ଣେଲ୍ ପିନ୍‌ଚନ୍ ମୃତ୍ୟୁବରଣ କରିଥିଲେ । ମାତ୍ର ଲୋକମାନେ ଏକଥାର ଯଥାଯଥ ଅନୁଶୀଳନ କରନପାରି କୁହନ୍ତି ପିନ୍‌ଚନ୍ ପରିବାରର ଏପରି ମୃତ୍ୟୁ ହେଉଛି ମାଉଲେଙ୍କ ଅଭିଶାପର ଫଳ । ଏକଥା କହିବାର ଅବଶ୍ୟ ଅନେକ ଯଥାର୍ଥ କାରଣ ଥିଲା । ଏବେ ଏହିପରି ଏକ ଅସ୍ୱାଭାବିକ ମୃତ୍ୟୁ ଘଟଣାର ପୁନରାବୃତ୍ତି ଘଟିଲା·ସେହି 'The House of Seven Gables'ରେ । ଅତ୍ୟଧିକ କ୍ରୋଧବଶତଃ ଜର୍ଜଙ୍କ ରକ୍ତଗୃପ ବଢ଼ିଯାଇଥିଲା ଓ ହେପ୍‌ସିବା କ୍ଲିଫର୍ଡଙ୍କ ରୁମ୍‌ରୁ ଫେରିଆସିଲା ବେଳକୁ ସେ ଚେୟାର ଉପରେ ରକ୍ତବାନ୍ତି କରି ମରିଯାଇଥିଲେ ।

ଉପନ୍ୟାସର ଖଳନାୟକ ଜର୍ଜ ମୃତ୍ୟୁବରଣ କଲାପରେ ହେପ୍‌ସିବା ଓ କ୍ଲିଫର୍ଡଙ୍କ ଜୀବନରେ ସୁଖମୟ ସମୟ ଆସିଛି । ଜର୍ଜଙ୍କ ଉତ୍ତରାଧିକାରୀ ଭାବେ ସେମାନେ ତାଙ୍କର ସମସ୍ତ ସମ୍ପତ୍ତିର ମାଲିକ ହୋଇଛନ୍ତି । ତାଙ୍କ ଘରେ ଭଡ଼ାରେ ଥିବା ଅଥଚ ସୁଖଦୁଃଖର ଏକପ୍ରକାର ସାଥୀହୋଇ ରହିଥିବା ହୋଲ୍‌ଗ୍ରେଭ (ଯିଏକି ଜଣେ ମାଉଲେ ବଂଶୀୟ ଯୁବକ) ହେପ୍‌ସିବାଙ୍କ ଝିଅଙ୍କ ଫୋଏବ୍‌କୁ ଭଲପାଇ ବସିଥିଲେ । ପରିଶେଷରେ ଏହି ଦୁଇ ତରୁଣ ତରୁଣୀଙ୍କ ମିଳନ ଉପନ୍ୟାସଟିକୁ ବେଶ୍ ଚିତ୍ତାକର୍ଷକ କରିପାରିଛି । ଭେନର୍ କକା ଯିଏକି ଉପନ୍ୟାସଟିକୁ ଗତିଶୀଳ କରାଇବା ପାଇଁ କେତେକାଂଶରେ ସହାୟକ, ହାସ୍ୟରସ ଅବତାରଣା କରିବାରେ ଧୂରନ୍ଧର ଓ ବୌଦ୍ଧିକ ଜ୍ଞାନର ପରିଚୟ ଦେବାକୁ ସକ୍ଷମ ହୋଇଥିଲେ ତାଙ୍କ କ୍ଲିଫର୍ଡ ଅନ୍ତରର ସହିତ ଭଲ ପାଉଥିଲେ । ତେଣୁ ସେ ମଧ୍ଯ ହେପ୍‌ସିବା ଓ କ୍ଲିଫର୍ଡଙ୍କ ସୁଖମୟ ଜୀବନର ଆରମ୍ଭ ଅବସରରେ ବେଶ୍ ଉତ୍ଫୁଲ୍ଲିତ ହୋଇଉଠିଥିଲେ । ଏହି ଅବସରରେ ଛଦ୍ମ ବେଶୀ ମାଉଲେ ହୋଲ୍‌ଗ୍ରେଭ୍ ମାଇନେ ରାଜ୍ୟରୁ ପିନ୍‌ଚନ୍‌ମାନେ ପାଇବାକୁ ଥିବା ଜମିର କାଗଜପତ୍ର ଅତି ଆଶ୍ଚର୍ଯ୍ୟଜନକ ଭାବେ କାନ୍ଥର ଗୋଟିଏ ଅଜ୍ଞାତ ଥାକ (Rack)ରୁ ପାଇଛନ୍ତି । କିନ୍ତୁ ଏହି ଜମିର ଆବଶ୍ୟକତା କ୍ଲିଫର୍ଡ ଓ ହେପ୍‌ସିବାଙ୍କ ପାଇଁ ଆଦୌ ନଥିଲା କହିଲେ ଚଳେ । କାରଣ ସେମାନେ ଏବେ ଅଚଳାଚଳ ସମ୍ପତ୍ତିର ଅଧିକାରୀ ହୋଇସାରିଥିଲେ । ପୁଣି ମାଉଲେଙ୍କ ଜମି ଉପରେ ନିର୍ମିତ ଏହି House of the Seven Gables ଘରଟି ପ୍ରତି ସେମାନଙ୍କର ଖୁବ୍ ଘୃଣା ଓ ବିତୃଷ୍ଣାଭାବ ଆସିଯାଇଥିଲା । ସେଥିପାଇଁ ସେମାନେ ଏହି ଘର ପରିତ୍ୟାଗ ଜର୍ଜଙ୍କ ନବନିର୍ମିତ ବିଳାସକକ୍ଷକୁ ରହିବାପାଇଁ ଚାଲିଯାଇଥିଲେ; ସେମାନଙ୍କ ସାଙ୍ଗରେ ଥିଲେ ଭେନର୍‌କକା, ହୋଲ୍ ଗ୍ରେଭ୍ ଓ ଫୋଏବ୍ ।

ଏହିଠାରେ ଉପନ୍ୟାସଟିର ପରିସମାପ୍ତି ଟାଣିଛନ୍ତି ଔପନ୍ୟାସିକ ହଥର୍ଣ୍ଣ । ଉପନ୍ୟାସଟି ମଧ୍ୟରେ ହଥର୍ଣ୍ଣଙ୍କର ବହୁ ବ୍ୟକ୍ତିଗତ ମତ ଓ ସ୍ୱେଚ୍ଛାକୃତ ଚିନ୍ତାଧାରା ପ୍ରକାଶ ପାଇଛି, ଯାହା ଅନେକ ସମୟରେ ଘଟଣାର ପ୍ରବାହରେ ବାଧାସୃଷ୍ଟି କରିଛି; ଘଟଣାକୁ

ଅତରଞ୍ଜିତ କଳ୍ପପର ମନେହୋଇଛି । କିନ୍ତୁ ଏହା ସତ୍ତ୍ୱେ ମାନିବାକୁ ହେବ ଯେ, ଏଥିରେ ହଥର୍ଣ୍ଣ ଅବତାରଣା କରିଥିବା କେତେକ ଅନାବଶ୍ୟକ ଘଟଣା ମଧ୍ୟ ଉପନ୍ୟାସଟିକୁ ପରିଣତ ଦୃଷ୍ଟିରୁ ଗତିଶୀଳ କରାଇବାରେ ସହାୟକ ହୋଇପାରିଛି । ଏଥିରେ ଥିବା 'ଆଲିସେ ପିନ୍‌ଚନ୍' କାହାଣୀଟି କହିବା ପରିପ୍ରେକ୍ଷୀରେ 'ମାଉଲେଙ୍କ ବଂଶଧରମାନେ ଜୀବନ୍ତଭାବେ କିପରି ପିନ୍‌ଚନ୍ ପରିବାରରେ ସେମାନଙ୍କ ଜମିକୁ ନେଇଥିବା ଜନିତ ଧାରରେ କୌଶଳକ୍ରମେ ଆଧିପତ୍ୟ ଓ ପ୍ରଭାବ ବିସ୍ତାର କରି ସେମାନଙ୍କୁ ଖୁବ୍ ହଇରାଣ କରିଥିଲେ. ତାହା "ଛଦ୍ମବେଶୀ ମାଉଲେ—ହୋଲ୍‌ଗ୍ରେଭ୍'ଙ୍କ ଦ୍ୱାରା ନାୟିକା ଫୋଏବ୍‌କୁ ଶୁଣାଯାଇଥିଲା; ଯାହାର ଉଦ୍ଦେଶ୍ୟ ଥିଲା 'ମଣିଷର ନିଃଶ୍ୱାସ ବା ଅଭିଶାପ ନିଶ୍ଚୟ ଫଳବତୀ ହୁଏ—" ଏହି କଥା ପ୍ରମାଣ କରିବା ।

'The House of the Seven Gables' ଉପନ୍ୟାସର ମୂଳପିଣ୍ଡ ଏହି କାହାଣୀକୁ ନେଇ ଉଦ୍‌ଘାଟିତ । ଏହା ଯଥାର୍ଥରେ ଏକ ସ୍ଫୀତକୃତ ଗଳ୍ପ । କିନ୍ତୁ ଏହାର ପରିବେଷଣ କୌଶଳ ପାଇଁ ଏହା ଯଥାର୍ଥରେ ଏକ ଶକ୍ତିଶାଳୀ ଉପନ୍ୟାସର ମର୍ଯ୍ୟାଦା ଲାଭ କରିଛି କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ଉପନ୍ୟାସଟି ସମ୍ପର୍କରେ ପୁଣି କୁହାଯାଇ-ପାରେ ଯେ, ଏଥିରେ ଗଳ୍ପ ଅପେକ୍ଷା ଗଳ୍ପର ପରିବେଷଣ କୌଶଳ ଅଧିକ ଉଲ୍ଲେଖ-ଯୋଗ୍ୟ । ଅତି ସାଧାରଣ ବୈଚିତ୍ର୍ୟହୀନ ଗଳ୍ପ, ନିପୁଣ ପରିବେଷଣ ଗୁଣରେ କିପରି ଏକ ଉଚ୍ଚଶ୍ରେଣୀର ଉପନ୍ୟାସ ସୃଷ୍ଟି କରିପାରେ ତାହାର ଏକ ଜ୍ୱଳନ୍ତ ଉଦାହରଣ 'The House of the Seven Gables' ଉପନ୍ୟାସଟି ଆଲୋଚିତ ଉପନ୍ୟାସଟିର ପରିଣତି ଗୌଣ; କିନ୍ତୁ ପ୍ରତି ପରିଣତି (Anti climax) ମୁଖ୍ୟ ମାଥିଉ ମାଉଲେଙ୍କୁ ଯାଦୁକର ଭାବେ ପ୍ରମାଣିତ କରି ତାଙ୍କୁ ଫାଶୀଖୁଣ୍ଟରେ ଝୁଲାଇ ତାଙ୍କ ଜମିକୁ କଲୋନେଲ୍ ହସ୍ତଗତ କଲାପରେ ଗଳ୍ପଟି ପହଞ୍ଚିଛି ପରିଣତିରେ । କିନ୍ତୁ ସେ ପର୍ଯ୍ୟନ୍ତ ଗଳ୍ପର କ୍ରମପରିଣତି ଗତିହୀନ ଓ ସ୍ଥାଣୁ । କିନ୍ତୁ ଏହି କାର୍ଯ୍ୟ ସମାପନ ପରେ ଉପସଂହାର ପର୍ଯ୍ୟନ୍ତ ଉପନ୍ୟାସର ଗତି ଯେପରି ଦ୍ରୁତ ସେହିପରି ମର୍ମସ୍ପର୍ଶୀ ।

କର୍ମଫଳ ଓ ଭାଗ୍ୟରେ ବିଶ୍ୱାସ କରୁଥିବା ଔପନ୍ୟାସିକ ହଥର୍ଣ୍ଣଙ୍କ ଏହି ଉପନ୍ୟାସ ଘଟଣାକ୍ରମରେ ଏକ ଟ୍ରାଜେଡ୍ରି ସତ୍ୟ ମାତ୍ର ପରିଣତିରେ ଏହାର ମିଳନାତ୍ମକ ଭାବ ଉପନ୍ୟାସଟିକୁ ବେଶ୍ କାଳଜୟୀ କରିପାରିଛି ।

ପୂର୍ବରୁ କୁହାଯାଇଛି ଯେ, ଏହି ଉପନ୍ୟାସର କାହାଣୀ, ଶୈଳୀ ଚିନ୍ତାଧାରା, ଚରିତ୍ର ଆଦି ନାନା ଘଟଣା ସହ ଆମର କାଳଜୟୀ ଉପନ୍ୟାସ 'ଛମାଣ ଆଠଗୁଣ୍ଠ'ର ଅପୂର୍ବ ସାମ୍ୟ ପରିଲକ୍ଷିତ ହୁଏ । ତେଣୁ ଏହାର ବିଶ୍ଲେଷଣ ପାଇଁ 'The House of the Seven Gables' ଉପନ୍ୟାସର କାହାଣୀ ଉପସ୍ଥାପନାର ଆବଶ୍ୟକତା ଯେପରି ଥିଲା,

ସେହିପରି ଆବଶ୍ୟକତା ଅଛି ଏ କ୍ଷେତ୍ରରେ, 'ଛମାଣ ଆଠଗୁଣ୍ଠ' ଉପନ୍ୟାସର କଥାବସ୍ତୁ ଅବତାରଣାରେ । ତେଣୁ 'ଛମାଣ ଆଠଗୁଣ୍ଠ' ଉପନ୍ୟାସର କଥାବସ୍ତୁ ଏହି ପରିପ୍ରେକ୍ଷୀରେ ଉପସ୍ଥାପନା କରାଯାଇପାରେ ।

## "ଛମାଣ ଆଠଗୁଣ୍ଠ" ଉପନ୍ୟାସର ସଂକ୍ଷିପ୍ତ କଥାବସ୍ତୁ :

"ଏହି ଉପନ୍ୟାସ (ଛମାଣ ଆଠଗୁଣ୍ଠ) ଲିଖିତ ରାମଚନ୍ଦ୍ର ମଙ୍ଗରାଜର ମକଦ୍ଦମାର ବିବରଣ ଯେତେବେଳେ 'ଉତ୍କଳସାହିତ୍ୟ'ରେ ପ୍ରକାଶିତ ହେଉଥିଲା, ସେତେବେଳେ ମଫସଲରୁ କେତେକ ଅଙ୍କଲୋକ ମକଦ୍ଦମାର ବିଚାର ଦେଖିବା ପାଇଁ କଟକ ଆସି-ଥିଲେ ।" (୪)

ଏଥିରୁ ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ' ଉପନ୍ୟାସର ବର୍ଣ୍ଣନା ଯେ କେତେ ଜୀବନ୍ତ ତାହା ସ୍ପଷ୍ଟ ଅନୁମେୟ । 'ପୁଣି "ଓଡ଼ିଆସାହିତ୍ୟରେ "ଛମାଣ ଆଠଗୁଣ୍ଠ' ପରି ଅନ୍ୟ କୌଣସି ଉପନ୍ୟାସ ପାଠକକୁ ଏପରି ବିଚଳିତ କରିନାହିଁ; ପାଠକର ଚିତ୍ତବୃତ୍ତିକୁ ଏପରି ଅଭିଭୂତ କରିନାହିଁ, ପ୍ରାଣର ସୂକ୍ଷ୍ମ ତନ୍ତ୍ରୀକୁ ଏପରି ଗଭୀରଭାବେ ଆନ୍ଦୋଳିତ କରିନାହିଁ । ଆଧୁନିକ ଓଡ଼ିଆ ସାହିତ୍ୟର ଯାତ୍ରାପଥରେ 'ଛମାଣ ଆଠଗୁଣ୍ଠ' ଏକ ନିର୍ଦ୍ଦିଷ୍ଟ ମାଇଲ୍‌ଷ୍ଟମ୍ଭ ରୂପେ ପ୍ରୋଥିତ ହୋଇଥିଲା । ଆଜି ସୁଦୀର୍ଘ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ବ୍ୟାପୀ ଯାତ୍ରା ପରେ ସୁଦ୍ଧା ଓଡ଼ିଆ ଉପନ୍ୟାସ ଏହାଠାରୁ ଖୁବ୍ ବେଶି ଦୂର ଯାଇପାରିନାହିଁ । ଓଡ଼ିଆ ଉପନ୍ୟାସରେ ବହୁ ନୂଆ ଉଦ୍ୟମ ହୋଇଛି, ନୂଆ ପରୀକ୍ଷା ହୋଇଛି, ନୂଆ ଷ୍ଟମ୍ଭ ସ୍ଥାପିତ ହୋଇଛି···ତଥାପି ଏହି ଉପନ୍ୟାସଟିର ମହିମା ଓ ମର୍ଯ୍ୟାଦାକୁ କେହି କ୍ଷୁଣ୍ଣ କରିପାରିନାହିଁ । ଖାଲି ଓଡ଼ିଆସାହିତ୍ୟ ନୁହେଁ, ସମଗ୍ର ସାର୍ବଜନୀନ ସାହିତ୍ୟରେ ଏହା ଏକ ଅକ୍ଷୟ, ଅବ୍ୟୟ ଓ ଅପୂର୍ବ ସୃଷ୍ଟି ।" (୫)

'ଛମାଣ ଆଠଗୁଣ୍ଠ' ଉପନ୍ୟାସଟି ଯଥାର୍ଥରେ ଏକ ଷ୍ଟୀଡିକୃତ ଗଳ୍ପ । କିନ୍ତୁ ଏହାର ଅପୂର୍ବ ପରିବେଷଣ ଶୈଳୀ ହେତୁ ଏହା ବାସ୍ତବିକ ଏକ କାଳଜୟୀ ଉପନ୍ୟାସ ହେବାର ଗୌରବ ଅର୍ଜନ କରିପାରିଛି । ଏହି ଉପନ୍ୟାସର ମୁଖ୍ୟ ନାୟକ ରାମଚନ୍ଦ୍ର ମଙ୍ଗରାଜ ଏକ ନୂତନ ସୃଷ୍ଟ ଜମିଦାର—ହୃଦୟରେ ତାର ତୀବ୍ର ଅର୍ଥ ଲାଲସା—ମନରେ ତାର ପ୍ରତିଷ୍ଠିତ ହେବାର ମୋହ । ଫତେପୁର ସରସଣ୍ଡର ସର୍ବରାକାର ରାମଚନ୍ଦ୍ର ମଙ୍ଗରାଜ ଆପଣା ବଦ୍ଧ୍ୟା-ବୁଦ୍ଧି ବଳରେ ଛଳେ ବଳେ, କୌଶଳେ ବହୁ ସମ୍ପତ୍ତି ଉପାର୍ଜନ କରିଛନ୍ତି ଏବଂ

(୪) ଫକୀରମୋହନ, ଆତ୍ମଜୀବନ ଚରିତ—ପୃଷ୍ଠା-୧୭୫

(୫) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା-୮୪ ।

ଶେଷରେ ସେ ହୋଇଛନ୍ତି ଜମିଦାର । ପରସ୍ୱ ହରଣକରି, ପର ପତ୍ନୀ ସ୍ତ୍ରୀଙ୍କୁ, ସେ ନିଜ ସମ୍ପତ୍ତିକୁ ଚକ୍ରବୃଦ୍ଧି ହାରରେ ବଢ଼ାଇ ଚାଲିଛନ୍ତି । ବହୁ ଅସହାୟ ନିରୀହ, ଦରିଦ୍ର ବ୍ୟକ୍ତିମାନଙ୍କର ସମ୍ପତ୍ତିକୁ ସେ ଲୁଣ୍ଠନ କରିଛନ୍ତି । ତାଙ୍କର ଉଦଗ୍ର ଅର୍ଥ ଓ ଭୂମି ଲାଳସା ଅଗ୍ନିଭଳି ଜଳିଉଠିଛି । ନିଜ ଚେଷ୍ଟାରେ ଦାଣ୍ଡର ଭିକାରୀରୁ ସେ ହୋଇଛନ୍ତି ଜମିଦାର ରାମଚନ୍ଦ୍ର ମଙ୍ଗରାଜ । ଏହି ଧନ ସଂଗ୍ରହ ଓ ଜମିଦାରୀ ଅଧିକାର ଲାଗି ମଙ୍ଗରାଜ ସଂପୂର୍ଣ୍ଣରୂପେ ଅସାଧୁ ପନ୍ଥାର ପଥିକ ସାଜିଥିଲେ । ତାଙ୍କର ସେହି ଅସତ୍ ଉପାୟରେ ଧନଶୋଷଣର ଲାଳସା ତାଙ୍କ ଜୀବନକୁ କରିଥିଲା ନର୍କଗାମୀ ।

ଜମିଦାର ଶେଖ୍ କରାମତ ଅଲିଙ୍କ ଅଯୋଗ୍ୟ ପୁତ୍ର ଶେଖ୍ ଦିଲ୍‌ଦାର ମିଆଁଙ୍କୁ କୂଟ, କୌଶଳ ପ୍ରୟୋଗ ଦ୍ୱାରା ପ୍ରତାରିତ କରି ମଙ୍ଗରାଜେ ଖଜଣା ଅସୁଲର ଦାୟିତ୍ୱ ଗ୍ରହଣକରି ପରେ ପରେ ନିଜ ନାମରେ ଜମିଦାରୀ ମଧ୍ୟ ନିଲାମ ଧରିଛନ୍ତି । ଏତିକରେ ମଙ୍ଗରାଜଙ୍କ ଅସଦ୍‌କାମନା ଚରିତାର୍ଥ ହୋଇନାହିଁ; ବରଂ ଅଧିକରୁ ଅଧିକ ଧନ ସେ ପ୍ରଜାମାନଙ୍କଠାରୁ ଆଦାୟ କରିଛନ୍ତି, ଅସତ୍ ଉପାୟରେ । ଧନସମ୍ପତ୍ତି ବହୁ ଲୋକଙ୍କର ଆତ୍ମସାତ୍ କରିଛନ୍ତି ଅସତ୍ ମାର୍ଗରେ । ନିଜ ଗ୍ରାମ ନିକଟସ୍ଥ ରତନପୁର ବାଘସିଂହ ଜମିଦାର ବଂଶର ମଧ୍ୟ ସେ ପ୍ରଭୂତ କ୍ଷତି ସାଧନ କରିଛନ୍ତି । ଏହାର କାରଣରେ କୁହାଯାଇପାରେ ଯେ, କୁଳଆଭିଜାତ୍ୟ ତାଙ୍କର ନଥିଲା । ନିଜ ଚେଷ୍ଟାରେ ଦାଣ୍ଡର ଭିକାରୀରୁ ସେ ହୋଇଥିଲେ ଜମିଦାର । ତେଣୁ ସେ କୁଳଆଭିଜାତ୍ୟକୁ ଘୃଣା କରୁଥିଲେ । ସେହି ହେତୁ ବାଘସିଂହ ବଂଶର ପତନ ପାଇଁ ସେ ସର୍ବଦା ଚିନ୍ତା କରୁଥିଲେ । ମୂଳଗଳ୍ପରେ ସାଙ୍ଗରେ ବାଘସିଂହ ବଂଶର କୌଣସି ସଂପର୍କ ନଥିଲେହେଁ ପରମ୍ପରାଗତ କୁଳଆଭିଜାତ୍ୟ ସହିତ ନୂତନ ସୃଷ୍ଟ କୁଳଆଭିଜାତ୍ୟର ଦ୍ୱନ୍ଦ୍ୱକୁ ଦେଖାଇବା ପାଇଁ ଔପନ୍ୟାସିକ ବାଘସିଂହ ବଂଶ ଓ ରାମଚନ୍ଦ୍ର ମଙ୍ଗରାଜଙ୍କ ମଧ୍ୟରେ ସଂଘର୍ଷ ସୃଷ୍ଟିକରି ଏହି ଉପନ୍ୟାସରେ ତା'ର ମନୋଜ୍ଞ ବର୍ଣ୍ଣନା କରିଅଛନ୍ତି ।

ରାମଚନ୍ଦ୍ର ମଙ୍ଗରାଜ ଜମିଦାର ହେଲାପରେ ଚଂପାନାମ୍ନୀ ଉଦ୍‌ବାସ୍ତୁ ଚରିତ୍ର ସଂପନ୍ନା ସ୍ତ୍ରୀଲୋକଟିର ସମ୍ପର୍କରେ ଆସି ଗୋଟିକ ପରେ ଗୋଟିଏ ଅନ୍ୟାୟ କରିଚାଲିଛନ୍ତି । ଶ୍ୟାମମଲ୍ଲ ରାମଚନ୍ଦ୍ର ମଙ୍ଗରାଜଙ୍କ ମାଉସୀ ପୁଅ ଭାଇ । ସହର ପାଇଁ ପିଆଜ ଖାଇଥିବା ହେତୁ ତାକୁ ପ୍ରାୟଶ୍ଚିତ୍ତ କରାଇବା ଆଳରେ ରାମଚନ୍ଦ୍ର ତାର ସମ୍ପତ୍ତିକୁ କରଗତ କରିଛନ୍ତି, ପୁଣି ଶ୍ୟାମ ଗୋଷ୍ଠୀଇତର ତଳ ଉପାଡ଼ିବା ପରି ଅନ୍ୟାୟ କର୍ମରେ ସ୍ୱୟଂ ରାମଚନ୍ଦ୍ର ମଙ୍ଗରାଜ ସିଧାସଳଖ ହସ୍ତକ୍ଷେପ କରିଛନ୍ତି । ନଚେତ୍ ତାଙ୍କ କୃତ ଅନ୍ୟସବୁ ଅନ୍ୟାୟ କର୍ମରେ ଚମ୍ପାର ସାହାଯ୍ୟ ନେଇ ଗୋଟିଏ ପରେ ଗୋଟିଏ ଦୁଷ୍କୃତ ସେ କରିଯାଇଛନ୍ତି । ମଙ୍ଗରାଜଙ୍କ ତିନୋଟି ଅପକର୍ମ ମଧ୍ୟରେ—ରତନପୁରର ଡମମାନଙ୍କୁ ଦାରୋଗା ସାହାଯ୍ୟରେ ଜେଲ୍‌ଦେବା, ଚମ୍ପାର ସହାୟତାରେ ବାଘସିଂହ ବଂଶର ଗୃହଦାହ କରି ତାଙ୍କୁ ଉଚ୍ଛନ୍ନ କରିବା ଏବଂ ଭାରିଆ ଓ ଭଗିଆଙ୍କ 'ଛ'ମାଣ ଆଠଗୁଣ୍ଠ' ଜମି ଅପହରଣ କରି

ସେମାନଙ୍କୁ ତଲତଲାନ୍ତ କରିବା ହେଉଛି ପ୍ରଧାନ । ଏହା ବ୍ୟତୀତ ମଙ୍ଗରାଜ ଆହୁରି ଅନେକ ଦୁଷ୍କର୍ମରେ ଲିପ୍ତ, କିନ୍ତୁ ତାଙ୍କର ଶୋଷଣ, ପେଷଣ ଓ ଅତ୍ୟାଚାର ବିଶେଷକରି ଉପରୋକ୍ତ ତିନୋଟି ଦୁଷ୍କର୍ମ ମଧ୍ୟରେ ଅଧିକ ଭାବେ ଉଜ୍ଜ୍ୱଳ ଉଠିଛି ।

ରାମଚନ୍ଦ୍ର ମଙ୍ଗରାଜ ନିଜର ଅଯୋଗ୍ୟ ପୁତ୍ର, ସରଳ ନିଷ୍କପଟ, ଧର୍ମପ୍ରାଣା, ସତୀସାଧ୍ୱୀ ପତ୍ନୀଙ୍କୁ ଉପେକ୍ଷାକରି ଚମ୍ପାନାମ୍ନୀ କୁଟିଳା ନାରୀ ସହାୟତାରେ 'ସାରିଆ-ଭଗିଆ'ଙ୍କ 'ଛ'ମାଣ ଆଠଗୁଣ୍ଠ'କୁ ଆତ୍ମସାତ କରିବାର ଯେଉଁ ଦୁର୍ବାର ଲାଳସା କରିଛନ୍ତି, ତାହା ହୋଇଛି ଆଲୋଚ୍ୟ ଉପନ୍ୟାସର ମୁଖ୍ୟ ଘଟଣାପ୍ରବାହ । ଏହି ଘଟଣାକୁ କେନ୍ଦ୍ରକରି ରାମଚନ୍ଦ୍ର ମଙ୍ଗରାଜଙ୍କର ସର୍ବନାଶ ଘଟିଛି । କୃତକର୍ମର ଫଳରେ ସେ ଆପଣାର ମରଣକୁ ଡାକି-ଆଣିଛନ୍ତି ।

ମଙ୍ଗରାଜଙ୍କର ପ୍ରଧାନ ଅପକର୍ମ ହେଉଛି ସାରିଆ ଓ ଭଗିଆଙ୍କ 'ଛ'ମାଣ ଆଠଗୁଣ୍ଠ' ଜମିକୁ ଅପହରଣ କରିବା ଘଟଣା । ଏହାକୁ କେନ୍ଦ୍ରକରି ଉପନ୍ୟାସଟି ହୋଇଛି ଗତିଶୀଳ । ଆଉସବୁ ଘଟଣା ଏହି ଘଟଣା ବୃତ୍ତର ଏକ ଏକ ସହାୟକ ଉପାଦାନ । ପରସ୍ୱ ଲୋଭୀ, ପର ସ୍ୱତ୍ୱାପହାରୀ, ଧୂର୍ତ୍ତ, ଗାଉଁଲି ଜମିଦାର, ଆଭିଜାତ୍ୟହୀନ ରାମଚନ୍ଦ୍ର ମଙ୍ଗରାଜଙ୍କର ଦୃଷ୍ଟି ପଡ଼ିଛି ସେହି ଗ୍ରାମର ତନ୍ତୀ ଦମ୍ପତ୍ତି ଭଗିଚନ୍ଦ ଓ ସାରିଆର ପୈତୃକ ସମ୍ପତ୍ତି, ବାହାଲ ନିଷ୍କର ଜମି 'ଛ'ମାଣ ଆଠଗୁଣ୍ଠ' ଉପରେ । ଏହି ଜମିକୁ ଅପହରଣ କରିବା ପାଇଁ କୁଳଟା, ଭୟଙ୍କରୀ ନାରୀ ଚମ୍ପା ମଙ୍ଗରାଜଙ୍କୁ ଉପାୟ ବତାଇଛି । ଚମ୍ପା ସାରିଆର ମାତୃତ୍ୱ କାମନାକୁ ଅସ୍ତ୍ରରୂପେ ବ୍ୟବହାର କରିଛି । ସାରିଆ ଓ ଭଗିଆ ନିଃସନ୍ତାନ । ଏହି ହେତୁ ସେମାନଙ୍କ ମନରେ ଦାରୁଣ ଦୁଃଖ । ସାରିଆର ନିଷ୍କପଟ କୋମଳ ମନରେ ଚମ୍ପା ସୁଯୋଗ ଉଣ୍ଡି ବିଷ ବପନ କଲା । ସାରିଆକୁ ସେ ବୁଝାଇଦେଲା—ବୁଢ଼ୀ ମଙ୍ଗଳା ଚାହିଁଲେ ତାର ସନ୍ତାନ ହେବ । ଏଥିପାଇଁ ସାରିଆକୁ ବୁଢ଼ୀମଙ୍ଗଳା ପାଇଁ ଗୋଟିଏ ମନ୍ଦିର କରିଦେବାକୁ ହେବ । ଦେଢ଼ଶହ ଟଙ୍କା ହେଲେ ମନ୍ଦିରଟିଏ ହୋଇଯିବ ଠିକ୍ କେନ୍ଦ୍ରାପଡ଼ାର ବଳଦେବ ଜିଉ ମନ୍ଦିର ପରି । ସାରିଆ ଏତେଟଙ୍କା ପାଇବ କେଉଁଠୁ ? ତେଣୁ ସେ ନିରାଶ ହୋଇଗଲା । ଚମ୍ପା କିନ୍ତୁ ନଛୋଡ଼ବନ୍ଧା । ସାରିଆର ମନ ମରିଯିବା ଦେଖି ସେ ମଙ୍ଗରାଜଙ୍କ କ୍ରୋଧଜନିତ ଭୟ ଦେଖାଇଛି । ଅପର ପକ୍ଷରେ 'ଛ'ମାଣ ଆଠଗୁଣ୍ଠ' କଣ୍ଟକବଳା କରିଦେଲେ ମଙ୍ଗରାଜଙ୍କଠାରୁ ଟଙ୍କା ମିଳିବ ବୋଲି ସେ ସାରିଆକୁ ଆଶ୍ୱାସନା ଦେଇଛି । ଭୟ ଏବଂ ଆଶ୍ୱାସନାରେ ସାରିଆର ନାରୀତ୍ୱର ସନ୍ତାନ କାମନାକୁ ସେ ଜାଗ୍ରତ କରି ତା' ମନକୁ ଦୁର୍ବଳ କରିଦେଇଛି ।

ପରିଣତିରେ ନିରୀହ ତନ୍ତୀ ଦମ୍ପତ୍ତିଙ୍କ 'ଛ'ମାଣ ଆଠଗୁଣ୍ଠ' ଜମି ଚମ୍ପାର କୌଶଳରେ ମଙ୍ଗରାଜଙ୍କ ନିକଟରେ ବନ୍ଧାପଡ଼ିଛି । ଜମି ବନ୍ଧକ ରଖି ମଙ୍ଗରାଜ ଦେଉଳତୋଳା ପାଇଁ କୋଡ଼ିଏ ଶଗଡ଼ • ଅନାଜ୍ ପଥର ଡିମା ଦେଲେ । ସାରିଆ ପାଇଁ ଶାଢ଼ୀ ଦେଲେ ।

କିନ୍ତୁ ଯଥା ସମୟରେ ମଙ୍ଗରାଜ ଭଗିଚନ୍ଦ ନାମରେ ନାଲିସ କରି ଘର, ବାଡ଼ି, ଜମି ସବୁ ନିଲାମ କରିଦେଲେ । ଭଗିଚନ୍ଦ୍‌ର ସବୁ ଜିନିଷ ମଂଗରାଜଙ୍କ ଘରକୁ ବୁହାହୋଇ ଗଲା । ଶେଷରେ ଭଗିଆ ଦମ୍ପତ୍ତିଙ୍କ ନେତ ଗାଈକୁ ମଧ୍ୟ ମଂଗରାଜେ ବାନ୍ଧିନେଲେ । ଘର ଭଂଗା-ହେଲାପରେ ଭଗିଚନ୍ଦ ବାୟାହୋଇ ଏଣେତେଣେ ବୁଲିଲା । ସାରିଆ ଅଖିଆ ଅପିଆ ଆଠଦିନ ଆଠରାତି ମଂଗରାଜଙ୍କ ଘରପାଖରେ ପଡ଼ିରହି ପ୍ରାଣତ୍ୟାଗ କଲା । ରାମଚନ୍ଦ୍ର ମଂଗରାଜଙ୍କ ଶୋଷଣ, ଅତ୍ୟାଚାରର ଶିକାର ହୋଇ ନିରୀହ, ସରଳ, ନିଷ୍କପଟ ଭଗିଆ ଦମ୍ପତ୍ତିଙ୍କ ସୁଖର ସଂସାର ଉଚ୍ଛନ୍ନ ହୋଇଗଲା ।

ଏହି ଘଟଣାର ଠିକ୍ ପରେ ପରେ ରାମଚନ୍ଦ୍ର ମଂଗରାଜଙ୍କ ଜୀବନରେ ବିପର୍ଯ୍ୟୟ ଘନେଇ ଆସିଛି । ରାମଚନ୍ଦ୍ର ମଂଗରାଜ ନିଜର ପୈଶାଚିକ ପ୍ରବୃତ୍ତି ପାଇଁ କର୍ମଫଳର ଅଲଂଘନୀୟ ପ୍ରବୃତ୍ତି ବୃତ୍ତରେ ଘୂରିବୁଲୁଛନ୍ତି ଏକାନ୍ତ ଅସହାୟ ଭାବେ । ସାରିଆର ମୃତ୍ୟୁ ଅପରାଧରେ ମଂଗରାଜେ ଦଣ୍ଡିତ ହୋଇ ଜେଲ୍ ଯାଇଛନ୍ତି । ମକଦ୍ଦମା ଲଢ଼ିବାପାଇଁ ଓକିଲ ରାମଲାଲ୍ ତାଙ୍କର ସମସ୍ତ ଜମିଦାରୀ ବନ୍ଧକ ନେଇ କରଗତ କରିଛନ୍ତି । ଜେଲ୍ ହାଜତରେ ମଂଗରାଜେ ପାଲେ ଭଗିଆର ଦନ୍ତାଘାତରେ ମୁମୂର୍ଷୁ ପ୍ରାୟ ହୋଇ ଘରକୁ ଫେରିଛନ୍ତି । ପୂର୍ବକୃତ ପାପର ପ୍ରାୟଶ୍ଚିତ ସ୍ୱରୂପ ବେଦନାର ଜ୍ୱାଳା ତାଙ୍କ ପକ୍ଷରେ ଅସହ୍ୟ ହୋଇଉଠିଛି । ଫଳରେ ପତ୍ନୀହରା ମଂଗରାଜଙ୍କର ଶେଷ ମୁହୂର୍ତ୍ତ ଅନୁତାପ ଓ ଅନୁଶୋଚନାରେ ଜର୍ଜରିତ ହୋଇଉଠିଛି । ମଂଗରାଜ 'ଅ ମା- ଆଗୁ, ଅ-ମା-ଆଗୁ' ବୋଲି ପ୍ରଲାପ କରିଛନ୍ତି ଏବଂ ତାଙ୍କ ଦୃଷ୍ଟି ସମ୍ମୁଖରେ ଭଗିଆ ଓ ସାରିଆଙ୍କ ବିକଟାଳ ପ୍ରେତରୂପ ନୃତ୍ୟ କରିବାରେ ଲାଗିଛନ୍ତି । ସେମାନଙ୍କ ଭୟାବହ ଆକ୍ରମଣର ଆସନ୍ନ ବିଭୀଷିକାରୁ ଉଦ୍ଧାର ପାଇବାର ପନ୍ଥା ନପାଇ ମଂଗରାଜ ମୃତ୍ୟୁବରଣ କରିଛନ୍ତି ।

ଅପରପକ୍ଷରେ ମଂଗରାଜ ଜେଲ୍ ଯିବାଦିନ ଚମ୍ପା ତାଙ୍କଠାରୁ କୌଶଳରେ ଧନ ଭଣ୍ଡାରର ଚାବି ହସ୍ତଗତ କରିନେଇଥିଲା । ମଂଗରାଜଙ୍କ ନିଶାଖୋର୍ ପୁତ୍ରମାନଙ୍କର ନିର୍ବୋଧତାର ସୁଯୋଗ ନେଇ ସେ ଆପଣାର ବିଶ୍ୱସ୍ତ ଅନୁଗାମୀ ଗୋବିନ୍ଦା ଭଣ୍ଡାରୀ ସହାୟତାରେ ମଂଗରାଜଙ୍କ ସମସ୍ତ ଧନରତ୍ନକୁ ଏକାଠି ବାନ୍ଧି କଟକ ଉଦ୍ଦେଶ୍ୟରେ ପଳାଇଛି । ମାତ୍ର ବାଟରେ ଗୋବିନ୍ଦା ସହ ତାର ମତାନ୍ତର ହେବାରୁ ଗୋବିନ୍ଦା ରାତ୍ରିର ନିର୍ଜନତାରେ ତାକୁ ହତ୍ୟା କରିଛି ଓ ନିଜେ ସମସ୍ତ ଧନରତ୍ନ ଧରି ନଦୀ ପାରହେବା ସମୟରେ ଆସନ୍ନ ଭୟ ଓ ବିପଦର ବଶବର୍ତ୍ତୀ ହୋଇ ନଦୀଗର୍ଭକୁ ଲମ୍ଫ ପ୍ରଦାନ କରିବା ଫଳରେ କୁମ୍ଭୀର ତାକୁ ଖାଇଦେଇଛି । ଗୋବିନ୍ଦାର ମୃତ୍ୟୁ ସହିତ ଜମିଦାର ରାମଚନ୍ଦ୍ର ମଂଗରାଜଙ୍କର ଅସତ୍ ଉପାୟରେ ସଞ୍ଚିତ ସମସ୍ତ ଧନସମ୍ପତ୍ତି ମଧ୍ୟ ନଦୀଗର୍ଭରେ ନିଶ୍ଚିହ୍ନ ହୋଇଯାଇଛି । ଏହାହିଁ ହେଉଛି 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର କଥାବସ୍ତୁ ଏବଂ ଅତ୍ୟାଚାରୀ ପ୍ରପୀଡ଼କ, ଶୋଷଣକାରୀ, ପରସ୍ୱତ୍ୱ ଅପହରଣକାରୀ, ଲମ୍ପଟ, ଦୁଷ୍ଟଚରିତ୍ର ତଥା

କୃଟନୀତିରେ ଜଟିଳ ରାମଚନ୍ଦ୍ର ମଂଗରାଜଙ୍କ ଜୀବନକାହାଣୀର ଇତିବୃତ୍ତ । ଏହି ଉପନ୍ୟାସଟି ଫକୀରମୋହନଙ୍କ ଭୂମିକେନ୍ଦ୍ରିକ ଚେତନାର ପରିଚୟ ପ୍ରଦାନ କରେ । କଥାବସ୍ତୁ ଦୃଷ୍ଟିରୁ ବିଚାର କଲେ ଏହି ଉପନ୍ୟାସରେ 'ଛ'ମାଣ ଆଠଗୁଣ୍ଠ' ଜମିର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ ଓ ଚରିତ୍ର ଦୃଷ୍ଟିରୁ ବିଚାର କଲେ ରାମଚନ୍ଦ୍ର ମଙ୍ଗରାଜ ଓ ତାଙ୍କ ପୈଶାଚିକ ପ୍ରକୃତିର ଭୂମିକା ଆଲୋଚ୍ୟ ଉପନ୍ୟାସରେ ବେଶ୍ ଗୁରୁତ୍ୱପୂର୍ଣ୍ଣ ।

'ଛ'ମାଣ ଆଠଗୁଣ୍ଠ'ର କଥାବସ୍ତୁ ଅତି ସରଳ; ମାତ୍ର ପରିବେଷଣ ଶୈଳୀର ବୈଚିତ୍ର୍ୟ ଏହି ଉପନ୍ୟାସଟିକୁ ବିଶ୍ୱସାହିତ୍ୟରେ ଏକ ବିଶିଷ୍ଟ ଉପନ୍ୟାସ ହେବାର ଗୌରବ ପ୍ରଦାନ କରିଛି । ଏହି ଉପନ୍ୟାସରେ ପରିଣତି ଆସିଛି ଠିକ୍ ଗଳ୍ପ ଆରମ୍ଭର କିଛି ସମୟ ପରେ । ଅର୍ଥାତ୍ ଜମିଦାର ମଂଗରାଜ ତନ୍ତୀ ଦମ୍ପତ୍ତିଙ୍କ ଜମିଖଣ୍ଡିକ କବ୍ଜା କରିନେବା ପରେ । ମାତ୍ର ପ୍ରତିପରିଣତି (Anti-Climax)ରେ ଏଥିସହ ନାନା ଘଟଣା, ନାନା ବର୍ଣ୍ଣନା, ଓ ପରିଶେଷରେ ସ୍ୱକର୍ମଜନିତ ଅନୁଶୋଚନାରେ ମଂଗରାଜର ମୃତ୍ୟୁ ଆଦିକୁ ଔପନ୍ୟାସିକ ସଂଯୋଜିତ କରି ଏହି ଉପନ୍ୟାସକୁ ବେଶ୍ ମନୋଜ୍ଞ କରିପାରିଛନ୍ତି ।

'ଅତଏବ—'ଛ'ମାଣ ଆଠଗୁଣ୍ଠ' ଗୋଟିଏ ଟ୍ରାଜେଡ଼ି । X X X ମନୁଷ୍ୟ କେତେକ ପ୍ରବୃତ୍ତିର ଦାସ । ଏହି ପ୍ରବୃତ୍ତିର ପ୍ରବାହରେ ମନୁଷ୍ୟ ଭାସିଯାଇଁ ପରେ ଯେଉଁ ଅଲଙ୍ଘନୀୟ କର୍ମଫଳ ଭୋଗ କରେ, ପୁଣି ସେହି କର୍ମଫଳର ଅବଶ୍ୟମ୍ଭାବିତା ବିରୁଦ୍ଧରେ ମଣିଷର ସଂଗ୍ରାମ ଟ୍ରାଜେଡ଼ିର ପ୍ରାଣ । ସାରିଆ ଶକ୍ତ, ଶୂନ୍ୟ କୋଳରେ ଶିଶୁଟି ମୁହଁଟିଏ ଦେଖିବା ପାଇଁ ବହୁ ସାଧନା କରିଛି । ଭଗିଆ 'ଛ'ମାଣ ଆଠଗୁଣ୍ଠ' ଜମି ଫେରିପାଇବା ପାଇଁ ପାଗଳ ହୋଇଛି । ରାମଚନ୍ଦ୍ର ମଂଗରାଜ ନିଜ ଅଧର୍ମବିତ୍ତକୁ ସମ୍ଭାଳି ରଖିବାପାଇଁ ପ୍ରାଣାନ୍ତ ହୋଇଛନ୍ତି, ଚମ୍ପା ସାଆନ୍ତାଣୀ ମର୍ଯ୍ୟାଦାରେ ପ୍ରତିଷ୍ଠିତ ହେବା ପାଇଁ କୌଣସି କୁକର୍ମ ବାକି ରଖିନାହିଁ । କିନ୍ତୁ ଭବିତବ୍ୟର ଉପହାସରେ ସବୁ ଆଶା, ଆକାଂକ୍ଷା, ସଂଗ୍ରାମ ଓ ସାଧନା ଝଡ଼ରେ ଶୁଖିଲା ପତ୍ର ପରି ଉଡ଼ିଯାଇଛି । ଏହି ବ୍ୟର୍ଥତା ଓ ପରାଜୟ ହିଁ 'ଛ'ମାଣ ଆଠଗୁଣ୍ଠ'କୁ ଏପରି ମର୍ମସ୍ପର୍ଶୀ କରିପାରିଛି ।" (୭)

ଫକୀରମୋହନଙ୍କ ଏହି କାଳଜୟୀ ଉପନ୍ୟାସ 'ଛ'ମାଣ ଆଠଗୁଣ୍ଠ' ନାନା ଦୃଷ୍ଟିରୁ ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣଙ୍କ 'The House of the Seven Gables' ଉପନ୍ୟାସ ସହ ତୁଳନୀୟ । ଏଥିରୁ ଫକୀରମୋହନଙ୍କ ଔପନ୍ୟାସିକ ଶକ୍ତି-ସାମର୍ଥ୍ୟ ଯେ ବିଶ୍ୱ ଦରବାରରେ ପ୍ରତିଷ୍ଠିତ ହୋଇପାରିଛି ତାହା ନିଃସନ୍ଦେହରେ କୁହାଯାଇପାରେ । ଅନେକ ସମାଲୋଚକ ଫକୀରମୋହନ ଓ ତାଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସକୁ ବିଶ୍ୱ-

(୭) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା—୯୧/୯୨ ।

ସାହିତ୍ୟର ଜଣେ ଖ୍ୟାତନାମା ଔପନ୍ୟାସିକ ଓ ପ୍ରଖ୍ୟାତ ଉପନ୍ୟାସ ବୋଲି ଲେଖି ଆସିଛନ୍ତି, କହିଆସିଛନ୍ତି; ମାତ୍ର ଜଣେ ହେଲେ କେହି ତାଙ୍କର ଔପନ୍ୟାସିକ କଳାର ତୁଳନାତ୍ମକ ବିଚାର ବିଶ୍ୱର କୌଣସି ଖ୍ୟାତନାମା ସାହିତ୍ୟିକଙ୍କ କଳା-କୃତି ସହ ମୂଲ୍ୟାୟନ କରିନାହାନ୍ତି । ତେଣୁ ଏହି ପରିପ୍ରେକ୍ଷୀରେ ଫକୀରମୋହନ 'ଛ'ମାଣ ଆଠଗୁଣ୍ଠ' ସହ ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣଙ୍କ 'The House of the Seven Gables' ଉପନ୍ୟାସର ତୁଳନାତ୍ମକ ବିଚାର କରାଯାଇପାରେ । ଏହି ଉଭୟ ଉପନ୍ୟାସରେ ବିଷୟବସ୍ତୁ, ଶୈଳୀ, କାଳ, ସାମାଜିକ ଚେତନା, ସାହିତ୍ୟିକ ମୂଲ୍ୟବୋଧ, କାଳଗତ ଚିରନ୍ତନତା ଚରିତ୍ର ବିଚାର, ଆଦିରେ ନାନା ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ନିମ୍ନଭାବେ ତାହା ଆମର ଆଲୋଚ୍ୟ ।

### (କ) ବିଷୟବସ୍ତୁ ଦୃଷ୍ଟିରୁ (ଭୂମିକେନ୍ଦ୍ରିକ ଚିନ୍ତାଧାରା)

ବିଷୟବସ୍ତୁ ଦୃଷ୍ଟିରୁ ଦେଖିବାକୁ ଗଲେ Howthorneଙ୍କ 'The House of the Seven Gables' ଉପନ୍ୟାସ ଓ ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ' ଉପନ୍ୟାସର କଥାବସ୍ତୁ ଭିତ୍ତିକ ଚିନ୍ତାଧାରା ଏକ । ଘଟଣାପ୍ରବାହରେ ଉପନ୍ୟାସର ଗତି ଭିନ୍ନ ମୁଖୀ ହୋଇଥିଲେ ବି ଉଭୟ ଉପନ୍ୟାସର ମୂଳପିଣ୍ଡ ଓ ପରିଣତି ହେଉଛି ଏକ । ଭୂମିକେନ୍ଦ୍ରିକ ଚିନ୍ତାଧାରାକୁ ନେଇ ଉଭୟ ଉପନ୍ୟାସର ପରିକଳ୍ପନା କରିଛନ୍ତି ଔପନ୍ୟାସିକ ଦ୍ୱୟ ।

ମାଟିର ମୋହ ପ୍ରତି ଯୁଗରେ, ପ୍ରତିସ୍ତରରେ ମଣିଷକୁ କରିଛି ହିଂସ୍ର, ପାଗଳ । ପାଳୋମିର ହିଂସ୍ରତାକୁ ନେଇ ମାଟି ପାଗଳ ଅସଂଖ୍ୟ ମଣିଷର ଲହୁ ଶୋଷିଛି, ଲୁହ ନିଗାଡ଼ି ନେଇଛି । ମଣିଷ ଆଖିରୁ ଘୁଅଡରାଖି ସିଯାଇଛି ମାଟିପାଇଁ । ମାଟିପାଇଁ ଶୋଚନୀୟ ଅବସ୍ଥାରେ ମଣିଷ ପାଲଟିଛି ପୁଣି ପାଗଳ । ପ୍ରତି ଯୁଗରେ ଶୋଷକ ବା ଶୋଷିତ ଯେପରି ଈଶ୍ୱରଙ୍କ ସୃଷ୍ଟିର ଦୁଇଟି ବିଚିତ୍ର ଗୋଷ୍ଠୀ । ଗୋଟିଏ ଗୋଷ୍ଠୀର ଜନ୍ମ ଅନ୍ୟକୁ ଶୋଷଣ ପାଇଁ ଏବଂ ଅନ୍ୟଟି ଜନ୍ମ ତା'ଦ୍ୱାରା ଶୋଷିତ ହେବା ପାଇଁ । କୌଣସି ଯୁଗରେ ମଣିଷର ଏହି ପ୍ରବୃତ୍ତି ଅନ୍ତର୍ହିତ ନୁହେଁ; ବରଂ ଏହାର ତୃଷା ଅଦମନୀୟ । ଆଦିମମାନବଙ୍କ ପରେ ଦ୍ରାବିଡ଼-ଆର୍ଯ୍ୟଙ୍କ ସଂଘର୍ଷଠାରୁ ଏବେର ଗୋପୀନାଥଙ୍କ 'ପରଜା'ର ଆଦିବାସୀ-ସାହୁକାର ପ୍ରତ୍ୟେକ ଯେପରି ଜମିର ମୋହ, ମାଟିର ମୋହରେ ପାଗଳ ହୋଇଉଠିଛନ୍ତି । ମାଟିର ବାସ୍ନା ସେମାନଙ୍କୁ ସେମାନଙ୍କ ମଣିଷପଣିଆ ଭୁଲାଇ ଦେଇଛି । ଗୋଟିଏ ଦେଶରେ ନୁହେଁ, ଗୋଟିଏ ଜାତିରେ ନୁହେଁ, ଏହି କାହାଣୀ ଯେପରି ଅନନ୍ତବ୍ୟାପୀ । କାରଣ ଦେଶ ବହୁତ—ପୃଥିବୀ ଏକ । ମଣିଷର ଚିନ୍ତାଧାରା ଭିନ୍ନ କିନ୍ତୁ ମାଟିପାଇଁ ଚେତନା ହୁଏତ ଏକ । ସେଇ କଥାକୁ ନେଇ ଶିଳ୍ପୀ ତା'ର ଶିଳ୍ପଜଗତରେ ଜୀବନ୍ୟାସ ଦେଇଛି । ସାହିତ୍ୟିକ ତାର ସାହିତ୍ୟରେ ତାକୁ ମୂର୍ତ୍ତିମନ୍ତ ବିଗ୍ରହ ଭାବେ ଚିତ୍ରିତ କରିଛି ।

ଊନବିଂଶ ଶତାବ୍ଦୀର ଆମେରିକୀୟ ଉପନ୍ୟାସ ଜଗତରେ ଏହି ଶରନ୍ତନ ସତ୍ୟର ପ୍ରତିଷ୍ଠାତା ଔପନ୍ୟାସିକ ହଥର୍ଣ୍ଣ ତାଙ୍କ ଉପନ୍ୟାସ 'The House of the Seven Gables'ରେ ପ୍ରଥମେ ଏହି ଚିନ୍ତା ଓ ଚେତନାକୁ ବ୍ୟକ୍ତ କଲେ ! ତାଙ୍କ ପର ଔପନ୍ୟାସିକ ଫକୀରମୋହନ ମଧ୍ୟ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ପ୍ରଥମକରି ଏହି ଭୂମିକୈନ୍ଦ୍ରିକ ଚିନ୍ତା-ଧାରାକୁ ନେଇ ରଚନାକରି ଗଲେ କାଳଜୟୀ ଉପନ୍ୟାସ 'ଛମାଣ ଆଠଗୁଣ୍ଠ'କୁ । ହଥର୍ଣ୍ଣ ଓ ଫକୀରମୋହନ ଏହି ଉଭୟ ଉପନ୍ୟାସରେ କାହାଣୀର ପ୍ରସ୍ତାପନ ପାଇଁ ଭୂମିକୈନ୍ଦ୍ରିକ ଚିନ୍ତାଧାରାକୁ ମୁଖ୍ୟ ଆଧାର ଭାବେ ଧରିନେଇଥିବାରୁ ଏହି ଦୁଇ ଉପନ୍ୟାସର କଥା-ବସ୍ତୁରେ ଅନେକାଂଶରେ ସାମ୍ୟ ପରିଲକ୍ଷିତ ହୁଏ ।

ସାମାନ୍ୟ ଶ୍ରେଷ୍ଠ ଖଣ୍ଡିଏ ଜମିର ମୋହରେ ପ୍ରତିଷ୍ଠିତ ତଥା ପ୍ରଭାବଶାଳୀ କର୍ଣ୍ଣେଲ୍ ପିନ୍‌ଚନ୍ ନିଜେ ତ ଜଳିଗଲେ, ତତ୍ ସଙ୍ଗେ ସଙ୍ଗେ ଅପର ନିଜ ଉତ୍ତରାଧିକାରୀମାନଙ୍କର ସର୍ବନାଶର କାରଣ ହୋଇଛନ୍ତି, ସେହି କଥା ଔପନ୍ୟାସିକ ହଥର୍ଣ୍ଣ 'The House of the Seven Gables' ଉପନ୍ୟାସରେ ବର୍ଣ୍ଣନା କରିଛନ୍ତି । ମାଥିଉ ମାଉଲେଙ୍କର ସହର ତଳି ଅଞ୍ଚଳରେ ଖଣ୍ଡିଏ ଶ୍ରେଷ୍ଠ ଜମି ଥିଲା । କର୍ଣ୍ଣେଲ୍ ଦେଖିଲେ ପରବର୍ତ୍ତୀ କାଳରେ ସେହି ଜମିଖଣ୍ଡିକ ହେବ ବହୁ ମୂଲ୍ୟବାନ୍ । ତେଣୁ ସେହି ଜମିଖଣ୍ଡିକୁ ପାଇବା ପାଇଁ ସେ ବ୍ୟାକୁଳ ହୋଇଉଠିଲେ । ନାନା ଆଳ ଦେଖାଇ ସେହି ଜମି ଉପରେ ପ୍ରଭୁତ୍ୱ ଜାହିର୍ କରିବାକୁ ସେ ଚାହିଁଲେ । କିନ୍ତୁ ଯେତେବେଳେ ସେ ଅନୁଭବ କଲେ ଏ ଜମି ଖଣ୍ଡିକୁ ପାଇବା ପାଇଁ ମାଥିଉ ମାଉଲେଙ୍କ ମୃତ୍ୟୁ ହିଁ ଏକାନ୍ତ କାମ୍ୟ, ସେତେବେଳେ ସେ ଚକ୍ରାନ୍ତକରି ମାଉଲେଙ୍କୁ ଜଣେ ଘୃଣ୍ୟ ଯାଦୁକର ଭାବେ ପ୍ରମାଣିତ କରି ତାଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇଦେଲେ ଓ ପରେ ପରେ ତାଙ୍କର ଜମିକୁ ହସ୍ତଗତ କରିନେବାରେ କୌଣସି ବାଧା ନଥିଲା । ସେ ଏହା ଉପରେ ନିର୍ମାଣ କଲେ ନିଜର ଉତ୍ତରାଧିକାରୀ ମାନଙ୍କପାଇଁ ଏକ ପ୍ରକାଣ୍ଡକାୟ ଘର, ତାହା ହେଲା—House of the Seven Gables' ମାତ୍ର ଏହା ପରେ ପରେ ସେହି ଘରେ ତାଙ୍କର ଯେଉଁ ଅସ୍ୱାଭାବିକ ମୃତ୍ୟୁ ଘଟିଲା ଓ କ୍ରମେ କ୍ରମେ ପିନ୍‌ଚନ୍ ପରିବାର ମଧ୍ୟ ଅବକ୍ଷୟ ଆଡ଼କୁ ଟାଣି ହୋଇଗଲା, ସେଥିରେ ଲୋକମାନେ ଏହାକୁ କର୍ଣ୍ଣେଲଙ୍କ କର୍ମଫଳ ବୋଲି ଧରିନେଇଥିଲେ । କାରଣ ପରସ୍ୱତ୍ୱ ଅପହରଣକାରୀ କର୍ଣ୍ଣେଲ୍‌ଙ୍କୁ ମାଉଲେର ଆତ୍ମା କେବେ ଶାନ୍ତିରେ ରହାଇଦେବ ନାହିଁ ବୋଲି ତାଙ୍କର ବିଶ୍ୱାସ ଥିଲା ଓ ଏହି ଅସ୍ୱାଭାବିକ ମୃତ୍ୟୁ ମୂଳରେ ମାଉଲେର ଅତୃପ୍ତ ଆତ୍ମାର ଅଦୃଶ୍ୟ ହାତ ରହିଛି ବୋଲି ସେମାନେ ଭାବୁଥିଲେ । କିନ୍ତୁ କର୍ଣ୍ଣେଲ୍‌ଙ୍କ ପରି ପରସ୍ୱତ୍ୱ ଅପହରଣକାରୀ ବ୍ୟକ୍ତିପାଇଁ ଏ ଭାବ—ଭାବନାର ମୂଲ୍ୟ କିଛି ନଥିଲା । ମାଉଲେଙ୍କ ଜମି ନେବା ପରେ ତାଙ୍କର ମାଇନେ ରାଜ୍ୟରୁ କିଛି ସରକାରୀ ଜମି ମଧ୍ୟ ପାଇବାର ଥିଲା, ମାତ୍ର ତାଙ୍କୁ ଘଟଣାଚକ୍ରରେ ସେଥିରୁ ମଧ୍ୟ ବଞ୍ଚିତ ହେବାକୁ ପଡ଼ିଲା । ସେହି ଜମି

ପାଇବାକୁ ଥିବା କାଗଜପତ୍ର ହଠାତ୍ କାହିଁ ହଜିଗଲା । ପରେ ଜଣାପଡ଼ିଛି ଯେ, ମାଉଲେଙ୍କ ପୁଅ ପ୍ରତିଶୋଧପରାୟଣ ହୋଇ ତାହାକୁ କୌଶଳକ୍ରମେ ଅପହରଣ କରି ନେଇଥିଲେ ।

ଉକ୍ତ ଜମିପାଇଁ ଏହି ସଂଗ୍ରାମ ଗୋଟିଏ ପୁରୁଷ ମଧ୍ୟରେ ଶେଷ ହୋଇନାହିଁ, ଏହି ସଂଗ୍ରାମ ଚାଲିଛି ପୁରୁଷ ପୁରୁଷ ଧରି ସେହି House of the Seven Gables'ରେ । ଏହି ଉପନ୍ୟାସରେ ବର୍ଣ୍ଣିତ, 'ଆଲିସେ ପିନ୍‌ଚନ୍' ପରିଚ୍ଛେଦରେ ଉଲ୍ଲେଖ ଅଛି ଯେ, ମାଇନେ ରାଜ୍ୟରୁ ପାଇବାକୁ ଥିବା ଜମିର କାଗଜ ଖଣ୍ଡିକ ପାଇବା ପାଇଁ ନିଜ ଝିଅ ଆଲିସେଙ୍କୁ ମଧ୍ୟ ଆଲିସେଙ୍କ ବାପା ଅତି ଅନ୍ୟାୟ କାର୍ଯ୍ୟରେ ବ୍ୟବହୃତ କରିଥିଲେ ଏବଂ ଏଇଥିରେ ହିଁ ଆଲିସେଙ୍କର ମୃତ୍ୟୁ ଘଟିଥିଲା । ଜମିପାଇଁ ମଣିଷର ଯେଉଁ ଅଗ୍ନିଶିଖା ମୋହ ତାହା ଏହି ବର୍ଣ୍ଣନାରେ ହଥର୍ଣ୍ଣ ଯଥାଯଥ ଭାବେ ଦର୍ଶାଇଅଛନ୍ତି । କେବଳ ଏତିକି ନୁହେଁ ତିନି-ଚାରି ପୁରୁଷ ପର୍ଯ୍ୟନ୍ତ ଏହି ଜମିପାଇଁ ପିନ୍‌ଚନ୍ ପରିବାର ଆତ୍ମବଳୀ ଦେଇଛି । ମାଉଲେଙ୍କ ଅଦୃଶ୍ୟ ଆତ୍ମାର କ୍ରୋଧ ବା ତାଙ୍କର ବଂଶଜଙ୍କ ପାଇଁ କେବଳ ଏ ଜମିର ଲଢ଼େଇ ଚାଲିଛି ତା' ନୁହେଁ ନିଜ ନିଜ ମଧ୍ୟରେ ମଧ୍ୟ ପିନ୍‌ଚନ୍‌ମାନେ ଜମିପାଇଁ କନ୍ଦଳ ସୃଷ୍ଟି କରିଛନ୍ତି । ପିନ୍‌ଚନ୍ ପରିବାରର ଜର୍ଜ ପିନ୍‌ଚନ୍ ଏଥିପାଇଁ ନିଜର କକାପୁଅ ଭାଇ କ୍ଲିଫର୍ଡଙ୍କୁ ମଧ୍ୟ ଜେଲ୍‌କୁ ପଠାଇଛି ଏବଂ ସେ ଜେଲ୍‌ରୁ ଫେରିଆସିବା ପରେ ଯଦି ସେ ଏଇ ମାଇନେ ରାଜ୍ୟରୁ ପାଇବାକୁ ଥିବା ଜମିର କାଗଜପତ୍ରର ସନ୍ଧାନ, ନଦିଏ ତେବେ ତାକୁ ପାଗଳ ବୋଲି ଘୋଷଣା କରିବାର ଧମକ୍ ଦେଇଛି; ମାତ୍ର ପରିଣତିରେ ଏହି ଜମିର ମୋହରେ ତା'ର ମଧ୍ୟ ମୃତ୍ୟୁ ହୋଇଛି ।

ସମଗ୍ର ଉପନ୍ୟାସଟି ଯେପରି ଏହି ମାଟିର ମୋହରେ, ହିଂସା, ଦ୍ୱେଷ, ଲୋଭ ମାୟାରେ ଜଳିଉଠିଛି । ଜମିପାଇଁ କନ୍ଦଳକରି ଏହି ଉପନ୍ୟାସର ଚରିତ୍ରମାନେ ଯେପରି ଅଳଙ୍ଘନୀୟ କର୍ମଫଳ ଭୋଗ କରିଛନ୍ତି, ତାହା ଅବର୍ଣ୍ଣନୀୟ ।

ହଥର୍ଣ୍ଣ ତାଙ୍କ 'The House of the Seven Gables' ଉପନ୍ୟାସରେ ଏହି ଯେଉଁ ଭୂମିକୈନ୍ଦ୍ରିକ ଚିନ୍ତାଧାରାର ପରିପ୍ରକାଶ କରିଅଛନ୍ତି ଆମ ଓଡ଼ିଆ ଔପନ୍ୟାସିକ ଫକୀରମୋହନ ମଧ୍ୟ ଅନୁରୂପ ଭାବେ 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ 'ଛମାଣ ଆଠଗୁଣ୍ଠ' ଜମିକୁ ନେଇ ଘଟିଯାଇଥିବା ସଂଘର୍ଷର ଚିତ୍ର ଉପସ୍ଥାପନ କରିଅଛନ୍ତି । ଏହି ଉପନ୍ୟାସର ନାୟକ ରାମଚନ୍ଦ୍ର ମଙ୍ଗରାଜ । ସେ ନିଜର ଦକ୍ଷତା, ଚତୁରତା ତଥା କୂଟନୀତି ବଳରେ ଜମିଦାର ହୋଇଛି । ଆହୁରି ବଡ଼ ହେବାକୁ ଚେଷ୍ଟା ତା'ର ଅବ୍ୟାହତ ରହିଛି । 'The House of the Seven Gables' ଉପନ୍ୟାସରେ କର୍ଣ୍ଣେଲ୍ ପିନ୍‌ଚନ୍ ଯେପରି ଅତି ନିର୍ମମ ଭାବରେ, ମାଉଲେଙ୍କୁ ମୃତ୍ୟୁ ମୁଖକୁ ଠେଲିଦେଇ ତାର ଶ୍ରେଷ୍ଠ ଜମିଖଣ୍ଡିକୁ ଗ୍ରାସ କରିବା ପାଇଁ କୌଣସି କୁଣ୍ଠା କରିନାହାନ୍ତି, ଠିକ୍ ସେହିପରି 'ଛମାଣ ଆଠଗୁଣ୍ଠ'

ଉପନ୍ୟାସରେ ଜମିଦାର ରାମଚନ୍ଦ୍ର ମଙ୍ଗରାଜ ଭଗିଆ ସାରଆଙ୍କ ଅସହାୟ, ଦୟନୀୟ ଅବସ୍ଥାକୁ ନଗ୍ଣ କୌଶଳକ୍ରମେ ସେମାନଙ୍କ 'ଛ'ମାଣ ଆଠଗୁଣ୍ଠକୁ ହସ୍ତଗତ କରିଛି । 'The House of the Seven Gables'ରେ ମାଉଲେଙ୍କ ଜମି ନେବା ପାଇଁ କର୍ଣେଲ୍ ତାଙ୍କୁ କୌଶଳରେ ସଙ୍ଗେ ସଙ୍ଗେ ହତ୍ୟା କଲାବେଳେ 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ ଔପନ୍ୟାସିକ ଫକୀରମୋହନ ଭଗିଆକୁ ପରିଣତ ପାଇଁ ଖାବକ ରଖିଛନ୍ତି । କିନ୍ତୁ ସ୍ତ୍ରୀ ତା'ର ମରିଯାଇଛି । ସେ ପ୍ରତିଶୋଧପରାୟଣ ହୋଇ ରାମଚନ୍ଦ୍ର ମଙ୍ଗରାଜଙ୍କ ନାକକୁ ପାଗଳ ଅବସ୍ଥାରେ ଜେଲ୍‌ରେ କାମୁଡ଼ି ଦେଇଛି ଏବଂ ପରବର୍ତ୍ତୀ ସମୟରେ ମଙ୍ଗରାଜ ଅନୁତାପ ଅନଳରେ 'ଥ-ମା-ଆଗୁଁ', ଚତ୍କାର କରି ପ୍ରାଣ ଛାଡ଼ିଛନ୍ତି । ଜମିର ମୋହ ତାଙ୍କ ମଣିଷପଣିଆକୁ କ୍ଷତବିକ୍ଷତ କରି ତାଙ୍କୁ କରିଛି ନର୍କଗାମୀ ।

ରାମଚନ୍ଦ୍ର ମଙ୍ଗରାଜଙ୍କ କୌଶଳ ବା କର୍ଣେଲ୍‌ଙ୍କ ଧୂର୍ତ୍ତତା ଉଭୟ ଏକ ପ୍ରକାର । ଏହି ଉଭୟଙ୍କ ଚନ୍ତାଧାରା ପରସ୍ୱହ ଅପହରଣ କରିବାରେ ଚରିତାର୍ଥ ହୋଇଛି । ରାମଚନ୍ଦ୍ର ମଙ୍ଗରାଜ ଅପହୃତ ଜମିର ମାଲିକ ଭଗିଚନ୍ଦ ଦ୍ୱାରା ଏବଂ କୃତକର୍ମର ଫଳ ସ୍ୱରୂପ ଶାସ୍ତି ପାଇଲାବେଳେ କର୍ଣେଲ୍ ପିନ୍‌ଚନ୍ ଅସ୍ୱାଭାବିକ ଭାବରେ ମୃତ୍ୟୁବରଣ କରିଛନ୍ତି ଓ ତାଙ୍କ ପରିବାରକୁ ଏଥିପାଇଁ ଉପନ୍ୟାସର ପରିଣତରେ ମାଉଲେଙ୍କ ବଂଶଧର ନିକଟରେ ମଥାନତ କରିବାକୁ ପଡ଼ିଛି ।

କେବଳ ଏତିକି ନୁହେଁ, 'The House of the Seven Gables'ରେ ବର୍ଣ୍ଣିତ ଜର୍ଜ ପିନ୍‌ଚନ୍ ଚରିତ୍ରକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ତାଙ୍କର ମଧ୍ୟ ଜମି ପ୍ରତି କିଛି କମ୍ ମୋହ ନଥିଲା । ତେଣୁ ସେ କୌଶଳକ୍ରମେ ନିଜର କକାପୁଅ ଭାଇ କ୍ଲିଫର୍ଡ଼ଙ୍କଠାରୁ ମାଇନେ ରାଜ୍ୟରୁ ପାଇବାକୁ ଥିବା ଜମିର ହଜିଯାଇଥିବା କାଗଜପତ୍ରର ସନ୍ଧାନ ପାଇବା ପାଇଁ ଚାହିଁଛନ୍ତି । ଯେଉଁଠି ତାଙ୍କ ସ୍ୱାର୍ଥ ସାଧନରେ ବାଧା ପଡ଼ୁଛି, ସେଠି ସେ ହୋଇଛନ୍ତି ହିଂସ୍ର । ଏହି ଘଟଣାକୁ 'ଛ' ମାଣ ଆଠଗୁଣ୍ଠ' ଉପନ୍ୟାସର ଶ୍ୟାମ ମଲ୍ଲଙ୍କ ପିଆଜଖିଆ ଘଟଣାସହ ତୁଳନା କରାଯାଇପାରେ । ଶ୍ୟାମ ମଲ୍ଲ ପିଆଜ ଖାଇବାରୁ ତା'ର ଜାତି ଗଲା । ତାକୁ ଜାତି ହେବାକୁ ହେବ । ସେ ରାମଚନ୍ଦ୍ର ମଙ୍ଗରାଜଙ୍କ ପିଉସୀ ପୁଅ ଭାଇ । ତାକୁ ଜାତି ହରାଇବାର ଧମକ୍ ଓ ପ୍ରାୟଶ୍ଚିତର ଅଳ ଦେଖାଇ ରାମଚନ୍ଦ୍ର ମଙ୍ଗରାଜ ତା'ର ଜମିକୁ ମଧ୍ୟ ଅପହରଣ କରିଅଛନ୍ତି । ତେଣୁ ଏ କ୍ଷେତ୍ରରେ ତାଙ୍କର ଜମି ଅପହରଣରେ ମୋହ ଆମ୍ବକୈନ୍ଦ୍ରିକ ଠିକ୍ ହଥର୍ଣ୍ଣଙ୍କ 'The House of the Seven Gables' ଉପନ୍ୟାସର 'ଜର୍ଜ' ଚରିତ୍ର ପରି । ଏ ଦୁହେଁ ଆପଣା-ପରର ସମସ୍ତ ସମ୍ପର୍କ ତୁଟାଇ କେବଳ ଜମି ଜମି ବୋଲି ପାଗଳ ହୋଇଉଠିଛନ୍ତି । ପୁଣି ଏହି ଉଭୟ ଉପନ୍ୟାସରେ ଯେଉଁ ସଂଘର୍ଷ, ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି, ତାହା ଅନ୍ୟ କିଛି ପାଇଁ ନୁହେଁ,

କେବଳ ଜମି, ପରସ୍ୱତ୍ୱ ଅପହରଣ ଓ ଧନରତ୍ନର ଲୋଭ ହେତୁ । ତେଣୁ ଏହି ଉପନ୍ୟାସ ଦ୍ୱୟର ମୂଳପିଣ୍ଡ ଯେ, ଭୂମି ଏକଥା ଅନ୍ତତଃ ଏହି ପରପ୍ରେକ୍ଷୀରେ ଆଉ ଅସ୍ୱୀକାର କରିହୁଏ ନାହିଁ ।

'The House of the Seven Gables' ରେ ଶୋଷଣମାତ୍ର 'ଛ' ମାଣ ଅଠଗୁଣ୍ଠ'ଠାରୁ ବହୁ ମାତ୍ରାରେ ଅଧିକ । ଛ' ମାଣ ଆଠଗୁଣ୍ଠରେ ରାମଚନ୍ଦ୍ର ମଙ୍ଗରାଜଙ୍କ କୃତକର୍ମର ଫଳ ସେ ସେହି ଜନ୍ମରେ ଭୋଗ କରିଛନ୍ତି । ଭଗିଆ ତା'ର ପ୍ରତିଶୋଧ ମଧ୍ୟ ସେହି ଜନ୍ମରେ ରାମଚନ୍ଦ୍ର ମଙ୍ଗରାଜଙ୍କଠାରୁ ନେଇଛି । କିନ୍ତୁ ହଥର୍ଣ୍ଣଙ୍କ ଆଲୋଚ୍ୟ ଉପନ୍ୟାସରେ ଏହା ପୁରୁଷ ପୁରୁଷ ଧରି ଗଡ଼ିଚାଲିଛି । କିନ୍ତୁ ପରିଶେଷରେ ଏହାର ସମାପ୍ତି ଘଟିଛି । ଯେତେବେଳେ ମାଉଲେ ବଂଶୀୟ ଯୁବକ ରକ୍ଷଣଶୀଳ ପିନ୍‌ଚନ୍ ପରିବାର କନ୍ୟା ଫୋଏବ୍‌କୁ ବିବାହ କରିଛି । ତେଣୁ ଏହି ଉପନ୍ୟାସ ଦ୍ୱୟର ଘଟଣା ପ୍ରବାହ ପରିସ୍ଥିତି ଓ ପରିବେଶର ଅନୁରୋଧରେ ଭିନ୍ନ ଭିନ୍ନ ମୋଡ଼ ଗ୍ରହଣ କଲାବେଳେ ଏହାର କଥାବସ୍ତୁର ସ୍ଥିତି ଯେ, ଭୂମିକୈନ୍ଦ୍ରିକ ଚିନ୍ତାଧାରାରୁ ବିଚ୍ୟୁତ ହୋଇପାରିନାହିଁ— ଏକଥା ନିଃସନ୍ଦେହରେ କୁହାଯାଇପାରେ । ଅତଏବ କଥାବସ୍ତୁ ଦୃଷ୍ଟିରୁ ବିଚାର କରିବାକୁ ଗଲେ 'The House of the Seven Gables' ଓ 'ଛ' ମାଣ ଆଠଗୁଣ୍ଠ' ଉଭୟ ଉପନ୍ୟାସ ଭୂମିକୈନ୍ଦ୍ରିକ ଚିନ୍ତାଧାରା ହେତୁ କଥାବସ୍ତୁରେ ଅପୂର୍ବ ସାମଞ୍ଜସ୍ୟ ଦର୍ଶାଇ ପାରିଛନ୍ତି ।

### (ଖ) ଶୈଳୀ ଦୃଷ୍ଟିରୁ :

କେବଳ କଥାବସ୍ତୁରେ ଭୂମିକୈନ୍ଦ୍ରିକ ଚିନ୍ତାଧାରାଜନିତ ସାମ୍ୟ ହେତୁ ନୁହେଁ, ଶୈଳୀଜନିତ ସାମ୍ୟ ଦୃଷ୍ଟିରୁ ମଧ୍ୟ ହଥର୍ଣ୍ଣଙ୍କ 'The House of the Seven Gables' ଓ ଫକୀରମୋହନଙ୍କ 'ଛ' ମାଣ ଆଠଗୁଣ୍ଠ' ଉପନ୍ୟାସର ତୁଳନାତ୍ମକ ବିଚାର କରାଯାଇପାରେ । ଏହି ଉଭୟ ଉପନ୍ୟାସର ଭାଷା ଭିନ୍ନ ସତ୍ୟ; ମାତ୍ର ଭାଷା ପ୍ରୟୋଗର ଶୈଳୀ, ଭାବ ସୃଷ୍ଟିକରିବାର ଧର୍ମ, ବର୍ଣ୍ଣନାବଳୀର ଗୁରୁତ୍ୱ ହେଉଛି ଏକ । ତେଣୁ ଉଭୟ ଉପନ୍ୟାସରେ ଶୈଳୀଗତ ଅନେକ ସାମ୍ୟ ପରିଦୃଷ୍ଟ ହୁଏ ।

ଊନବିଂଶ ଶତାବ୍ଦୀର ଆମେରିକୀୟ ଉପନ୍ୟାସ ସାହିତ୍ୟର ଅପ୍ରତିଦ୍ୱନ୍ଦ୍ୱୀ ଔପନ୍ୟାସିକ । କଥାକାର ହଥର୍ଣ୍ଣଙ୍କ ରଚନାଶୈଳୀ ସମ୍ପୂର୍ଣ୍ଣ ଅଭିନବ ଓ ଏକାନ୍ତ ଭାବେ ମୌଳିକ । (୭) ଆମେରିକୀୟ ଉପନ୍ୟାସଜଗତରେ ସେ ଏକ ନୂତନ ଶୈଳୀର

(୭) His style, for instance, though as it best an wonderfully effective instrument for the expression of his sensibility is

ବାସ୍ତବାଦ ଏବଂ ନବଯୁଗର ପ୍ରବର୍ତ୍ତକ ଭାବେ ଚିରସ୍ମରଣୀୟ । ଏହି ମହାନ୍ ସ୍ରଷ୍ଟାଙ୍କ ଦ୍ୱାରା ତାଙ୍କର ସମସାମୟିକ ଓ ପରବର୍ତ୍ତୀ ଔପନ୍ୟାସିକମାନେ କେବଳ ତାଙ୍କ ଶୈଳୀଗତ ସ୍ୱାତନ୍ତ୍ର୍ୟ ଯୋଗୁଁ ବହୁଭାବେ ପ୍ରଭାବିତ ହୋଇଥିଲେ ବି ସମାନ ସଫଳତାର ଅଧିକାରୀ ହୋଇପାରି ନଥିଲେ । ଏହି ପରିପ୍ରେକ୍ଷୀରେ ତାଙ୍କ ଉପନ୍ୟାସ 'The House of the Seven Gables'ର ରଚନାଶୈଳୀ ସମ୍ପର୍କରେ ଓ ଏହା ସହିତ ଫକୀରମୋହନଙ୍କ 'ଛ' ମାଣ ଆଠଗୁଣ୍ଠ'ର କି ପ୍ରକାର ସାମ୍ୟ ରହିଛି, ତାହା ଅନୁଧ୍ୟାନ କରାଯାଇପାରେ ।

ଆଲୋଚ୍ୟ ଉପନ୍ୟାସରେ ଭାଷାଗତ, ବର୍ଣ୍ଣନାଗତ ଓ କଥୋପକଥନଜନିତ ଶୈଳୀ ଆମ ଓଡ଼ିଆ ଉପନ୍ୟାସରେ ଫକୀରମୋହନ ସେନାପତିଙ୍କ ଉପନ୍ୟାସ ଶୈଳୀର ବହୁ ନିକଟତର । ହଥର୍ଣ୍ଣ ତାଙ୍କ ଭାଷା ପ୍ରୟୋଗରେ ଫକୀରମୋହନଙ୍କ ପରି ନିରାଡ଼ମ୍ବର, ସରଳ, ମନମୁଗ୍ଧକର, ଭାବପ୍ରଧାନକାରୀ ଭାଷାର ବ୍ୟବହାର କରିଅଛନ୍ତି । ପୁଣି ଫକୀରମୋହନ 'ଛ' ମାଣ ଆଠଗୁଣ୍ଠ'ରେ ଯେଉଁ କେତେକସ୍ଥଳେ ସମ୍ବୋଧନାତ୍ମକ ଭାଷାର ପ୍ରୟୋଗ କରିଅଛନ୍ତି, ଯଥା:—

"ଆପଣ ତ ଆମ୍ଭମାନଙ୍କ ସ୍ୱଭାବ ଜାଣନ୍ତି । ମିଛକଥା ଲେଖିବା, କଥା ବଢ଼େଇ ଲେଖିବା, ଅକାରଣ କଥା ଲେଖିବା ଆମ୍ଭମାନଙ୍କ ଧାତୁରେ ଚଳେ ନାହିଁ । ମଧ୍ୟ "ମା ଲିଖେତ୍ ସତ୍ୟମପ୍ରିୟଂ" ଅର୍ଥାତ୍ ସତ୍ୟକଥାରୁ ମଧ୍ୟ ଅଧାଅଧି ଛାଡ଼ିବାକୁ ହୁଏ ।" (ଛ. ମା. ଆ. ଗୁ—୮)

---

likely to strike us as not nearly so modern as thoreaus. It was slightly old fashioned even when he wrote it. It is very deliberate, with measured rhythms, marked by formal decorum. It is a public style and as we might say, a 'rhetorical' one-though of course all styles are rhetorical in one sense or another. It often prefers the abstract or generalized to the concrete or specific word. Compared to what the writers of hand books, under the influence of modernist literature have taught us to prefer—the private informal, concrete colloquial imagistic—Hawthorre's style can only be called Pre-modern."

( Six. Ame. Novelist in Nin, cent, Page-56-57

ପୁଣି—

"ଅଚ୍ଛା ପାଠକେ, ଆପଣଙ୍କ ଓଦା ଲୁଗାଟା ଆଗେ ଓଜନ କରନ୍ତୁ, ଦେଖିବେ ଓଦା ଶୁଖିଲାର କେତେ ପ୍ରଭେଦ ।" ( ଛ. ମା. ଆ. ଗୁ—ପୃ-୭ )

ଏବଂ—

"ଆପଣ ସଭ୍ୟ ପାଠକ, ଏକଥା ଶୁଣି ହସିବେ। ବଳନ ଶାସ୍ତ୍ର ଘୋଷିଦେଇ କହିବେ, ରୋଗ ହେଲେ ଔଷଧ ଖାଅ, ଠାକୁରାଣୀଙ୍କ ପୂଜା କ'ଣ ?—ଇତ୍ୟାଦ ।

ଠିକ୍ ସେହିପରି 'The House of the Seven Gables' ଉପନ୍ୟାସରେ ଏହି ସମ୍ବୋଧନାତ୍ମକ ଭାଷାର ବହୁଳ ବ୍ୟବହାର କରିଛନ୍ତି ଔପନ୍ୟାସିକ ହଥର୍ଣ୍ଣ । ହଥର୍ଣ୍ଣଙ୍କ ଭାଷାରେ—

"The reader may deem it singular that the head carpenter of the new editice was no other than the son of the very man, from whose dead gripe the property of the soil had been wrested."

( 'The House of the Seven Gables'—Page-6/7 )

ଅତଏବ ସମ୍ବୋଧନାତ୍ମକ ଭାଷା ପ୍ରୟୋଗରେ ଫକୀରମୋହନଙ୍କ 'ଛ' ମାଣ ଆଠଗୁଣ୍ଠ' ସହ ସେ ହଥର୍ଣ୍ଣଙ୍କ 'The House of the Seven Gables' ଉପନ୍ୟାସର ଭାଷା ପ୍ରୟୋଗରେ ଅପୂର୍ବ ସାମ୍ୟ ରହିଛି, ଏ କଥା ଅସ୍ୱୀକାର କରିହେବ ନାହିଁ ।

ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ'ରେ ଅନେକ ସ୍ଥଳେ ଫକୀରମୋହନଙ୍କ ବ୍ୟକ୍ତିଗତ ଉପସ୍ଥିତି ଭାବକୁ ତାଙ୍କ ବର୍ଣ୍ଣନା ଭିତରେ ପାଠକ ଅନୁଭବ କରେ । ଅନେକ ସ୍ଥଳେ ତାଙ୍କର 'ମୁଁ' ସର୍ବସ୍ୱବର୍ଣ୍ଣନା ମଧ୍ୟ ଦେଖିବାକୁ ମିଳେ । ଫକୀରମୋହନଙ୍କ 'ମୁଁ' ଅନେକସ୍ଥଳେ 'ଆମ୍ଭେ' ଅର୍ଥରେ ବ୍ୟବହୃତ ହୋଇଛି । ଯଥା—

"ନିନ୍ଦୁକମାନେ ଯେଉଁ କଥା କହିବୁଲିବେ, ଅମ୍ଭମାନଙ୍କୁ ନାଗର ହାଲତରେ ସେ କଥା ବୋଲିବାକୁ ହେଉଅଛି । X X ମାତ୍ର ଭଦ୍ରଲୋକ ଘର ମହିଳାମାନଙ୍କ ଦୋଷାଦୋଷ ସମାଲୋଚନାକାରୀ ନିନ୍ଦୁକମାନଙ୍କ କଥାରେ ଉତ୍ତର ଦେବାକୁ ଆମ୍ଭେମାନେ ସମ୍ପୂର୍ଣ୍ଣ ନାରାଜ ।" (ଛ. ମା. ଆ. ଗୁ, ପୃ-୩)

ପୁଣି—

"ଏହିପରି ଶୁଣାଅଛି, ଶୁଣା କଥା ଅଛି ଆମ୍ଭେମାନେ ଠିକ୍ କଥା ଜାଣୁ—ମଙ୍ଗରାଜେ ପ୍ରଥମେ ଗାଁ ପଧାନଠାରୁ ଦୁଇମାଣ ଜମି ଭାଗରେ ଧରିଥିଲେ । ବର୍ତ୍ତମାନ ଗ୍ରାମଜମି ଚକବନ୍ଦି ପଦ୍ଧତିରେ ଘୃରବାଟି ଛ'ମାଣ ଏହା ଗ୍ରାମ ଚ଼ାରିବାଟି ସତର ମାଣ ଭାଗରେ ଲାଗିଅଛି । (ପୃ-୭)

ଫକୀରମୋହନ ଉପର୍ଯ୍ୟୁକ୍ତ ଭଙ୍ଗୀ ପ୍ରୟୋଗରେ ଯେଉଁ 'ଆମ୍ଭେ' ଶବ୍ଦର ପ୍ରୟୋଗ କରିଅଛନ୍ତି, ତାହା ମୁଖ୍ୟତଃ 'ମୁଁ' ଅର୍ଥରେ ଗ୍ରହଣୀୟ । ଏହି ଉଭୟ ଅର୍ଥରେ ହଥର୍ଣ୍ଣ କିପରି 'The House of the Seven Gables' ଉପନ୍ୟାସରେ ଏପରି ବ୍ୟବହାର କରିଅଛନ୍ତି, ତାହା ଏଠାରେ ତୁଳନାତ୍ମକ ଭାବେ ଦର୍ଶାଯାଇପାରେ—

(1) On my occasional visit to the town ofer said, I seldom failed to turndown Pyncheon street, for the sake of passing through the shadow of these two antiquities,—the great elm—tree and the weather beaten edifice." (Page—1)

ଏଠାରେ ହଥର୍ଣ୍ଣ 'ମୁଁ' ଅର୍ଥରେ ସିଧାସଳଖ ଏହି ଭଙ୍ଗୀ ପ୍ରୟୋଗ କରିଛନ୍ତି; କିନ୍ତୁ ଫକୀରମୋହନଙ୍କ ପରି 'ଆମ୍ଭେ' ଅର୍ଥରେ ତାଙ୍କର 'ମୁଁ' ଭାବ ପ୍ରୟୋଗ ମଧ୍ୟ ଲକ୍ଷ୍ୟ କରାଯାଏ । ତାହା ହେଲା—

(2) × × × We shall commence the real action of our tale at an epoch not very remote from the present day.

(Page—2)

(3) Colonel Pyncheon the claimant, as we gather from what ever traits of him are preserved, was characterized by an iron energy of purpose." (Page—3)

(4) And now—in a very humble way, as will be seen—we proceed to open our narrative." (Page—29)

ହଥର୍ଣ୍ଣ ତାଙ୍କ 'The House of the Seven Gables' ଉପନ୍ୟାସରେ ଫକୀରମୋହନଙ୍କ ପରି କଥୋପକଥନ ଶୈଳୀରେ ଭାଷା ପ୍ରୟୋଗ କରିବାର ମଧ୍ୟ ଅନେକତ୍ର ପରିଲକ୍ଷିତ ହୁଏ । ନିମ୍ନରେ ତାର କେତେକ ଉଦାହରଣ ଦିଆଗଲା—

(1) Cousion, said phoebe, did you speak to me just now ?
No, child, Replied Hepnzibah, (Page—107)

(2) What did you say, my little fellow ? asked she ?
Mother wants to know; repeated Ned Higgins more distinctly, "how old maid Pyncheon's brother does ?

(Page—130)

ଏହିପରି ଭଙ୍ଗୀ ପ୍ରୟୋଗ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠରେ ହିଁ ଲକ୍ଷ୍ୟ କରାଯାଏ । ଯଥା —

(୧) "ଶ୍ୟାମ ଅଧ୍ର ଅଧ୍ର ହାତଯୋଡ଼ି—"ଆଜ୍ଞା, ମୁଁ ତ ସବୁ ବରଷ ଏହିପରି ରୁଏଁ, ସମସ୍ତେ ରୁଅଁନ୍ତି।" ସାଁନ୍ତେ ବିରକ୍ତ ହୋଇ କହିଲେ—"ଆରେ ଓଲୁ, ଭଲ କହିଲେ ଶୁଣୁନାହୁଁ ? ଗୋବିନ୍ଦ ଅଡ଼କୁ ଗୃହିଁ କହିଲେ—"ଆରେ ଗୋବିନ୍ଦା, ଦେଖାଇ ଦେ'ତ ?" (ପୃଷ୍ଠା – ୧୦)

(୨) "ମିଆଁ କହିଲେ—ସେକଥା ଥାଉ, ଏବେ ଇଜ୍ଜତ କପରି ରହେ ? 'ହମେଶ୍ରି ସାଉ ମହତ୍ ଆଉ, ମହତ ଗଲେ ନମିଲେ ଅଉ।' ମୋ ସାହେବମାନେ ଛୋଲାଉଥିଲେ। ଏକଥା ଶୁଣି ପାଟିକରି ଏକାବେଳକେ କହିଲେ –'ଅଲବତ୍, ଅଲ୍‌ବତ୍‌." ଉଆଜବ, ଉଆଜବ୍।" (ପୃଷ୍ଠା—୨୩)

(୩) ସାରଥି—ମୁଁ କଣ କରିବ ? ଲୋକେ କହୁଛନ୍ତି, ସାଆନ୍ତେ ଜମି କଣ୍ଟ ନେଷି-ନେଲେ ଫେରାଇଦିଅନ୍ତି ନାହିଁ।
ଚମ୍ପା—ରାମ ! ରାମ ! ରାମ ! ଏ କି କଥା କହିଲ। ମଙ୍ଗଲା କାମକୁ ଟଙ୍କା ଦେବେ, ତମ ଜମି ନେବେ ?" (ପୃଷ୍ଠା—୫୩)

ଫକୀରମୋହନ ଓ ହଥର୍ଣ୍ଣ ଉଭୟ ଔପନ୍ୟାସିକ ତାଙ୍କର ଆଲୋଚ୍ୟ ଦୁଇ ଉପନ୍ୟାସର ଅନେକସ୍ଥଳେ ଲୋକଙ୍କ କଥା ଉପରେ ବିଶ୍ୱାସ କରି ଆତ୍ମ ବଚନିକା ମାଧ୍ୟମରେ ଘଟଣାର ଯେଉଁ ଚମତ୍କାରିତାକୁ ବର୍ଣ୍ଣନା କରିଛନ୍ତି, ତାହା ଉଭୟ ଔପନ୍ୟାସିକଙ୍କ ଉପନ୍ୟାସରେ ପରିଲକ୍ଷିତ ହୁଏ।

ଫକୀରମୋହନ ତାଙ୍କ 'ଛ'ମାଣ ଆଠଗୁଣ୍ଠ'ରେ ଲେଖିଛନ୍ତି—

(୧) ହାୟ ! ହାୟ ! ନିନ୍ଦୁକମାନେ ଖ୍ରୀଷ୍ଟଙ୍କୁ କ୍ରୁଶରେ ଚଢ଼ାଇଲେ, ପତିପ୍ରାଣା ସୀତାଙ୍କୁ ବଣକୁ ପଠାଇଲେ, ସେମାନଙ୍କ ବଂଶଧରମାନେ ଯେ ହରିବାସର ଉପବାସୀ ପରୋପକାରୀ ମଙ୍ଗରାଜଙ୍କ ଅଖ୍ୟାତି ରଟନା କରିବେ, ଏହା କିଛି ବିଚିତ୍ର କଥା ନୁହେଁ। ନିନ୍ଦୁକମାନେ ଯେଉଁ କଥା କହିବୁଲିବେ, ଆମ୍ଭମାନଙ୍କୁ ହାଲତରେ ସେକଥା ବୋଲିବାକୁ ହେଉଅଛି।" (ପୃ-୩)

(୨) ଶୁଣାଅଛି, ସାତବର୍ଷ ବୟସରେ ସେ ଛେଉଣ୍ଡ ହୋଇ ବୁଲୁଥିଲେ। (ପୃ-୩)

(୩) ଏ ପୋଖରୀଟି କେତେ କାଳର, କିଏ ଖୋଳାଇଛି, ଏଥିର ଠିକ୍ ବୃତ୍ତାନ୍ତ ଆମ୍ଭେମାନେ କହିବାକୁ ଅକ୍ଷମ। ଶୁଣିବାରେ ଅସୁରମାନେ ଖୋଳିଛନ୍ତି। ଅସମ୍ଭବ ନୁହେଁ।" (ପୃ-୪୨)

ହଥର୍ଣ୍ଣଙ୍କ ଉପନ୍ୟାସରେ ଏପରି ବର୍ଣ୍ଣନା ବିରଳ ନୁହେଁ। 'The House of the Seven Gables' ଉପନ୍ୟାସରେ ସେ ଲେଖିଛନ୍ତି—

(1) "The Iron hearted, Puritan, the relentless presecutor, the grasping and strong willed man was dead! Dead in his new house. There is a tradition, only worth alluding to as lending atinge of superstitutions awe to a scene perhaps gloomy enough without it, that a voice spoke loudly among the guest, the tones of which were like those of old Mathew Maule, the executed wizard—'God hath given him blood to drink." (Page—13)

(2) Colonel Pyncheons sudden and my sterious end made a vast deal of noise in its day. There were many rumours, some of which have vaguely drifted down to the present time.

(Page—13)

ଫକୀରମୋହନ ତାଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ଅନେକସ୍ଥଳେ ଚରିତ୍ର-ମାନଙ୍କ ପ୍ରତି ସମବେଦନାପୂର୍ଣ୍ଣ ଭାଷାର ବ୍ୟବହାର କରିଅଛନ୍ତି । ଏହା ତାଙ୍କର ଆତ୍ମିକ ଭାଷା ବୋଲି କୁହାଯାଇପାରେ ।

(୧) ମଙ୍ଗରାଜଙ୍କ ଜୀବନ କ୍ଷେତ୍ରରେ ଦୁଇଗୋଟି ନଦୀ ପ୍ରବାହିତ ହେଉଥିଲା । ଗୋଟିଏ ଉଜ୍ଜ୍ୱଳ ତରଙ୍ଗମୟୀ ସର୍ପ କୁମ୍ଭୀର-ସଙ୍କୁଳ-କୂଳ-ପ୍ଳାବନୀ-ଚର୍ମଣ୍ୱତୀ, ଆଉ ଗୋଟିଏ ଅନ୍ତଃସ୍ରୋତା ପୂତସଲିଳା କୂଳ ପ୍ଳାବନୀ ଫଲ୍‌ଗୁ ।"

(୨) ମିଆଁ ସାହେବ ଗାଲରେ ହାତ ଦେଇ ବସିଛନ୍ତି, ଓ୍ୱାଟର୍ଲୁ ଯୁଦ୍ଧରେ ହାରି ନେପୋଲିୟନ ଏପରି ଭାବନାରେ ବସିପାରିନଥିଲେ ।

(ପୃଷ୍ଠା—୨୩)

ହଥର୍ଣ୍ଣ 'The House of the Saven Gables' ଉପନ୍ୟାସରେ ହେପ୍‌ଜିବାଙ୍କ ଚରିତ୍ର ବର୍ଣ୍ଣନାରେ ଉପରୋକ୍ତ ଭାଷା ତଥା ଭାବର ଆଶ୍ରୟ ନେଇଥିବାର ମଧ୍ୟ ଲକ୍ଷ୍ୟ କରାଯାଏ —

(1) "Our Miserable old Hepzibah! It is a heavy annoyance to a writer, who endeavours to represent nature. It's various attitudes and circumstances, in a reasonably correct cut

line and true coloring, that so much of the mean and ludicrous should be hopelessly mixed up with the purest Pathos which life any where supplies to him What tragic dignity for example can be wrough into a scene like this ! How can we elevate our history of retribution for the sin of long ago, when as one of our most prominent figures, we are compelled to introduce not a young and lovely woman nor even the stately remains of beauty, storm—shattered by affliction but a gaunt, sallow, rusty-jointed maiden, in along-waisted silk gown, and with the strange horror of a turban on her head ! Her visage is not even ugly. It is redeemed from in significance only by the contraction of her eyebrows into a near-sighted scout. And finally her great life trial seens to be that after sixty years of idleness, she finds it convenient to earn comfortable bed by setting up a shop in a small way. Neverthless, if we look through all the heroic fortunes of mankind, we shall find this same entanglement of something mean and trival with what ever is noblest in joy and sorrow."

ଯେଉଁ ସ୍ଥଳରେ ଯେଉଁ ଭାଷାର ଆବଶ୍ୟକତା ରହିଛି ହଥର୍ଣ୍ଣ ଓ ଫକୀରମୋହନ ଯଥାକ୍ରମେ 'The House of the Seven Gables' ଓ 'ଛ' ମାଣ ଆଠଗୁଣ୍ଠ' ଉପନ୍ୟାସରେ ତାହାର ଉପଯୁକ୍ତ ପ୍ରୟୋଗ କରିଅଛନ୍ତି । ଉପରୋକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ପ୍ରମାଣିତ ହୁଏ ଯେ, 'ଛ' ମାଣ ଆଠଗୁଣ୍ଠ' ଓ 'The House of the Seven Gables' ଉପନ୍ୟାସ ଦ୍ୱୟରେ ଭାଷା ପ୍ରୟୋଗରେ ଉଭୟ ଔପନ୍ୟାସିକ ଆଶ୍ଚର୍ଯ୍ୟଜନକ ସାମ୍ୟ ସ୍ଥାପନ କରିପାରିଛନ୍ତି ।

ଭାଷାଗତ ଶୈଳୀ ବ୍ୟତୀତ ବର୍ଣ୍ଣନାଗତ ଶୈଳୀରେ ମଧ୍ୟ ଆଲୋଚ୍ୟ ଦୁଇ-ଉପନ୍ୟାସରେ ଅନେକ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ମାଇପଙ୍କ ଗାଧୁଆତୁଠ (ଅସୁରଢ଼ିଗୀ) ଗାଁ ମଜ୍‌ଲିସ୍, ଜମିଦାରଙ୍କ କଚେରୀ, ହାକିମଙ୍କ ବଙ୍ଗଳସ୍ଥ, ନରନାରୀ ମାନଙ୍କର ମନଗହନର ବଚନ ସମ୍ବାଦ ଯେପରି ଫକୀରମୋହନଙ୍କ 'ଛ' ମାଣ ଆଠଗୁଣ୍ଠ' ଉପନ୍ୟାସରେ ବର୍ଣ୍ଣିତ, ଠିକ୍ ସେହିପରି ହଥର୍ଣ୍ଣଙ୍କ 'The House of the Seven Gables' ଉପନ୍ୟାସରେ ହଥର୍ଣ୍ଣଙ୍କ—'ପିନ୍‌ଚନ୍ ପରିବାର', ଗାଉଁଲ୍ଲୀ ଦୋକାନର ଚିତ୍ର, ଗରାକିମାନଙ୍କର ସ୍ୱଭାବ, ବଗିଚାରେ ମଧ୍ୟାହ୍ନ, ଅପରାହ୍ନର ଦୃଶ୍ୟ; ବର୍ଷାଦିନର ଷ୍ଟେସନ୍

ସ୍ତାର ବର୍ଣ୍ଣନା ପ୍ରକୃତ ସମବୃଷ୍ଟିରେ ବର୍ଣ୍ଣିତ । ଫକୀରମୋହନଙ୍କ 'ଛ' ମାଣ ଅଠଗୁଣ୍ଠ' ରେ ଅସୁରପୋଖରୀ ଭୂଠର ଦୃଶ୍ୟ ନିମ୍ନଭାବେ ବର୍ଣ୍ଣିତ—

"ଅସୁର ପୋଖରୀ ଗୁଡ଼ିଆ ଭୂଠ, ଧରବାକୁ ଗଲେ ଚନାଟା । ପକ୍ଷିଣ ଭୂଠକୁ କେହି ଯାଆନ୍ତି ନାହିଁ । ଗାମରେ କେହି ମଲାପଲେ ଯେହି ଭୂଠରେ ଦାହକ୍ରିୟା ହୁଏ । ଏହି ଭୂଠଟା ବଡ଼ ଭୟଙ୍କର ସ୍ଥାନ । ରାତ ତ ରାତ, ଦିନ ବେଳେ ମଧ୍ୟ ଦେଠାକୁ କେହି ଯିବାର ଦେଖାଯାଏ ନାହିଁ । ଏହି ଭୂଠ ଉପରକୁ ଖୁବ୍ ବଡ଼ ଗୋଟାଏ ଅଶ୍ୱତ୍ଥ ଗଛ ଅଛି । ସେଥିରେ ଦବଦା ଯୋଡ଼ାଏ ବ୍ରହ୍ମଦୈତ୍ୟ ଥିବାର ସମସ୍ତଙ୍କୁ ଜଣା । ଅନ୍ଧାରାତରେ ଦୈତ୍ୟମାନେ ଗଛ ଅଗରେ ବସି ପୋଖରୀ ମଝିକୁ ଗୋଡ଼ ଲମ୍ବାଇ ଦେଇଥିବାର ଅନେକ ଲୋକ ଦେଖିଛନ୍ତି । କିଏ କିଏ ଦେଖିଛନ୍ତି ନାମ ଜଣାନାହିଁ; କିନ୍ତୁ ଦେଖିବାର ସତ । ଆହୁରି ମଧ୍ୟ ଏହି ଆଡ଼ିଆରେ ଅନେକ ପିଶାଚୁଣୀ, ଡାକୁଣୀ, ସବୁଦିନେ ସରକରି ରହି ଅନ୍ଧାର ରାତରେ ଆଲୁଅ ଜାଳ ମାଛ ଧରୁଥିବାର ବିଶେଷରେ ବର୍ଷାର ଅନ୍ଧାର ରାତରେ ପଲପଲ ହୋଇ ବୁଲୁଥିବାର ପ୍ରତ୍ୟକ୍ଷ ପ୍ରମାଣ ଯଥେଷ୍ଟ ଅଛି । ପୂର୍ବ ତରଫରେ ଧୋବାଭୂଠ । ଦୁଇଜଣ ଧୋବା ଇଶ୍ ଇଶ୍ ଗ୍ରମ୍ ଗ୍ରମ୍ କହି ପଥର ଉପରେ ଲୁଗା ବାଡ଼ଉଛନ୍ତି । 'ଗାଁ ପରଗୁଣ ଧୋବାଭୂଠରୁ ଜଣା ।"

( ପୃଷ୍ଠା—୪୪/୪୫ )

ଏହିପରି ପ୍ରାଞ୍ଜଳ ଓ ଚିତ୍ରକଳ୍ପ ବର୍ଣ୍ଣନା ଓଡ଼ିଆ ଉପନ୍ୟାସ ସାହିତ୍ୟର ଅନ୍ୟ କୌଣସି ଉପନ୍ୟାସରେ ବା ଔପନ୍ୟାସିକଙ୍କ ଲେଖାରେ ପରିଦୃଷ୍ଟ ହୋଇପାରିନାହିଁ; ବରଂ ଆମେରିକାୟ ଔପନ୍ୟାସିକ ହଥର୍ଣ୍ଣଙ୍କ 'The House of the Seven Gables' ଉପନ୍ୟାସର ବର୍ଣ୍ଣନା ଶୈଳୀରେ ଏହି ଚିତ୍ରକଳ୍ପ ଓ ପ୍ରାଞ୍ଜଳ ବର୍ଣ୍ଣନା ପରିଲକ୍ଷିତ ହୁଏ । ପିନ୍‌ଚନ୍ ପରିବାରର ଗୃହ ପ୍ରସଙ୍ଗରେ ହଥର୍ଣ୍ଣଙ୍କର ଏପରି ବର୍ଣ୍ଣନା ବେଶ୍ ଉଲ୍ଲେଖନୀୟ—

"Half-way down a by—street of one of our New England towns stands a rusty woden house, with seven actually peaked gables, facing towards various points of the compass and a huge, clustered chimney in the midst. The street is Pyncheon street the House is the old Pyncheon house, and an elm-tree, of wide circumference, rooted before the door, is familiar to every town-born child by the title of the Pyncheon Elm."

( Page-I )

ପୁଣି ହେପ୍‌ଜିବାଙ୍କର ନୂଆକରି ଦୋକାନ ଖୋଲିବା ଦିନର ସୂର୍ଯ୍ୟୋଦୟର ବର୍ଣ୍ଣନା ହଥର୍ଣ୍ଣଙ୍କ ଲେଖାରେ ଫକୀରମୋହନୀୟ ଶୈଳୀରେ ହିଁ ପ୍ରକାଶିତ ହୋଇଛି । ସେ ଲେଖିଛନ୍ତି—

"The Sun, Mean while, if not already above the horizon was ascending nearer and nearer to it's verge. A few coulds floating high upward, caught some of the earliest light and threw downing golden gleam on the window's of all the houses in the street, not forgetting the House of the Seven Gabbles which many such suntise as it had witnessed looked cheerfully at the present one. The reflected radiance served to show, pretty distinctly, the aspect and arrengement of the room which Hepzibah entered, after descending the stairs."

( Page—32/33 )

ଏହିପରି ଅନେକ ବର୍ଣ୍ଣନାରେ ହଥର୍ଣ୍ଣ ଓ ଫକୀରମୋହନଙ୍କ ବର୍ଣ୍ଣନାଗତ ଶୈଳୀ ପ୍ରାୟ ପରସ୍ପରର ନିକଟତର ମନେହୁଏ । ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ'ରେ ଯେଉଁ ମନୋଜ୍ଞ ବର୍ଣ୍ଣନା ପାଠକ ପ୍ରାୟ ପ୍ରତି ପରିଚ୍ଛେଦରେ ଭେଟେ, ସେଥିରୁ ସେ କେବେ ହଥର୍ଣ୍ଣଙ୍କ 'The House of the Seven Gables'' ପଢିଲ ବେଳେ ବଞ୍ଚିତ ହୁଏନାହିଁ । ଅର୍ଥାତ୍ "The House of the Seven Gables" ଓ 'ଛ' ମ ଣ ଆଠଗୁଣ୍ଠ'ର ବର୍ଣ୍ଣନା ଶୈଳୀରେ ଯଥେଷ୍ଟ ସାମ୍ୟ ପରିଲକ୍ଷିତ ହୁଏ ।

ହଥର୍ଣ୍ଣଙ୍କ ଉପନ୍ୟାସ ଶୈଳୀର ଅନ୍ୟତମ ବୈଶିଷ୍ଟ୍ୟ ହେଉଛି ନାଟକୀୟତା । ନାଟକର ଅଙ୍କ ଓ ଦୃଶ୍ୟପରି ସେ ତାଙ୍କର ଉପନ୍ୟାସ 'The House of the Seven Gables'କୁ ୨୧ଟି ପରିଚ୍ଛେଦରେ ବିଭକ୍ତ କରିଛନ୍ତି ଏବଂ ବିଷୟଗତ ଦୃଷ୍ଟିରୁ ସେଗୁଡ଼ିକର ନାମକରଣ ମଧ୍ୟ କରିଛନ୍ତି । ତାହା ହେଲ—(i) The old Pyncheon family, (ii) The Little shap window, (iii) The First Customer, (iv) Day Behind the Counter, (v) May and November, (vi) Mauie' Well, (vii)—The Guest. (viii) The Pyncheon of today. (ix)—Clifford and Phoeb, (x) The Pyncheon Garden, (xi) The Arched Window, (xii) The Daguerre olypse, (xiii) Alice Pyncheon. (xiv) Phoebe's good-by, (xv) The Scowl and Smile, (xvi) Cliford's chamber (xvii) The fight of two owls, (xviii)

Governor Pyncheon, (xix) Alie's Posies, (xx) The Flouer of Eden, (xxi) The Departure, ଫକୀରମୋହନ ତାଙ୍କର ପ୍ରାୟ ଉପନ୍ୟାସରେ ମଧ୍ୟ ଏହି ଶୈଳୀ ପ୍ରୟୋଗ କରିଅଛନ୍ତି । ସେ ମଧ୍ୟ ହଥର୍ଣ୍ଣଙ୍କ ପରି ତାଙ୍କ 'ଛମାଣ ଆଠଗୁଣ୍ଠ' ଉପନ୍ୟାସକୁ ଉପସଂହାର ସହ ଅଠାଇଶଟି ପରିଚ୍ଛେଦରେ ବିଭକ୍ତ କରିଅଛନ୍ତି ଓ ବିଷୟବସ୍ତୁ ଦୃଷ୍ଟିରୁ ସେସବୁର ସାର୍ଥକ ନାମକରଣ ମଧ୍ୟ କରିଛନ୍ତି । 'The House of the Seven Gables' ଓ 'ଛ'ମାଣ ଆଠଗୁଣ୍ଠ'ର ଏହି ଆଂଗିକ ଶୈଳୀର ସାମ୍ୟ ନିମ୍ନମତେ ଆଲୋଚନା କରାଯାଇପାରେ ।

ହଥର୍ଣ୍ଣ 'The House of the Seven Gables'' ଉପନ୍ୟାସରେ ପ୍ରଥମେ କେତୋଟି ପରିଚ୍ଛେଦକୁ ମଞ୍ଚପ୍ରସ୍ତୁତ ଓ ପୃଷ୍ଠଭୂମି ଗଠନରେ ନିୟୋଜିତ କଲାପରେ ମଞ୍ଚଭୂମି ଉପରକୁ ଗୋଟିକ ପରେ ଗୋଟିଏ ଚରିତ୍ର ନାଟକୀୟ ଭାବାବେଶରେ ଅବତୀର୍ଣ୍ଣ ହେବାପରି ଦେଖାଦେଇଛନ୍ତି । ପୁଣି ହଥର୍ଣ୍ଣଙ୍କ 'The House of the Seven Gables'' ଉପନ୍ୟାସରେ ଥିବା ବିଭିନ୍ନ ପରିଚ୍ଛେଦ ମାନ ଘଟଣାର ବିଶ୍ଳେଷଣ ଚରିତ୍ର ସମୀକ୍ଷାରେ କ୍ଷାନ୍ତ ନୁହେଁ, ଗତିଶୀଳ । ନାଟକରେ ପୃଷ୍ଠଭୂମି ବିକଶିତ କରିବା ଓ ଗଳ୍ପର ବିକାଶରେ ଦ୍ରୁତଗତି ଆଣିବା ପାଇଁ ଅନେକ ସମୟରେ ମୂଳଗଳ୍ପ ସହିତ ସମ୍ପର୍କ ନଥିବା କେତେକ ଦୃଶ୍ୟର ଉପସ୍ଥାପନା କରାଯାଇଥାଏ । ଉପନ୍ୟାସଠାରୁ ନାଟକର ପରିସର ଓ ପୃଷ୍ଠଭୂମି ଅପେକ୍ଷାକୃତ ସୀମିତ । ପରିସର ବୃଦ୍ଧି କରିବା ପାଇଁ ନାଟ୍ୟକାର-ମାନେ ଅନେକ ସମୟରେ ଏହି ଶୈଳୀ ବା ପଦ୍ଧତି ଗ୍ରହଣ କରିଥାଆନ୍ତି । ହଥର୍ଣ୍ଣ ତାଙ୍କ 'The House of the Seven Gables''ରେ ଓ ଫକୀରମୋହନ ତାଙ୍କ 'ଛମାଣଆଠଗୁଣ୍ଠ, ଉପନ୍ୟାସରେ ସମଭାବେ ଏହି ଶୈଳୀର ବଶବର୍ତ୍ତୀ ହୋଇପଡ଼ିଛନ୍ତି । ହଥର୍ଣ୍ଣ ଯେପରି ଆଲୋଚ୍ୟ ଉପନ୍ୟାସର ମୁଖ୍ୟ ଚରିତ୍ର ଉପସ୍ଥାପନା କରିବାକୁ ପାଇଁ ଉପନ୍ୟାସର ପ୍ରଥମ ପର୍ଯ୍ୟାୟରେ 'The old Pycheon family' ପରିଚ୍ଛେଦରେ ପିନ୍‌ଚନ୍ ପରିବାର ଵିକନିଷି ବିବରଣୀ ପ୍ରଦାନ କରିଛନ୍ତି, ଫକୀରମୋହନ ମଧ୍ୟ ଅନୁରୂପ ଭାବେ 'ଛମାଣଆଠଗୁଣ୍ଠ' ଉପନ୍ୟାସର ପ୍ରଥମ ପରିଚ୍ଛେଦରେ ଥିବା 'ରାମଚନ୍ଦ୍ର ମଙ୍ଗରାଜ'ଙ୍କ ସମ୍ପର୍କରେ ଯଥାଯଥ ବର୍ଣ୍ଣନା ଦେଇଛନ୍ତି । ଏହାପରେ ଉଭୟ ଉପନ୍ୟାସ ନିଜ ନିଜ ଆଦର୍ଶରେ ବାଟକାଟି ଚାଲିଛନ୍ତି । ଲକ୍ଷ୍ୟକଲେ ଉଭୟ ଉପନ୍ୟାସର ଗଠପଥରେ ମଧ୍ୟ ଆହୁରି ଅନେକ ସାମ୍ୟ ପରିଲକ୍ଷିତ ହୁଏ ।

ବେଳେବେଳେ ହଥର୍ଣ୍ଣଙ୍କ ବର୍ଣ୍ଣନାତ୍ମକ ଦୃଷ୍ଟିଭଙ୍ଗୀ ପାଠକ ମନରେ ବିରକ୍ତିଭାବ ପ୍ରକାଶ କରାଇଥାଏ । 'The House of the Seven Gables'ରେ ଥିବା ପିନ୍‌ଚନ୍ କଚିରୁ, ଫୋଏବ୍‌ର ବିଦାୟ, ଏହି ଦୃଷ୍ଟାନ୍ତ ପାଇଁ ଦୁଇଟି ପ୍ରକୃଷ୍ଟ ଉପାଦାନ । ନାଟକୀୟ ଭାବରେ ପରିବେଶିତ ଅନ୍ୟ ଏକ ଉଦାହରଣ ହେଉଛି ହଥର୍ଣ୍ଣଙ୍କ ସୃଷ୍ଟ ଚରିତ୍ରରେ

ଛଦ୍ମବେଶ ପ୍ରୟୋଗ । ଏହି ଶୈଳୀ ଫକୀରମୋହନଙ୍କ 'ଛମାଣଆଠଗୁଣ୍ଠ' ଉପନ୍ୟାସରେ ନଥିଲେ ବି 'ଲଛମା'ରୁ ଏହାର ଉଦାହରଣ ଦିଆଯାଇପାରେ । ଅବଶ୍ୟ ହଥର୍ଣ୍ଣଙ୍କ 'The House of the Seven Gables'ରେ ମାଉଲେ ବଂଶୀୟ ହୋଲ୍‌ଗ୍ରେଭ୍ ନାମକ ଯୁବକର ଛଦ୍ମବେଶ ଧାରଣ ଓ ବହୁଦିନ ପର୍ଯ୍ୟନ୍ତ ପିନ୍‌ଚନ୍ ପରିବାର ନିକଟରେ ଏହା ଅଜ୍ଞାତ ଥିବା ଘଟଣା ନାଟକୀୟ ଉଦ୍‌ବେଗ ସୃଷ୍ଟି କରିପାରିଛି । ଏ କ୍ଷେତ୍ରରେ 'ଛମାଣ ଆଠଗୁଣ୍ଠ' ମାତ୍ରକ ସତ୍ୟ; ମାତ୍ର ଫକୀରମୋହନଙ୍କ ଅନ୍ୟାନ୍ୟ ଉପନ୍ୟାସ ଯଥା— 'ଲଛମା'ରେ ଏହି ନାଟକୀୟ ଉଦ୍‌ବେଗ ପରିପ୍ରକାଶ ଲଭିଛି । ହଥର୍ଣ୍ଣଙ୍କ ପରି ଫକୀର-ମୋହନ ମଧ୍ୟ ଅନେକ ଅବାନ୍ତର, ତଥା ଅସୁଖ ପାଠ୍ୟ ବର୍ଣ୍ଣନାରେ 'ଛମାଣ ଆଠଗୁଣ୍ଠ'ର ପରିସରକୁ ବୃଦ୍ଧି କରିଛନ୍ତି । ତେବେ ଘଟଣାର ଅନୁରୋଧରେ, ବର୍ଣ୍ଣନାର ଚଟୁଳତାରେ ଏହି ଭାବ ଉଭୟ ଔପନ୍ୟାସିକଙ୍କ ଉପନ୍ୟାସକୁ କଳଙ୍କିତ କରିଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ଅଜ୍ଞାତସାରରେ ଯୁଗର ରୁଚି ଓ ଗତି ହଥର୍ଣ୍ଣଙ୍କ ଶୈଳୀ ଉପରେ ଅପ୍ରତିହତ ପ୍ରଭାବ ବିସ୍ତାର କରିଛି । ତତ୍‌କାଳୀନ ଆମେରିକାର ସାମାଜିକ ଜୀବନ ପ୍ରବଳ କ୍ଷୟଶୀଳତାର ମୋହରେ ଆଚ୍ଛନ୍ନ ହୋଇପଡ଼ିଥିଲା । ଏକ ସଂସ୍କାରଲିପ୍ସୁ ଦୃଷ୍ଟିକୋଣ ନେଇ ହଥର୍ଣ୍ଣ ଏପରି ଅନ୍ଧକାରାଚ୍ଛନ୍ନ ମୋହ ଓ ଇଚ୍ଛାକୃତ କଳିମାକୁ ଲୋପ କରିବାକୁ ଯାଇଁ ପିନ୍‌ଚନ୍ ପରିବାର ଓ ମାଉଲେ ପରିବାର ପରି ଦୁଇଟି ସାମାଜିକ ଗୋଷ୍ଠୀର ଅବତାରଣା କରି ସେମାନଙ୍କ ଉତ୍‌ଥାନ ପତନ ଜଡ଼ିତ ଅବସ୍ଥାକୁ 'The House of the Seven Gables' ଉପନ୍ୟାସରେ ଯେପରି ଉପସ୍ଥାପିତ କରିଛନ୍ତି, ତାହା କେବଳ ସମସାମୟିକ ସମାଜର ପ୍ରତିଫଳନ ନୁହେଁ; ବରଂ ଏହା ତାଙ୍କ ଉପନ୍ୟାସ ଶୈଳୀର ଓ ଉପସ୍ଥାପନା ଦିଗର ଏକ ବିଶେଷ ଗୁରୁତ୍ୱ । ଏ ଗୁରୁତ୍ୱ ମଧ୍ୟ ଔପନ୍ୟାସିକ ଫକୀରମୋହନ ତାଙ୍କର 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ପ୍ରୟୋଗ କରିଥିଛନ୍ତି । ଫକୀରମୋହନଙ୍କ କାଳକୁ ଓଡ଼ିଶାର ଜନଜୀବନ କୁସଂସ୍କାରାଚ୍ଛନ୍ନ ଓ ବ୍ରିଟିଶ୍ ଶାସନ କଳଙ୍କିତ ହୋଇପଡ଼ିଥିଲା । 'ବୁଢ଼ୀ ମଙ୍ଗଳା' ଉପାଖ୍ୟାନର ଅବତାରଣା ଓ ତତ୍‌କାଳୀନ ବିଗ୍ରହ ବିଭାଗର ଅବସ୍ଥା ଫକୀର-ମୋହନଙ୍କ ସଂସ୍କାର ପ୍ରୟାସୀ ମନର ଚିତ୍ର ପ୍ରଦାନ କରିବାରେ ସମର୍ଥ ହୋଇପାରିଛି । ଅର୍ଥାତ୍ ଫକୀରମୋହନଙ୍କ ଉପନ୍ୟାସରେ ମଧ୍ୟ ହଥର୍ଣ୍ଣଙ୍କ ପରି ଯୁଗରୁଚିର ଅନୁରୋଧ ଅତି ଆଶ୍ଚର୍ଯ୍ୟ ଭାବେ ବର୍ଣ୍ଣିତ ହୋଇପାରିଛି ।

ହଥର୍ଣ୍ଣଙ୍କ ଉପନ୍ୟାସର ପରିଣତି ମିଳନାତ୍ମକ । କିନ୍ତୁ ଏହା ପୂର୍ବରୁ ସେ 'The House of the Seven Gables'ରେ ଚରିତ୍ରମାନଙ୍କୁ ସେମାନଙ୍କ କୃତକର୍ମର ଫଳ ଭୋଗ କରିବାପାଇଁ ଛାଡ଼ିଦେଇଛନ୍ତି । କର୍ଣ୍ଣେଲ୍ କୌଶଳକ୍ରମେ ମାଥିଉ ମାଉଲେଙ୍କୁ ହତ୍ୟା କରି ତାଙ୍କ ଜମିକୁ ନେଇଥିବାରୁ ମାଉଲେଙ୍କ ଅତୃପ୍ତ ଆତ୍ମା ଏବଂ ତାଙ୍କର ବଂଶଧର

ମାନେ ତାର ପ୍ରତିଶୋଧରେ ଉନ୍ମୁଖ ହୋଇପଡ଼ିଛନ୍ତି । ପରିଣତିରେ 'The House of the Seven Gables' ଉପନ୍ୟାସରେ ନାନା ଅସ୍ୱାଭାବିକ ମୃତ୍ୟୁ, ବିଷାଦମୟ ପରିସ୍ଥିତି ତଥା ଶୋଚନୀୟ ଅବସ୍ଥାଦି ଉପସ୍ଥିତ ହୋଇଛି । ଯେଉଁ ରକ୍ଷଣଶୀଳ ପିନ୍‌ଚନ୍ ପରିବାରର ନାମ ପଦାକୁ ବାହାର କୌଣସି କାର୍ଯ୍ୟ କରିବାକୁ ଅସମ୍ମାନ ହାନି ବୋଲି ମନେକରୁଥିଲେ, ଆଜି ବଂଶ ପରମ୍ପରାର ଅବକ୍ଷୟ ପୃଷ୍ଠଭୂମି ଉପରେ ଠିଆହୋଇ ସେହି ବଂଶର ଅନ୍ୟତମା ନାୟିକା ହେପ୍‌ସିବା ସାମାନ୍ୟ ଦୋକାନଟିଏ କରିଛି । ସେହି ବଂଶର ଅଲିଂସ ପିନ୍‌ଚନ୍ ନିଜ ବାପାଙ୍କ କୁକର୍ମ ପାଇଁ ଅତି ଅସହାୟ ଭାବରେ ମୃତ୍ୟୁବରଣ କରିଛନ୍ତି । ଏସବୁ କର୍ମଫଳ । ମାଉଲେଙ୍କ ଶ୍ରେଷ୍ଠ ଜମିବଣ୍ଡିକୁ ନେଇ ପିନ୍‌ଚନ୍ ପରିବାର ଯେଉଁ ଭୁଲ୍ କଲେ, ତାର ମୂଲ୍ୟ ଭାବେ ତାଙ୍କୁ ଅନେକ କିଛି ଦେବାକୁ ପଡ଼ିଛି । ଶେଷରେ ତାଙ୍କର ବଂଶର କନ୍ୟା ଫୋଏବ୍‌କୁ ବିବାହ କରିଛି ମାଉଲେ ବଂଶୀୟ ଯୁବକ ହୋଲ୍‌ଗ୍ରେଭ । ଉପନ୍ୟାସଟିରେ ନାନା ଝଡ଼ଝଞ୍ଜା ଭିତରେ ଔପନ୍ୟାସିକ ପରିଣତିରେ ଏକ ଶାନ୍ତିରେଖା ଟାଣି ଦେଇଛନ୍ତି । କିନ୍ତୁ ଫକୀରମୋହନ ଶୋଷଣକାରୀ ରାମଚନ୍ଦ୍ର ମଙ୍ଗରାଜକୁ କର୍ମଫଳ ଭୋଗର ମୃତ୍ୟୁମୁଖକୁ ଠେଲି ଦେଇଛନ୍ତି । ସାରିଆ ଭଗିଆଙ୍କ ପରିବାର ଉଚ୍ଛନ୍ନ ହୋଇଛି ରାମଚନ୍ଦ୍ର ମଙ୍ଗରାଜଙ୍କ ଚକ୍ରାନ୍ତରେ । କିନ୍ତୁ ସେହି ସାରିଆ ଭଗିଆଙ୍କ ଛ'ମାଣ ଆଠଗୁଣ୍ଠ ନେବାପରେ ରାମଚନ୍ଦ୍ର ମଙ୍ଗରାଜଙ୍କ ଜୀବନରେ ଆସିଛି ବିପର୍ଯ୍ୟୟ । ପରିଣତିରେ ତାଙ୍କ ମୃତ୍ୟୁ ଏହି ଉପନ୍ୟାସକୁ ଟ୍ରାଜେଡ଼ି ମୁଖକୁ ଠେଲିଦେଇଛି । ଏହା ପରିଣତି ଦୃଷ୍ଟିରୁ କର୍ମଫଳ ଭୋଗପର୍ଯ୍ୟନ୍ତ 'The House of the Seven Gables' ଉପନ୍ୟାସ ସହ ତୁଳନୀୟ । କିନ୍ତୁ 'The House of the Seven Gables'ରେ ହଥର୍ଣ୍ଣ ପିନ୍‌ଚନ୍ ପରିବାରର ଶୋଷଣଜନିତ ପ୍ରାୟଶ୍ଚିତ ପାଇଁ ଯେପରି ତାଙ୍କ ବଂଶକୁ କ୍ରମାଗତ ମୃତ୍ୟୁମୁଖକୁ ଠେଲି ଦେଇ ପରିଶେଷରେ ମାଉଲେ ବଂଶ ସାଙ୍ଗରେ ସନ୍ଧି ସ୍ଥାପନ ଭଳି ଫୋଏବ୍ ଓ ହୋଲ୍‌ଗ୍ରେଭ୍‌ଙ୍କ ବିବାହ କରାଇଦେଇଛନ୍ତି, ତାହା ଛ'ମାଣ ଆଠଗୁଣ୍ଠ'ରେ ରାମଚନ୍ଦ୍ର ମଙ୍ଗରାଜଙ୍କ ଅନୁତାପ ଜନିତ ମୃତ୍ୟୁରେ ହିଁ ରୂପାନ୍ତରିତ ହୋଇଯାଇଛି କହିଲେ ଚଳେ । ଅତଏବ ଆଲୋଚ୍ୟ ଉପନ୍ୟାସ ଦ୍ୱୟର ପରିଣତିରେ 'ଦୋଷୀକୁ ଦଣ୍ଡ' ଆଦର୍ଶରେ ଉଦ୍‌ବୁଦ୍ଧ ଉଭୟ ଔପନ୍ୟାସିକଙ୍କ ଶୈଳୀ ମନୋଜ୍ଞ ସାମ୍ୟ ଦର୍ଶାଇ ପାରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

'The House of the Seven Gables' ଔପନ୍ୟାସିକ ହଥର୍ଣ୍ଣଙ୍କର ଏକ ସମସ୍ୟାମୂଳକ ସାମାଜିକ ଉପନ୍ୟାସ । ଏଥିରେ ତାଙ୍କର ଉପସ୍ଥାପନା ଶୈଳୀ, ଆତ୍ମିକ ଅଭିବ୍ୟକ୍ତି ଓ ଆଙ୍ଗିକ ରୂପ ବିକାଶର ସଫଳତା ତାଙ୍କ ଉପନ୍ୟାସ ସୃଷ୍ଟିରେ ଚରମ ସଫଳତା ଆଣିପାରିଛି । ଏହି ଉପନ୍ୟାସରେ ତାଙ୍କର କୁଶଳୀ ହାତର ଦକ୍ଷ ବର୍ଣ୍ଣନା, ମନୋହାର ବ୍ୟକ୍ତିତ୍ୱ, ବୈପ୍ଳବିକ ଦୃଷ୍ଟିଭଙ୍ଗୀ, ଦରଦୀ ଶିଳ୍ପୀ ପ୍ରାଣର ଚିରନ୍ତନ ଚିନ୍ତ

ଅଙ୍କିତ । ଏହି ଉପନ୍ୟାସରେ ହଥର୍ଣ୍ଣଙ୍କର ଅନ୍ୟଏକ ଶୈଳୀଗତ ବିଶେଷତ୍ୱ ତାଙ୍କ ବ୍ୟକ୍ତି-ଗତ ଜୀବନ, ପାରିବାରିକ ସଙ୍କଟକୁ ସେ ପିନ୍‌ଚନ୍ ପରିବାର ମାଧ୍ୟମରେ ରୂପାୟିତ କରିଛନ୍ତି । (୮) ସେମିତବେ ଫକୀରମୋହନ 'ଛ'ମାଣ ଆଠଗୁଣ୍ଠ'ରେ ବଲସ୍ତମ୍ଭ ବାଘସିଂହ ବଂଶ ଭିତରେ ନଜର (ମଲ୍ଲ ପରିବାର) ପାରିବାରିକ ଅବକ୍ଷୟତାକୁ ଦର୍ଶାଇ-ଅଛନ୍ତି ଏବଂ ନୂତନ ଜମିଦାରମାନଙ୍କର ନୃଶଂସତା ସମ୍ପର୍କରେ ସେ ଯେଉଁ ବିବରଣୀ ପ୍ରଦାନ କରିଛନ୍ତି, ତାହା 'The House of the Seven Gables' ଉପନ୍ୟାସର ଜର୍ଜ ପିନ୍‌ଚନ୍‌ଙ୍କ ବର୍ବରତା ସହ ତୁଳନୀୟ । କାରଣ ସେ ଆଭିଜାତ୍ୟ ବଂଶର ସନ୍ତାନ ସତ୍ୟ; କିନ୍ତୁ ସେ ଛ'ମାଣ ଆଠଗୁଣ୍ଠର ନୂତନ ଜମିଦାରୀ ପାଇଥିବା ବୃନ୍ଦାବନ ସ୍ଥାନ ରାମଚନ୍ଦ୍ର ମଙ୍ଗରାଜଙ୍କ ପରି ବର୍ବରତା ଆଚରଣରେ ଯେପରି ନିଷ୍ଠୁର; ସେହିପରି ହିଂସ୍ର ।

ଏ କ୍ଷେତ୍ରରେ 'The House of the Seven Gables' ଓ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସ ଦ୍ୱୟର ଯେ ସାମ୍ୟ ରହିଛି, ତାହା ମଧ୍ୟ ଅସ୍ୱୀକାର କରିହେବ ନାହିଁ । ହଥର୍ଣ୍ଣ ଯେପରି ତାଙ୍କ ଉପନ୍ୟାସମାନଙ୍କରେ ଅପୂର୍ବଶୈଳୀ ପ୍ରୟୋଗ ହେତୁ ଆମେରିକୀୟ ସାହିତ୍ୟ ଜଗତରେ ଖ୍ୟାତିସମ୍ପନ୍ନ ଓ ଅନତିକ୍ରମଣୀୟ ପ୍ରତିଭା, ଫକୀରମୋହନଙ୍କ ସ୍ଥାନ ମଧ୍ୟ ତଦ୍ରୂପ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠିତ ହୋଇପାରିଛି । ତେଣୁ ଏହି ଉଭୟ ଔପନ୍ୟାସିକଙ୍କ ଉପନ୍ୟାସ ରଚନାର ଶୈଳୀ ଯେ ଶ୍ରେଷ୍ଠ, ଏକଥା ଅସ୍ୱୀକାର କରିହେବ ନାହିଁ । କେଉଁ ଦୃଷ୍ଟିରୁ ଏମାନେ ଶୈଳୀ କ୍ଷେତ୍ରରେ ସମଧର୍ମୀ ତାହା ତାଙ୍କର ଦୁଇ ପ୍ରଧାନ ଉପନ୍ୟାସ ମାଧ୍ୟମରେ ପ୍ରମାଣିତ କରିଦିଆଗଲାପରେ ଏକଥା ନିଃସନ୍ଦେହରେ କୁହାଯାଇପାରେ ଯେ, ବିଶ୍ୱର ଅନ୍ୟକୌଣସି ଔପନ୍ୟାସିକ ଶୈଳୀ କ୍ଷେତ୍ରରେ ଏପରି ପରସ୍ପରର ଏତେ ନିକଟତର ହୋଇପାରି ନାହାନ୍ତି ।

**(ଗ) କାଳ ଦୃଷ୍ଟିରୁ :**

ଫକୀରମୋହନ ଓ ହଥର୍ଣ୍ଣ ଏକ ସମଶତାବ୍ଦୀର ଔପନ୍ୟାସିକ ସତ୍ୟ; କିନ୍ତୁ ଦେଶ, କାଳ, ପାତ୍ର ଆଦିର ଭିନ୍ନତା ସେମାନଙ୍କ କଳାକୃତିରେ ପରିସ୍ଥିତି ଓ ପରିବେଶ ଅନୁଯାୟୀ

---

[8] "The cursed Hawthornes became the cursed Pyncheons in 'The House of the Seven Gables' declining from wealth and prominence to poverty and eccentricity. Their claim to a great estate cannot be established for the dead has been lost, as the land in maine was lost to Hawthornes family. The many Gabled mainson images the family History, Since it will not yeild up its secrets for the guilt to be purged, it must be left behind by the new generation."
[ Six American Novelists of the 19th Century ]

ଚିତ୍ରିତ ହୋଇଛି । କିନ୍ତୁ ଏହା ମାଧ୍ୟମରେ ମଧ୍ୟ ସାମ୍ୟତା ଅଛି ଆଶ୍ଚର୍ଯ୍ୟଜନକ ଭାବେ ପ୍ରକଟିତ ହୋଇଛି । ହଥର୍ଣ୍ଣ ଊନବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ଅର୍ଥାତ୍ ୧୮୦୪ ମସିହାରେ ଜନ୍ମଗ୍ରହଣ କରି ୧୮୬୪ ମସିହା ପର୍ଯ୍ୟନ୍ତ ବଞ୍ଚି ରହିଥିଲେ । ୧୮୫୦ରୁ ୧୮୬୦ ମସିହା ପର୍ଯ୍ୟନ୍ତ ସେ ଉପନ୍ୟାସ ରଚନାରେ ବ୍ରତୀ ହୋଇ ମାତ୍ର ୪ ଖଣ୍ଡି ପୂର୍ଣ୍ଣାଙ୍ଗ ଉପନ୍ୟାସ ରଚନା କରିଥିଲେ । ୧୮୫୦ ମସିହାରେ ତାଙ୍କର ସାମାଜିକ, ସମସ୍ୟାଧର୍ମୀ ଉପନ୍ୟାସ 'The Scarlet Letter'ପ୍ରକାଶିତ ହୋଇଥିଲା । ୧୮୫୧ ମସିହାରେ ତାଙ୍କର ଦ୍ୱିତୀୟ ଉପନ୍ୟାସଭାବେ ପ୍ରକାଶ ପାଇଥିଲା 'The House of the Seven Gables' । ଏହି ଉପନ୍ୟାସ ପରେ ତାଙ୍କର ତୃତୀୟ ଉପନ୍ୟାସ ଭାବେ 'The Blithedale Romance' ଓ ୧୮୬୦ ମସିହାରେ ତାଙ୍କର ଚତୁର୍ଥ ଉପନ୍ୟାସ ଭାବେ 'The Marble Faun' ପ୍ରକାଶ ପାଇଥିଲା ।

ଔପନ୍ୟାସିକ କାହାଣୀ ରଚନା କରେ ଗୋଟିଏ ସମୟରେ; ମାତ୍ର ଏହା ତାର କଳ୍ପନାପ୍ରସୂତ ହୋଇଥିଲେ ବି କାହାଣୀର ନିର୍ଦ୍ଦିଷ୍ଟ ସମୟସୀମା ଥାଏ ତାର ରଚନା ସମୟଠାରୁ ଭିନ୍ନ । ଅର୍ଥାତ୍ ଗୋଟିଏ ରଚନାର ସମୟକୁ ୩ ଭାଗରେ ବିଭକ୍ତ କରାଯାଇ-ପାରେ— (୧) କାହାଣୀର ସମୟ

(୨) କାହାଣୀ ରଚନାର ସମୟ

(୩) କାହାଣୀ ପ୍ରକାଶନର ସମୟ

ଔପନ୍ୟାସିକ ହଥର୍ଣ୍ଣଙ୍କ ଉପନ୍ୟାସରେ ମଧ୍ୟ ଏହି ୩ ପ୍ରକାର ସମୟସୀମା ପରିଲକ୍ଷିତ ହୁଏ । ଔପନ୍ୟାସିକ ହଥର୍ଣ୍ଣ 'The House of the Seven Gables' ଉପନ୍ୟାସ ଅବଲମ୍ବନରେ ଏହା ବିଶ୍ଳେଷଣୀୟ ।

ଔପନ୍ୟାସିକ ହଥର୍ଣ୍ଣ ଯେତେବେଳେ ବେର୍କସର୍ସର ଲେନକସ୍‌ଠାରେ ଅବସ୍ଥାନ କରିଥିଲେ, ସେହି ସମୟରେ ସେ ରଚନା କରିଥିଲେ ତାଙ୍କର ଏହି ଦ୍ୱିତୀୟ ଉପନ୍ୟାସ 'The House of the Seven Gables'କୁ ଏହି ଉପନ୍ୟାସର ରଚନା ସମୟ ୧୮୫୧ ଜାନୁଆରୀ ମାସ ୨୭ ତାରିଖ ପୂର୍ବରୁ । କାରଣ ଏହି ଉପନ୍ୟାସ ରଚନା ପରେ ହଥର୍ଣ୍ଣ ଏହାର ମୁଖବନ୍ଧ ଲେଖିଛନ୍ତି ଓ ଏହି ମୁଖବନ୍ଧର ଶେଷରେ ସେ ଉକ୍ତ ସମୟ ସୀମାକୁ ଉଲ୍ଲେଖ କରିଅଛନ୍ତି ଯାହା ନିମ୍ନମତେ ଲକ୍ଷଣୀୟ—

## 'PREFACE' of 'The House of the Seven Gables'

"When a writer calls his work Romance, it need hardly be observed that he wishes to claim a certain latitude, both as

to its fashion and material, which he would not have felt himself entitled to assume had he Proffecol to be writting a Novel. The latter from ot composition is presumed to aim at a very minute fidelity, not merely to the possible, but to the probable and ordinary course of man's experience. The former while, as a work of art, it must rigidly subject itself to laws, and while it sins unpardonably so far as it may swerve a side from the truth of the human heart has fairly a right to present that truth under circumstances, to a great extent, of the writer's own choosing or creation. If he think fit, also he may so manage his atmospherical medium as to bring out or mellow the lights and deepen and enrich the shadows of the picture. He will be wise, no doubt, to make a very moderate use of the privileges here stated and, especially, to mingle the Marvellous rather as a slight, delicate, and evanescent flavor, than as any portion of the actual substance of the dish offered to the public. He can hardly be said, however to commit a literary crime, even it he disregard this caution."

In the present work, the author has proposed to himself but with what success, fortunately, it is not for him to Judge—to keep undeviatingly within his immunities. The point of view in which this tale comes under the Romantic defination lies in the attempt to connect a bygone time with the very present that is flitting away from us. It is a legend prolonging itself, from an epoch now gray in the distance, down in to our own broad daylight, and bringing along with it some of its legendary mist, which the reader, according to his pleasure, may either disregard, or allow it to float almost imperceptibly about the characters and events for the sake of a picturesque effect. The narrative it may be, is woven of so humble a texture as to require this advantage, and at the same time, to render it the more difficult of attainment.

Many writers lay very great strees upon some definite moral purpose, at which they profess to aim their works, Not to

be deficent in this particular, the author has provided himself with a moral the truth, namely, that the wrong-doing of one generation lives into the successive ones, and divesting itself of every temporary advantage, becomes a pure and uncontrollable mischief, and he would feel it a singular gratification if this romance might effectually convince mankind or, indeed, any one man of the folly of tumbling bown an avalanche of ill—gotten gold, or real estate, on the heads of an unfortunate posterity, there by to main and crush them, untill the cumulated mass shall be scattered abroad in its original atoms. In good faith, however he is not sufficiently imaginative to flatter himself with the slightest hope of this kind—when Romances do really teach anything or produce any effective operation, it is usually through a far more subtile process that the ostensible one. The author has considered it hardly worth his while, therefore, relentlessly to impale the story with its moral as with an iron road or, rather, as by sticking a pin through a butterfly—thus at once depriving it of life and causing it to stiffen in an ungainly and unnatural attitude. A high truth, indeed, fairly, finely, and skilfully wrought out, brightening at every step, and crouning the final development of a work of fiction may add an artistic glory, but is never any truer and seldom any more evident, at the last page that at the first.

The reader may perhaps choose tossign. 'an actual locality to the imaginary events of this narrative. If permitted by the historical connetion—which though slight, was essntial to his plan,—the author would very willingly have avoided anything of this nature. Not to speak of other objection, it exposes the Romance to an inflexible and exceedingly dangerous species of criticism by bringing his fancy—Pictures almost in to positive contact with the realities of the moment. It has been no part of his object, however, to describe local manner, nor in any way to middle with the characteristics of a community for whom he cherishes a proper respect and a natural regard. He trusts not to be considered as unpardonably offending by laying out a

street that infringes upon nobody's private rights, and appropriating a plot of land which had no visible owner, and building a house of materials long in use for constructing castles in the air. The personages of the tale—though they give themselves out to be of ancient stability and considerable prominence—are really of the author's own making, or at all events, of his own mixing, their virtues can shed no lustre, nor their defects redound, in the remotest degree, to the discredit of the venerable town of which they profess to be inhabstants. He would be glad, therefore, if especially in the quarter to which he alludes the book may be read strictly as a romance having a great deal more to do with the cloude overhead than with any portion of the actual soil of the country of Essex.''

[ "The House of the Seven Gables"—Washington Square Press Publication ]

Lenox,January 27, 1851

କିନ୍ତୁ କାହାଣୀର ସମୟସୀମା ରଚନାର ସମୟସୀମାର ପୂର୍ବବର୍ତ୍ତୀ ଘଟଣା କେତେକାଂଶରେ ଅବଶ୍ୟ ହୁଅନ୍ତୁ ଏଥିରେ ସମସାମୟିକ କାଳର ପ୍ରଭାବକୁ ସନ୍ନିବେଶିତ କରିଅଛନ୍ତି । କିନ୍ତୁ ତାଙ୍କର ଭାଷାରେ ଏହି କାହାଣୀ ଦୀର୍ଘ ଦୁଇଶହ ବର୍ଷର ଘଟଣା । ଏହି ଦୁଇ ଶହ ବର୍ଷ ତଳର ସମୁଦାୟ ଘଟଣାକୁ ଔପନ୍ୟାସିକ ହୁଅନ୍ତୁ 'The House of the Seven Gables'ରେ ନ ଦେଇ ଘଟଣାର ସାମ୍ପ୍ରତିକ ଦୃଶ୍ୟ ଅର୍ଥାତ୍ ମାତ୍ର ୫୦ ବର୍ଷର ଘଟଣାକୁ ଏଥିରେ ବର୍ଣ୍ଣିତ କରିଅଛନ୍ତି । କାରଣ ଦୁଇଶହ ବର୍ଷ ତଳର ପିନ୍‌ଚନ୍ ପରିବାରର କାହାଣୀ ଲେଖିଥିଲେ ଉପନ୍ୟାସଟି କଳେବର ହୁଏତ ଅନେକ ବୃଦ୍ଧି ପାଇଥାଆନ୍ତା ଓ ପାଠକ ମନରେ ଏହା ସ୍ୱତଃ ବିରକ୍ତି ଭାବ ପ୍ରକାଶ କରିଥା'ନ୍ତା । କିନ୍ତୁ ତେଣୁ ହୁଅନ୍ତୁ ୨୦୦ ବର୍ଷର ପିନ୍‌ଚନ୍ ପରିବାରର କାହାଣୀ ମଧ୍ୟରୁ ପ୍ରଥମ ୧୫୦ ବର୍ଷର କାହାଣୀର ସୂଚନା ମାତ୍ର ଦେଇ ପରବର୍ତ୍ତୀ ୫୦ ବର୍ଷର କାହାଣୀକୁ ଏହି ଉପନ୍ୟାସର କଥାବସ୍ତୁ ଭାବେ ଧରିନେଇଛନ୍ତି । "The House of the Seven Gables" ଉପନ୍ୟାସର କାହାଣୀ ବର୍ଣ୍ଣନା ପରିପ୍ରେକ୍ଷୀରେ ସେ ଲେଖିଛନ୍ତି—"× × ×The story would include a chain of events extending over the better part of two centuries and written out with reasonable amplitude, wou'd fill a bigger folio volume, or a longer, series of duodecimas, than could prudently be apropriated to the annalas of all New England during a similar period." It consequently

becomes impeative to make short work with most of traditionary lore of which the old Pyncheon House, otherwise known as the House of the S.ven Gables has been the theme with a brief sketen, therefore of the circumstances amid which the foundation of the house was laid and a rapid glimpse at its quaint exterior, as it grew black in the prevelent east wind, pointing too, here and there, at some spat of more verdaut mossiness one its roof and walls—we shall commence the real action of our tale at an epoch not very remote from the present day, still, there will be a connection with the long post—a reference to forgotten events and personages and to manners, feelings and opinions almost or wholly absolete—which if adequately translated to the reader, would serve to illustrate how much of old meterials goest to make of the freshest novelity of human life." (୯) ହଥର୍ଣ୍ଣ ପିନ୍‌ଚନ୍ ପରିବାରର ଆରମ୍ଭରୁ କାହାଣୀଟିର ଉପସ୍ଥାପନା କରିଅଛନ୍ତି । ଅର୍ଥାତ୍ ଯେଉଁ ସମୟରୁ କର୍ଣ୍ଣେଲ୍ ପିନ୍‌ଚନ୍ 'The House of the Seven Gables' ଟି ମାଉଲେଙ୍କ ଜମି ଉପରେ ନିର୍ମାଣ କଲେ, ସେହି ସମୟରୁ ଉପନ୍ୟାସଟିର କଳେବର ପରିସମାପ୍ତି ପର୍ଯ୍ୟନ୍ତ ଦୀର୍ଘ ଦୁଇଶହ ବର୍ଷର ଘଟଣାରେ ଋଦ୍ଧିମନ୍ତ । ପିନ୍‌ଚନ୍ ପରିବାରର କର୍ଣ୍ଣେଲ୍ ପିନ୍‌ଚନ୍ ମାଉଲେଙ୍କ ଜମି ନେବା ଘଟଣା ହେଉଛି ଦୁଇଶହ ବର୍ଷ ତଳର ଘଟଣା । ଏହି ଜମିକୁ ନେଇ କର୍ଣ୍ଣେଲ୍ ପିନ୍‌ଚନ୍ କିପରି ନିଜର ଉତ୍ତରଦାୟାଦମାନଙ୍କ ପାଇଁ ସଂଘର୍ଷର ସୂତ୍ରପାତ କରିଗଲେ, ତାହା ପରବର୍ତ୍ତୀ ଘଟଣାମାନଙ୍କରେ ବର୍ଣ୍ଣିତ । ଏହି ଉପନ୍ୟାସଟିରେ ହେପ୍‌ଜିବାଙ୍କ ସମୟ ଉପନ୍ୟାସର ଅନ୍ତିମ କାଳର ସୂଚନା ଦିଏ । ଅର୍ଥାତ୍ ହେପ୍‌ଜିବାଙ୍କଠାରୁ ଧାର୍ମିକ ଶାନ୍ତ ଚେତନା ଉପନ୍ୟାସଟିରେ ପ୍ରତିଷ୍ଠିତ ହୋଇଛି । କର୍ଣ୍ଣେଲ୍ ପିନ୍‌ଚନ୍ ମାଉଲେଙ୍କ ଜମିକୁ ନେଇ ସେଠାରେ ଘର ତିଆରି କରିବା ଘଟଣା, ଘର ପ୍ରତିଷ୍ଠା ଦିନ ତାଙ୍କର ମୃତ୍ୟୁ, ମାଇନେ ରାଜ୍ୟରୁ ପାଇବାକୁଥିବା ଜମିର କାଗଜପତ୍ରର ଅନ୍ତର୍ଦ୍ଧାନ, ତାକୁ ଉଦ୍ଧାର କରିବା ପାଇଁ ଅଲ୍‌ଡସ ପିନ୍‌ଚନ୍ ବାପାଙ୍କ ତତ୍ପରତା ଓ ସେହି ହେତୁ ଅଲ୍‌ଡସଙ୍କର ମୃତ୍ୟୁ ଆଦି ଉପନ୍ୟାସଟିର ଦୀର୍ଘ ୧୫୦ ବର୍ଷର ଘଟଣାର ସୂଚନା ଦିଏ । ଏହି ୧୫୦ ବର୍ଷ ମଧ୍ୟରେ ନାନା କନ୍ଦଳ, ସଂଘର୍ଷ, ଅସ୍ୱାଭାବିକ ମୃତ୍ୟୁ ଉପନ୍ୟାସଟିକୁ ମର୍ମନ୍ତୁଦ କରି-ପକାଇଛି । କିନ୍ତୁ ପ୍ରକୃତ ଉପନ୍ୟାସର ଆରମ୍ଭ ହୋଇଛି, ମାତ୍ର ପଚିଶ ବର୍ଷର କଥାକୁ

---

(୯) The House of the Seven Gables—Page-1&2)

ହେମ୍ପଲ କର । ଏତେବେଳେ ହେପ୍‌ଜିବା 'The House of the Seven Gables'ରେ ଏକାକିନୀ ରହୁଥା'ନ୍ତି । ତାଙ୍କର କକାପୁଅ ଭାଇଙ୍କ ଷଡ଼ଯନ୍ତ୍ରରେ ତାଙ୍କର ନିଜ ଭାଇ କ୍ଲିଫର୍ଡ଼ ଯାଇଥା'ନ୍ତି ଜେଲ୍ । ଏହି ସମୟରେ ସେହି ଘରେ ଜଣେ ଯୁବ-ଫଟୋଗ୍ରାଫର ଭଡ଼ାରେ ରହୁଥା'ନ୍ତି । ତାଙ୍କ ନାମ ହେଲା, ଗ୍ରେଭ୍ । ସେ ଜଣେ ମାଉଲେ ବଂଶୀୟ ଯୁବକ, ଯାହାଙ୍କର ଏହି ପ୍ରକୃତ ପରିଚୟ ହେପ୍‌ଜିବାଙ୍କ ନିକଟରେ ଥାଏ ଅଜ୍ଞାତ । ଇତ୍ୟବସରରେ ତାଙ୍କର ଜଣେ ଦୂର-ସମ୍ପର୍କୀୟ ଝିଅଟି (ଫୋଏବ୍) ମଧ୍ୟ ଆସିଛି ତାଙ୍କ ସଙ୍ଗରେ କିଛିଦିନ ସେଠାରେ ରହିବା ପାଇଁ । କିନ୍ତୁ ଜର୍ଜ ପିନ୍‌ଚନ୍‌ଙ୍କ ଆବିର୍ଭାବ ହେପ୍‌ଜିବାଙ୍କ ଜୀବନକୁ ଅନେକାଂଶରେ କ୍ଷତବିକ୍ଷତ କରିଦେଇଥିଲା । କ୍ଲିଫର୍ଡ଼ ଜେଲ୍‌ରୁ ଫେରିଆସିବା ପରେ ଜର୍ଜଙ୍କ ଉତ୍ପାତ ଆହୁରି ବଢ଼ିଯାଇଛି । ନିଜର ସ୍ୱାର୍ଥସିଦ୍ଧି ପାଇଁ ସେ କ୍ଲିଫର୍ଡ଼ଙ୍କୁ ପାଗଳ କରିଦେବାର ଧମକ ଦେଇଛନ୍ତି । ମାତ୍ର ତାଙ୍କର ଅସ୍ୱାଭାବିକ ମୃତ୍ୟୁରେ ହେପ୍‌ଜିବା ଓ ତାଙ୍କ ପରିବାରର ସୁଖର ଦିନ ଫେରିଆସିଛି । ସେମାନେ House of the Seven Gables' କୁ ଛାଡ଼ି ଜର୍ଜ ରହୁଥିବା ଘରକୁ ଚାଲିଯାଇଛନ୍ତି । କ୍ଲିଫର୍ଡ଼ ଜେଲ୍ ଯିବା ଘଟଣା ଓ ହେପ୍‌ଜିବା 'House of the Seven Gables'ରେ ଏକାକିନୀ ରହୁଥିବା ଅବସ୍ଥାରୁ ଉପନ୍ୟାସର କାହାଣୀ ନାଟକୀୟ ହୋଇଉଠିଛି । ନିଚେତ୍ ଏହା ପୂର୍ବରୁ ଏହି ଅଭିଶପ୍ତ ଘରେ ଯେଉଁ ଘଟଣା ଘଟିଯାଇଛି, ତାହା ପିନ୍‌ଚନ୍ ପରିବାରର ୧୫୦ ବର୍ଷର କଳଙ୍କିତ, ଅଭିଶପ୍ତ ଇତିହାସ ହେଲେ ବି ଔପନ୍ୟାସିକ କାହାଣୀର ସାମ୍ପ୍ରତିକତା ତଥା ବାସ୍ତବତା ପ୍ରତିପାଦନ ପାଇଁ ଏହାର ସୂଚନା ମାତ୍ର ଦେଇଛନ୍ତି । ଅତଏବ ଏକ କଥାରେ କହିବାକୁ ଗଲେ 'The House of the Seven Gables' ରେ ଘଟିଥିବା ଘଟଣାମାନ ପୁରୁଷ ପୁରୁଷଧରି ଦୁଇଟି ଶତାବ୍ଦୀର ଘଟଣା ଅନୁକ୍ରମରେ ବର୍ଣ୍ଣିତ । ଏହି ଉପନ୍ୟାସର ରଚନାକାଳ ୧୮୫୧ ହେଲେ ବି ଏହାର ଘଟଣାର ସମୟ ହେଉଛି ୧୬୯୧ ମସିହା । ଏପରି ଏକ ବହୁଦିନର କାହାଣୀକୁ ଔପନ୍ୟାସିକ ହଥର୍ଣ୍ଣ କାହିଁକି ଉପନ୍ୟାସ ରୂପ ଦେଲେ ତା'ର ମଧ୍ୟ ଯଥାର୍ଥତା ରହିଛି । ତାହା ହେଲା—"ଅତୀତରେ ଆମେରିକୀୟ ସାମାଜିକ ବିଶ୍ୱାସ ଅନୁଯାୟୀ 'ଯାଦୁକର' ମାନେ ସମାଜର ଏକପ୍ରକାର ହିଂସ୍ର ତଥା ଅନାଗ୍ରହୀ ପ୍ରାଣୀ ଏବଂ ଏମାନଙ୍କ ପ୍ରତି ତତ୍କାଳୀନ ସମାଜର ଏହି ଦୃଢ଼ ଅନ୍ଧବିଶ୍ୱାସ ଏକ କୁସଂସ୍କାରରେ ପରିଣତ ହୋଇ ସାରିଥିଲା । ସପ୍ତଦଶ ଶତାବ୍ଦୀର ଏହି ବିଶ୍ୱାସ ଅନୁଯାୟୀ ଯାଦୁକର (Witch craft) ମାନଙ୍କୁ ଫାଶୀ ଦେବାର ପ୍ରଥା ପ୍ରଚଳିତ ଥିଲା । ଏଥିପାଇଁ ସ୍ୱତନ୍ତ୍ର ଭାବେ ଜଣେ ମୁଖ୍ୟ ବିଚାରକ ଓ ବିଚାରକମଣ୍ଡଳୀ ଗଠନ କରାଯାଇଥିଲା । ଏହିପରି ଜଣେ ମୁଖ୍ୟ ବିଚାରକ ଭାବେ ହଥର୍ଣ୍ଣଙ୍କ ପୂର୍ବପୁରୁଷର ଜଣେ ବ୍ୟକ୍ତି ଏକଦା ଯାଦୁକରମାନଙ୍କୁ ଫାଶୀ ଦେବା ପରି ବର୍ବରୋଚିତ କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ତାଙ୍କର ଏହି କାର୍ଯ୍ୟକାଳରେ ହୁଏତ ଯେ ବହୁତ ଲୋକଙ୍କ ତତଲା ନିଃଶ୍ୱାସର ଶୀକାର ହୋଇଥିବେ । ହୁଏତ ତାଙ୍କର

କୃତକର୍ମ ପାଇଁ ଔପନ୍ୟାସିକ ହଥର୍ଣ୍ଣଙ୍କ ପରିବାରର ପ୍ରତିପତ୍ତି ହାନି ଓ ବୃନିଆଦୀ କ୍ରମ ଅବକ୍ଷୟ ଘଟିଛି ବୋଲି ସେ ଅନୁଭବ କରିଥିଲେ । ତେଣୁ ତାଂକର ଏହି ଚିନ୍ତାଧାରା ପିନ୍‌ଚନ୍ ପରିବାରର ଅବକ୍ଷୟତା ଭିତରେ ସେ ପ୍ରତିଫଳିତ କରିଛନ୍ତି 'The House of the Seven Gables' ଉପନ୍ୟାସରେ ।

ଏହି ଉପନ୍ୟାସରେ ସାମାନ୍ୟ ଭୂଲବଶତଃ ପିନ୍‌ଚନ୍ ପରିବାର ପୁରୁଷ ପୁରୁଷ ଧରି ନାନାଭାବେ ହଇରାଣ ହରକତ ହୋଇଛନ୍ତି । ଅତୀତ କାହାଣୀର ପୃଷ୍ଠଭୂମି ଉପରେ ଔପନ୍ୟାସିକ ହଥର୍ଣ୍ଣ ବର୍ତ୍ତମାନ ପିନ୍‌ଚନ୍ ପରିବାରର ଅବସ୍ଥାକୁ ଯେପରିଭାବେ ଚିତ୍ରିତ କରିଛନ୍ତି, ତାକୁ ଲକ୍ଷ୍ୟକରି କୁହାଯାଇପାରେ ଯେ, ଅତୀତ ଓ ବର୍ତ୍ତମାନର ମଧୁର ସମନ୍ୱୟରେ ସେ 'The House of the Seven Gables." ଉପନ୍ୟାସଟିକୁ ବେଶ୍ କାଳଜୟୀ ରୂପ ପ୍ରଦାନ କରିପାରିଛନ୍ତି । ଅତଏବ ସମୟ ଦୃଷ୍ଟିରୁ ବିଚାର କଲେ ଏହି ଉପନ୍ୟାସଟି ଗୋଟିଏ ବର୍ଷର କାହାଣୀରେ ସୀମିତ ନୁହେଁ, ଦୀର୍ଘ ଦୁଇଶହ ବର୍ଷର କାହାଣୀର ଘନ-ଘଟାରେ ଏହା ବେଶ୍ ହୃଦ୍ୟ, ମନୋଜ୍ଞ ଓ ଚିତ୍ତାକର୍ଷକ ହୋଇଉଠିଛି ଏବଂ ଏହାର ଚିରନ୍ତନ ମୂଲ୍ୟବୋଧ ମଧ୍ୟ କୌଣସି ଦୃଷ୍ଟିରୁ ହାନି ହୋଇନାହିଁ ।

'The House of the Seven Gables' ଉପନ୍ୟାସର କାହାଣୀ ରସମୟ ସୀମା ଯେପରି ଦୀର୍ଘ ଅବଶ୍ୟ ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ" ଉପନ୍ୟାସର କାହାଣୀ ସୀମା ସେପରି ଦୀର୍ଘ ନୁହେଁ । ମାତ୍ର କେତେ ବର୍ଷର ଘଟଣାରେ ଏହା ସୀମିତ । ରାମଚନ୍ଦ୍ର ମଙ୍ଗରାଜଙ୍କ ଜୀବନ କାଳରେ ଏହି ଉପନ୍ୟାସଟିର ଆରମ୍ଭ ଓ ତାଙ୍କ ମୃତ୍ୟୁରେ ଏହି ଉପନ୍ୟାସର ପରିସମାପ୍ତି ରେଖା ଟଣାଯାଇଛି । କିନ୍ତୁ ହଥର୍ଣ୍ଣ ତାଙ୍କ ଉପନ୍ୟାସର ଦୀର୍ଘ ସମୟ ସୀମା ଭିତରେ ଯେଉଁ କଥା କହିବାକୁ ଚାହିଁଛନ୍ତି, ତାହା ଫକୀରମୋହନ ତାଙ୍କ ଉପନ୍ୟାସର ସୀମିତ ସମୟ ସୀମା ମଧ୍ୟରେ ବେଶ୍ ସ୍ପଷ୍ଟ ଏବଂ ପ୍ରାଞ୍ଜଳ ଭାବରେ ବ୍ୟକ୍ତ କରିପାରିଛନ୍ତି ।

ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ' ରଚନାର କାଳ ହେଉଛି ୧୮୯୭ ମସିହା ଏବଂ ୧୯୦୦ ମସିହା ମଧ୍ୟରେ ଏହାର ପ୍ରକାଶ ଘଟିଥିଲା । ଏଥିରେ ଫକୀରମୋହନ ସମସାମୟିକ ସମାଜର ଚିତ୍ର ଏବଂ ଏହାର କିଂଚିତ୍ ପୂର୍ବବର୍ତ୍ତୀ କାଳର ଘଟଣା ବର୍ଣ୍ଣିତ କରିଅଛନ୍ତି । ଏଥିରେ ରାମଚନ୍ଦ୍ର ମଙ୍ଗରାଜଙ୍କର ସାରିଆ—ଭଗିଆଙ୍କ 'ଛମାଣ ଆଠଗୁଣ୍ଠ' ଜମିକୁ ଆତ୍ମସାତ୍ କରିବାର କାହାଣୀ ବର୍ଣ୍ଣିତ । ରାମଚନ୍ଦ୍ର ମଙ୍ଗରାଜ ନିଜେ ବାଲ୍ୟ କାଳରେ ଥିଲେ ପିତୃହୀନ, ଦରିଦ୍ର ବାଳକ । ମାତ୍ର କଲେ ବଲେ କୌଶଲେ 'ଫତେପୁର ସରସଣ୍ଡ' ଜମିଦାରୀର ଭୂସ ହେଲେ ସର୍ବେସର୍ବା । କିନ୍ତୁ ଏହା ସତ୍ତ୍ୱେ ପରସ୍ୱତ୍ୱ ଉପରେ ତାଙ୍କର ଲୋଲୁପଦୃଷ୍ଟି ଘୂରିବୁଲିଲା । ଶେଷରେ ତାହା ପଡ଼ିଲା ସାରିଆ ଭଗିଆଙ୍କ 'ଛମାଣ

ଆଠଗୁଣ୍ଠ' ଜମି ଉପରେ । କୌଶଳକ୍ରମେ ସେ ତାହା ଅପହରଣ କଲେ । ପରିଣତିରେ ସ୍ତ୍ରୀ ମଲା, ପୁତ୍ରମାନେ ଅଯୋଗ୍ୟ ହେଲେ, ସେ ଜେଲ୍ ଗଲେ, ତାଙ୍କର ସମସ୍ତ ଜମିଦାରୀ କଣ୍ଟକବଳ କରନେଲା ଓଡ଼ିଆ ଗ୍ରାମଲୀଲ୍ ମକଦମା ଝଡ଼ି ଭୁ । ତାଙ୍କର ବିଶ୍ୱସ୍ତା ଚମ୍ପା ତାଙ୍କୁ ଠକି ତାଙ୍କର ଜୀବନବ୍ୟାପୀ ସଞ୍ଚିତ ଧନରାଶି ଅପହରଣ କରି ପଳାଇ ଗଲାବେଳେ ବାଟରେ ଗୋବିନ୍ଦା ଭଣ୍ଡାରୀ ଖୁରରେ ପ୍ରାଣଦେଲା । ମଙ୍ଗରାଜେ ଜେଲ୍‌ରେ ପାଗଳ ଭଗିଆର କାମୁଡ଼ାରେ ମୃତପ୍ରାୟ ହୋଇ ଘରକୁ ଫେରିଆସିଲେ ଓ 'ଅ—ମା—ଆଁ—ଗୁ' କହି ପ୍ରାଣ ହରାଇଲେ । ଏତେ ଜମି ଥାଉଁ ଥାଉଁ ଏହି ସାମାନ୍ୟ ଜମି ଖଣ୍ଡିକ ପାଇଁ ମଙ୍ଗରାଜଙ୍କ ଜୀବନ ହେଲା ନର୍କଗାମୀ । ଯେ ବିପର୍ଯ୍ୟୟକୁ ଡାକଆଣିବା ସଙ୍ଗେ ସଙ୍ଗେ କୃତକର୍ମର ଫଳ ମଧ୍ୟ ଭୋଗକଲେ ।

ଏହିସବୁ ଘଟଣା ରାମଚନ୍ଦ୍ର ମଙ୍ଗରାଜଙ୍କ ଜୀବନକାଳ ଭିତରେ ସୀମିତ । ଏହାର ଭିତରେ ଔପନ୍ୟାସିକ ଫକୀରମୋହନ କାହାଣୀରେ ଦ୍ୱନ୍ଦ୍ୱ ଆଣି ତାର ଯଥାଯଥ ସମାଧାନ କରିପାରିଛନ୍ତି । ହଥର୍ଣ୍ଣଙ୍କ ପରି ସେ ଦୀର୍ଘସମୟ ନନେଇ ପାପୀପାଇଁ ଯେ ଯେଉଁ ଦଣ୍ଡବିଧାନ କରିଛନ୍ତି, ତାହା ହଥର୍ଣ୍ଣଙ୍କ କର୍ମଫଳ ଅପେକ୍ଷା ଅଧିକ ତୀବ୍ର, ଅଧିକ ଯନ୍ତ୍ରଣାମୟ ହୋଇ-ଉଠିଛି । ଅତଏବ ସମଦୃଷ୍ଟିରୁ ବିଚାର କରିବାକୁ ଗଲେ ଉଭୟ ଉପନ୍ୟାସରେ ସ୍ୱଳ୍ପ, ବହୁତ ସମୟ ସୀମା ମଧ୍ୟରେ ପାପୀକୁ ଉଚିତ୍ ଦଣ୍ଡ ଦେଇଥିବାର ସଫଳତାରେ ସାମ୍ୟ ପରିଲକ୍ଷିତ ହୁଏ । ନଚେତ୍ ଏ କ୍ଷେତ୍ରରେ ଖାଲି କାହାଣୀର ସମୟ ସୀମା ଆଲୋଚନା ଦୃଷ୍ଟିରୁ ଦେଖିଲେ ଫକୀରମୋହନ ବରଂ ହଥର୍ଣ୍ଣଙ୍କ ଅପେକ୍ଷା ଜଣେ ଦକ୍ଷଶିଳ୍ପୀ ଭାବେ ନିଜର କର୍ତ୍ତବ୍ୟ ସମ୍ପାଦନ କରିଅଛନ୍ତି ।

କିନ୍ତୁ ଏକଥା ମଧ୍ୟ କୁହାଯାଇପାରେ ଯେ, ରାମଚନ୍ଦ୍ର ମଙ୍ଗରାଜଙ୍କର ବୃନିଆଦ ନଥିବାରୁ ତାଙ୍କ ପୂର୍ବଜୀବନର ପୃଷ୍ଠଭୂମି କିଛି ନଥିଲା,—ତେଣୁ, ଛମାଣ ଆଠଗୁଣ୍ଠ' ଉପନ୍ୟାସର ସମୟ ସୀମା ଓ ଘଟଣାପ୍ରବାହ ସ୍ୱଳ୍ପତା ମଧ୍ୟରେ ରହି କରିଛି । କିନ୍ତୁ ଏକ ବିରାଟ ବୁନିଆଦ ବଂଶରେ 'The House of the Seven Gables' ଉପନ୍ୟାସଟିର ପରିକଳ୍ପନା କରାଯାଇଥିବାରୁ ବାସ୍ତବତା ଦୃଷ୍ଟିରୁ ହଥର୍ଣ୍ଣ ଏହାର ସମୟ ସୀମାକୁ ଗୋଟିଏ ଯୁଗ ବା ଗୋଟିଏ ପୁରୁଷ ମଧ୍ୟରେ ଆବଦ୍ଧ କରିପାରିନାହାନ୍ତି ।

(ଘ) ସାମାଜିକ ଚେତନା ଦୃଷ୍ଟିରୁ :

ସାମାଜିକ ଚେତନା ଦୃଷ୍ଟିରୁ ଦେଖିବାକୁ ଗଲେ ଔପନ୍ୟାସିକ ହଥର୍ଣ୍ଣଙ୍କ 'The House of the Seven Gables' ଓ ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ' ଉପନ୍ୟାସ ଦ୍ୱୟ ପ୍ରାୟତଃ ସମଧର୍ମୀ ଭାବ ସୂଚାଇ ଆଥାନ୍ତି । କାରଣ ଏହି ଦୁଇଟି

ଉପନ୍ୟାସ ସାମାଜିକ ସମସ୍ୟାମୂଳକ ଉପନ୍ୟାସ ହୋଇଥିବାରୁ ଉଭୟ ଉପନ୍ୟାସରେ ସାମ୍ୟ ପରିଲକ୍ଷିତ ହେବା ସ୍ୱାଭାବିକ । 'The House of the Seven Gables' ଉପନ୍ୟାସରେ ଔପନ୍ୟାସିକ ହଥର୍ଣ୍ଣ ଆମେରିକୀୟ ସମାଜର ଅତି ବାସ୍ତବ ଚିତ୍ର ପ୍ରଦାନ କଲାବେଳେ ଅନୁରୂପ ଭାବେ ଔପନ୍ୟାସିକ ଫକୀରମୋହନ ତାଙ୍କ 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ ଓଡ଼ିଶାର ସାମାଜିକ ଜୀବନର ଚିତ୍ର ଅବତାରଣା କରିଅଛନ୍ତି । ଏହି ଉପନ୍ୟାସ ଦୁଇଟିରେ ସମାଜ ଚିତ୍ର ନାନାଭାବେ ପର୍ଯ୍ୟବସିତ । ତେବେ ସାମାଜିକ ଚେତନା ଦୃଷ୍ଟିରୁ କେଉଁ କେଉଁ ଘଟଣା ବର୍ଣ୍ଣନାରେ ଉଭୟ ଉପନ୍ୟାସରେ ସାମ୍ୟ ପରିଲକ୍ଷିତ ହୁଏ, ତାହା ଏବେ ଆମର ଆଲୋଚ୍ୟ ।

'The House of the Seven Gables' ଉପନ୍ୟାସ ଆମେରିକୀୟ ସାମାଜିକ ଜୀବନର ବାସ୍ତବ ଆଲେଖ୍ୟ । ଏଥିରେ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀର ଆମେରିକୀୟ ସାମାଜିକ ଜୀବନର ଚିତ୍ର ଅତି ନିଖୁଣ ଭାବେ ପ୍ରତିଫଳିତ ହୋଇଛି । ଜମି ଓ ଅର୍ଥ ପ୍ରତି ସ୍ୱାଭାବିକ ତଥା ଚିରନ୍ତନ ଲୋଭ ଏବଂ ସେହି ଲୋଭ ହେତୁ ମଣିଷର ସଇତାନୀ-ପ୍ରବୃତ୍ତିର ଜାଗରଣ – ମଣିଷ ଜୀବନରେ ଏକ ଚିରନ୍ତନ ପ୍ରଶ୍ନ । ହଥର୍ଣ୍ଣ ଅର୍ଥନୈତିକ ତଥା ଭୂମି-କୈନ୍ଦ୍ରିକ ସଂଘର୍ଷକୁ କେନ୍ଦ୍ରବିନ୍ଦୁ ରୂପେ ଧରି ଆମେରିକୀୟ ସାମାଜିକ ଜୀବନଧାରାର ପରିଚୟ ପ୍ରଦାନ କରିଛନ୍ତି । ଗୋଟିଏ ପଟରେ ଶୋଷକ ଏବଂ ଅନ୍ୟ ପଟରେ ଶୋଷିତର ସମ୍ପର୍କ ଏହି ଉପନ୍ୟାସରେ ଚିତ୍ରିତ । ଏହା ବ୍ୟତୀତ ଆମେରିକୀୟ ସାମାଜିକ ଜୀବନଧାରଣ ପ୍ରଣାଳୀର ବହୁକଥା ଏହି ଉପନ୍ୟାସରେ ଦେଖିବାକୁ ମିଳେ । ରକ୍ଷଣଶୀଳ ପିନ୍‌ଚନ୍ ପରିବାରଠାରୁ ଆରମ୍ଭକରି ନିଃସ୍ୱ ମାଉଲେ ପରିବାର ପର୍ଯ୍ୟନ୍ତ, ବଣିକଠାରୁ ଆରମ୍ଭକରି ଶ୍ରମିକକୁଳ ପର୍ଯ୍ୟନ୍ତ ବିଭିନ୍ନ ଶ୍ରେଣୀର ଚରିତ୍ରକୁ ଲେଖକ ଏହି ଉପନ୍ୟାସରେ ସ୍ଥାନ ଦେଇଛନ୍ତି । ଗୋଟିଏ ସମାଜର ଏକ ସାମଗ୍ରିକ ରୂପ ଏଥିରେ ପ୍ରକଟିତ । ସମାଜ ସହିତ ଘନିଷ୍ଠ ଅନୁଭୂତିରେ ନଆସିଲେ ଜଣେ ଏଭଳି ବାସ୍ତବ ଚିତ୍ର ପ୍ରକାଶ କରିପାରିବ ନାହିଁ । କେଉଁ ସମାଜରେ ଅତ୍ୟାଚାରୀ, ପରସ୍ୱତ୍ୱ ଅପହରଣକାରୀ, ଲୋଭୀ, ପରଶ୍ରୀକାତର, ବିଚାର ବିବେକହୀନ, ପୈଶାଚିକ ପ୍ରବୃତ୍ତିର ଶୋଷକ କର୍ଣ୍ଣେଲ୍ ବା ଅତ୍ୟାଚାରୀ ଜର୍ଜଙ୍କ ପରି ଚରିତ୍ର ନାହାନ୍ତି ? ପୁଣି କେଉଁ ସମାଜରେ ମାଥିଉ ମାଉଲେଙ୍କ ପରି ନିଃସ୍ୱ, ସାଧାରଣ ବ୍ୟକ୍ତିଙ୍କର ଅଭାବ ଅଛି ? କେଉଁଠି ଏଭଳି ଉଚ୍ଚ ଅର୍ଥବିତ୍ତ ବ୍ୟକ୍ତି ସାଧାରଣ ମଣିଷଙ୍କୁ ଶୋଷଣ କରୁନାହାନ୍ତି ? ଔପନ୍ୟାସିକ ହଥର୍ଣ୍ଣ ଏହି ସବୁ ଚରିତ୍ରକୁ ଆମେରିକୀୟ ସମାଜର ମୂଲ୍ୟାୟନରେ ବେଶ୍ ଯଥାର୍ଥ ଭାବେ ମୂଲ୍ୟାଙ୍କନ କରିପାରିଛନ୍ତି ।

ମଣିଷର ଉଦଗ୍ର ଅର୍ଥପିପାସା ତାକୁ ବିପଥଗାମୀ କରାଏ, ପରିଣତିରେ ନିଜର ଅର୍ଥ-ସର୍ବସ୍ୱ ଚରିତ୍ରାଣ ପାଇଁ ସେ ଅନୁତାପର ଦାବାନଳରେ ଦଗ୍ଧ ହୁଏ; ମାତ୍ର ସେତେ-

ବେଳକୁ ପରିଣତ ବିଷମ ହୋଇଯାଉଥାଏ। ସେଠି ପିନ୍‌ଚନ୍ ପରିବାର ଧନେ ଥିଲା। ଆମେରିକୀୟ ସମାଜର ଏକ ସମ୍ଭ୍ରାନ୍ତ ପରିବାର, ସମ୍ମାନାସ୍ପଦ ପରିବାର ତାହା କଲୋ-ନେଲ୍‌ଙ୍କ ପରେ ପିନ୍‌ଚନ୍‌ଙ୍କ ପାଇଁ ଧ୍ୱଂସବିଧ୍ୱସ୍ତ ହୋଇଅଛି। ନିରୀହ ମାଉଲେ ନିଜର ଜମିଖଣ୍ଡିକୁ ଏପରି ଭଲ ପାଉଥିଲା ଯେ, ସେହି ଜମିରେ ସେ ସୁନା ଫଳାଉଥିଲା କହିଲେ ଚଳେ। ମାତ୍ର ଜମି ମୋହରେ ବଶବର୍ତ୍ତୀ ହୋଇ କଲୋନେଲ୍, ଆପଣାବଂଶର ପରମ୍ପରା ତଥା ଆଭିଜାତ୍ୟରୁ ଚ୍ୟୁତ ହେଲେ। ସେତେବେଳେ ଆମେରିକୀୟ ସମାଜରେ ପ୍ରତିପତ୍ତିଶାଳୀ ବ୍ୟକ୍ତିର କଥାରେ ଗୁରୁତ୍ୱ ଥିଲା। କଲୋନେଲ୍ ଜଣେ ପ୍ରତିପତ୍ତିଶାଳୀ ବ୍ୟକ୍ତି ଥିବାରୁ ତାଙ୍କ କଥାର ଗୁରୁତ୍ୱ ମଧ୍ୟ ତତ୍କାଳୀନ ସମାଜ ଉପଲବ୍ଧି କରୁଥିଲା। ତେଣୁ କଲୋନେଲ୍ ମାଥିଉ ମାଉଲେ ନାମରେ ମିଥ୍ୟା ଅଭିଯୋଗ ଆଣିଲେ ଯେ, ସେ ହେଉଛି ଜଣେ ଯାଦୁକର, ତେଣୁ ସମାଜଦ୍ୱାରା ସେ ଦଣ୍ଡିତ ହେବା ବିଧେୟ। ତତ୍କାଳୀନ ଆମେରିକୀୟ ସମାଜରେ ଯାଦୁକରମାନଙ୍କୁ ଲୋକେ ଅତ୍ୟନ୍ତ ଘୃଣା କରୁଥିଲେ। (୧୦) ଏହି ଅନ୍ଧ ବିଶ୍ୱାସର ସୁଯୋଗନେଇ କଲୋନେଲ୍ ମାଉଲେଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇଦେଇଥିଲେ ଏବଂ ପରେ ସେହି ଜମି ଉପରେ ନିର୍ମାଣ କଲେ 'House of the Seven Gables' । ପ୍ରତି ସମାଜରେ ବଡ଼ଲୋକଙ୍କୁ ଉତ୍ତର ନାହିଁ। ତେଣୁ ସାଧାରଣ ବ୍ୟକ୍ତିମାନେ ସେତେ-ବେଳେ ଅନୁଭବ କଲେ ମାଉଲେଙ୍କ ଜମି ଖଣ୍ଡିକ ନେବାପାଇଁ କଲୋନେଲ୍ ତାଙ୍କୁ ଚକ୍ରାନ୍ତ କରି ମାରିଦେଇଛନ୍ତି, ସେତେବେଳେ ପ୍ରତିପତ୍ତିଶାଳୀ କଲୋନେଲ୍‌ଙ୍କ ବିରୁଦ୍ଧରେ

(10) Old Mathew, Maule, in award, was executed for the crime of witch craft. He was one of the Martyrs to that terrible delusion, which should teach us, among its other morals, that the influential classes, and those who take upon them-selves to be leader of the people, are fully liable to all the passionate error that has ever characterized the moddest mob. clergyman, Judges, States man,—the wisest calmest, Holiest, Persons 'of their day-stood' in the inner circle round about the galows, loudest to applaud the work of blood, latest to confess themselves miserably decieved. If any one part of their proceeding can be said to deserveless blame than another, It was the singular indiscrimination with which they persecuted not merely the poor and aged, as in former Judicial massacres, but People of all ranks, their own equals, brethrew and wives,"

['The House of the Seven Gables, Page-4]

ପ୍ରତିକ୍ରିୟା ପ୍ରକାଶ କରିବା ମଧ୍ୟ ସେମାନଙ୍କ ପକ୍ଷେ ସମ୍ଭବ ନଥିଲା ।(୧୧) ବଢ଼ିଲୋକଙ୍କୁ ଉତ୍ତର ନାହିଁ, କି ସ୍ୱର୍ଗକୁ ନିଶୁଣି ନାହିଁ—ଏହି ସାମାଜିକ ପ୍ରବାଦଟିର ସତ୍ୟାସତ୍ୟ କେବଳ ଆମେରିକୀୟ ସମାଜରେ ନୁହେଁ, ସବୁ ସମାଜରେ ମଧ୍ୟ ଅନୁଭୂତ ହୁଏ । କେବଳ ଏତିକି ନୁହେଁ ମାଉଲେଙ୍କ ଫାଶୀ ପାଇବା ଘଟଣାରୁ ସେତେବେଳେ ଆମେରିକାରେ ଫାଶୀ ପ୍ରଥା ପ୍ରବର୍ତ୍ତନ ଥିଲା ବୋଲି ମଧ୍ୟ ଜଣାଯାଏ । ମାଥିଉ ମାଉଲେଠାରୁ ଜମି ଅପହରଣ କରି କର୍ଣ୍ଣେଲ୍ ସେହି ଜମି ଉପରେ ଏକ ବିରାଟ ଘର ତିଆରି କଲେ, ଯାହାକୁ ଯେକୌଣସି ରାଜା-ରାଜୁଡ଼ାଙ୍କ ଘର ସହ ତୁଳନା କରାଯାଇପାରେ । ସେତେବେଳେ ନିଜର ପାରିବାରିକ ଜୀବନର ସ୍ୱଚ୍ଛଳତା ତଥା ଆତ୍ମବଡ଼ିମା ଆଦି ପ୍ରଦର୍ଶନ ନିମନ୍ତେ ଲୋକମାନେ ଏପରି ଘର ତିଆରି କରୁଥିଲେ । ପିନ୍‌ଚନ୍ ତାହାହିଁ କରିଥିଲେ ମାତ୍ର ।

ଆମେରିକୀୟ ସମାଜ ସେତେବେଳେ ଅନ୍ଧକୁସଂସ୍କାରରେ ବୁଡ଼ି ରହିଥିଲା । ଆମେରିକୀୟ ସମ୍ଭ୍ରାନ୍ତ ପରିବାରର ମହିଳାମାନେ କୌଣସି କାର୍ଯ୍ୟ କରିବାକୁ ଆପଣାର ପଦମର୍ଯ୍ୟାଦା ହାନି ବୋଲି ମନେକରୁଥିଲେ । ଔପନ୍ୟାସିକ ହଥର୍ଣ୍ଣ ଏହି କଥାକୁ ହେପ୍‌ଜିବା ଚରିତ୍ର ମାଧ୍ୟମରେ ପ୍ରକାଶ କରିଅଛନ୍ତି । ପୁଣି ଅଭିଶାପ ପରି ଏକ ଘଟଣା ଓ ଆମ୍ଭାପରି ଏକ ଅଦୃଶ୍ୟ ଶକ୍ତି ଉପରେ ଲେଖକଙ୍କର ଗଭୀର ଆସ୍ଥା ଥିବାର ଦେଖିବାକୁ ମିଳେ ଏହି ଉପନ୍ୟାସରୁ । ମାଉଲେ ମରିବା ସମୟରେ ଅଭିଶାପ ଦେଇଯାଇଥିଲେ ଯେ, କୌଣସି ପିନ୍‌ଚନ୍ ସ୍ୱାଭାବିକ ଭାବରେ ନ ମରି ରକ୍ତବାନ୍ତି କରି ମରିବେ । ଯଦି କେହି ପିନ୍‌ଚନ୍ ମରୁଥିଲେ, ତେବେ ଏହା ମାଉଲେର ଅଭିଶାପ ଜନିତ ପରିଣତି ବୋଲି ସେମାନେ ଭାବୁଥିଲେ ।

କେବଳ ଏତିକି ନୁହେଁ, ଦୋଷୀକୁ ଦଣ୍ଡ ନିଶ୍ଚିତ ମିଳେ, ପାପୀ ତା' ପାପର ପ୍ରାୟଶ୍ଚିତ୍ତ ନିଶ୍ଚୟ କରେ, ମଣିଷ ଅଳଙ୍ଘ୍ୟନୀୟ କର୍ମଫଳ ଭୋଗ କରେ ଆଦି ନାନା ସାମାଜିକ ଉକ୍ତିର ଯଥାର୍ଥ ଅବତାରଣା କରିଛନ୍ତି ଔପନ୍ୟାସିକ ହଥର୍ଣ୍ଣ ଏହି ଉପନ୍ୟାସରେ ।

---

(୧୧) "After the reputed wizard's death, his humble home stead had fallen an easy spoil into Colonel Pyncheon's grasp, when it was understood, however that the Colonel intended to erect a family mansion—spacious, ponderously framed of oaken timber and calculated to endure for many generation of his posterity over the spot first covered by the log-built hut of—Mathew Maule there was much shaking of the head among the village gossips."

(The House of the Seven Gables, Page—5)

ସମାଜରେ ବା ଗୋଟିଏ ପରିବାରରେ ଯେପରି ସାନ ସାନ ଭିତରେ କନ୍ଦଳ, ଚକ୍ରାନ୍ତ ଦେଖାଯାଏ, ସେହିପରି ଆଲୋଚ୍ୟ ଉପନ୍ୟାସରେ କ୍ଲିଫର୍ଡ ଓ ଜର୍ଜଙ୍କ ମଧ୍ୟରେ ଏହି ସାମାଜିକ ସଂଘର୍ଷର ଉପସ୍ଥାପନା କରି ଔପନ୍ୟାସିକ ହଥର୍ଣ୍ଣ ତତ୍କାଳୀନ ଆମେରିକୀୟ ସମାଜର ଏକ ନିଖୁଣ ଚିତ୍ର ମଧ୍ୟ ପ୍ରଦାନ କରିଅଛନ୍ତି ।

ଏହିପରି ତତ୍କାଳୀନ ଆମେରିକୀୟ ସମାଜର ନାନାବିଧ ଚିତ୍ରକୁ ଔପନ୍ୟାସିକ ହଥର୍ଣ୍ଣ 'The House of the Seven Gables' ଉପନ୍ୟାସରେ ମନୋଜ୍ଞ ଭାବରେ ଚିତ୍ରିତ କରିଅଛନ୍ତି । ହଥର୍ଣ୍ଣଙ୍କ ପରି ଔପନ୍ୟାସିକ ଫକୀରମୋହନ ମଧ୍ୟ 'ଛମାଣ ଆଠଗୁଣ୍ଠ'ରେ ତତ୍କାଳୀନ ଓଡ଼ିଶାର ସାମାଜିକ ଜୀବନ ପ୍ରବାହକୁ ଅତି ଜୀବନ୍ତ ଭାବରେ ବର୍ଣ୍ଣନା କରିଅଛନ୍ତି; ଯାହାଦ୍ୱାରା କି ଉଭୟ ଉପନ୍ୟାସର ସାମାଜିକ ଚେତନା ବିଗ୍ରହରେ ବହୁ ସାମ୍ୟ ଦୃଷ୍ଟିପଥକୁ ଆସି ପାରୁଛି । ତାହା ଏ କ୍ଷେତ୍ରରେ ବିସ୍ମୟୀ ।

ଔପନ୍ୟାସିକ ହଥର୍ଣ୍ଣ 'The House of the Seven Gables' ଉପନ୍ୟାସରେ ଯେଉଁଳି ଆମେରିକୀୟ ସମାଜର ସାମାଜିକ ଜୀବନଧାରାକୁ ଅତି ନିଖୁଣ ଭାବରେ ପ୍ରଦାନ କରିଅଛନ୍ତି, ଅନୁରୂପଭାବେ ଆମର ଔପନ୍ୟାସିକ ଫକୀରମୋହନ 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ ତତ୍କାଳୀନ ଓଡ଼ିଶାର ସାମାଜିକ ଜୀବନ ପ୍ରବାହକୁ ଅତି ମନୋଜ୍ଞ ଭାବରେ ଚିତ୍ରିତ କରିଅଛନ୍ତି । 'ଛମାଣ ଆଠଗୁଣ୍ଠ' ଓଡ଼ିଶାର ସାମାଜିକ ଜୀବନର ବାସ୍ତବ ଆଲେଖ୍ୟ । ପ୍ରତି ସମାଜରେ ଜମି ଓ ଅର୍ଥ ପ୍ରତି ସ୍ୱାଭାବିକ ଲୋଭର ପିପାସା ଅଦମନୀୟ । ଏହିପରି ଅନେକ ବ୍ୟକ୍ତି ଓ ଶକ୍ତିଙ୍କର ଆବିର୍ଭାବ ଘଟଣାକ୍ରମେ ପ୍ରତି ଦେଶରେ, ପ୍ରତି ସମାଜରେ ପରିଲକ୍ଷିତ ହୁଏ । ଔପନ୍ୟାସିକ ହଥର୍ଣ୍ଣ 'The House of the Seven Gables' ନିର୍ମିତ ହୋଇଥିବା ଜମି ଖଣ୍ଡିକ ପାଇଁ ତତ୍କାଳୀନ ଆମେରିକୀୟ ସମାଜର ଶୋଷଣର ଚିତ୍ର ପ୍ରଦାନ କଲାପରି ଔପନ୍ୟାସିକ ଫକୀରମୋହନ 'ଛମାଣ ଆଠଗୁଣ୍ଠ, ଅପହରଣ ଚିତ୍ରକୁ ରାମଚନ୍ଦ୍ର ମଙ୍ଗରାଜର ଶୋଷଣ ଭିତରେ ଯଥାଯଥ ଭାବରେ ରୂପ ଦେଇପାରିଛନ୍ତି । ହଥର୍ଣ୍ଣ ଯେଉଁଳି ଭୂମିକୈନ୍ଦ୍ରିକ ସାମାଜିକ ଚେତନାକୁ ନେଇ 'The House of the Seven Gables' ଉପନ୍ୟାସର ଆରମ୍ଭ କରିଛନ୍ତି ଅନୁରୂପ ଭାବେ ଫକୀରମୋହନ 'ଛ'ମାଣ ଆଠଗୁଣ୍ଠ' ଜମିକୁ କେନ୍ଦ୍ରକରି ଏହି ଉପନ୍ୟାସର ପରିକଳ୍ପନା ମଧ୍ୟ କରିଛନ୍ତି । ଅତଏବ ଅର୍ଥନୀତିଗତ ସଂଘର୍ଷ ଓ ଭୂମିକୈନ୍ଦ୍ରିକ—ସାମାଜିକ ଚେତନା ଦୃଷ୍ଟିରୁ 'The House of the Seven Gables' ଓ 'ଛମାଣ ଆଠଗୁଣ୍ଠ ଉପନ୍ୟାସ ମଧ୍ୟରେ ଯଥେଷ୍ଟ ସାମ୍ୟ ପରିଲକ୍ଷିତ ହୁଏ ।

ପୁଣି ହଥର୍ଣ୍ଣ ଯେପରି ତାଙ୍କ ଉପନ୍ୟାସରେ ଆମେରିକୀୟ ସମାଜର ଦୁଷ୍ଟ ଲୋକମାନଙ୍କର ଖଳପ୍ରବୃତ୍ତିକୁ ଦର୍ଶାଇଛନ୍ତି, ଅନୁରୂପଭାବେ ଫକୀରମୋହନ 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ ଗ୍ରାମ୍ୟ ସମାଜର ଚିତ୍ର ମାଧ୍ୟମରେ ସେଠାକାର ଜମିଦାର ତଥା ଦୁଷ୍ଟଲୋକମାନଙ୍କର ଅସୂୟାପରବଶ ପ୍ରକୃତି ତଥା ପରସ୍ୱ ଅପହରଣକାରୀ ମନୋବୃତ୍ତିର

ଚରିକୁ ଯଥାଯଥଭାବରେ ବର୍ଣ୍ଣନା କରିଛନ୍ତି । ପ୍ରତି ସମାଜରେ ଭଲ ଓ ମନ୍ଦ ଲୋକ ରହି-ଛନ୍ତି । ନିରୀହ ଓ ଦୁଷ୍ଟଲୋକ ରହିଛନ୍ତି, ଶୋଷକ ଓ ଶୋଷିତ ମଣିଷ ରହିଛନ୍ତି । 'The House of the Seven Gables'ରେ ମାଥିଉ ମାଉଲେ ଜଣେ ସରଳ, ନିରୀହ ମଣିଷ । ସେ ଠିକ୍ 'ଛ'ମାଣ ଆଠଗୁଣ୍ଠ'ର ଭଗିଚନ୍ଦ୍ରର ପ୍ରତିରୂପ । ତା'ଉପରେ ତତ୍କାଳୀନ ସମାଜପତି ବୋଲାଉଥିବା କର୍ଣ୍ଣେଲ ପିନ୍‌ଚନ୍‌ର ଅତ୍ୟାଚାର କିଛି କମ୍ ନୁହେଁ । ପରିଣତିରେ ସେଥିପାଇଁ ତାଙ୍କୁ ମୃତ୍ୟୁବରଣ କରିବାକୁ ପଡ଼ିଛି ଓ ତା' ଜମିଖଣ୍ଡିକୁ କର୍ଣ୍ଣେଲ୍ ହସ୍ତଗତ କରିଛନ୍ତି । କର୍ଣ୍ଣେଲ୍ ତଥା ଜର୍ଜ ପିନ୍‌ଚନ୍ ଚରିତ୍ରର ଅନୁରୂପ ଚରିତ୍ର ଭାବେ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ରାମଚନ୍ଦ୍ର ମଙ୍ଗରାଜ ଚରିତ୍ରକୁ ଧରି ନିଆଯାଇପାରେ । ଉକ୍ତ ଲୀଳାର ଗ୍ରାମ୍ୟସମାଜର ସେ ଅଧିପତି । ତେଣୁ ତା'ର ଚକ୍ରାନ୍ତର ଶିକାର ହୋଇଛନ୍ତି ଅନେକ ଅନେକ ବ୍ୟକ୍ତି—ପୁଣି ଅତି ନିଶ୍ଚିନ୍ତ ଭାବରେ । କର୍ଣ୍ଣେଲ୍ ମାଥିଉ—ମାଉଲେଙ୍କୁ ନିଜର ପ୍ରତିପତ୍ତି ବଳରେ ଶୋଷଣ କଲାବେଳେ ଅନୁରୂପଭାବେ ରାମଚନ୍ଦ୍ର ମଙ୍ଗରାଜ ମଧ୍ୟ ଭଗିଚନ୍ଦ୍ରର ଜମିନେବା, ତମମାନଙ୍କୁ ଜେଲ୍-ଦେବା ଶାମ ଗୋଚ୍ଛିଇତର ଭଲ ଉପାଡ଼ିବା ଓ ବାଘସିଂହ ଘରେ ନିଆଁ ଲଗାଇବା ଆଦି ଘଟଣାରେ ପ୍ରତ୍ୟକ୍ଷ ଓ ପରୋକ୍ଷରେ ସଂପୃକ୍ତ ହୋଇପଡ଼ିଛନ୍ତି । ଅତଏବ ଆଲୋଚ୍ୟ ଦୁଇ ଉପନ୍ୟାସରେ ତତ୍କାଳୀନ ସମାଜପତି ମାନଙ୍କର ମନମୁଖୀ ସ୍ୱେଚ୍ଛାଚାର ତଥା ଅତ୍ୟାଚାର ସମ୍ପର୍କରେ ଯେଉଁ ଚିତ୍ର ପ୍ରଦତ୍ତ ହୋଇଛି, ତହିଁରେ ମଧ୍ୟ ଯଥେଷ୍ଟ ସାମ୍ୟ ପରିଲକ୍ଷିତ ହୁଏ ।

ଅତୀତରେ ସମାଜପତିମାନେ ରାଜାରାଜୁଡ଼ାଙ୍କ ପରି ବିରାଟକାୟ ଘରର ପରି-କଳ୍ପନା କରୁଥିଲେ ଓ ସେହିଭଳି ନିର୍ମାଣ କରି ତହିଁରେ ବସବାସ କରୁଥିଲେ ମଧ୍ୟ । 'The House of the Seven Gables' ଉପନ୍ୟାସରେ କର୍ଣ୍ଣେଲଙ୍କର House of the Seven Gables' ପରି ଏକ ବିରାଟ ଘର ନିର୍ମାଣ ଘଟଣା ଏହି ସତ୍ୟର ପରିପ୍ରକାଶ । ଅନୁରୂପଭାବେ ଫକୀରମୋହନ ରାମଚନ୍ଦ୍ର ମଙ୍ଗରାଜଙ୍କ ଘରଆସର ବର୍ଣ୍ଣନା ଦେଇ ତତ୍କାଳୀନ ସମାଜରେ ସମାଜପତିମାନେ କିପରି ବିରାଟକାୟ ଘରେ ରହି ନିଜର ସାର୍ବଭୌମ ପ୍ରଭାବ ଓ ପ୍ରତିଷ୍ଠାକୁ ଜାହିର୍ ରଖିବାକୁ ଚାହିଁଥିଲେ, ତାହାର ଜ୍ୱଳନ୍ତ ଉଦାହରଣ ଦେଇଛନ୍ତି । (୧୨)

ଆମେରିକୀୟ ସମାଜରେ କିପରି ଭାଇ ଭାଇ ମଧ୍ୟରେ ମଧ୍ୟ ସଂଘର୍ଷ, କଳହ, ଚକ୍ରାନ୍ତ ଆଦି ଚାଲିଥିଲା, 'The House of the Seven Gables'ରେ ଜର୍ଜ ଓ କ୍ଲିଫର୍ଡଙ୍କ

(୧୨) "ମଙ୍ଗରାଜଙ୍କ ନଅର ଦେଖି କେହି ଅନଭିଜ୍ଞ ଲୋକ ଅନୁମାନ କରିପାରନ୍ତି । ଏହା ଗୋଟିଏ ଅଦାଲତର ବି. ଏଲ୍. ପାଶିଥିବା ଓକିଲଙ୍କ ଘର; ବାସ୍ତବିକ ଘର ଭଗ୍ନାଂଶର ସମଷ୍ଟି ମାତ୍ର ।"

କଉଲରୁ ତାହା ହଥର୍ଣ୍ଣ ବର୍ଣ୍ଣନା କଲାବେଳେ ଫକୀରମୋହନ ରାମଚନ୍ଦ୍ର ମଙ୍ଗରାଜ ଓ ଶ୍ୟାମମଲ୍ଲ ଚରିତ୍ର ଭିତରେ ଏହି ସତ୍ୟକୁ ରୂପାୟିତ କରିଅଛନ୍ତି । ରାମଚନ୍ଦ୍ର ମଙ୍ଗରାଜର ପିଉସୀ ପୁଅ ଭାଇ ଶ୍ୟାମମଲ୍ଲ । ସାମାନ୍ୟ ପିଆଜ ଖାଇଥିବାରୁ କୌଶଳକ୍ରମେ ରାମଚନ୍ଦ୍ର ମଙ୍ଗରାଜ ତାର ପ୍ରାୟଶ୍ଚିତ କଲାବେଳେ ଏବଂ ଧମକ ଦେଖାଇ ତା'ର ଜମିକୁ ଆତ୍ମସାତ୍ କଲାବେଳେ ଜର୍ଜ ପିନ୍‌ଚନ୍ ମଧ୍ୟ ଅର୍ଥ ଓ ଭୂମିର ମୋହରେ ନିଜର କକାପୁଅ ଭାଇ କ୍ଲିଫର୍ଡ଼୍‌ଙ୍କୁ ଜେଲ୍ ପଠାଇବା ଠାରୁ ଆରମ୍ଭକରି ତାଙ୍କୁ ପାଗଳ କରିଦେବାର ଧମକ୍ ଦେଇଛନ୍ତି । ତେଣୁ ସାମାଜିକ ଦ୍ୱନ୍ଦ୍ୱ ବର୍ଣ୍ଣନାରେ ଉଭୟ ଔପନ୍ୟାସିକ 'The House of the Seven Gables' ଓ 'ଛମାଣ ଆଠଗୁଣ୍ଠ' ଉପନ୍ୟାସ ଦ୍ୱୟରେ ଯଥେଷ୍ଟ ସାମ୍ୟ ଦର୍ଶାଇ ପାରିଛନ୍ତି ।

ସମାଜରେ ପ୍ରଚଳିତ ଥିବା ଅନ୍ଧବିଶ୍ୱାସର, ପାପପୁଣ୍ୟର ହିସାବ ନିକାଶ, କୃତକର୍ମର ଫଳ ଭୋଗ ଆଦି ଘଟଣାକୁ ଉଭୟ ଔପନ୍ୟାସିକ 'The House of the Seven Gables' ଓ 'ଛମାଣ ଆଠଗୁଣ୍ଠ' ଉପନ୍ୟାସ ଦ୍ୱୟରେ ଅତି ନିଖୁଣ ଭାବରେ ବର୍ଣ୍ଣନା କରିଅଛନ୍ତି । ହଥର୍ଣ୍ଣ, ହେପ୍‌ସିବା ଚରିତ୍ରରେ ଅନ୍ଧବିଶ୍ୱାସର ଓ କୁସଂସ୍କାରର ଚିତ୍ର ପ୍ରଦାନ କଲାବେଳେ ଫକୀରମୋହନ ଛ'ମାଣ ଆଠଗୁଣ୍ଠରେ ବୁଢ଼ୀ-ମଙ୍ଗଳା, ସାରିଆ ଭଗିଆଙ୍କ ଦେବଦେବୀ ପ୍ରତି ଅଗାଧ ବିଶ୍ୱାସ ଆଦି ପ୍ରସଙ୍ଗ ବର୍ଣ୍ଣନାରେ ତତ୍‌କାଳୀନ ଉତ୍କଳୀୟ ସମାଜରେ ପ୍ରଚଳିତ ଅନ୍ଧବିଶ୍ୱାସର ଓ କୁସଂସ୍କାରର ଚିତ୍ରକୁ ଅତି ମନୋଜ୍ଞ ଭାବରେ ପ୍ରକାଶ କରିଅଛନ୍ତି । 'The House of the Seven Gables' ଉପନ୍ୟାସରେ କର୍ଣ୍ଣେଲ୍‌ଙ୍କ ଠାରୁ ଆରମ୍ଭକରି ଜର୍ଜ ପିନ୍‌ଚନ୍‌ଙ୍କ ପର୍ଯ୍ୟନ୍ତ ନିଜର କୃତ-କର୍ମର ଫଳ ଭୋଗକଲାପରି 'ଛମାଣ ଆଠଗୁଣ୍ଠ'ରେ ବର୍ଣ୍ଣିତ ରାମଚନ୍ଦ୍ର ମଙ୍ଗରାଜ, ଚମ୍ପା ଓ ଗୋବିନ୍ଦା ଭଣ୍ଡାରୀ ଆଦି ଚରିତ୍ରମାନେ ନିଜ ନିଜର କୃତକର୍ମର ଫଳ ଭୋଗକୁ ଏଡ଼ାଇ ପାରିନାହାନ୍ତି । ପ୍ରତି ସମାଜରେ ପାପପୁଣ୍ୟରେ ଲୋକମାନଙ୍କର ଉପରି ଅଗାଧ ବିଶ୍ୱାସ ଥାଏ, ତାହା ମଧ୍ୟ ଏହି ଦୁଇ ଉପନ୍ୟାସରୁ ଦେଖିବାକୁ ମିଳିଥାଏ । ଲୋକଙ୍କୁ ଶୋଷଣ-କଲେ ପାପ, ଲୋକଙ୍କୁ ଦୟାକଲେ ପୁଣ୍ୟ—ଏହି ବିଶ୍ୱାସବୋଧରେ ଆମେରିକୀୟ ସମାଜ ଠାରୁ ଆରମ୍ଭକରି ଉତ୍କଳୀୟ ସମାଜ ପର୍ଯ୍ୟନ୍ତ ସମସ୍ତେ ପାପପୁଣ୍ୟର ବିଶ୍ଳେଷଣ କରନ୍ତି । 'The House of the Seven Gables'ରେ ପିନ୍‌ଚନ୍ ପରିବାରର ଶୋଷଣ ଓ ତଜ୍ଜନିତ ଅସ୍ୱାଭାବିକ ମୃତ୍ୟୁକୁ ଲୋକମାନେ ପିନ୍‌ଚନ୍ ପରିବାରର ପାପ ବୋଲି କହିଲା-ବେଳେ 'ଛମାଣ ଆଠଗୁଣ୍ଠ'ରେ ସାଆନ୍ତାଣୀଙ୍କ ମୃତ୍ୟୁକୁ ପୁଣ୍ୟ ଓ ରାମଚନ୍ଦ୍ର ମଙ୍ଗରାଜଙ୍କ ମୃତ୍ୟୁକୁ ପାପର ପରିଣତି ବୋଲି ଲୋକମାନେ ମନେକରିଛନ୍ତି । ଅତଏବ ପାପ-ପୁଣ୍ୟର ସାମାଜିକ ମୂଲ୍ୟାୟନ ଦୃଷ୍ଟିରୁ ଉଭୟ ଉପନ୍ୟାସରେ ବହୁସାମ୍ୟ ପରିଲକ୍ଷିତ ହୁଏ ।

କେବଳ ଏତିକି ନୁହେଁ ହଥର୍ଣ୍ଣ ଯେପରି ତତ୍କାଳୀନ ଆମେରିକୀୟ ସମାଜରେ ପ୍ରଚଳିତ ଲୋକକଥା, ପରନିନ୍ଦା, ଦୋକାନର ବର୍ଣ୍ଣନା, ପିଲାଙ୍କ ଖେଳ କୌତୁକ, ରାସ୍ତା ଆଦିର ଦୃଶ୍ୟ ବର୍ଣ୍ଣନା ନିଖୁଣ ଭାବରେ କରିଅଛନ୍ତି, ଔପନ୍ୟାସିକ ଫକୀରମୋହନ ମଧ୍ୟ ଅନୁରୂପ ଭାବେ 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ ଉତ୍କଳୀୟ ସମାଜରେ ପ୍ରଚଳିତ ଥିବା ନାନା ପ୍ରବାଦ ପୋଖରୀ ତୁଠରେ ବର୍ଣ୍ଣନା ଓ ସ୍ତ୍ରୀ ଲୋକମାନଙ୍କର ମେଠାରେ ପରସ୍ପର ସଂପର୍କରେ ଆଲୋଚନା, ହାଟବଜାରର ଦୃଶ୍ୟର ମନୋଜ୍ଞ ବର୍ଣ୍ଣନା କରିଅଛନ୍ତି ।

ଅତଏବ ଉଭୟ ଉପନ୍ୟାସରେ ବର୍ଣ୍ଣିତ ସମାଜଚିତ୍ରକୁ ଅନୁଧ୍ୟାନ କଲେ ଲକ୍ଷ୍ୟକରାଯାଏ ଯେ, ତତ୍କାଳୀନ ସାମାଜିକ ଜୀବନ ଥିଲା ଶୋଷକ ଶ୍ରେଣୀ ଦ୍ୱାରା ନିୟନ୍ତ୍ରିତ । ସ୍ୱାର୍ଥପାଇଁ ମଣିଷ ମଣିଷକୁ ହତ୍ୟାକରୁଥିଲା, ଶୋଷଣ କରୁଥିଲା ଏବଂ ସେହି ଦୃଷ୍ଟିରୁ ତତ୍କାଳୀନ ସମାଜରେ ପରିଣତ ଅତି ବୈଷମ୍ୟ ହୋଇଉଠୁଥିଲା । ଔପନ୍ୟାସିକ ହଥର୍ଣ୍ଣ ଓ ଔପନ୍ୟାସିକ ଫକୀରମୋହନଙ୍କ 'The House of the Seven Gables' ଓ 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ ଏହିପରି ଭାବେ ତତ୍କାଳୀନ ସାମାଜିକ ଜୀବନର ବିପୁଳ ଚିତ୍ର ଜୀବନ୍ତ ଭାବରେ ଉଦ୍ଭାସିତ ହୋଇଉଠିଛି; ଯେଉଁଥିରେ ଅସମ୍ଭବ ଧରଣର ସାମ୍ୟ ପରିଲକ୍ଷିତ ହେବା ଏକ ସ୍ୱାଭାବିକ ଘଟଣା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

**(ଙ) ସାହିତ୍ୟିକ ମୂଲ୍ୟଦୃଷ୍ଟିରୁ :**

ବିଷୟବସ୍ତୁ ଦୃଷ୍ଟିରୁ, ଶୈଳୀଦୃଷ୍ଟିରୁ, ସମସ୍ତ ଦୃଷ୍ଟିରୁ ଏବଂ ସାମାଜିକ ଚେତନା ଦୃଷ୍ଟିରୁ ଯେପରି 'The House of the Seven Gables' ଓ 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ ସାମ୍ୟ ପରିଦୃଷ୍ଟ ହୁଏ । ସେହିପରି ସାମ୍ୟ ମଧ୍ୟ ପରିଦୃଷ୍ଟ ହୁଏ ଉଭୟ ଉପନ୍ୟାସର ସାହିତ୍ୟିକ ମୂଲ୍ୟବୋଧ ବିଚାରରେ । ସଂପ୍ରତି ତାହା ଆମର ଆଲୋଚ୍ୟ—

'There is no unified and integrated plot in 'The House of the Seven Gables'. Having thus—assemble his cast of characters, Howthorne make his book out of a number of tale like episodes which illustrate the traits of characters and show what they stand for as embodiments of influences reaching into the present from the past. In the end, phoebe and Holgrave marry, their marriage signifyiny the necessary abandonment of aristocratic pretension of superiority, and the reconciliation through their common humanity of a artficially opposed social classes. Judge Pyncheon dies a victim of the ancestral curse apparently or—a victim of apoplexy, if a more realistic interpretation is to be

**prefered to ancient superstition. His heirs Hepzibah and clifford are assured of as much security and contentment as they are capable of enjoying in their old age." (13)**

'The House of the Seven Gables' ଏକ ଟ୍ରାଜେଡ଼ି ଉପନ୍ୟାସ ସତ୍ୟ; କିନ୍ତୁ ଏହାର ପରିଣତି ମିଳନାତ୍ମକ । ଏହି ଉପନ୍ୟାସରେ ଯୁଗ ଯୁଗ ଧରି ଘଟିଛି ମୃତ୍ୟୁର ନାଟକୀୟ ବିଭୀଷିକା । ମାତ୍ର ପରିଣତିରେ ହୋଲ୍‌ଗ୍ରେଭ୍ ଓ ଫୋଏବ୍‌ର ପ୍ରେମର ଫଲ୍‌ଗୁ ମୃତ୍ୟୁକୁ ନିଶ୍ଚିହ୍ନ କରିଦେଇଛି । ଉପନ୍ୟାସଟି ଏକାଥରକେ ଏକ ନିର୍ମଳ ଆକାଶ ପରି ବୋଧ ହୋଇଛି । ଆମେରିକୀୟ ଉପନ୍ୟାସ ଜଗତରେ ଏପରି ମିଳନାତ୍ମକ ଉପନ୍ୟାସ ବୋଧହୁଏ ଊନବିଂଶ ଶତାବ୍ଦୀରେ ଥିଲା ବିରଳ । ପୁଣି ଭୂମିକେନ୍ଦ୍ରିକ ଚିନ୍ତାଧାରାର ଚିରନ୍ତନତ୍ୱ ଦୃଷ୍ଟିରୁ ଏହି ଉପନ୍ୟାସଟି ଆମେରିକୀୟ ଉପନ୍ୟାସ ଜଗତରେ ଏକ ନୂତନ ପରମ୍ପରା ସୃଷ୍ଟି କରିଥିଲା । ହଥର୍ଣ୍ଣଙ୍କ ଶୈଳୀର ବଳିଷ୍ଠତା, ଚରିତ୍ର ଚିତ୍ରଣର ପରାକାଷ୍ଠା ଓ ସର୍ବୋପରି କଥାବସ୍ତୁ ଅବତାରଣାରେ ବାସ୍ତବତାର ସ୍ପର୍ଶ ଏହି ଉପନ୍ୟାସର ସାହିତ୍ୟିକ ମୂଲ୍ୟବୋଧକୁ ସତେ ଜାଗ୍ରତ କରି ରଖିପାରିଛି ।

'ଟ୍ରାଜେଡ଼ି'ର ପୃଷ୍ଠଭୂମିରେ ଔପନ୍ୟାସିକ ହଥର୍ଣ୍ଣ 'The House of the Seven Gables' । ଉପନ୍ୟାସର ପରିକଳ୍ପନା କରିଛନ୍ତି । ମାଥିଉମାଉଲେଙ୍କୁ ଫାଶୀ ଦେବାକୁ ଚିନ୍ତା ଯେତେବେଳଠାରୁ କର୍ଣ୍ଣେଲଙ୍କ ମୁଣ୍ଡରେ ପଶିଲାଣି, ସେହିକବେଳ-ଠାରୁ ଏହି ଉପନ୍ୟାସରେ ବିପର୍ଯ୍ୟୟ ଘନେଇ ଆସିଛି । ପରିଣତିରେ ଏହା ମିଳନାତ୍ମକ ରୂପ ନେଲେହେଁ ପ୍ରକୃତ ପକ୍ଷେ ଦେଖିବାକୁ ଗଲେ ଏହା ପିନ୍‌ଚନ୍ ପରିପବାରର ମାଉଲେ ପରିବାର ସହ ଏକ ସାଲିସ୍ ମାତ୍ର । ଯେଉଁ ମାଉଲେ ପରିବାରକୁ ତଳତଳାନ୍ତ କରିଦେଇ, ଏକ ଘୃଣ୍ୟ ହେୟ ଦୃଷ୍ଟିରେ ଦେଖି କର୍ଣ୍ଣେଲ୍ ତା'ର ଜମି ଉପରେ ଏକ ବୁର୍ଜୁଆ ବିଳାସର ପ୍ରମୂର୍ତ୍ତ ଗଢ଼ି ଯାଇଥିଲେ 'The House ot the Seven Gables' ଘରଟି ସେହି ଘରେ ମାଉଲେର ଅତୃପ୍ତ ଆତ୍ମାଠାରୁ ଆରମ୍ଭକରି ତାର ନାତି, ଅଣନାତି ପର୍ଯ୍ୟନ୍ତ ପରୋକ୍ଷରେ ଆପଣାର ଲୀଳାଖେଳା ରଚନା କରିଯାଇଛନ୍ତି । ହୋଲ୍‌ଗ୍ରେଭ୍ ଜଣେ ମାଉଲେ ବଂଶୀୟ ଯୁବକ । ମାତ୍ର ହେପ୍‌ଜିବାଙ୍କ ସହ ସେ ଏକତ୍ର ବାସ କରିଛନ୍ତି 'The House of the Seven Gables' ରେ । ହେପ୍‌ଜିବା ତାଙ୍କର ବଂଶ ପରିଚୟ ଜାଣନ୍ତି ନାହିଁ । ପିନ୍‌ଚନ୍ ପରିବାରର ଜଣେ ଯୁବତୀ 'ଫୋଏବ୍' ସହ ତାଙ୍କର ଏହି ଘରେ ପ୍ରେମର ସୌଧ ଗଢ଼ିଉଠିଛି । ଏ ସୌଧ ବଂଶ ପରଂପରାର ସଂଘର୍ଷରେ ବା ଜାତିଆଣ ହୀନମନ୍ୟତାର ବର୍ବର ରୁଚି ତଳେ ବିଲୟ ଭଜିନାହିଁ; ବରଂ ସେମାନଙ୍କ ପ୍ରେମ ସୌଧ ତଳେ କର୍ଣ୍ଣେଲଙ୍କ ନିର୍ମିତ 'The House of the Seven Gables' ପରି ମହାନ୍ ପ୍ରାସାଦ ଅତି ତୁଚ୍ଛ, ହେୟ ଓ ଶ୍ରୀହୀନ ଭାବେ ପଡ଼ି-

**(13) American, Lit. Vol-I, by-Abel Page—203/204**

ରହିଛୁ । ଏମାନଙ୍କ ମିଳନରେ ପିନ୍‌ଚନ୍ ପରିବାରର ସର୍ବଶେଷ ପ୍ରତିନିଧି ହେପ୍‌ସିବା ବା କ୍ଲିଫର୍ଡ଼ କେହି ପ୍ରତିବାଦ କରିନାହାନ୍ତି; ବରଂ ସେମାନଙ୍କୁ ଆଶୀର୍ବାଦ କରିଛନ୍ତି । ଏହାଦ୍ୱାରା ଯେଉଁ 'The House of the Seven Gables' ସେ ଯୁଗ ଯୁଗ ଧରି ବିଷର୍ଣ୍ଣତାର ଅନ୍ଧକାର ଗ୍ରୁହ ହୋଇ ରହିଥିଲା । ତାହା ଲିଭିଯାଇଛି । ମାଉ୍ଲେଙ୍କ ଆତ୍ମା ଏଥିରେ ଶାନ୍ତି ପାଇଛି । ଏହି ଉପନ୍ୟାସର ପରିଣତି ମିଳନାତ୍ମକ । ଅବଶ୍ୟ ଏହାର ଭିତରେ କର୍ଣ୍ଣେଲ୍ ଓ ଜର୍ଜ ପିନ୍‌ଚନ୍‌ଙ୍କ ପରି ସାମନ୍ତବାଦୀ, ଅତ୍ୟାଚାରୀ ଶୋଷକମାନେ ଆପଣାର କୃତକର୍ମର ଅଲଙ୍ଘନୀୟ ଫଳକୁ ଭୋଗ କରିଛନ୍ତି ।

'ଛମାଣ ଅ଼ାଠଗୁଣ୍ଠ' ଉପନ୍ୟାସର ପରିଣତି ମିଳନାତ୍ମକ ନୁହେଁ । କିନ୍ତୁ ଏହାର ପୃଷ୍ଠଭୂମିରେ ଅଛି 'ଟ୍ରାଜେଡ଼ି'ର ମର୍ମନ୍ତୁଦ ପଦଧ୍ୱନି । ସମାଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ—'ଅପୁତ୍ର ଦମ୍ପତିର ମାଇପି ଗାଧୁଆ ତୁଠ 'ଛମାଣ ଅ଼ାଠଗୁଣ୍ଠ' ଟ୍ରାଜେଡ଼ିର ପ୍ରଧାନ ପୃଷ୍ଠଭୂମି । ଚମ୍ପା ଏଇଠି ଭଗିଆ ଓ ସାରିଆର ସର୍ବନାଶର ମଞ୍ଜି ପୋତିଥିଲା ।" (ଫକୀରମୋହନସମୀକ୍ଷା) ଏଇଠାରୁ 'ଛମାଣ ଅ଼ାଠଗୁଣ୍ଠ' ଉପନ୍ୟାସ ହୋଇଛି ଗତିଶୀଳ । 'The House of the Seven Gables' ପରି ଏହା ପରେ ପରେ 'ଛମାଣ ଅ଼ାଠଗୁଣ୍ଠ' ଉପନ୍ୟାସରେ ବିପର୍ଯ୍ୟୟର କଳାବାଦଲ ଘନେଇ ଆସିଛି । ଜମିଦାର ରାମଚନ୍ଦ୍ର ମଙ୍ଗରାଜ ନିସନ୍ତାନ ତନ୍ତୀ ଦମ୍ପତିର 'ଛମାଣ ଅ଼ାଠଗୁଣ୍ଠ" ଜମିକୁ କୌଶଳରେ ଅପହରଣ କଲାପରେ ନାନା ଦିଗରୁ ଅବକ୍ଷୟତାର ଶିକାର ହୋଇଛନ୍ତି । ସ୍ତ୍ରୀ ତାଙ୍କର ମୃତ୍ୟୁ ବରଣ କରିଛି ଗଭୀର ମନସ୍ତାପରେ । ପରେ ପରେ ସାରିଆ ମରିଛି ଓ ଭଗିଆ ପାଗଳ ହୋଇଯାଇଛି । ପରିଶେଷରେ ଭଗିଆ ଜେଲ୍ ହାଜତରେ ରହିଛି । କର୍ଣ୍ଣେଲ୍ ମାଉ୍ଲେଙ୍କଠାରୁ ଶାସ୍ତି ପାଇଛନ୍ତି ମୃତ୍ୟୁ ଦଣ୍ଡରେ । ମାତ୍ର ଫକୀରମୋହନଙ୍କ ଶାସ୍ତି ରାମଚନ୍ଦ୍ରଙ୍କ ପକ୍ଷେ ହୋଇଛି ଭିନ୍ନ । ରାମଚନ୍ଦ୍ର ମଙ୍ଗରାଜ ସାରିଆ ମୃତ୍ୟୁ ଘଟଣାରୁ ନିସ୍ତାର ପାଇଲେବି ଟାଙ୍ଗେନେଇ ନାମ୍ନୀ ଗାଈକୁ ଆତ୍ମସାତ୍ କରିବା ଘଟଣାରେ ଜେଲ୍ ଗଲେ । ସେଠାରେ ରାମଲାଲ୍ ଓକିଲ ମକଦ୍ଦମା ଖର୍ଚ୍ଚାକୁ ତାଙ୍କଠାରୁ ତାଙ୍କ ଜମିଦାରୀ କଣ୍ଟାକବଲା ଲେଖିନେଲା । ଅପରପକ୍ଷରେ ଚମ୍ପା ତାଙ୍କଠାରୁ କୌଶଳକ୍ରମେ ଗନ୍ତାଘର ଚାବିକାଠି ଆଣି ଧନ ଦୌଲତ ଧରି ଗୋବିନ୍ଦା ଭଣ୍ଡାରୀକୁ ସାଥିରେ ନେଇ ଚମ୍ପଟ ଦେଇଛି । ଏହା ରାମଚନ୍ଦ୍ର ମଙ୍ଗରାଜଙ୍କର ପାର୍ଥିବ ବିପର୍ଯ୍ୟୟ ମାତ୍ର । କିନ୍ତୁ ତାଙ୍କର ମାନସିକ ଓ ଦୈହିକ ବିପର୍ଯ୍ୟୟ ଅତୀବ ଯନ୍ତ୍ରଣାଦାୟକ । ମଙ୍ଗରାଜଙ୍କ ନାକକୁ ଜେଲ୍‌ରେ ଭଗିଆ କାମୁଡ଼ିଦେଇ ଆପଣାର ସର୍ବସ୍ୱ ଅପହରଣର ପ୍ରତିଶୋଧ ନେଲା । ତା' ମନ ଗହନରେ ଜଳଉଠିଥିବା ନିଆଁ ଯେପରି ଏଇଥିରେ ନିର୍ବାପିତ ହୋଇଗଲା । ରାମଚନ୍ଦ୍ର ମଙ୍ଗରାଜ ଯଥାର୍ଥ ଶାସ୍ତି ଭଗିଆଠାରୁ ହାତେ ହାତେ ପାଇଗଲେ । 'ଛମାଣ ଅ଼ାଠଗୁଣ୍ଠ' ଜମି ନେବାଠାରୁ ତାଙ୍କ ବିପର୍ଯ୍ୟୟକୁ 'The House of the Seven Gables'

ଉପନ୍ୟାସର ମାଉଲେଙ୍କ ଜମିକୁ ନେବାଠାରୁ କଲୋନେଲ୍ ପରିବାରର ଉପର୍ଯ୍ୟୁକ୍ତ ଶାପ ସହ ତୁଳନା କରାଯାଇପାରେ । କର୍ଣ୍ଣେଲଙ୍କ କୃତକର୍ମର ପାପକୁ ଯେପରି ତାଙ୍କରି ବଂଶଜ କନ୍ୟା ଫୋଏବ୍ ସହ ମାଉଲେ ବଂଶୀୟ ଯୁବକ ହୋଲ୍‌ଗ୍ରେଭଙ୍କ ସହ ବିବାହରେ ଔପନ୍ୟାସିକ ହଥର୍ଣ୍ଣ ପ୍ରାୟଶ୍ଚିତ କରାଇଛନ୍ତି, ସେହିପରି ରାମଚନ୍ଦ୍ର ମଙ୍ଗରାଜଙ୍କ କୃତକର୍ମର ପାପକୁ ଭଗିଚନ୍ଦ୍ରର ତାଙ୍କ ନାକ କାମୁଡ଼ା ଘଟଣାରେ ପ୍ରାୟଶ୍ଚିତ କରାଇଛନ୍ତି ଔପନ୍ୟାସିକ ଫକୀରମୋହନ । ଏ କ୍ଷେତ୍ରରେ ଉଭୟ ଔପନ୍ୟାସିକଙ୍କ ସାହିତ୍ୟିକ ଆଦର୍ଶ ହେଉଛି ଏକ । ଆବେଦନ ଅଦ୍ୱିତୀୟ । କେବଳ ହଥର୍ଣ୍ଣ ତାଙ୍କ ଉପନ୍ୟାସରେ ପ୍ରେମର ଶକ୍ତି ପ୍ରଦାନ କଲାବେଳେ ଫକୀରମୋହନ ତାହା ନକରି 'ଛ'ମାଣ ଅଠଗୁଣ୍ଠ'ର ପରିଣତିକୁ ମୃତ୍ୟୁର ଭୟାବହ ଶକ୍ତିରେ ବାନ୍ଧି ଦେଇଛନ୍ତି । ତେବେ ଉଭୟର ପରିଣତିଜନିତ ଉଦ୍ଦେଶ୍ୟ ହେଉଛି—"ଅତୀତର କୃତକର୍ମ ଜନିତ ପାପର ପ୍ରାୟଶ୍ଚିତ ଓ ତଜ୍ଜନିତ ଫଳ ସ୍ୱରୂପ ଉଭୟ କଲୋନେଲ୍ ଓ ରାମଚନ୍ଦ୍ର ମଙ୍ଗରାଜଙ୍କ ବଂଶର ପାରମ୍ପରିକ ମୂଲ୍ୟହ୍ରାସ ।"

"The House of the Seven Gables" ଉପନ୍ୟାସଟି ପାଞ୍ଚଟି ମୁଖ୍ୟ ଚରିତ୍ର, ଦୁଇଟି ସମାନ୍ତରାଳ ଚରିତ୍ର ଓ ପ୍ରାୟ ବାରଟି ଗୌଣ ଚରିତ୍ରକୁ ନେଇ ନିଜର ମୂଳପିଣ୍ଡ ଗଠନ କରିଛି । ତେଣୁ ଏହା ଏକ ସାମାଜିକ ଉପନ୍ୟାସ ହେଲେ ବି ଚରିତ୍ର ଏଥିରେ ପ୍ରାଧାନ୍ୟ ଲାଭ କରିଥିବାରୁ ଏହାକୁ ଚରିତ୍ର ପ୍ରଧାନ ଉପନ୍ୟାସ ମଧ୍ୟ କୁହାଯାଇପାରେ । ସେହି ଦୃଷ୍ଟିରୁ ମୁଖ୍ୟ ଚରିତ୍ର ସହ ଏକାନ୍ତ ନିବିଡ଼ ଭାବେ ସମ୍ପର୍କ ସ୍ଥାପନ କରିଥିବା ଦୁଇଟି ଚରିତ୍ରକୁ ଏହାର ସମାନ୍ତରାଳ ଚରିତ୍ରର ଅନ୍ତର୍ଭୁକ୍ତ କରାଯାଇପାରେ । ଏହା ଯଦିଓ ସଂପୂର୍ଣ୍ଣ ଭାବେ ମୁଖ୍ୟ ଚରିତ୍ର ନୁହେଁ, ତଥାପି ସେହି ଦୃଷ୍ଟିରୁ ଏହାକୁ ସମ୍ପୂର୍ଣ୍ଣ ଗୌଣ ଚରିତ୍ରର ଅନ୍ତର୍ଭୁକ୍ତ କରାଯାଇପାରିବ ନାହିଁ । ଏହି ଉପନ୍ୟାସର ମୁଖ୍ୟ ନାୟିକା ହେପ୍‌ସିବା ଓ ଫୋଏବ୍ । ହେପ୍‌ସିବା ଉପନ୍ୟାସଟିର ମୁଖ୍ୟ ନାୟିକା ହେଲେ ବି 'ଫୋଏବ୍' ଚରିତ୍ର ବିନା ସେ ସମ୍ପୂର୍ଣ୍ଣ ବିକଶିତ ହୋଇପାରେ ନାହିଁ । ହେପ୍‌ସିବା ଜୀବନରେ ଫୋଏବ୍‌ର ଭୂମିକା ଉପନ୍ୟାସଟିର ଗତିକୁ ଭିନ୍ନଧର୍ମୀ କରିଛି । କାରଣ ଫୋଏବ୍ ହେପ୍‌ସିବାଙ୍କ ନିକଟରେ ରହିବା ପରଠାରୁ ମାଉଲେ ବଂଶଜ ହୋଲ୍‌ଗ୍ରେଭ ତା' ପ୍ରତି ଆକର୍ଷିତ ହୋଇଛି ଏବଂ ଦେଖାଯାଇଛି ଏହିଠାରୁ ଉପନ୍ୟାସଟି ପରିଣତି ଆଡ଼କୁ ଟାଣି ହୋଇଯାଇଛି । ତେଣୁ 'ଫୋଏବ୍' ଚରିତ୍ର ଔପନ୍ୟାସିକ ହଥର୍ଣ୍ଣଙ୍କ ନିରଳସ ସାଧନାର ଫଳ ନହେଲେ ବି ଅଜ୍ଞାତ ଚେତନାର ସୃଷ୍ଟି ନୁହେଁ ।

ଏହି ଉପନ୍ୟାସର କଲୋନେଲ୍ ଜର୍ଜ ପିନ୍‌ଚନ୍, ମାଥିଉ ମାଉଲେ ଏମାନେ ସମସ୍ତେ ମୁଖ୍ୟ ଚରିତ୍ରର ଅନ୍ତର୍ଭୁକ୍ତ । ଏହି ଚରିତ୍ରମାନଙ୍କର ଏକାନ୍ତ ସହାୟକ ଚରିତ୍ରଭାବେ ହୋଲ୍‌ଗ୍ରେଭ ଓ କ୍ଲିଫର୍ଡଙ୍କ ପରି ଦୁଇଟି ସମାନ୍ତରାଳ ଚରିତ୍ର ସୃଷ୍ଟିର ଗୁରୁତ୍ୱ ନିଶ୍ଚୟ ରହିଛି ଏବଂ ଏକାଧିକ ଗୌଣ ଚରିତ୍ର ଏହି ମୁଖ୍ୟ ଚରିତ୍ରଗୁଡ଼ିକ ସହ ସମ୍ପର୍କ ରକ୍ଷାକରି

ଉପନ୍ୟାସର ମୂଳପିଣ୍ଡକୁ ସଫଳକାମୀ କରିପାରିଛନ୍ତି । ଚରିତ୍ରଗତ ସାହିତ୍ୟିକ ମୂଲ୍ୟବୋଧ ଦୃଷ୍ଟିରୁ ମଧ୍ୟ ଔପନ୍ୟାସିକ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଅନେକାଂଶରେ 'The House of the Seven Gables' ସହିଁ ତୁଳନୀୟ । ଏଥିରେ ମୁଖ୍ୟ ଚରିତ୍ର ଚିତ୍ରଣଠାରୁ ଗୌଣ ଚରିତ୍ର ଚିତ୍ରଣରେ ଫକୀରମୋହନ ଯେଉଁ ପାରଦର୍ଶିତା ଦେଖାଇ ଅଛନ୍ତି, ତାହା ଯଥାର୍ଥରେ ହଥର୍ଣ୍ଣଙ୍କ ଚରିତ୍ରଚିତ୍ରଣ ସହ ହିଁ ତୁଳନୀୟ । ହଥର୍ଣ୍ଣ ସାମାନ୍ୟ ଗୌଣ ଚରିତ୍ର ବା ସହାୟକ ଚରିତ୍ରମାନଙ୍କ ସହାୟତାରେ 'The House of the Seven Gables'ର ବହୁଗୁରୁତ୍ୱପୂର୍ଣ୍ଣ ଘଟଣାର ବିକାଶକୁ ଯେପରି ତ୍ୱରାନ୍ୱିତ କରିଛନ୍ତି, ଅନୁରୂପ ଭାବେ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ'ରେ ତାହାହିଁ କରିଛନ୍ତି । ଏ ଗୌଣ ଚରିତ୍ରଗୁଡ଼ିକ ପୁଣି କେବଳ ଗଳ୍ପର ବିକାଶ ପାଇଁ କଳ୍ପିତ ହୋଇନାହିଁ । ହୁଏତ ଗଳ୍ପର ବିକାଶରେ ଅଧିକାଂଶ ଗୌଣ ଚରିତ୍ର ଅବାନ୍ତର । ମାତ୍ର ପ୍ରତ୍ୟେକ ଗୌଣ ଚରିତ୍ର ମାଧ୍ୟମରେ ସମାଜ ଜୀବନର ନାନା ଆବର୍ଜନା ବିରୁଦ୍ଧରେ ବଳିଷ୍ଠ ସମାଲୋଚନା ଏଥିରେ ଅତି ନିସ୍ପୃହ ଭାବରେ ପ୍ରକାଶ ପାଇଅଛି । ଏହି ଗୌଣ ଚରିତ୍ରଗୁଡ଼ିକ ପୁଣି ଉପନ୍ୟାସକୁ ବହୁ ପରିମାଣରେ ସୁଖପାଠ୍ୟ କରିଅଛି । ଉଦାହରଣ—'ଅସୁର ଦୀଘି ସମ୍ପର୍କିତ ବର୍ଣ୍ଣନା ପ୍ରସଙ୍ଗରେ ଯଶୋଦା ଓ ମାର୍କଣ୍ଡିଆ ମା'ର କଳହ । ମୂଳଗଳ୍ପ ସହିତ ଏ ଘଟଣାର କୌଣସି ସମ୍ପର୍କ ନାହିଁ । ହୁଏତ ଗଳ୍ପର କ୍ରମବିକାଶ ଦୃଷ୍ଟିରୁ 'ଅସୁରଦୀଘି'ର କେବଳ ଉଲ୍ଲେଖ ମାତ୍ର ଯଥେଷ୍ଟ ହୋଇଥା'ନ୍ତା । କିନ୍ତୁ ଅସୁରଦୀଘିର ମାଇପି ଗାଧୁଆତୁଠ, 'ଛ'ମାଣ ଆଠଗୁଣ୍ଠ' ଟ୍ରାଜେଡ଼ିର ପୃଷ୍ଠଭୂମି । ଚମ୍ପା ଏଠି ଭଗିଆ ଓ ସାରିଆର ସର୍ବନାଶର ମନ୍ତ୍ରି ପୋତିଥିଲା । ତେଣୁ ସେଇ ପୃଷ୍ଠଭୂମି ପ୍ରତି ପାଠକମାନଙ୍କର ବିଶେଷ ଦୃଷ୍ଟି ଆକର୍ଷଣ କରିବା ପାଇଁ ତାହାର ବର୍ଣ୍ଣନା ସ୍ଫୀତକୃତ ହୋଇଅଛି । (୧୪) ଅତଏବ ଗୌଣ ଚରିତ୍ରର ପରାକାଷ୍ଠା ଓ ବିଭିନ୍ନ ଘଟଣା ସହ ଏହାକୁ ଗୁରୁତ୍ୱପୂର୍ଣ୍ଣ ଭାବେ ଜଡ଼ିତ କରିବାରେ ଉଭୟ ଔପନ୍ୟାସିକ ଯେଉଁ ଦକ୍ଷତା ଦେଖାଇଛନ୍ତି, ତାହା ସେମାନଙ୍କ ସାହିତ୍ୟାଦର୍ଶ ବିଚାରରେ ସାମ୍ୟ ଭାବହିଁ ପ୍ରଦର୍ଶିତ ହୋଇଛି ।

'Tha House of the Seven Gables' ଉପନ୍ୟାସଟି ଯଥାର୍ଥରେ ଏକ ସ୍ଫୀତକୃତ ଗଳ୍ପ । କିନ୍ତୁ ଏହାର ପରିବେଷଣ କୌଶଳ ପାଇଁ ଏହା ଯଥାର୍ଥରେ ଏକ ଶକ୍ତି-ଶାଳୀ ଉପନ୍ୟାସର ମର୍ଯ୍ୟାଦାରେ ପ୍ରତିଷ୍ଠିତ ହୋଇପାରିଛି । ଏଥିରେ ଗଳ୍ପ ଅପେକ୍ଷା ଗଳ୍ପର ପରିବେଷଣ କୌଶଳ ଅଧିକତର ଉଲ୍ଲେଖଯୋଗ୍ୟ । ଅତି ସାଧାରଣ ବୈଚିତ୍ର୍ୟହୀନ ଗଳ୍ପ ନିପୁଣ ପରିବେଷଣ ଗୁଣରେ କିପରି ଏକ ଉଚ୍ଚଶ୍ରେଣୀର ଉପନ୍ୟାସ ସୃଷ୍ଟି କରିପାରେ, ତାହାର ଏକ ଜ୍ୱଳନ୍ତ ଉଦାହରଣ ହଥର୍ଣ୍ଣଙ୍କ 'The House of the Seven Gables' ଓ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' । ଲକ୍ଷ୍ୟ କଲେ ଉଭୟ ଉପନ୍ୟାସର

(୧୪) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା—୯୯

ଲେଖଗୁମାନ ଶୈଳୀ ଏକପରି ବୋଧହୁଏ । ମାଥିଉ ମାଉଲେଙ୍କ ସାଦୃଶକର ଭାବରେ ପ୍ରମାଣିତ କରି ତାଙ୍କ କର୍ମକୁ କଲୋନେଲ୍ ହସ୍ତଗତ କଲାପରେ ଗଳ୍ପ ପରିଣତିରେ ପହଞ୍ଚିଛି; କିନ୍ତୁ ସେ ପର୍ଯ୍ୟନ୍ତ ଗଳ୍ପର କ୍ରମପରିଣତି ଗତିହୀନ ଓ ସ୍ଥାଣୁ । କିନ୍ତୁ କଲୋନେଲ୍ ଏହି କର୍ମ ଉପରେ ଘର କଲାପରେ ଗଳ୍ପର କ୍ରମପରିଣତିର ଗତି ଯେପରି ଦ୍ରୁତ, ସେହିପରି ମର୍ମସ୍ପର୍ଶୀ ହୋଇପାରିଛି । ଅନୁରୂପ ଭାବେ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ରାମଚନ୍ଦ୍ର ମଙ୍ଗରାଜ ସାରିଆ ଓ ଭଗିଆଙ୍କ 'ଛ'ମାଣ ଆଠଗୁଣ୍ଠ'କୁ କୌଶଳକ୍ରମେ ହସ୍ତଗତ କଲାପରେ ଗଳ୍ପ ପରିଣତିରେ ପହଞ୍ଚିଛି; କିନ୍ତୁ ସେପର୍ଯ୍ୟନ୍ତ ଗଳ୍ପର କ୍ରମପରିଣତି ଆରମ୍ଭ ହୋଇନାହିଁ; ମାତ୍ର ସାଆନ୍ତାଣୀ ଓ ସାରିଆର ମୃତ୍ୟୁ ପରେ ଗଳ୍ପର କ୍ରମପରିଣତି ଆରମ୍ଭ ହୋଇ ରାମଚନ୍ଦ୍ର ମଙ୍ଗରାଜଙ୍କ ବିପର୍ଯ୍ୟୟକୁ ନାନାଭାବେ ଏହି ଉପନ୍ୟାସ ଭିତରକୁ ଟାଣି-ଅଣିଛି । ଅତଏବ ସଫଳ ଲେଖଗୁମାନ ଓ ବର୍ଣ୍ଣନା ଶୈଳୀରେ ଉଭୟ ଉପନ୍ୟାସର ସାହିତ୍ୟିକ ମୂଲ୍ୟବୋଧ ଏକପରି ମନେହୁଏ । ପୁଣି ଉଭୟ ଔପନ୍ୟାସିକ ଯେପରି କୃତକର୍ମର ଫଳ, ପାପପୁଣ୍ୟର ଅନ୍ଧକାର ଓ ଆଲୋକିତ ଦିଗ ଉପରେ ଗୁରୁତ୍ୱପୂର୍ଣ୍ଣ ବର୍ଣ୍ଣନା ଯଥାକ୍ରମେ 'The House of the Seven Gables' ଓ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ଦେଇଅଛନ୍ତି ତାହା ଅନନ୍ୟ ଓ ଏବେ ବି ଅଲଙ୍ଘନୀୟ । ଅତଏବ ଏହି ପରିପ୍ରେକ୍ଷୀରେ ହଥର୍ଣ୍ଣଙ୍କ ସମ୍ପର୍କରେ କୁହାଯାଇପାରେ ଯେ—"We are prepared today even for his special blend and alternation of light and darkness. Tillich and the religious existentialists have taught us enough about the dynamics of faith to enable us to respond naturally to a writter who explored the darkness to the very limits of the town searching for a trust worthy light. Few nineteenth century American writers today seems so likely to reward re-reading as Hawthorne." (୧୫) ଅନୁରୂପ ଭାବରେ ଫକୀରମୋହନ ଓ ତାଙ୍କ 'ଛ'ମାଣ ଆଠଗୁଣ୍ଠ' ସମ୍ପର୍କରେ ମଧ୍ୟ କୁହା-ଯାଇପାରେ ଯେ,—"ଛମାଣ ଆଠଗୁଣ୍ଠ'ର ରଚନା ଓଡ଼ିଆ ଉପନ୍ୟାସର ଶୈଶବରେ । ତା' ପୂର୍ବରୁ ଅବଶ୍ୟ 'ପଦ୍ମମାଳୀ' ଓ 'ବିବାସିନୀ' ଉପନ୍ୟାସ ପ୍ରକାଶ ପାଇସାରିଥିଲା । ମାତ୍ର ସେ ଦୁଇଟିଯାକ ଐତିହାସିକ ଉପନ୍ୟାସ । 'ବିବାସିନୀ'ଠାରୁ 'ପଦ୍ମମାଳୀ' ଭାଷା ଓ ଶୈଳୀରେ ଢେର ଉନ୍ନତତର ହେଲେହେଁ ଚରିତ୍ରଚିତ୍ରଣ, ଘଟଣାବିନ୍ୟାସ, ପରିବେଷଣ ଓ ଭାଷା ଦୃଷ୍ଟିରୁ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସକୁ ଓଡ଼ିଆ ସାହିତ୍ୟରେ ଅଭୂତପୂର୍ବ କୁହାଯାଇପାରେ । × × × ଭାଷା, ଭାବ, ଗଳ୍ପ ଓ ପରିବେଷଣ ଦୃଷ୍ଟିରୁ 'ଛ'ମାଣ ଆଠଗୁଣ୍ଠ' ବିଶ୍ୱସାହିତ୍ୟରେ ଏକ ମର୍ଯ୍ୟାଦାପୂର୍ଣ୍ଣ ଆସନ ଦାବି କରିପାରେ । ଗତିଶୈଳୀରେ

(୧୫) Six American Novelists of nineteenth century—Edited by—Foster, Page—81

ପାହାନ୍ତ ଆକାଶରେ ଉଜ୍ଜ୍ୱଳ ଶୁକ୍ର ତାରାପରି ଊନବିଂଶ ଶତାବ୍ଦୀର ଶେଷରେ ଓଡ଼ିଆ ସାହିତ୍ୟର ଅନ୍ଧକାରବୃତ୍ତ ଦିଗ୍‌ବଳୟରେ 'ଛ'ମାଣ ଆଠଗୁଣ୍ଠ'ର ଅଭ୍ୟୁଦୟ ହୋଇଥିଲା ଏକ ଉଜ୍ଜ୍ୱଳ ପ୍ରଭାତର ବାର୍ତ୍ତା ଧରି । କିନ୍ତୁ ପ୍ରଭାତର ଜୟ ହୋଇଛି । 'ଛ'ମାଣ ଆଠଗୁଣ୍ଠ'ର ପୃଷ୍ଠାରେ ସେଇ ପ୍ରଭାତର ଜୟଗୀତ କାଳେ କାଳେ ଓଡ଼ିଆ ସାହିତ୍ୟର ସାଧକଙ୍କୁ ଉଦ୍‌ବୁଦ୍ଧ କରିବ; ସନ୍ଦେହ ନାହିଁ । ପୃଥିବୀ ବୁହାଯାଇପାରେ ଫକୀରମୋହନ ଓଡ଼ିଆ ଉପନ୍ୟାସ ସାହିତ୍ୟର ଯେଉଁ ଚୌହଦୀ 'ଛ'ମାଣ ଆଠଗୁଣ୍ଠ'ରେ ଟାଣି-ଦେଇ ଯାଇଛନ୍ତି, ଇତିମଧ୍ୟରେ ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ବିତିଯାଇଥିଲେ ସୁଦ୍ଧା ତାହା ସେଥିରୁ ବିଶ୍ୱାଏ ହେଲେ ବଢ଼ିପାରିନାହିଁ ।" (୧୬)

## (ଚ) କାଳଗତ ଚିରନ୍ତନତା ଦୃଷ୍ଟିରୁ :

ବିଶ୍ୱର ବିଶିଷ୍ଟ ସାହିତ୍ୟ ଓ କଳାକୃତି ସମୂହ ଅଭିନନ୍ଦନୀୟ କେବଳ ସେମାନଙ୍କ ଚିରନ୍ତନତା ହେତୁ । ସବଳର ଦୁର୍ବଳ ଉପରେ ଅତ୍ୟାଚାର ବିତ୍ତବନ୍ତଙ୍କର ଦରିଦ୍ର ଉପରେ ଶୋଷଣ, ସାହୁକାରର ଖାତକ ଉପରେ ନିଷ୍ପେଷଣ, ମାଲିକର ଶ୍ରମିକଠାରେ ନିପୀଡ଼ନ ଏବଂ ଜମିଦାରର ପ୍ରଜା ଉପରେ ନିର୍ଯ୍ୟାତନା ହେଉଛି ସମାଜର ଏକ ଏକ ଚିରାଚରିତ ସମସ୍ୟା । ସଭ୍ୟତାର ଆଲୋକବର୍ତ୍ତିକା ସମାଜର ଏହି ଅନ୍ଧକାରାଚ୍ଛନ୍ନ ସମସ୍ୟାକୁ ପ୍ରଜ୍ଜ୍ୱଳିତ କରିପାରେ । ନେତୃସ୍ଥାନୀୟ ବ୍ୟକ୍ତିଗତ, କଳାକାର, ଦାର୍ଶନିକ, ରାଜନୀତିଜ୍ଞ, ସଂସ୍କାରକ ଓ ସମାଜସେବୀମାନେ ଏହାର ସମାଧାନ ପାଇଁ ବ୍ୟଗ୍ର ହୋଇପଡ଼ନ୍ତି । ପ୍ରଚଳିତ ଆଇନ୍-କାନୁନ୍ ଏଥିପାଇଁ କଠୋର ହୁଏ । କିନ୍ତୁ ସମାଜରୁ ଏହାର ବିଲୋପ ସାଧନ ସମ୍ଭବ ହୁଏ ନାହିଁ । ଲୋକଚରିତ୍ରର ତ୍ରୁଟି ମାର୍ଜନ ଏତେ ସହଜସାଧ୍ୟ ନୁହେଁ । ମଣିଷ ପ୍ରକୃତିରେ କୁଟିଳତା, ଶଠତା, ଈର୍ଷା, ଦ୍ୱେଷ, ଦର୍ପ, ଅଭିମାନ ରହିବ ହିଁ ରହିବ । ଅଧିକନ୍ତୁ ପରି-ବେଷ୍ଟନୀର ପ୍ରଭାବରେ ମଧ୍ୟ ମାନବିକତାର ବିଲୟ ଘଟେ । ଏହି ଅବିବେକୀତାର ପରିଣତି ସରସ ସମାଜ-ଜୀବନ ପଥରେ ସୃଷ୍ଟି କରେ ଦୁର୍ଲଂଘ୍ୟ ବ୍ୟବଧାନ; ଗଢ଼ିଦିଏ ଜଟିଳ ସମସ୍ୟା । ଏହା ସବୁ ଯୁଗର ସମସ୍ୟା । ସବୁକାଳର ନେତୃସ୍ଥାନ ବେତ୍ରାଘାତ । କିନ୍ତୁ ସାହିତ୍ୟ ସ୍ରଷ୍ଟା ଏହାର ସମାଧାନ ପାଇଁ ନିଜ ସୃଷ୍ଟିରେ ଏହାକୁ ଦୋହରାଇ ପାଠକ ଆଗରେ ସମାଜର ନଗ୍ନରୂପକୁ ଉନ୍ମୋଚନ କରେ । ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣ ଓ ଓଡ଼ିଆ ଔପନ୍ୟାସିକ ଫକୀରମୋହନ ସେମାନଙ୍କ ଉପନ୍ୟାସ ଯଥାକ୍ରମେ—'The House of the Seven Gables' ଓ 'ଛ'ମାଣ ଆଠଗୁଣ୍ଠ'ରେ ବ୍ୟକ୍ତି-ଜୀବନର ତଥା ସମାଜ-ଜୀବନର ଏହି କାଳଗତ ଚିରନ୍ତନ ସତ୍ୟତାକୁ ଅନୁରଣିତ କରିଅଛନ୍ତି । ସେମାନଙ୍କର ଏହି

(୧୬) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା—୯୮, ୧୦୦-୧୦୧ ।

ଦୁଇ ଉପନ୍ୟାସରେ ମଣିଷର ଶୋଷଣ ଓ ତଜ୍ଜନିତ ପରିଣତି, ଈର୍ଷା, କୁଟିଳତା, ଶଠତା, ଗର୍ବ, ଅଭିମାନ ଆଦି ଯଥାଯଥ ଭାବେ ରୂପ ପାଇଛି । ତେଣୁ ଏହି ଦୁଇ ଉପନ୍ୟାସର କାଳଗତ ଚିରନ୍ତନତାକୁ ଉପେକ୍ଷା କରିହେବ ନାହିଁ ।

ଏ ସବୁଠାରୁ ସମାଜର ଏକ ବଡ଼ ସମସ୍ୟା ହେଲା ଭୂମି ସମସ୍ୟା । ପ୍ରତି ଯୁଗରେ ମଣିଷ ଭୂମି ପାଇଁ ହିଁ ସଂଘର୍ଷ କରିଆସିଛି । ପୌରାଣିକ ଯୁଗଠାରୁ ଆଦମ ଓ ଆର୍ଯ୍ୟକାଳ ଦେଇ ଆଜିର ଆଧୁନିକ ଜୀବନକୁ ଲକ୍ଷ୍ୟକଲେ କୌଣସି ମଣିଷର ମନ ଭୂମିକେନ୍ଦ୍ରିକ ଚିନ୍ତାଧାରାରୁ ମୁକ୍ତ ନୁହେଁ । ଆଗରୁ କହିଛି—"ମାଟିର ମୋହ ପ୍ରତି ଯୁଗରେ, ପ୍ରତି-ସ୍ତରରେ ମଣିଷକୁ କରିଛି ପାଗଳ । ପାଗଳାମିର ହିଂସ୍ରତାକୁ ନେଇ ମାଟି ପାଗଳ ଅସଂଖ୍ୟ ମଣିଷର ଲହୁ ଶୋଷିଛି । ଲୁହ ନଗାଡ଼ି ନେଇଛି । ମଣିଷ ଆଖିରୁ ପୁଅଭାରି ଝରିଯାଇଛି ମାଟି ପାଇଁ । ମାଟି ପାଇଁ ଶୋଚନୀୟ ଅବସ୍ଥାରେ ବି ମଣିଷ ପାଲଟିଛି ପୁଣି ପାଗଳ । ପ୍ରତି ଯୁଗରେ ଶୋଷକ ଶୋଷିତ ଯେପରିକି ଈଶ୍ୱରଙ୍କ ସୃଷ୍ଟିର ଦୁଇଟି ବିଚିତ୍ର ଗୋଷ୍ଠୀ । ଗୋଟିଏ ଗୋଷ୍ଠୀର ଜନ୍ମ ଅନ୍ୟକୁ ଶୋଷଣ ପାଇଁ ଏବଂ ଅନ୍ୟଟି ତା'ଦ୍ୱାରା ଶୋଷିତ ହେବାପାଇଁ । କୌଣସି ଯୁଗରେ ମଣିଷର ଏହି ଚେତନା ଅନ୍ତର୍ହିତ ନୁହେଁ । ବରଂ ଏହାର ତୃଷ୍ଣା ଅବଦମନୀୟ । ଆଦିମମାନବଙ୍କ ପରେ ଦ୍ରାବିଡ଼ଆର୍ଯ୍ୟଙ୍କ ସଂଘର୍ଷଠାରୁ ଏବେର ଗୋପୀନାଥ ମହାନ୍ତିଙ୍କ 'ପରଜା'ର ଆଦିବାସୀ—ସାହୁକାର ଶ୍ରେଣୀ ପ୍ରତ୍ୟେକ ଯେପରି ଜମିର ମୋହ, ମାଟିର ମୋହରେ ପାଗଳ ହୋଇଉଠିଛନ୍ତି । ମାଟିର ବାସ୍ନା ସେମାନଙ୍କୁ ସେମାନଙ୍କ ମଣିଷପଣିଆ ଭୁଲାଇ ଦେଇଛି ।" ଗୋଟିଏ ଦେଶରେ ନୁହେଁ, ଗୋଟିଏ ଜାତିରେ ନୁହେଁ—ମଣିଷର ଏହି ଅଗ୍ନିଗିଳା କାହାଣୀ ଯେପରି ସର୍ବବ୍ୟାପୀ—ଏହି ଲାଳସା ଯେପରି ଚିରନ୍ତନ ଅଦମନୀୟ । କାରଣ ଦେଶ ବହୁତ; କିନ୍ତୁ ପୃଥିବୀ ଏକ । ମଣିଷର ଚିନ୍ତାଧାରା ଭିନ୍ନ; କିନ୍ତୁ ମାଟିପାଇଁ ଚେତନା ହୁଏତ ଏକ । ସେଇକଥାକୁ ଯେଉଁ ଶିଳ୍ପୀ ତା'ର ଶିଳ୍ପ ଜଗତରେ, ଯେଉଁ ସାହିତ୍ୟ ସ୍ରଷ୍ଟା ତା'ର ସୃଷ୍ଟି ମାଧ୍ୟମରେ ଅନୁରଣିତ କରିଛି, ତାହା ହୋଇଛି କାଳଜୟୀ । କାରଣ ପ୍ରତି କାଳରେ ବା ପ୍ରତି ଯୁଗରେ ମଣିଷର ଏ ସମସ୍ୟା ରହିବ ହିଁ ରହିବ । ତେଣୁ ପ୍ରତି ଯୁଗର ମଣିଷଙ୍କ ପାଇଁ ଉପରୋକ୍ତ ଶିଳ୍ପ ଓ ସାହିତ୍ୟ ହିଁ ନୂତନ ନୂତନ ପରି ଲାଗୁଥିବ; ହୋଇଥାଉ ପଛକେ ସେ ସାହିତ୍ୟ ଯୁଗ ଯୁଗ ଅତୀତର, ବହୁ କାଳଗତ ତଥା ସୀମାଗତ ବ୍ୟବଧାନର ।

ଊନବିଂଶ ଶତାବ୍ଦୀର ଆମେରିକୀୟ ଉପନ୍ୟାସ ଜଗତରେ ଏହି ଚିରନ୍ତନ ସତ୍ୟର ପ୍ରତିଷ୍ଠାତା ଔପନ୍ୟାସିକ ହଥର୍ଣ୍ଣ ତାଙ୍କ ଉପନ୍ୟାସ 'The House of the Seven Gables'ରେ ପ୍ରଥମେ ଏହି ଚିନ୍ତା ଓ ଚେତନାକୁ ପ୍ରକାଶ କରିଥିଲେ । ଏଥିରେ ମଣିଷର ମାଟିର ମୋହ ଓ ତଜ୍ଜନିତ ସର୍ବନାଶ ଘଟଣାକୁ ଔପନ୍ୟାସିକ ହଥର୍ଣ୍ଣ ବର୍ଣ୍ଣନା କରିଅଛନ୍ତି । ଜଣାଇ ମ୍ୟାଥିଉ ମାଉଲେର ସାମାନ୍ୟ ଖଣ୍ଡିଏ ଜମିକୁ ନେବାପାଇଁ କର୍ଣ୍ଣେଲ୍ ପିନ୍‌ଚନ୍

ସେଠି ଚକ୍ରାନ୍ତ କଲେ ସେଥିରେ ପ୍ରତିଷ୍ଠିତ, ପ୍ରତିପତ୍ତିଶାଳୀ କଲୋନେଲ୍ ପିନ୍‌ଚନ୍ ନିଜେ ତ ଜଳିଗଲେ; କିନ୍ତୁ ପରବର୍ତ୍ତୀ କାଳରେ ନିଜର ନିଜର ଉତ୍ତରାଧିକାରୀମାନଙ୍କର ଧ୍ୱଂସନାଶର କାରଣ ହୋଇଛନ୍ତି; ସେହି କଥା ଔପନ୍ୟାସିକ ହଥର୍ଣ୍ଣ ପ୍ରାଞ୍ଜଳ ଭାବରେ ଏହି ଉପନ୍ୟାସଟିରେ ବର୍ଣ୍ଣନା କରିଅଛନ୍ତି । ମାଥିଉ ମାଉଲେଙ୍କୁ ଏହି ଜମି ଖଣ୍ଡକ ପାଇଁ ମରିବାକୁ ପଡ଼ିଛି । ପୁଣି ମାଥିଉ ମାଉଲେଙ୍କ ଜମି ଖଣ୍ଡିକୁ କୌଶଳକ୍ରମେ କଲୋନେଲ୍ ହସ୍ତଗତ କଲାପରେ ତାଙ୍କୁ ଆମେରିକା ସରକାରଙ୍କ ଦ୍ୱାରା ପାଇବାକୁ ଥିବା ମାଇନେ ରାଜ୍ୟର ବହୁତ ଜମି ପାଇବାର ଆଶାରୁ ବଞ୍ଚିତ ହେବାକୁ ପଡ଼ିଛି । କାରଣ ମାଉଲେଙ୍କ ପୁଅ ଏହି ଜମି ପାଇବାକୁ ଥିବା କାଗଜପତ୍ରକୁ ଅପହରଣ କରିନେଇଛନ୍ତି । ଜମି ପାଇଁ ଏହି ସଂଗ୍ରାମ ପୁରୁଷ ପୁରୁଷ ଧରି 'The House of the Seven Gables' ଉପନ୍ୟାସରେ ଅତି କରୁଣ ତଥା ମର୍ମନ୍ତୁଦ ଭାବରେ ବର୍ଣ୍ଣିତ ହୋଇଛି । ତିନି-ଚାରି ପୁରୁଷ ପର୍ଯ୍ୟନ୍ତ ଏଥିପାଇଁ ପିନ୍‌ଚନ୍‌ମାନେ ଆତ୍ମବଳୀ ଦେଇଛନ୍ତି । ମାଉଲେଙ୍କ ଦ୍ୱାରା କେବଳ ନୁହେଁ, ସେମାନେ ନିଜ ନିଜ ଭିତରେ (କ୍ଲିଫର୍ଡ଼ ଓ ଜର୍ଜ) ଏଥିପାଇଁ କାଳକ୍ରମେ ସଂଘର୍ଷର ମଧ୍ୟ ସୂତ୍ରପାତ କରିଛନ୍ତି । ଏଥିରେ କ୍ଲିଫର୍ଡ଼ ଜର୍ଜଙ୍କ ଚକ୍ରାନ୍ତର ଶୀକାର ହୋଇ ଜେଲ୍ ଭୋଗିଛନ୍ତି । ସମଗ୍ର ଉପନ୍ୟାସଟି ଯେପରି ଏହି ମାଟିର ମୋହରେ, ହିଂସା, ଦ୍ୱେଷ, ଲୋଭ ଓ ମୋହ, ମାୟାରେ ଜଳିଉଠିଛି । ଏହି ଜ୍ୱଳନ କେବଳ ଉପନ୍ୟାସଗତ ଚରିତ୍ରମାନଙ୍କର ନୁହେଁ, ଏହା ଆଦିମ ଯୁଗର ମଣିଷମାନଙ୍କଠାରୁ ସାମ୍ପ୍ରତିକ କାଳର ମଣିଷମାନଙ୍କର ଜମିପାଇଁ ଥିବା ମୋହର ଜ୍ୱଳନ । ତେଣୁ ଏପରି ଏକ ସତ୍ୟ ଯେ କେବଳ ଗୋଟିଏ ଯୁଗରେ ସୀମାବଦ୍ଧ ତା' ନୁହେଁ, ଏହି ସତ୍ୟର କାଳଗତ ଚିରନ୍ତନତା ରହିଛି । ସେହି ହେତୁ ଏହି ଉପନ୍ୟାସର ମଧ୍ୟ କାଳଗତ ଚିରନ୍ତନତା ପ୍ରତି କାଳରେ ମଣିଷ ମନକୁ ସ୍ପର୍ଶ କରୁଥିବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

୧୮୫୧ ମସିହାରେ ହଥର୍ଣ୍ଣ 'The House of the Seven Gables' ଉପନ୍ୟାସ ରଚନା କରିଥିଲେ ବି ଏବଂ ଏହା ଅଢ଼େଇ ଶତାଧିକବର୍ଷ ଅତିକ୍ରାନ୍ତ କରିଥିଲେ ବି ଏହାର ଭୂମିକୈନ୍ଦ୍ରିକ କାଳଗତ ଚିରନ୍ତନତା ହେତୁ ଏହା ଉପେକ୍ଷିତ (Out-dated) ହୋଇପାରି ନାହିଁ ।

କେବଳ ଆମେରିକୀୟ ଉପନ୍ୟାସ ଜଗତରେ ନୁହେଁ, ଆମ ଓଡ଼ିଆ ଉପନ୍ୟାସ ଜଗତରେ ଫକୀରମୋହନଙ୍କ 'ଛ' ମାଣ ଆଠଗୁଣ୍ଠ', କାଳିନ୍ଦୀ ଚରଣଙ୍କ 'ମାଟିର ମଣିଷ', କାହ୍ନୁଚରଣଙ୍କ 'ଶାସ୍ତି', ନିତ୍ୟାନନ୍ଦ ମହାପାତ୍ରଙ୍କ 'ହିଡ଼ମାଟି' ଓ ଗୋପୀନାଥ ମହାନ୍ତିଙ୍କ 'ପରଜା'ରେ ଏଇ ମାଟିର ମୋହ—ମଣିଷର ଲୁହ ଓ ଲହୁରେ କାଦୁଅ ପାଲଟି ଯାଇଛି । ଫକୀରମୋହନଙ୍କ 'ଛ' ମାଣ ଆଠଗୁଣ୍ଠ'ରେ ରାମଚନ୍ଦ୍ର ମଙ୍ଗରାଜ ଭଗିଆ-ସାରିଆଙ୍କ 'ଛ' ମାଣ ଆଠଗୁଣ୍ଠ' ଆତ୍ମସାତ୍ ପାଇଁ ଷଡ଼ଯନ୍ତ୍ରର ଆୟୋଜନ କରି ସଫଳ ହୋଇଛି ।

କାହ୍ନୁଚରଣଙ୍କ 'ଶାସ୍ତି'ରେ ସନଆ'ର ବାପ ଦୁର୍ଭିକ୍ଷ ବେଳେ ଚନ୍ଦ୍ରେଇ ଯୋଗିଙ୍କ ପାଖରେ ଜମି ବନ୍ଧା ପକାଇଛି । କିନ୍ତୁ ସନଆ ଫେରଆସି ଜମିର ଉଚନ୍ତ ଦାମ୍ ଦେଇ ମଧ୍ୟ ଜମି ଫେର ପାଇନ ।

ନିତ୍ୟାନନ୍ଦ ମହାପାତ୍ରଙ୍କ 'ହିଡ଼ମାଟି'ରେ ଶୁକୁରି ଜନ୍ମମାଟିର ଅଦମ୍ୟ ମୋହକୁ ଛାଡ଼ି କଲକତା ଯାଇଛି । କେବଳ ଭଗୁ ମହାନ୍ତିର ଷଡ଼ଯନ୍ତ୍ରରେ । ଏଥିରେ ଭଗୁ ମହାନ୍ତିର ଶୁକୁରି ଜମି ଉପରେ ଲୋଭ ଯେତେ ନୁହେଁ, ଲୋଭ ତା' ସ୍ତ୍ରୀର ଦେହ ଉପରେ ବେଶି । ଏଥିରେ ଶୋଷଣର ଚିତ୍ର ମାଟିର ନୁହଁ—ମାଟିର ମଣିଷର ।

କିନ୍ତୁ ଗୋପୀନାଥଙ୍କ 'ପରଜା'ରେ—ଶୁକ୍ରୁଜାନିର ଜମି ଏକ ନିର୍ଦ୍ଦିଷ୍ଟ ଷଡ଼ଯନ୍ତ୍ର ଦ୍ୱାରା ଅପହୃତ ହୋଇଛି । ନିରୀହ ସରଳ ପରଜାର ଜମି ପାଇଁ ଯେଉଁ କୋହ ଉଠିଛି, ତାହା ଯେପରି ରାମ ବିଶୋଇର ଚକ୍ରରେ ଉଚ୍ଛୁଳି ପଡ଼ୁଛି । ଆମ ଉପନ୍ୟାସ ଜଗତରେ ମାଟିର ମୋହ ଏହି କେତୋଟି ନିର୍ଦ୍ଦିଷ୍ଟ ଉପନ୍ୟାସରେ ଭିନ୍ନ ଭିନ୍ନ ଦୃଷ୍ଟିକୋଣ ଦେଇ ବର୍ଣ୍ଣିତ ହୋଇଛି । କିନ୍ତୁ ହଥର୍ଣ୍ଣଙ୍କ 'The House of the Seven Gables' ଉପନ୍ୟାସରେ ବର୍ଣ୍ଣିତ ମାଟିର ଅପହରଣ ଚେତନା ସହ କେବଳ ଫକୀରମୋହନଙ୍କ 'ଛ' ମାଣ ଅଠଗୁଣ୍ଠ' ଉପନ୍ୟାସ ହିଁ ତୁଳନୀୟ ।

'The House of the Seven Gables' ଉପନ୍ୟାସରେ ଯେପରି କର୍ଣ୍ଣେଲ୍ ମାଥିଉ ମାଉଲେ ପାଇଁ ଚକ୍ରାନ୍ତ କରି ତା'ର ଜମି ଖଣ୍ଡିକ ନେଇଛନ୍ତି ଓ ତା' ପରେ ତାଙ୍କ ଭାଗ୍ୟରେ ଓ ତାଙ୍କ ବଂଶରେ କାଳାନୁକ୍ରମେ ବିପର୍ଯ୍ୟୟ ଘଟେଇ ଆସିଛି । ଅନୁରୂପ ଭାବେ 'ଛ' ମାଣ ଆଠଗୁଣ୍ଠ'ରେ ରାମଚନ୍ଦ୍ର ମଙ୍ଗରାଜଙ୍କ ଭାଗ୍ୟାକାଶରେ ମଧ୍ୟ ବିପର୍ଯ୍ୟୟ ଘଟେଇ ଆସିଛି ତାଙ୍କର ଖଳ ପ୍ରବୃତ୍ତି ଓ ଶୋଷଣ ପାଇଁ ।

ଦୁର୍ବାର ଲାଳସାଧାରୀ ଜମିଦାର ରାମଚନ୍ଦ୍ର ମଙ୍ଗରାଜ 'ଛ' ମାଣ ଆଠଗୁଣ୍ଠ' ଜମି ଖଣ୍ଡିକ କରାୟତ୍ତ କରିବା ପାଇଁ ବିକଳ ହୋଇଉଠିଛି । ସତେ ଅବା 'ଛ' ମାଣ ଅଠଗୁଣ୍ଠ' ଭଳି ଉର୍ବର ଜମି ଖଣ୍ଡକ ହାତକୁ ନ ଆଣି ପାରିଲେ ତା' ଜୀବନରେ ଶାନ୍ତି ନାହିଁ, ତା' ବାସନାରେ ପରିତୃପ୍ତି ନାହିଁ, ତା'ର ଅଭିଳାଷ ଅପୂରଣୀୟ । ସେଥିପାଇଁ ସେ ଚମ୍ପାକୁ ଅସ୍ତ୍ରରୂପେ ବ୍ୟବହାର କରିଛି ଓ ତା' ଜମିଦାର ଜୀବନର ଗର୍ବ ବଜାୟ ରଖି 'ଛ' ମାଣ ଆଠଗୁଣ୍ଠ' ହସ୍ତଗତ କରିଛି । ସୁତରାଂ ଉପନ୍ୟାସର ମୁଖ୍ୟ ଚରିତ୍ର ରାମଚନ୍ଦ୍ର ମଙ୍ଗରାଜର ଜୀବନ ସହିତ ଘନିଷ୍ଠ ଥିବା ଦୃଷ୍ଟିରୁ ଛ' ମାଣ ଆଠଗୁଣ୍ଠ ଏହାର ଏକ ମୁଖ୍ୟ ଉପାଦାନ । ଏହି ଛ' ମାଣ ଆଠଗୁଣ୍ଠ ଜମିଦାର ରାମଚନ୍ଦ୍ର ମଙ୍ଗରାଜର ଉତ୍ତର ଜୀବନର ଯାବତୀୟ ପ୍ରତିକ୍ରିୟା ଓ ଅଘଟଣ ପାଇଁ ଦାୟୀ । ଛ' ମାଣ ଆଠଗୁଣ୍ଠ ଯୋଗୁ ଜମିଦାର ରାମଚନ୍ଦ୍ର ମଙ୍ଗରାଜର ପତ୍ନୀ ସା'ନ୍ତାଣୀ ମୃତ୍ୟୁବରଣ କରିଛନ୍ତି । ଛ' ମାଣ ଅଠଗୁଣ୍ଠ

ଜମିର ଭଗିଆ ଓ ଚାଷିଆ ପରିବାରର ସର୍ବନାଶ ଘଟିଛି । ପୁଣି ସେହି ସର୍ବନାଶୀ 'ଛ' ମାଣ ଆଠଗୁଣ୍ଠ ହେତୁ ରାମଚନ୍ଦ୍ର ମଙ୍ଗରାଜ ମୃତ୍ୟୁବରଣ କରିଛନ୍ତି । ଅତଏବ 'ଛ' ମାଣ ଆଠଗୁଣ୍ଠ' ଉପନ୍ୟାସର ସଙ୍ଘର୍ଷ ସେହି ଯୁଗରେ ସୀମିତ ନୁହେଁ । ଆଜି ମଧ୍ୟ ରାମଚନ୍ଦ୍ର ମଙ୍ଗରାଜଙ୍କ ପରି ବହୁ ସମାଜପତିମାନେ ନିରୀହ ସାଧାରଣ ଜନତାଙ୍କୁ ତଳିତଳାନ୍ତ କରି ନିଜ ଜମିର ଆୟତନ ବୃଦ୍ଧି କରିବାରେ ଲାଗିଛନ୍ତି । ଜମିପାଇଁ ମୋହ ଓ ତଜ୍ଜନିତ ସଙ୍ଘର୍ଷ ଏହିପରି ଭାବେ ଅତୀତରୁ ଆଜି ପର୍ଯ୍ୟନ୍ତ ଗଡ଼ିଆସିବା ଯେପରି ସତ୍ୟ, ଭବିଷ୍ୟତ ପାଇଁ ଏହା ଘଟିବା ମଧ୍ୟ ସେହିପରି ଅନୁମେୟ । ତେଣୁ ଯୁଗ ଚେତନାର ଏହି ଚିରନ୍ତନ ସତ୍ୟକୁ ଫକୀରମୋହନ ତାଙ୍କ 'ଛ' ମାଣ ଆଠଗୁଣ୍ଠ' ଉପନ୍ୟାସରେ ବର୍ଣ୍ଣନା କରି ଆଲୋଚ୍ୟ ଉପନ୍ୟାସକୁ କାଳଗତ ଚିରନ୍ତନତାରେ ଉତ୍ତୀର୍ଣ୍ଣ କରାଇପାରିଛନ୍ତି ।

ଅତଏବ 'The House of the Seven Gables' ଓ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସ ଦ୍ୱୟ ଭୂମିକେନ୍ଦ୍ରିକ କାଳଗତ ଚିରନ୍ତନତା ଓ ଶୋଷଣ ପେଷଣର ସର୍ବକାଳୀନ ମୂଲ୍ୟବୋଧ ଦୃଷ୍ଟିରୁ ନିଜ ନିଜ ମଧ୍ୟରେ ଯଥେଷ୍ଟ ସାମ୍ୟ ପ୍ରଦର୍ଶିତ କରିପାରିଛନ୍ତି ।

## (ଛ) ଚରିତ୍ର ବର୍ଣ୍ଣନ ଦୃଷ୍ଟିରୁ :

ଚରିତ୍ର ବର୍ଣ୍ଣନ ଦୃଷ୍ଟିରୁ ହଥର୍ଣ୍ଣଙ୍କ 'The House of the Seven Gables' ଓ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ଅନେକ ସାମ୍ୟ ପରିଲକ୍ଷିତ ହୁଏ । କାରଣ ଏହି ଦୁଇଟି ଉପନ୍ୟାସରେ ଚରିତ୍ର ଏପରି ପ୍ରାଧାନ୍ୟ ଲାଭ କରିଛି ଯେ, କଥାବସ୍ତୁ ଦୃଷ୍ଟିରୁ ଏହା ସମାଜଭିତ୍ତିକ ହେଲେ ବି ଚରିତ୍ର ଦୃଷ୍ଟିରୁ ଏହାକୁ ଚରିତ୍ର ପ୍ରଧାନ ଉପନ୍ୟାସ କହିବାରେ କୌଣସି ଦ୍ୱିଧା ନାହିଁ । ଏହି ଦୁଇଟି ଉପନ୍ୟାସ ଚରିତ୍ର ପ୍ରଧାନ ହୋଇଥିବାରୁ ଏବଂ କଥାବସ୍ତୁର ପ୍ରାଣସ୍ପନ୍ଦନ ଏକ ହୋଇଥିବାରୁ । ଚରିତ୍ର ଚିତ୍ରଣରେ ଉଭୟ ଔପନ୍ୟାସିକଙ୍କ ସମଧର୍ମୀ ଭାବ ହିଁ ପ୍ରତିଫଳିତ ହୋଇଥିବାର ଲକ୍ଷ୍ୟ କରାଯାଏ । ଏହି ପରିପ୍ରେକ୍ଷୀରେ ପ୍ରଥମେ ହଥର୍ଣ୍ଣଙ୍କ 'The House of the Seven Gables' ଓ ପରେ ପରେ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ'ର ଚରିତ୍ର ବର୍ଣ୍ଣନ କରାଯାଇ ପରିଶେଷରେ ଏହି ଉପନ୍ୟାସ ଦ୍ୱୟର ଚରିତ୍ର ବର୍ଣ୍ଣନ ଦୃଷ୍ଟିରୁ ଚାରିତ୍ରିକ ସାମ୍ୟ ସମ୍ପର୍କରେ ଆଲୋଚନା କରାଯାଇପାରେ ।

### (କ) ହଥର୍ଣ୍ଣଙ୍କ 'The House of the Seven Gables' ଉପନ୍ୟାସର ଚରିତ୍ର ବର୍ଣ୍ଣନ :

ସଫଳ ଚରିତ୍ର ଚିତ୍ରଣରେ ହଥର୍ଣ୍ଣ ଥିଲେ ବେଶ୍ କୁଶଳୀ ଶିଳ୍ପୀ । ତାଙ୍କର ଉପନ୍ୟାସ ଜଗତରେ ସୃଷ୍ଟ ହେଷ୍ଟର, ପିଅର୍ଲ, ଚଲିଂଓ୍ୱାର୍ଥ, ଆର୍ଥର (Scarlet

Letter), ହେପ୍‌ଜିବା, କଲେନେଲ୍, ଜର୍ଜ, କ୍ଲିଫର୍ଡ, ଫୋଏବ୍, ମାଥ୍ୟୁ ମାଉଲେ, ହୋଲ୍‌ଗ୍ରେଭ୍ (The House of the Seven Gables)ଙ୍କ ପରି ଚରିତ୍ର ଆମେରିକୀୟ ସାହିତ୍ୟ ଚିତ୍ରଶାଳାରେ ଅକ୍ଷୟ ଓ ଅମଳିନ ହୋଇ ରହିବେ ।

ଉପନ୍ୟାସ ମୁଖ୍ୟତଃ ଦୁଇଗୋଟି ଉପାଦାନ, ଯଥା—କଥାବସ୍ତୁ ଓ ଚରିତ୍ରକୁ ନେଇ ଗଠିତ । ଏହି ଦୁଇଗୋଟି ଉପାଦାନ ସ୍ୱରୂପତଃ ପରସ୍ପରଠାରୁ ସ୍ୱତନ୍ତ୍ର ହେଲେହେଁ ପରସ୍ପର-ସାପେକ୍ଷ । ଉଭୟର ସୁମଧୁର ସମାବେଶ ଓ ପରିପୂର୍ଣ୍ଣ ବିକାଶରେ ଉପନ୍ୟାସ କଳାରେ ଆସେ ସାର୍ଥକତା । କିନ୍ତୁ ଉପନ୍ୟାସ ଯେଉଁଥିପାଇଁ କ୍ଷଣିକ ଚିତ୍ତବିନୋଦନର ସାମଗ୍ରୀରେ ପ୍ରଯୁଂପିତ ନହୋଇ ଚିରନ୍ତନ ଗୌରବର ପଦାଧିକାରୀ ହୁଏ, ତାହା ଗଳ୍ପ ନୁହେଁ ଚରିତ୍ର । ଏହି ପରିପ୍ରେକ୍ଷୀରେ ହଥର୍ଣ୍ଣଙ୍କ ଉପନ୍ୟାସ 'The House of the Seven Gables'ର ଚରିତ୍ରଗୁଡ଼ିକୁ ଅନୁଧ୍ୟାନ କରାଯାଇପାରେ ।

ହଥର୍ଣ୍ଣଙ୍କ ଉପନ୍ୟାସ ସମୂହର ଆଲୋଚନାରୁ ଜଣାଯାଏ ଯେ—ଚରିତ୍ର ସୃଷ୍ଟି ଥିଲା ତାଙ୍କ ରଚନାର ପ୍ରଧାନ ଲକ୍ଷ୍ୟ । ସେଥିପାଇଁ ତାଙ୍କ ଉପନ୍ୟାସରେ ଯାହା ସୁନ୍ଦର ତାହା ଗଳ୍ପ ଭାଗ ହେତୁ ନୁହେଁ, ବଳିଷ୍ଠ ଚରିତ୍ରର ଉପସ୍ଥାପନା ହେତୁ । ହଥର୍ଣ୍ଣ ଥିଲେ ପ୍ରଥମେ ସମାଜ ସଂସ୍କାରକ ଓ ପରେ ଔପନ୍ୟାସିକ । ତାଙ୍କ ଉପନ୍ୟାସ ଗୁଡ଼ିକ ତେଣୁ ମୁଖ୍ୟତଃ ସମାଜଧର୍ମୀ । ସମାଜ ଓ ଜନସମୂହର କଲ୍ୟାଣ ପାଇଁ ଉତ୍କୃଷ୍ଟ ସାହିତ୍ୟ ଗଳ୍ପ ପ୍ରଧାନ ନହୋଇ ଭାବ ପ୍ରଧାନ ହେବା ସ୍ୱାଭାବିକ ହୋଇପଡ଼ିଛି । ତେଣୁ ଏଥିରେ ଅବତୀର୍ଣ୍ଣ ତାଙ୍କର ସମସ୍ତ ଚରିତ୍ର ଆରମ୍ଭରେ ସରଳ ଭାବରେ ପରିକଳ୍ପିତ ହୋଇଥିଲେହେଁ ପରେ ପରେ ଜଟିଳତା ଆଡ଼କୁ ଗତି କରିଛନ୍ତି । 'The House of the Seven Gables' ଉପନ୍ୟାସର ଜର୍ଜ ଓ ହୋଲ୍‌ଗ୍ରେଭ୍ ଏହି ପ୍ରକାର ଦୁଇଟି ଚରିତ୍ର । ଜର୍ଜ ପିନ୍‌ଚନ୍‌ଙ୍କୁ ମୂଳରୁ ଜଣେ ସାଧାରଣ, ସଚ୍ଚୋଟ, ଚରିତ୍ର ଭାବରେ ଦେଖିବାକୁ ମିଳେ । ମାତ୍ର ଉପନ୍ୟାସର ଗତିଶୀଳତା ସଙ୍ଗେ ସଙ୍ଗେ ତାଙ୍କ ଅନ୍ତଃ ଚରିତ୍ରର ଉଗ୍ରରୂପକୁ ପାଠକ ଭେଟେ । ସେହିପରି ହୋଲ୍‌ଗ୍ରେଭ୍ ଜଣେ ସାଧାରଣ ଫଟୋଗ୍ରାଫର ଏବଂ ଛଦ୍ମବେଶୀ ମାଉଲେ, ଯାହାଙ୍କ ହୃଦୟରେ ପ୍ରେମ ଅବଚେତନ ଅବସ୍ଥାରେ, ଦର୍ଶନ-ସଚେତନ ଅବସ୍ଥାରେ, ଜମାଟ ବାନ୍ଧି-ଥିଲେ ବି ପରେ ତାଙ୍କ ଚରିତ୍ରରେ ପ୍ରେମ-ସବଳ ଓ ଦର୍ଶନର ଦୁର୍ବଳାବସ୍ଥାହିଁ ଦେଖିବାକୁ ମିଳେ । ( ଆଲୋଚିତ ଚରିତ୍ରଗୁଡ଼ିକୁ ସ୍ୱତନ୍ତ୍ରଭାବେ ଚିତ୍ରିତ କଲାବେଳେ ସେ ପ୍ରସଙ୍ଗରେ ଏଥିର ବିସ୍ତୃତ ଆଲୋଚନା ହେବ । )

'The House of the Seven Gables'ର ମୁଖ୍ୟ ପୁରୁଷ ଚରିତ୍ର ଜର୍ଜ, କଲେନେଲ୍, ମାଥ୍ୟୁ ମାଉଲେ ଓ ମୁଖ୍ୟନାରୀ ଚରିତ୍ର ହେପ୍‌ଜିବା ଏବଂ ଫୋଏବ୍ । ଉପନ୍ୟାସଟିର ବିକାଶରେ—ନେଡ୍, ଡେନର୍‌କିକା, ବେଞ୍ଜାମିନ୍, ମିସେସ୍ ଗବନ୍ସ ପ୍ରଭୃତି

ଗୌଣ ଚରିତ୍ର କୌଣସି ଉଲ୍ଲେଖଯୋଗ୍ୟ ଭୂମିକା ନାହିଁ; ମାତ୍ର ଆଂଶୀକତା ଅଛି । ଏମାନେ କେତେକାଂଶରେ କାହାଣୀସହ ମୁଖ୍ୟଚରିତ୍ରକୁ ସଂଯୋଗ କରିବାରେ ସହାୟକ ହୋଇଉଠିଛନ୍ତି । ସେହିପରି ଉକ୍ତ ଉପନ୍ୟାସରେ ଥିବା ଗୋଟିଏ ପ୍ରସଙ୍ଗ (ଆଲସେ ପିନ୍‌ଚନ୍‌)ରେ ସଂଶ୍ଳିଷ୍ଟ ଦୁଇଟି ଚରିତ୍ର ଦେର୍‌ଭେସ୍ୱସ୍ ଓ ତାଙ୍କର କନ୍ୟା ଅଲସେଙ୍କ ସହାୟତାରେ ଉକ୍ତ ପ୍ରସଙ୍ଗଟି ଗଠିତ ହୋଇଥିଲେହେଁ ଏମାନଙ୍କ ପ୍ରତ୍ୟକ୍ଷ ଭୂମିକା ଯେ ଉପନ୍ୟାସକୁ ଗତିଶୀଳ କରିଛି, ଏକଥା ମନେହୁଏ ନାହିଁ ।

ପୁଣି ମୁଖ୍ୟ ଚରିତ୍ରଗୁଡ଼ିକୁ ସହାୟକ ହେବାରେ ଯେଉଁ ସବୁ ଚରିତ୍ରର ଭୂମିକା ଏକା ଭାବେ ଆବଶ୍ୟକ, ସେମାନଙ୍କ ମଧ୍ୟରେ କ୍ଲାଫର୍ଡ଼ ଓ ହୋଲ୍‌ଗ୍ରେଭ୍ ଅନ୍ୟତମ । ମୁଖ୍ୟ ଚରିତ୍ର ଗୁଡ଼ିକ ଭିତରେ ମାଥ୍ୟୁ ମାଉଲେ ହଥର୍ଣ୍ଣଙ୍କ କୃତିତ୍ୱରେ ନୁହେଁ; ବରଂ ପାଠକଙ୍କ ସହାନୁଭୂତିରେ ଜୀବନ୍ତ ଭାବେ ରୂପ ପାଇଛି । ସେହିପରି କର୍ଣ୍ଣେଲ୍‌ଙ୍କ ସ୍ଥିତି ଖୁବ୍ ଅଳ୍ପସମୟ ପାଇଁ ହେଲେ ବି ତାଙ୍କ କୃତକର୍ମ ସମଗ୍ର ଉପନ୍ୟାସଟିର କଥାବସ୍ତୁ ହୋଇପଡ଼ିଛି । ଏହି ଚରିତ୍ର ଦୁଇଟି ଆଗପଛ ହୋଇ ବାଲ୍ୟ ଉପୁଜିବା ପରେ ସେମାନଙ୍କ ଉତ୍ତରାଧିକାରୀମାନଙ୍କୁ ନେଇ ଉପନ୍ୟାସଟି ଗଢ଼ିଉଠିଛି ।

ହେପ୍‌ଜିବା ଓ ଫୋଏବ୍ ପରି ଦୁଇଟି ନାରୀ ଚରିତ୍ର ଏହି ଉପନ୍ୟାସର ପ୍ରକୃତ ମୂଳପିଣ୍ଡ । ହେପ୍‌ଜିବାଙ୍କ ଗୃହପଟେ କାହାଣୀର ଘନଘଟା ଓ ଫୋଏବ୍‌କୁ ନେଇ ଉପନ୍ୟାସର ମିଳନାତ୍ମକ ପରିଣତିରେ ସାର୍ଥକତା ନିହିତ । ଏମାନଙ୍କ ଅଭାବରେ ଉପନ୍ୟାସଟି ସମ୍ପୂର୍ଣ୍ଣ ମୂଲ୍ୟହୀନ ଓ ଭିତ୍ତିହୀନ ହୋଇପଡ଼ିବା ଏକାନ୍ତଭାବେ ସ୍ୱାଭାବିକ ।

ଏହି ଚରିତ୍ରମାନଙ୍କର ବ୍ୟକ୍ତିଗତ ଅବଦାନ ଉପନ୍ୟାସଟିକୁ କେତେଭାବେ ଜୀବନ୍ତ କରି ଗଢ଼ି ତୋଳିଛି, ତାହା ବର୍ତ୍ତମାନ ପରିପ୍ରେକ୍ଷୀରେ ଆମର ଆଲୋଚ୍ୟ । ସମ୍ପୂର୍ଣ୍ଣ ଭାବେ ଏହି ଚରିତ୍ର ପ୍ରଧାନ ଉପନ୍ୟାସଟିର ସମସ୍ତ ଚରିତ୍ରମାନଙ୍କୁ ବିଶ୍ଳେଷଣ କରିବା ଏକ ଆୟାସସାଧ୍ୟ ବ୍ୟାପାର ଏବଂ ଆମର ଏହି 'ତୁଳନାତ୍ମକ ଅଧ୍ୟୟନ' ପ୍ରସଙ୍ଗରେ କେତେକାଂଶରେ ଅନାବଶ୍ୟକ ମଧ୍ୟ । ସେଥିପାଇଁ କେତେକ ମୁଖ୍ୟ ଚରିତ୍ର ଏବଂ ଏହାକୁ ସହାୟତା କରିଥିବା କେତେକ ଗୌଣ ଚରିତ୍ରକୁ ଆଲୋଚନାର ପରିସରଭୁକ୍ତ କରାଯାଇପାରେ । ଏଥିରେ ଥିବା ମୁଖ୍ୟ ଚରିତ୍ର ଗୁଡ଼ିକ—ହେପ୍‌ଜିବା, ଫୋଏବ୍ ଜର୍ଜ, ମାଥ୍ୟୁ ମାଉଲେ, କର୍ଣ୍ଣେଲ୍ ଓ ଏମାନଙ୍କ ସହାୟକ ଚରିତ୍ରଭାବେ କ୍ଲାଫର୍ଡ଼, ହୋଲ୍‌ଗ୍ରେଭ୍, ଗୌଣଚରିତ୍ର ଭାବେ—ଭେନର୍‌କିକା, ଥମାସ ମାଉଲେ, ଅଲସେ ପିନ୍‌ଚନ୍ ପ୍ରଭୃତି ଚରିତ୍ରଙ୍କୁ ଆଲୋଚନା କରାଯାଇପାରେ ।

## ମାଥିଉ ମାଉଲେ : (Mathew Maule) :

'The House of the Seven Gables' ଉପନ୍ୟାସର ପ୍ରଥମ ତଥା ମୁଖ୍ୟ ଚରିତ୍ର ଭାବେ ମାଥିଉ ମାଉଲେଙ୍କୁ ସ୍ମରଣକୁ ଅଣାଯାଇପାରେ । ଦାରିଦ୍ର୍ୟତା, କପଟହୀନତାକୁ ବରଣ କରିନେଇ ଏକ ସଚ୍ଚୋଟ ଚରିତ୍ର ଭାବେ ମାଥିଉ ମାଉଲେ ଏହି ଉପନ୍ୟାସରେ ଶୋଷିତ ନିପୀଡ଼ିତ, ନିଷ୍ପେଷିତ ତଥା ଅବହେଳିତ ସମାଜର ପ୍ରତିନିଧିତ୍ୱ କରିଛନ୍ତି । ଏପରିକି ତାଙ୍କ ପ୍ରତି କରାଯାଇଥିବା ଅବିଚାର, ଅତ୍ୟାଚାରରେ ସେ କୌଣସି ପ୍ରତିବାଦ ନକରି ନୀରବ ରହିଛନ୍ତି । କାରଣ ଏ ପ୍ରତିବାଦ ଅରଣ୍ୟରୋଦନ ସଙ୍ଗେ ସମାନ ବୋଲି ବୋଧେ ସେ ମନେକରିଛନ୍ତି । ଆମେରିକାର ନିଉ-ଇଂଲଣ୍ଡ ସହରର ଉତ୍ତର-ପୂର୍ବକୁ ଯେଉଁ ବିରାଟ କାଠଘରଟି ତିଆରି ହୋଇଛି, ଯାହାକୁ କି କୁହାଯାଉଛି 'House of the Seven Gables' ଏକଦା ସେହି ଜମି ଉପରେ ନିଜର ଶ୍ରେଷ୍ଠ କୁଡ଼ିଆ ତିଆରି କରି ମାଥିଉ ମାଉଲେ ସୁଖେ ଦୁଃଖେ କାଳାତିପାତ କରିଥିଲେ । ପ୍ରତ୍ୟେକ ସମାଜରେ ପରଶ୍ରୀ-କାତର, ପରସ୍ୱତ୍ୱ ଅପହରଣକାରୀ ବ୍ୟକ୍ତି ଅଛନ୍ତି । ଏହି ଦୃଷ୍ଟିରୁ ତତ୍କାଳୀନ ସମାଜରେ ଏହି ହିଂସ୍ର ପ୍ରକୃତିର ପ୍ରତୀକ ଭାବେ ଜୀବନ୍ତ ବିଗ୍ରହ କର୍ଣ୍ଣେଲ୍ ପାଠକ ସମାଜର ଦୃଷ୍ଟି ଆକର୍ଷଣ କରନ୍ତି । ମାଥିଉ ମାଉଲେ ତାଙ୍କ ଶ୍ରେଷ୍ଠ ଜମି ଖଣ୍ଡିକ ମଧ୍ୟଦେଇ ବହିଯାଉଥିବା ଝରଣା ଓ କୂଅରୁ ନିର୍ମଳ ପାଣି ପାଉଥିଲେ । ନିଜେ ନିଜ ହାତରେ ବଗିଚାଟିଏ ତିଆରି କରିଥିଲେ । ଦୀର୍ଘଦିନ ଧରି ସେ ଏହି ଜମି ଉପରେ ବସବାସ କରିଆସୁଥିଲେ ଖୁବ୍ ଆନନ୍ଦର ସହ । କିନ୍ତୁ ସମୟର ପରିବର୍ତ୍ତନ ଦୁନିଆର ସବୁକିଛିକୁ ବଦଳାଇଦିଏ । ସେହି ଗାଁଟି ଯେତେବେଳେ ସହରରେ ପରିଣତ ହେଲା, ସେତେବେଳେ ମାଥିଉ ମାଉଲେଙ୍କ ଶ୍ରେଷ୍ଠ ଜମି ଖଣ୍ଡିକର ମୂଲ୍ୟ ବେଶ୍ ବଢ଼ିଗଲା । ତେଣୁ ଏକ ଜବରଦସ୍ତ ମନୋବୃତ୍ତି ନେଇ କର୍ଣ୍ଣେଲ୍ ସେହି ଜମିକୁ ମାଉଲେଙ୍କଠାରୁ ଛଡ଼ାଇ ନେବାକୁ ଚାହିଁଲେ । କିନ୍ତୁ ମାଉଲେଙ୍କ ମୃତ୍ୟୁ ପୂର୍ବରୁ ବୋଧେ ତାହା ସମ୍ଭବ ନୁହେଁ ବୋଲି ସେ ଅନୁଭବ କରିଥିଲେ । ତତ୍କାଳୀନ ଆମେରିକୀୟ ସମାଜରେ ଯାଦୁକରମାନଙ୍କୁ ଯେପରି ଘୃଣା କରାଯାଉଥିଲା, ତାହା ଅବର୍ଣ୍ଣନୀୟ । ଯଦି ଜଣେ କେହି ଯାଦୁକର ଭାବରେ ପ୍ରମାଣିତ ହେଉଥିଲା, ତେବେ ତାକୁ ମାରିଦିଆଯାଉଥିଲା । ଏହି ବିଚକ୍ଷଣ କୌଶଳ ପ୍ରୟୋଗ କରି କର୍ଣ୍ଣେଲ୍ ମାଥିଉ ମାଉଲେଙ୍କ ମୃତ୍ୟୁ ମୁଖକୁ ଠେଲିଦେବାର ଯୋଜନା ଆରମ୍ଭ କରିଦେଲେ । ସେଥିପାଇଁ ସେ ଲୋକମତ ସୃଷ୍ଟି କଲେ ଓ ପ୍ରମାଣିତ କରାଇଦେଲେ ଯେ ମାଥିଉ ମାଉଲେ ଜଣେ ଯାଦୁକର । ତେଣୁ ସେ ଫାଶୀ ପାଇବା ଉଚିତ୍ ।

ମାଉଲେଙ୍କୁ ଫାଶୀଦେବାକୁ ନିଆଗଲା । ମାଉଲେ ଏକଥା ମଧ୍ୟ ଆଗରୁ ଜାଣିଥିଲେ ଯେ, ତାଙ୍କ ଶତ୍ରୁ ତାଙ୍କ ଶ୍ରେଷ୍ଠ ଜମି ଖଣ୍ଡିକୁ ନେବାପାଇଁ ତାଙ୍କୁ ଫାଶୀ ଦେବାର ଷଡ଼ଯନ୍ତ୍ର କରୁଛି । ତଥାପି ଏ କଠିନ ଜାବୁରୁ ଖସିଯିବା ତାଙ୍କ ପକ୍ଷେ ଏକ ନିସ୍ୱାଦ, ସରଳ

ବ୍ୟକ୍ତି ପକ୍ଷେ ସାଧାରଣତ ଥିଲା । ଅତଏବ ସ୍ୱର୍ଗ ଓ ଭଗବାନଙ୍କ ଉପରେ ନିର୍ଭର କରି ମାଥିଉ ମାଉଲେ ଫାଶୀ ମଞ୍ଚ ଉପରେ ଠିଆହେଲେ । ତାଙ୍କୁ ଜଗି ରହିବା ଠାଣିରେ କର୍ଣ୍ଣେଲ୍ ତାଙ୍କ ଘୋଡ଼ା ଉପରେ ଖୁବ୍ ଖୁସିରେ ବସିରହିଥିଲେ । ମରିବାକୁ ଯାଉଥିବା ମାଉଲେ ସେଦିନ ଏହି ସମ୍ମାନୀ ଷଡ଼ଯନ୍ତ୍ରକାରୀ ବ୍ୟକ୍ତି ବିରୁଦ୍ଧରେ ଗୋଟିଏ ମାତ୍ର ପଦ ଉଚ୍ଚାରଣ କରିଥିଲେ – "God will give him blood to drink." (୧୭) ଅର୍ଥାତ୍, ଭଗବାନ ତାଙ୍କୁ ଉପଯୁକ୍ତ ଶାସ୍ତି ଦେବେ । ମାଥିଉ ମାଉଲେ ଅତି ଶୋଚନୀୟ ଭାବେ ଫାଶୀ ଖୁଣ୍ଟରେ ଟାଙ୍ଗିପଡ଼ିଲେ । ତାଙ୍କ ମୃତ୍ୟୁ ପରେ ତାଙ୍କର ଜମି ଖଣ୍ଡିକୁ ନେବାକୁ କର୍ଣ୍ଣେଲଙ୍କୁ କୌଣସି ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିଲା ନାହିଁ । କିନ୍ତୁ ସେ ମଧ୍ୟ ଏହି ଜମିକୁ ସହଜରେ ଭୋଗ କରିପାରିଲେ ନାହିଁ । ଏଠାରେ ଘର ତିଆରି କରି ପ୍ରତିଷ୍ଠା କରିବା ଦିନ ହିଁ ହଠାତ ଅସ୍ୱାଭାବିକ ଓ ଅପ୍ରତ୍ୟାଶିତ ଭାବେ କର୍ଣ୍ଣେଲ୍ ମୃତ୍ୟୁମୁଖରେ ପଡ଼ିଲେ ।

ଏହି ମୂଳ କାହାଣୀକୁ ଭିତ୍ତିକରି ଉପନ୍ୟାସଟି ଗତିଶୀଳ ଏବଂ ଉପନ୍ୟାସର ଏହି ଗତିଶୀଳତା ଭିତରେ ମାଥିଉ ମାଉଲେଙ୍କ ଆତ୍ମା ପ୍ରାୟ ତିନି ଥର ଉପନ୍ୟାସଟିରେ ଆବିର୍ଭାବ ହୋଇଛି । ପ୍ରଥମଥର କର୍ଣ୍ଣେଲଙ୍କ ମୃତ୍ୟୁ ଦିନ, ଦ୍ୱିତୀୟଥର ଥମାସ୍ ମାଉଲେ ଆଲ୍‌ସେଙ୍କୁ ଯାଦୁ କରି ଏକ ଜମିଜମା ସମ୍ବନ୍ଧୀୟ କାଗଜ ଆବିଷ୍କାର କରୁଥିବା ସମୟରେ ଏବଂ ତୃତୀୟଥର ଜର୍ଜଙ୍କ ମୃତ୍ୟୁ ଦିନ ରାତିବାରଟା ସମୟରେ ସମସ୍ତ ମୃତ ପିନ୍‌ଚନଙ୍କ ସଭାକକ୍ଷରେ । ଏହା ବ୍ୟତୀତ ଆଲେଚ୍ୟ ଚରିତ୍ରଟି ଉପନ୍ୟାସରେ ଆଉ କେଉଁଠି ଆବିର୍ଭାବ ହେବାର ଦେଖାଯାଏ ନାହିଁ । ମୂଳ କାହାଣୀକୁ ଆମୂଳଚୂଳରେ ଗଢ଼ି ଦେଇ ଉପନ୍ୟାସକୁ ଗତିଶୀଳ କରିବାରେ ଉକ୍ତ ଚରିତ୍ରର ଭୂମିକା ଅନସ୍ୱୀକାର୍ଯ୍ୟ । ଉକ୍ତ ଚରିତ୍ରଟିର ଜମିକୁ ତା'ଠାରୁ ଯେପରି ଅପ୍ରତ୍ୟାଶିତ ଭାବେ ଛଡ଼ାଇ ନିଆଯାଇଛି ଓ ସେଥିପାଇଁ ତାକୁ ମୃତ୍ୟୁମୁଖକୁ ଠେଲି ଦିଆଯାଇଛି ତାହା କର୍ଣ୍ଣେଲଙ୍କ ପରବର୍ତ୍ତୀ ବଂଶଧରମାନଙ୍କୁ ବିଚଳିତ କରିଛି । ଏହା ସେମାନଙ୍କ ଅନୁଶୋଚନା ହେତୁ ନୁହେଁ; ବରଂ ସେମାନଙ୍କର ଭୟ ହେତୁ ସେମାନେ ବିଚଳିତ ବୋଲି କହିବାକୁ ହେବ । ଏହା ପରେ ପରେ ମାଉଲେଙ୍କ ଆତ୍ମା ଯେପରି ସମସ୍ତଙ୍କୁ କାବୁକରି ଉପନ୍ୟାସଟିରେ ଅଖଣ୍ଡ ଆଧିପତ୍ୟ ବିସ୍ତାର କରିଥିବା ପରି ମନେହୋଇଛି । ମାଉଲେ ନିରୀହ ତଥା ଶୋଷିତ ଜନତାର ପ୍ରତିନିଧି । ପାଠକର ତା' ପ୍ରତି ସ୍ୱତଃ ସମ୍ବେଦନା ଜାଗ୍ରତ ହୁଏ । ଓଡ଼ିଆ ଉପନ୍ୟାସ 'ଛ' ମାଣ ଆଠଗୁଣ୍ଠ' ରେ ବର୍ଣ୍ଣିତ ଭଗିଆର ଜୀବନର ବୃତ୍ତ କେତେକାଂଶରେ ମାଉଲେଙ୍କ ଜୀବନ ବୃତ୍ତର ନିକଟତର ପରି ମନେହୁଏ । ବିଶେଷକରି ଉଭୟଙ୍କ ଜମି

---

(୧୭) The House of the Seven Gables" Page-5

ଅପହରଣ କାଳୀନ ଶୋଷଣ ଭିତରେ । ହଥର୍ଣ୍ଣ ଏହି ଚରିତ୍ରଟିକୁ ଯେଭଳି ଚିତ୍ରିତ କରିଛନ୍ତି, ତାହା ଆମେରିକୀୟ ଉପନ୍ୟାସ ଜଗତରେ ଅନନ୍ୟ ଠିକ୍ ଫକୀରମୋହନଙ୍କ ଭଗିଆ ଚରିତ୍ର ପରି ।

**କଲୋନେଲ୍ ପିନ୍‌ଚନ୍—Collonel Pyncheon :**

କଲୋନେଲ୍ ପିନ୍‌ଚନ୍ "The House of the Seven Gables" ଉପନ୍ୟାସର ମୁଖ୍ୟ ଚରିତ୍ର । ଏହି ଉପନ୍ୟାସରେ ସେ Villain ବା ଦୁଷ୍ଟ ନାୟକ । ପିନ୍‌ଚନ୍ ପରିବାରର ସେ ମୁଖ୍ୟ ଭାବେ ପରିଗଣ୍ୟ । ସେ ଖୁବ୍ ନିଷ୍ଠୁର ପ୍ରକୃତିର ଓ ତାଙ୍କର ଇଚ୍ଛାଶକ୍ତି ଥିଲା ଅଦମନୀୟ ଓ ଅନମନୀୟ । ସେ ଯେପରି ଚକ୍ରାନ୍ତ କରି ମାଥିଉ ମାଉଲେଙ୍କଠାରୁ ତାଙ୍କ ଜମି ଛଡ଼ାଇ ଆଣି ତାଙ୍କୁ ଫାଶୀ ଦେବାର ସମସ୍ତ ବନ୍ଦୋବସ୍ତ କରିଦେଇଥିଲେ । ତା'ର ପରିଣାମ ସ୍ୱରୂପ ତାଙ୍କୁ ମଧ୍ୟ ଅସ୍ୱାଭାବିକ ଭାବରେ ଓ ଅତି ଅପ୍ରତ୍ୟାଶିତ ଭାବରେ ମୃତ୍ୟୁ ବରଣ କରିବାକୁ ପଡ଼ିଥିଲା । ଏ ସମ୍ପର୍କରେ ଔପନ୍ୟାସିକ ହଥର୍ଣ୍ଣ ଲେଖିଛନ୍ତି—"The iron-hearted puritan, the relentless persecutor, the grasping and strong-willed man, was dead, in his new house !" (୧୮) କେବଳ ଏତିକି ନୁହେଁ, ମାଉଲେଙ୍କ ଜମି ଉପରେ ସେ ଯେଉଁ ପ୍ରକାଣ୍ଡକାୟ ପ୍ରାସାଦ ତୁଲ୍ୟ ଘର ନିଜ ପରିବାର ପାଇଁ ଯୁଗଯୁଗ ଧରି ଆରାମରେ ରହିବା ପାଇଁ ତିଆରି କରିଥିଲେ ତା' ମଧ୍ୟରେ କୌଣସି ଜଣେ ହେଲେ ପିନ୍‌ଚନ୍ ଶାନ୍ତିରେ ବାସ କରିପାରି ନ ଥିଲେ । ଦେଖିବାକୁଗଲେ କଲୋନେଲ୍‌ଙ୍କ ଚକ୍ରାନ୍ତ ହିଁ ସମସ୍ତ କାହାଣୀଟିକୁ ଗଠନ କରିବାର ମୁଖ୍ୟ ଉପାଦାନ ହୋଇପଡ଼ିଛି । ତାଙ୍କର କୃତକର୍ମ ଯାହାକି ତାଙ୍କ ପରିବାରର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ଉଦ୍ଦିଷ୍ଟ ଥିଲା । ମାତ୍ର ତା'ର ଫଳ ହେଲା ଭୟାବହ । ଏଥିପାଇଁ ସେ ମାଇନେ ରାଜ୍ୟରୁ ପାଇବାକୁ ଥିବା କେତେକ ଜମିର କାଗଜ ମଧ୍ୟ ହରାଇଛନ୍ତି । ଖଣ୍ଡିଏ ଗ୍ରେଟ ଜମି ପାଇଁ ତାଙ୍କୁ ମାଇନେ ରାଜ୍ୟରୁ ପାଇବାକୁ ଥିବା ବହୁତ ଜମି ହରାଇବାକୁ ପଡ଼ିଛି । ଏହି କାଗଜ ଖଣ୍ଡିକୁ ମାଉଲେଙ୍କ ପୁଅ "House of the Seven Gables" ନିର୍ମାଣ କଲାବେଳେ ଲୁଚାଇ ଦେଇଥିଲେ; ଯେଉଁଥିପାଇଁ ପିନ୍‌ଚନ୍ ପରିବାର ସେହି କାଗଜ ଖଣ୍ଡିକର ସନ୍ଧାନ କରିବାକୁ ଯାଇଁ ନାନା କୋଳାହଳମୟ ପରିସ୍ଥିତିରେ ପଡ଼ି ବିନଷ୍ଟ ହୋଇଯାଇଛି । ଏଥିପାଇଁ ସୁନ୍ଦରୀ ଆଲିସ୍ ପିନ୍‌ଚନ୍‌ଙ୍କୁ ତାଙ୍କ ବାପା ଗର୍‌ଭେସ୍-ପିନ୍‌ଚନ୍ ଉକ୍ତ କାଗଜ ଖଣ୍ଡିକୁ ପାଇବାପାଇଁ ଥମାସ୍ ମାଉଲେଙ୍କ ଯାଦୁକରୀର ଖେଳଣା କରି ମୃତ୍ୟୁ ମୁଖକୁ ଠେଲି ଦେଇଛନ୍ତି । ଏସବୁର ମୂଳ କାରଣ କଲୋନେଲ୍ । ସେ ଖଣ୍ଡିଏ ଗ୍ରେଟ ଜମି ପାଇଁ ଯେପରି କନ୍ଦଳ ସୃଷ୍ଟି କରିଗଲେ ତାହା ଯେ ଉପନ୍ୟାସଟିର ଗଠନ କଳ୍ପନା ଓ ପିନ୍‌ଚନ୍ ପରିବାରର ସ୍ୱାପର୍ଯ୍ୟ ମଞ୍ଜି ସେଇଠୁଁ ଯେ ପ୍ରୋଥିତ ହୋଇଥିଲା—ଏକଥା ଅସ୍ୱୀକାର କରିହେବ ନାହିଁ ।

(୧୮) The House of the Seven Gables, Page—13

କଲୋନେଲ୍ ଆମେରିକୀୟ ସମାଜ ପାଇଁ ଥିଲେ ଜଣେ ପ୍ରଭାବଶାଳୀ, ଭଦ୍ର ଓ ପ୍ରତିପତ୍ତି ସମ୍ପନ୍ନ ବ୍ୟକ୍ତି । ଏହା ତାଙ୍କର ବହିଁଚରିତ୍ରର ପରିପ୍ରକାଶ ମାତ୍ର । କିନ୍ତୁ ତାଙ୍କର ଅନ୍ତଁଚରିତ୍ର ତାଙ୍କ ପଇଶାଚିକ ପ୍ରକୃତିର ପ୍ରକୃତ ପରିଚୟ ପ୍ରଦାନ କରିଥାଏ । ଅତି ସୁଚତୁର ଭାବେ ସେ ମାଥିଉ ମାଉଲେଙ୍କ ଜମି ପାଇଁ ତାଙ୍କୁ ଜଣେ ଯାଦୁକର ବୋଲି କହି ଫାଶୀ ଦେବାର ସମସ୍ତ ବନ୍ଦୋବସ୍ତ କରିଦେଇଥିଲେ । କେବଳ ସେତିକି ନୁହେଁ ମାଉଲେଙ୍କ ମୃତ୍ୟୁକୁ ସେ ଅତି ଆନନ୍ଦର ସହ ଉପଭୋଗ କରିଥିଲେ । ତାଙ୍କର ଏହି ବର୍ବରୋଚିତ କାର୍ଯ୍ୟକଳାପ ପାଇଁ ମାଉଲେ ତାଙ୍କୁ ଅଭିଶାପ ସ୍ୱରୂପ ପଦେ ମାତ୍ର କହିଥିଲେ ଯେ,— "ଭଗବାନ ତାଙ୍କୁ ଉପଯୁକ୍ତ ଶାସ୍ତି ଦେବେ । ଔପନ୍ୟାସିକ ହଥର୍ଣ୍ଣଙ୍କ ଭାଷାରେ—

> "At tbe moment of execution with the balter about his neck and while colonel Pyncheon sat on borse back grimly gazing at the Scene—Maule bad addressed him from the scaffold and uttered a propbecy. of which history, as well as fire side tradition, has preserved the very words.—"God, said the daying man, pointing bis finger, with a ghesty look, at the undismayed countanance of his enemy, —"God will give him blood to drink." (୧୯)

ଔପନ୍ୟାସିକ ହଥର୍ଣ୍ଣ କଲୋନେଲ୍ ଚରିତ୍ରକୁ ଶୋଷଣକାରୀ, ଅତ୍ୟାଗ୍ରହୀ, ପରିସ୍ୱତ୍ୱ ଅପହରଣକାରୀ, ଲୋଭୀ, ଅହଂକାରୀ, ଗର୍ବୀ ଭାବେ ଚିତ୍ରିତ କରିଯାଇଛନ୍ତି । ପରେ ପରେ କଲୋନେଲ୍ଙ୍କ ଏହି କଳୁଷିତ ଚରିତ୍ରକୁ ଅନୁକରଣ କରି ଏହି ଉପନ୍ୟାସର ଅନ୍ୟତମ ଖଳନାୟକ ଜର୍ଜ ଉପନ୍ୟାସଟିକୁ ସମସ୍ୟା ମୁଖର କରିଦେଇଛନ୍ତି । କଲୋନେଲ୍ ପରସ୍ୱତ୍ୱ ଅପହରଣ ତଥା କୌଶଳର ଜାଲ ବୁଣିବାର ଯେଉଁ ସୂତ୍ରପାତ କରିଥିଲେ, ଉତ୍ତରାଧିକାରୀ ସୂତ୍ରରେ ଜର୍ଜ ତା'ର ସଫଳ ରୂପାୟନ କରିବାକୁ ଚେଷ୍ଟା କରିଥିଲେ ମାତ୍ର । କଲୋନେଲ୍ଙ୍କୁ ତାଙ୍କ ପରିବାରର ଗୌରବ ବୋଲି କେତେକ ଭାବୁଥିଲେ ବି— ବୁଦ୍ଧିଜୀବୀ କାଫେରୀ ପିନ୍‌ଚନ୍ ଓ କ୍ଲିଫର୍ଡ ପିନ୍‌ଚନ୍ଙ୍କ ପାଇଁ ସେ ହୋଇଛନ୍ତି ଘୃଣାର ପାତ୍ର । ଏଇ ଦୁହେଁ ଠିକ୍ ଅନୁଭବ କରିଥିଲେ ଯେ, କଲୋନେଲ୍ଙ୍କ ବର୍ବରୋଚିତ କାର୍ଯ୍ୟ ପାଇଁ ପିନ୍‌ଚନ୍ ପରିବାର ହିଁ ଦୁର୍ଦ୍ଦଶା ତଥା ବିପର୍ଯ୍ୟୟର ସମ୍ମୁଖୀନ ହୋଇଛି । ମାଉଲେଙ୍କ ଅତୃପ୍ତ ଆତ୍ମା ପିନ୍‌ଚନ୍ ପରିବାରକୁ ବିପର୍ଯ୍ୟୟ ମୁଖକୁ ଠେଲିଦେଇଛି । ଅନୁରୂପ ଭାବେ ପାଠକ ମଧ୍ୟ କଲୋନେଲ୍ଙ୍କ ମୃତ୍ୟୁରେ କୌଣସି ସମବେଦନା ପ୍ରକାଶ କରିପାରେ ନାହିଁ ।

---

(୧୯) The House of the Seven Gab.es, Page-5

ମାଥ୍ୟୁ ମାଉଲେ ଓ କର୍ଣ୍ଣେଲ୍ ଏହି ଦୁଇ ମୁଖ୍ୟ ଚରିତ୍ର କଥାବସ୍ତୁଟିକୁ ସୃଷ୍ଟି କରି ତାକୁ ଗତିଶୀଳ କରାଇ ମୃତ୍ୟୁଗାମୀ ହୋଇଛନ୍ତି । ଏହି ଦୁଇଟି ଚରିତ୍ର ବାସ୍ତବିକ 'ଛ' ମାଣ ଆଠ ଗୁଣ୍ଠ'ର ଭଗିଆ ଓ ରାମଚନ୍ଦ୍ର ମଙ୍ଗରାଜ. 'ପଚଳା'ର ଶୁକ୍ରଜାନ୍ ଓ ରାମଚନ୍ଦ୍ର ବଡଶୋଇ । କୌଣସି ପୁରୁଷର କାହାଣୀ ଉପରେ ପରିକଳ୍ପିତ ଉପନ୍ୟାସ 'ଛ' ମାଣ ଆଠ ଗୁଣ୍ଠ'ରେ ରାମଚନ୍ଦ୍ର ମଙ୍ଗରାଜ ଏକମାତ୍ର ଶୋଷଣକାରୀ ମୁଖ୍ୟ ନାୟକ । କିନ୍ତୁ 'The House of the Seven Gables' ଉପନ୍ୟାସଟି ପ୍ରାୟ ତିନି ପୁରୁଷର କଥାବସ୍ତୁରେ ସନ୍ନିବେଶିତ । କର୍ଣ୍ଣେଲ୍‌ଙ୍କଠାରୁ କକାଜାଫେରୀ, ଗର୍‌ଭେସ୍, ଓ ଜର୍ଜଙ୍କ ପର୍ଯ୍ୟନ୍ତ କାହାଣୀଟି ଗଡ଼ିଆସିଛି ଓ ଏହି ଚରିତ୍ରମାନେ (ଜାଫେରୀଙ୍କ ବ୍ୟତୀତ) ଯେପରି ଉତ୍ତରାଧିକାରୀ ସୂତ୍ରରେ କର୍ଣ୍ଣେଲ୍‌ଙ୍କଠାରୁ ପରସ୍ୱ ଅପହରଣ, ଲୋଭ ଓ ମୋହ ପରି ଦୁର୍ଗୁଣକୁ ନେଇ ଆସିଛନ୍ତି, ତାହା ସେମାନଙ୍କୁ 'ଛ' ମାଣ ଆଠ ଗୁଣ୍ଠ'ର ଜଣେ ମଙ୍ଗରାଜ ଭାବେ ନ ଗଢ଼ି ପ୍ରତି ପୁରୁଷରେ ଜଣେ ଜଣେ ରାମଚନ୍ଦ୍ର ମଙ୍ଗରାଜ ଭାବେ ଗଢ଼ିତୋଳିଛି । ସେହିପରି ମାଥ୍ୟୁ ମାଉଲେ ଶୋଷିତ 'ଭଗିଆ'ର ଏକମାତ୍ର ପ୍ରତିନିଧି ନୁହେଁ, ପ୍ରତି ପୁରୁଷରେ ମାଉଲେ ବଂଶର ଲୋକମାନେ ପିନ୍‌ଚନ୍ ପରିବାର ଦ୍ୱାରା ଶୋଷିତ ହୋଇ 'ଭଗିଆ'ର ପ୍ରତିନିଧିତ୍ୱ କରିଯାଇଛନ୍ତି ଓ ପିନ୍‌ଚନ୍ ପରିବାରଠାରୁ ବୋଧେ ଏହାର ଶାସ୍ତି ସ୍ୱରୂପ ଉପନ୍ୟାସର ପରିସମାପ୍ତିରେ ଛଦ୍ମବେଶୀ ମାଉଲେ ବଂଶୀୟ ଯୁବକ ହୋଲଗ୍ରେଭ୍ —ପିନ୍‌ଚନ୍ ବଂଶୀୟ କନ୍ୟା ଫୋଏବ୍‌କୁ ବିବାହ କରି ସୁଧମୂଳ ସବୁ କଡ଼ାକଡ଼ି ଭାବେ ଆଦାୟ କରିଛନ୍ତି ।

ମାଥ୍ୟୁ ମାଉଲେ ଓ କର୍ଣ୍ଣେଲ୍ ପିନ୍‌ଚନ୍ ଉଭୟ ପରସ୍ପରର ବିରୋଧାତ୍ମକ ଚରିତ୍ର ହେଲେ ହେଁ ଏମାନଙ୍କ ସମନ୍ୱିତ ସମାବେଶରେ ଉପନ୍ୟାସର ମୂଳପିଣ୍ଡ ଗଢ଼ି-ଉଠିଛି ଓ ପରବର୍ତ୍ତୀ କାଳରେ ସେହି କଥାକୁ ଆଧାର କରି ଉପନ୍ୟାସଟି ନାନା ସଂଘର୍ଷ-ସଂଘାତ ଦେଇ ପରିଣତିରେ ଉପନୀତ ହୋଇଛି ।

## ହେପ୍‌ଜିବା—Hepzibah Pyncheon :

'When the story opens Hepzibah is living in the ruinous old Pyncheon mansion. 'The House of the Seven Gables' which represents the aristocratic tradition of the Pyncheons, once sound and imposing but now decaden.' (୨୦)

'The House of the Seven Gables' ଉପନ୍ୟାସର ପ୍ରକୃତ କାହାଣୀ ଆରମ୍ଭ ହୋଇଛି ହେପ୍‌ଜିବାଙ୍କଠାରୁ; ଅର୍ଥାତ୍ ଉପନ୍ୟାସର ଦ୍ୱିତୀୟ ପରିଚ୍ଛେଦଠାରୁ ।

(୨୦) American Literature—by : Abel, Page-203 Vol-2

କଲୋନେଲ୍ ପିନ୍‌ଚନ୍, ଯେଉଁ ପ୍ରାସାଦତୁଲ୍ୟ ଘର ନିର୍ମାଣ କରିଥିଲେ, ସେଥିରେ ହେପ୍‌ଜିବା ବାଲ୍ୟକାଳବେଳକୁ ସେ ଘରେ ଅସଂଖ୍ୟ ମୃତ ବ୍ୟକ୍ତିଙ୍କ କାହାଣୀ ଲିପିବଦ୍ଧ ହୋଇସାରିଥିଲା । ହେପ୍‌ଜିବା ସେହି ଅଭିଶପ୍ତ ଘରେ ଏକୁଟିଆ ବାସ କରୁଥିଲେ । ତାଙ୍କର ଅବସ୍ଥା ପ୍ରତି ଔପନ୍ୟାସିକ ଗଭୀର ସମ୍ବେଦନା ପ୍ରକାଶ କରିଛନ୍ତି ଏବଂ ସେନେଇ ସେ ଯେପରି କୁଶଳୀ ତାଙ୍କ ଲେଖକ ଜୀବନର ସମସ୍ତ କଳା କୌଶଳ ବିନିଯୋଗରେ, ଏହି ଶାନ୍ତ, ଭଦ୍ର ଅଥଚ ରକ୍ଷଣଶୀଳା ହେପ୍‌ଜିବା ଚରିତ୍ରଟିର ପରିପ୍ରକାଶ କରିଅଛନ୍ତି ।

ହେପ୍‌ଜିବା ଏହି ଉପନ୍ୟାସର ଶ୍ରେଷ୍ଠତମା ନାରୀଚରିତ୍ର ଓ ମୁଖ୍ୟ ନାୟିକା । ସେ ରୂପରେ ନୁହେଁ—ଗୁଣରେ ଏହି ଉପନ୍ୟାସଟିକୁ ଆତ୍ମିକ ଦୃଷ୍ଟିରୁ ବେଶ୍ ସୁନ୍ଦର, ଉପଭୋଗ୍ୟ ଓ ପାଠକଙ୍କୁ ବେଶ୍ ସମ୍ବେଦନଶୀଳ କରାଇ ପାରିଛନ୍ତି । ଅସହାୟା ହେପଜିବା ତାଙ୍କ ଭାଇ କ୍ଲିଫର୍ଡ ଜେଲ୍ ଯିବା ପରେ ଏକାନ୍ତ ଅସହାୟା ହୋଇ-ପଡ଼ିଛନ୍ତି । ଜୀବନର ଛଳ-ତଣ୍ଡୁଳ ସଂଗ୍ରାମ ତାଙ୍କୁ ବିବ୍ରତ କରିଦେଇଛି । କଲୋନେଲ୍ ଓ ମାଉଲେଙ୍କ କନ୍ଦଳ ପରେ ହେପ୍‌ଜିବାଙ୍କ ଜୀବନଧାରଣ ପ୍ରକ୍ରିୟାଠାରୁ ଉପନ୍ୟାସଟି ତା'ର କଲେବର ବ୍ୟାପ୍ତି କରିଛି । ହେପ୍‌ଜିବା ନିଜ ବଂଶର ସ୍ୱାଭିମାନ ଓ ସମ୍ଭ୍ରାନ୍ତ-ବଂଶୀୟା ହୋଇ ରହିବାର ମୋହକୁ ଛାଡ଼ି ପାରି ନାହାନ୍ତି । କିନ୍ତୁ ଜୀବନର ଅସହ୍ୟ ଜ୍ୱାଳା, ଦାରିଦ୍ର୍ୟ ତାଙ୍କୁ ଏସବୁ ଅର୍ଥହୀନ ମୋହକୁ ଛାଡ଼ିବାକୁ ବାଧ୍ୟ କରିଛି । ନିଜର ରକ୍ଷଣଶୀଳ ମନୋବୃତ୍ତି ତାଙ୍କୁ ବାରମ୍ବାର ଆଘାତ ଦେଇଛି । ସେ ହୋଲ୍‌ଗ୍ରେଭ୍‌କୁ ନିଜର ଅଭିମାନ ଛଳରେ କହିଛନ୍ତି—'But I am a woman!' Said Hepzibah Piteously, 'I was going to say, a lady—but I consider that as past.' ପୁଣି ଅନ୍ୟତ୍ର ସେ ପ୍ରକାଶ କରିଛନ୍ତି—'But I was born a lady and have always lived one, no matter in what narrowness of means, always a lady. (୨୯)

ହେପ୍‌ଜିବା ନିଜର ଭରଣ ପୋଷଣ ପାଇଁ ଦୋକାନଟିଏ କରିଛନ୍ତି । ଦୋକାନ କରି ପ୍ରତ୍ୟେକ ଲୋକଙ୍କର ସମାଲୋଚନାତ୍ମକ ଦୃଷ୍ଟିଭଙ୍ଗୀର ଶିକାର ହୋଇ ହେପ୍‌ଜିବା ଖୁବ୍ ଆହତ ହୋଇଛନ୍ତି । ଏପରିକି ସହରର ଶ୍ରମିକମାନେ ମଧ୍ୟ ତାଙ୍କୁ ସମାଲୋଚନା କରିବାକୁ ଛାଡ଼ିନାହାନ୍ତି

'Make it go! Cried Dixey, with a most contemptuous expression as if the very idea were impossible to be conceived. 'Not a bit of it! why, her face I've seen it, for I dug her garden for her one year—her face is enough to frighten the old Nick himself, if he

(୨୯) The House of the Seven Gables, Page-47

had ever so great a mind to trade with her. People can't stand it, I fell you ! she scowts deadfully, reason or none, out of pure ugliness of temper.' (୨୨) କିନ୍ତୁ ପରବର୍ତ୍ତୀ କାଳରେ ଏହି ସମାଲୋଚନା ହେପ୍‌ସିବାଙ୍କୁ ଦୃଢ଼ ଓ ସହନଶୀଳ କରି ଗଢ଼ିତୋଳିଛି । ପୁଣି ସମୟେ ସମୟେ ତାଙ୍କ ମନୋବଳ ଭାଙ୍ଗି ପଡ଼ିବା ମୁହୂର୍ତ୍ତରେ ତାଙ୍କ ନିକଟରେ ଭଡ଼ା ପାଇଁ 'House of the Seven Gables'ରେ ଭଡ଼ାରେ ଥିବା ଜଣେ ଛଦ୍ମବେଶୀ ମାଉଲେ ହୋଲ୍‌ଗ୍ରେଭ୍ ଓ ଭେନର୍ ବଜା ତାଙ୍କୁ ସାହାଯ୍ୟ ଓ ଆଶ୍ୱାସନା ଦେଇଛନ୍ତି । ପରେ ପରେ ତାଙ୍କର ଦୂର ସମ୍ପର୍କୀୟା ଝିଅଟି ଫୋଏବ୍ ତାଙ୍କ ସହ କିଛିଦିନ ପାଇଁ ରହିବାକୁ ଆସି ତାଙ୍କ ଜୀବନର ଗତି ପରିବର୍ତ୍ତନ କରିଦେଇଛି । ସଦା ବିରସ ହେପ୍‌ସିବା କିଛିଟା ଆନନ୍ଦିତ ହୋଇପାରିଛନ୍ତି । ହେପ୍‌ସିବାଙ୍କ ଭାଇ କ୍ଲିଫର୍ଡ଼ ମଧ୍ୟ ଯଥା ସମୟରେ ଜେଲ୍‌ରୁ ମୁକ୍ତ ହୋଇଛନ୍ତି । ଜୀବନର ଉତ୍କୃଷ୍ଟ ସମୟତକ ଜେଲ୍‌ରେ କଟାଇଥିବାରୁ ତାଙ୍କ ମନରେ ଅସୀମ ଦୁଃଖ । ଏଥିପାଇଁ ତାଙ୍କୁ ଆନନ୍ଦ ଦେବାରେ ଫୋଏବ୍ ହେପ୍‌ସିବା, ଭେନର୍ ବଜା, ହୋଲ୍‌ଗ୍ରେଭ୍ ସମସ୍ତେ ସାହାଯ୍ୟ କରିଛନ୍ତି । କିନ୍ତୁ ସବୁଠାରୁ ବେଶି ତାଙ୍କ ମା'-ପେଟ ଭଉଣୀ ହେପ୍‌ସିବା । ଏହି ସମୟ ପର୍ଯ୍ୟନ୍ତ ହେପ୍‌ସିବାଙ୍କ ବ୍ୟକ୍ତିଗତ ସୁଖ ଦୁଃଖର ଦୁନିଆ ବର୍ଣ୍ଣନାରେ ଔପନ୍ୟାସିକ ହୃଥର୍ଣ୍ଣ ଶତମୁଖ ହୋଇଉଠିଛନ୍ତି । କିନ୍ତୁ ଏହା ପରେ ପରେ ହେପ୍‌ସିବାଙ୍କ ଜୀବନରେ ପୁଣି ଥରେ କଳାମେଘ ପରି ଦୁଃଖ ମାଡ଼ି-ଆସିଛି; ଯେଉଁଠାରୁ କି ଉପନ୍ୟାସଟିର ପ୍ରକୃତ ଦ୍ୱନ୍ଦ୍ୱ ଓ ସଂଘର୍ଷ ଆରମ୍ଭ ହୋଇଛି ବୋଲି କୁହାଯାଇପାରେ । ଏଇଠି ଉପନ୍ୟାସଟିର ଆରୋହଣ ଚରମ ସୀମାରେ ପହଞ୍ଚିଛି ।

ଉପନ୍ୟାସର ଖଳନାୟକ ଜର୍ଜ । ସିଏକି କ୍ଲିଫର୍ଡ଼ଙ୍କୁ ଜେଲ୍ ଦେବାର ସମସ୍ତ ଷଡ଼ଯନ୍ତ୍ରକାରୀ ତାଙ୍କ ଅଦମନୀୟ ଜ୍ୱାଳାରେ ହେପ୍‌ସିବା ଜର୍ଜରିତ ହୋଇଉଠିଛନ୍ତି । ଦିନେ ବର୍ଷାଦିନର ସକାଳେ ଜର୍ଜ ଆସିଛନ୍ତି କ୍ଲିଫର୍ଡ଼ଙ୍କୁ ଦେଖା କରିବାକୁ । କିନ୍ତୁ ଜର୍ଜ କ୍ଲିଫର୍ଡ଼ଙ୍କୁ ଦେଖାକଲେ କ୍ଲିଫର୍ଡ଼ ପାଗଳ ହୋଇଯିବେ ଓ ସେ ଜର୍ଜଙ୍କୁ ମଧ୍ୟ ଦେଖିବାକୁ ଚାହାନ୍ତି ନାହିଁ ବୋଲି ହେପ୍‌ସିବା ଜର୍ଜଙ୍କୁ ଚୋଟ୍‌ଚୋଟ୍ ଜବାବ୍ ଦେଇଛନ୍ତି । ଭାଇ ପ୍ରତି ଅଦମ୍ୟ ମୋହ ହେପ୍‌ସିବାଙ୍କ ଚରିତ୍ରର ଏକ ବଡ଼ ଦୁର୍ବଳତା ଓ ବିଶେଷତ୍ୱ । ମାତ୍ର ଏହି ଚରିତ୍ରଟି ବଂଶର ଆଭିଜାତ୍ୟ, ମୋହ କର୍ଣ୍ଣେଲ୍‌ଙ୍କ ପ୍ରତି ଗଭୀର ଭକ୍ତି ଓ ଶ୍ରଦ୍ଧା ଗ୍ରୁଡ଼ିପାରି ନାହିଁ । ଯେଉଁଥିପାଇଁ ସେ କର୍ଣ୍ଣେଲ୍‌ଙ୍କ ପ୍ରତି ଅନୁରକ୍ତ ବୋଲି କର୍ଣ୍ଣେଲ୍‌ଙ୍କ ଅର୍ଜିତ ପାପର ଭାଗୀଦାର ତାଙ୍କୁ ହେବାକୁ ପଡ଼ିଛି ଏବଂ ତାଙ୍କୁ ଏକ ଜଞ୍ଜାଳଗ୍ରସ୍ତ ସାମାଜିକ ଦ୍ୱନ୍ଦ୍ୱ ଭିତରେ ଗତି କରିବାକୁ ହୋଇଛି ।

---

(୨୨) The House of the Seven Gables, Page-50

ଜର୍ଜଙ୍କ ସହ ଝଗଡ଼ା ପରେ ଯଦି ଜର୍ଜ କ୍ଲିଫର୍ଡ଼ଙ୍କୁ ଦେଖା ନକରନ୍ତି, ତେବେ ସେ କ୍ଲିଫର୍ଡ଼ଙ୍କୁ ପାଗଳ ବୋଲି ସାଧାରଣରେ ଘୋଷଣା କରିବାକୁ ଧମକ୍ ଦେଇଛନ୍ତି । ସେଥିପାଇଁ ତାଙ୍କ କ୍ଷମତାରୁ ଏ କାର୍ଯ୍ୟ ବହିର୍ଗତ ନୁହେଁ ବୋଲି ଅନୁଭବ କରି ହେପ୍‌ଜିବା ଖୁବ୍ ବିଚଳିତ ହୋଇପଡ଼ିଛନ୍ତି ଏବଂ ସେ କ୍ଲିଫର୍ଡ଼ଙ୍କୁ ଡାକଦେବାକୁ ଯାଇଁ ଯେପରି ବିଚଳିତ ହୋଇ ଅନ୍ୟମାନଙ୍କ ସାହାଯ୍ୟ ଲୋଡ଼ିବାକୁ ବ୍ୟସ୍ତ ହୋଇପଡ଼ିଛନ୍ତି, ପୁଣି କ୍ଲିଫର୍ଡ଼ଙ୍କୁ ତାଙ୍କ କୋଠରୀରେ ନପାଇ ଆହୁରି ବିଚଳିତ ହୋଇ ଜର୍ଜଙ୍କ ସାହାଯ୍ୟ ଲୋଡ଼ିଛନ୍ତି, ତାହା ବାସ୍ତବିକ ପାଠକର ମର୍ମ ସ୍ପର୍ଶକରେ ଏବଂ ଏହି ଚରିତ୍ରଟିର ସରଳତା ହେତୁ ପାଠକର ସ୍ୱତଃ ସମ୍ବେଦନା ଜାଗ୍ରତ ହୁଏ । କିନ୍ତୁ ଜର୍ଜଙ୍କ ମୃତ୍ୟୁ, ପରବର୍ତ୍ତୀ କାଳରେ ହେପ୍‌ଜିବା ଓ କ୍ଲିଫର୍ଡ଼ଙ୍କ ପାଇଁ ଏକ ନୂତନ ଜୀବନର ସ୍ୱାଦ ଆଣି ଦେଇଛନ୍ତି ।

ଉପନ୍ୟାସଟିର ପରିସମାପ୍ତି ସମୟରେ ସେ ଓ କ୍ଲିଫର୍ଡ଼ ଯେଉଁଳି ଭାବେ ଫୋଏବ୍ ଓ ହୋଲ୍‌ଗ୍ରେଭ୍‌ଙ୍କ ବିବାହ-ବନ୍ଧନକୁ ସ୍ୱୀକୃତି ଦେଇଛନ୍ତି, ତାହା ତାଙ୍କ ଉଦାର ଓ ସ୍ନେହ-ଶୀଳ ହୃଦୟର ଅନ୍ୟ ଏକ ବିଶେଷତ୍ୱ । ଜର୍ଜଙ୍କ ମୃତ୍ୟୁ ପରେ ହେପ୍‌ଜିବା ତାଙ୍କ ଭାଇ କ୍ଲିଫର୍ଡ଼ ଓ ହୋଲ୍‌ଗ୍ରେଭ୍, ଫୋଏବ୍‌ଙ୍କ ସହ ଅଭିଶପ୍ତ House of the Seven Gablesକୁ ଛାଡ଼ି ଜର୍ଜଙ୍କ ନୂତନ ବାସଗୃହକୁ ଚାଲିଯାଇଛନ୍ତି । ଅତଏବ ହେପ୍‌ଜିବାଙ୍କୁ ଆଲୋଚ୍ୟ ଉପନ୍ୟାସର ଆରମ୍ଭରେ ଯେପରି ବିଷାଦ ଓ ରକ୍ଷଣଶୀଳତାର ବ୍ୟୂହ ଭିତରେ ଦେଖିବାକୁ ମିଳେ, ଉପନ୍ୟାସର ସମାପ୍ତି ବେଳକୁ ସେ ସେଥିରୁ ନିସ୍ତାର ଲଭିବାର ମଧ୍ୟ ଲକ୍ଷ୍ୟ କରାଯାଏ ।

ଏହି ଚରିତ୍ର 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ସା'ନ୍ତାଣୀ ଚରିତ୍ର ପରି ଉଦାର ଓ ସ୍ନେହଶୀଳା । ବାସ୍ତବିକ ଉପନ୍ୟାସଟିର ସମସ୍ତ କଥାବସ୍ତୁ ହେପ୍‌ଜିବାଙ୍କ ଚତୁଃପାର୍ଶ୍ୱରେ ଘୂରିବୁଲିଛି ଓ ଏଥିରୁ ମୁକ୍ତି ପାଇବାକୁ ସେ ଯେପରି ବ୍ୟସ୍ତ ହୋଇଛନ୍ତି, ସେଥିପାଇଁ ଫୋଏବ୍ ଚରିତ୍ରର ଆବଶ୍ୟକତା ଯଥେଷ୍ଟ ଥିଲା । ହଥର୍ଣ୍ଣଙ୍କ ଉପନ୍ୟାସ ଜଗତରେ ଏହି ଚରିତ୍ରଟି ଯେତେ ପରିମାଣରେ ଜୀବନର ସୁଖ ସ୍ୱାଚ୍ଛନ୍ଦ୍ୟ ଦୃଷ୍ଟିରୁ ଅସଫଳ ତତୋଽଧିକ ସଫଳତା ହାସଲ କରିଛି ତାର ସାମାଜିକ ସମ୍ମାନ ସଚେତନତା, ବ୍ୟକ୍ତିତ୍ୱ ବୋଧ ଓ ସ୍ନେହଶୀଳ ମୋହ ଫମ୍ପର ପାଇଁ । ତେଣୁ ଔପନ୍ୟାସିକ ହଥର୍ଣ୍ଣ ଯଥାର୍ଥରେ ଲେଖିଛନ୍ତି—

"We must linger a moment on this unfortunate expression of poor Hepzibah's brow. Her scowl, as the world, or such part of it is as some times caught a transitory glimpose of her at the window, wickedly persisted in calling it—her scowl had done miss Hepzibah a very ill office, inestablishing her character as an ill tempted old maid, nor does it appear improbable that, by

often gazing at herself in a dim looking glass and perpetualy encountering her own frown within its ghostly sphere, she had been led to interpret the expression almost as unjustly as the world did." (୨୩)

ପୁଣି କୁହାଯାଇଛି—

"Our miserable old Hepzibah ! It is a heavy annoyance to a writer, who endeavours to represent nature. Its various attitudes and circumstances in a reasonably correct out line and true coloring that so much of the mean and ludicrous should be hopelessly mixed up with the purest pathos which life any where supplies to him. What tragic dignity, for example. can be wrought in to a scence like this. How can we elevate our history of retribution for the sin of long ago, when as one of our most prominent figures, we are compelled to introduce—not a young and lovely woman, nor even the stately remains of beauty, storm—shattered by afflication—but a gaunt, sallow, rusty—Joined maiden, in a longwaisted silk gown and with the strange horror of a turban on her head ! Her visage is not even ugly.. It is redeemed from insignificance only by the contraction of her eye brows into a near—sighted scowl. And finally her great life—trial seems to be,' that after sixty years of idleness, she finds it convenient to earn comfortable bread by setting up a shop in a small way. Neverthless, if we look throug all the heroic fortunes of mankind, we shall find this same entanglement of something men and trivial with what ever is noblest in joy and corrow. Life is made up of Marble and Mud " (୨୪)

## ଫୋଏବ୍ ପିନ୍‌ଚନ୍—Phoebe Pyncheon :

ଆଲୋଚ୍ୟ ଉପନ୍ୟାସର ଚତୁର୍ଥ ପରିଚ୍ଛେଦଠାରୁ—ଫୋଏବ୍ ଚରିତ୍ରର ଆବିର୍ଭାବ । ପଞ୍ଚମ ପରିଚ୍ଛେଦଠାରୁ ତ୍ରୟୋଦଶ ପରିଚ୍ଛେଦ ପର୍ଯ୍ୟନ୍ତ ଏହାର ଅଖଣ୍ଡ ଆଧିପତ୍ୟ ପ୍ରତ୍ୟେକ ପରିଚ୍ଛେଦରେ ବିସ୍ତାର ଲାଭ କରିଛି । ତ୍ରୟୋଦଶ ପରିଚ୍ଛେଦଠାରୁ ଅଷ୍ଟାଦଶ ପରିଚ୍ଛେଦ

(୨୩) The House of the Seven Gables, Page—35
(୨୪) „ „ „ , Page—43.

ପର୍ଯ୍ୟନ୍ତ ଉପନ୍ୟାସରେ ତାର ଅନୁପସ୍ଥିତି ସମଗ୍ର ଉପନ୍ୟାସଟିକୁ ଉଦାସ କରିଦେଇଛି ଓ ପୁଣି ତାର ଆଗମନ ଭେନବଂଶ ପରିଚ୍ଛେଦରେ ଏକ ପ୍ରେମିକାର ରୂପ ନେଇଛି । ଉପନ୍ୟାସର ପରିସମାପ୍ତି ପର୍ଯ୍ୟନ୍ତ ଏହି ଚରିତ୍ରଟିର ଗୁରୁତ୍ୱପୂର୍ଣ୍ଣ ଭୂମିକା ବାସ୍ତବିକ ଲକ୍ଷ୍ୟ କରିବାର କଥା ।

ମଧ୍ୟାହ୍ନର ବୁଲ୍‌ବୁଲ୍ ପରି ଚଞ୍ଚଳା, ଚପଳା, ବୟସର ରଙ୍ଗଲତା ଫୋଏବ୍ ପିନ୍‌ଚନ୍ । ଗାଉଁଲି ଝିଅ, ଫୋଏବ୍ ଦେହରେ ବୟସର ସରଳତା ତାକୁ କରିଛି ମଧୁମତୀ । ଝିଅଟି ବୁକୁରେ ଉତ୍ତୁଙ୍ଗ ସ୍ନେହର ଜୁଆର ତୋଳି ସେ ଗାଁରୁ ଆସିଛି ତାର ସମ୍ପର୍କୀୟା ମାଉସୀ ହେପ୍‌ସିବାଙ୍କ ନିକଟକୁ । ପ୍ରଥମ ଦେଖାରେ ହେପ୍‌ସିବା ତାକୁ ତାଙ୍କ ଘରେ ଗୋଟିଏ ରାତି ରଖିବାର ଇଚ୍ଛା କରିଥିଲେ; କିନ୍ତୁ ଫୋଏବ୍ ସହ ଅନ୍ତରଙ୍ଗତା ଜନ୍ମିଯିବା ପରେ, ଫୋଏବ୍‌ର ଶାନ୍ତ, ସରଳ, ସୌମ୍ୟମୂର୍ତ୍ତି ଓ ମଧୁର ବ୍ୟବହାରରେ ମୁଗ୍ଧ ହେବା ପରେ ସେ ତାକୁ ତାଙ୍କ ଘରେ ଅନେକଦିନ ରଖିବାର ଇଚ୍ଛା ପୋଷଣ କରିଛନ୍ତି । ଫୋଏବ୍‌ର ଆବିର୍ଭାବରେ 'The House of the Seven Gables' ଘରଟିରେ ଯେପରି ଆଉ ଏକ ଶୁନ୍ଦର ତା' ରୂପେଲି କିରଣରେ ସମସ୍ତ ଅନ୍ଧାର ଓ ନିରାନନ୍ଦକୁ ପୋଛିଦେଇଛି । ଦୋକାନରେ ହେପ୍‌ସିବାଙ୍କୁ ସାହାଯ୍ୟ କରିବା, ବଗିଚାରେ କାମ କରିବା ପରି କାର୍ଯ୍ୟରେ ଫୋଏବ୍ ନିଜକୁ ନିୟୋଜିତ କରିଛି । ଏଇଠାରେ ହୋଲ୍‌ଗ୍ରେଭ୍‌ଙ୍କ ସହିତ ତାର ପରିଚୟ ହୋଇଛି । ଉଭୟେ ବଗିଚାରେ ଏକାଠି କାମ କରିଛନ୍ତି । ପରେ ପରେ ହେପ୍‌ସିବାଙ୍କ ଭାଇ କ୍ଲିଫର୍ଡ଼ ଜେଲ୍‌ରୁ ମୁକ୍ତ ପାଇ ଘରକୁ ଆସିଛନ୍ତି । ତାଙ୍କ ବିଷାଦମୟ ମୁହୂର୍ତ୍ତଗୁଡ଼ିକ ଫୋଏବ୍‌ର ବସନକାଳରେ ପୋଛି ହୋଇଯାଇଛି । ଫୋଏବ୍‌କୁ ସେ ସ୍ନେହ କରନ୍ତି; ଝିଅଭଳି ଭାବେ ନୁହେଁ କି ପ୍ରେମିକା ଭାବେ ନୁହେଁ—ଭାବପ୍ରବଣ ହୋଇ । ହୃଦୟର କେଉଁ ଅଜଣା କୋଣରେ ଜମାଟ ବାନ୍ଧିଥିବା ପ୍ରାଚୀନ ସମ୍ପର୍କ ନେଇ ଫୋଏବ୍ ଅତି ଆପଣାର ଭାବେ ମିଶିଛି କ୍ଲିଫର୍ଡ଼ଙ୍କ ସହ । ମନ ସହ ମନ ମିଳିଛି । ଏ ମନର ମିଳନ ପାପରେପେଟରରେ ଆବଦ୍ଧ ନୁହେଁ । ଶିଶୁର ଚପଳତାରେ, ମା'ର ସ୍ନେହରେ ଏହାର ସ୍ଥିତି । ତେଣୁ କ୍ଲିଫର୍ଡ଼ ପାଇଁ ଫୋଏବ୍, ଫୋଏବ୍ ପାଇଁ କ୍ଲିଫର୍ଡ଼— ପରସ୍ପରକୁ ସେମାନେ ଭଲ ପାଆନ୍ତି । କିନ୍ତୁ ଫୋଏବ୍ ଜୀବନରେ ଜର୍ଜଙ୍କର ଗୋଟିଏ ମୁହୂର୍ତ୍ତର ଉପସ୍ଥିତି, ତାଙ୍କ ବ୍ୟବହାର, ଚାଲିଚଳନ ସବୁକିଛି ତାକୁ ଅସହ୍ୟ ମନେହୋଇଛି । ସେ ତାଙ୍କୁ ବିଶ୍ୱାସ କରିନି ।

ଜୀବନର ନିହିତ ବୟସରେ ପଦପାତ କରିଥିବା ଚପଳଛନ୍ଦା ଫୋଏବ୍ ସଂସାର-ବିଷୟରେ ଅନଭିଜ୍ଞ ହେଲେହେଁ ତାର ବ୍ୟବହାର, କଥାବାର୍ତ୍ତା, ଯେପରି ତାକୁ ଜଣେ ଚରମ ସଂସାରୀଭାବେ ପ୍ରତିପାଦିତ କରାଇଛି । ଦୟାର୍ଦ୍ର ହୃଦୟର ଫୋଏବ୍ ପିନ୍‌ଚନ୍ ଭଲ ପାଇଛି ଭେନର୍ କକାଙ୍କୁ, ଭଲ ପାଇଛି ସାନ ପିଲା ନେଡ୍ ହିଗିନ୍‌ସକୁ । ପୁଣି ଭଲ ପାଇଛି

ଯୁବକ ସଙ୍ଗୀତଜ୍ଞଙ୍କୁ । ଏ ଭଲ ପାଇବାରେ ତାର ଯୌନାକାଂକ୍ଷା ନାହିଁ, ଛଳନା ନାହିଁ । ଏ ଭଲ ପାଇବା ତାର ଶାଶ୍ୱତ, ଚିରନ୍ତନ ।

କିନ୍ତୁ ହୋଲ୍‌ଗ୍ରେଭ୍‌ଙ୍କୁ ସେ ଭଲପାଏ ଭିନ୍ନ ଦୃଷ୍ଟିକୋଣ ନେଇ । ପୁରୁଷର କଠୋର ଜୀବନରେ ନାରୀ କୋମଳ ପ୍ରତିମା ହେଲେ ବି ସେ ଦବିଯାଏ ନାହିଁ । ତା' ଉଷ୍ମ ମନର ହାହାକାର ବରଂ ଏଥିରେ ହୁଏ ପ୍ରଶମିତ । ସେ ଚାହେଁ ପୁରୁଷ—ଯାହାର ବ୍ୟକ୍ତିତ୍ୱ ନଭଶ୍ଚୁମ୍ବୀ, ଯେ ବଳିଷ୍ଠ, କଠୋର, ପୂର୍ଣ୍ଣ । ବୋଧେ ଫୋଏବ୍ ଏଇଥିପାଇଁ ଭଲପାଇ ବସିଛି ହୋଲ୍‌ଗ୍ରେଭ୍‌ଙ୍କୁ । ଦାର୍ଶନିକ ଯୁବକ ଫଟୋଗ୍ରାଫର୍ ହୋଲ୍‌ଗ୍ରେଭ୍ ମଧ୍ୟ ଭଲପାଇ ବସିଛନ୍ତି ଫୋଏବ୍‌କୁ । ଏ ଭଲ ପାଇବା ତାଙ୍କର ଦୈହିକ ନୁହେଁ । ସେଥିପାଇଁ ତ ଫୋଏବ୍ ଧୈର୍ଯ୍ୟର ସହ ହୋଲ୍‌ଗ୍ରେଭ୍‌ଙ୍କ ରଚିତ ଦୀର୍ଘ ଗଳ୍ପ 'ଆଲିସେ ପିନ୍‌ଚନ୍'କୁ ଶୁଣିଛି ।

ଫୋଏବ୍—ହେପ୍‌ସିବା ଓ କ୍ଲିଫର୍ଡ଼ଙ୍କ ପାଇଁ ଏକାନ୍ତ ଅପରିହାର୍ଯ୍ୟ ହୋଇପଡ଼ିଛି । ସେ ଯେତେବେଳେ ତା' ମା' ପାଖକୁ ବୁଲିଯିବାକୁ ଚାହିଁଛି, ସେତେବେଳେ ହେପ୍‌ସିବା, କ୍ଲିଫର୍ଡ଼, ଭେନର୍ କକା, ହୋଲ୍‌ଗ୍ରେଭ୍ ସମସ୍ତେ ଦୁଃଖିତ । ଏହା ଉପନ୍ୟାସର ପ୍ରାୟତଃ ମଧ୍ୟାହ୍ନ ସମୟ । କିନ୍ତୁ ଏହା ପରଠାରୁ ଉପନ୍ୟାସରେ ଯେଉଁ ଝଡ଼ ବହିଛି, ତାହା ଅକଥନୀୟ, ଅବର୍ଣ୍ଣନୀୟ ଏକ ଅତ୍ୟାଶ୍ଚର୍ଯ୍ୟ କାହାଣୀ । ଫୋଏବ୍ ଚାଲିଯିବା ପରେ ତାହାର ମନରେ ଆନନ୍ଦ ନାହିଁ । ଘରଟିରେ ପୂର୍ବବତ୍ ବିଷାଦର କାଳିମା ଘୋଟି-ଯାଇଛି । ଏହି ଅବସ୍ଥାରେ ଜଜ୍ ପିନ୍‌ଚନ୍‌ଙ୍କ ଉତ୍ପୀଡ଼ କ୍ଲିଫର୍ଡ଼ ଓ ହେପ୍‌ସିବାଙ୍କୁ ଘର ଛାଡ଼ି ପଳାଇବାକୁ ବାଧ୍ୟ କରିଛି । ପରିଣତିରେ ଜଜ୍ ପିନ୍‌ଚନ୍‌ଙ୍କର ମୃତ୍ୟୁ ହୋଇଛି । ହୋଲ୍-ଗ୍ରେଭ୍ ଏକାକୀ ଏହି House of the Seven Gables ଘରେ ଉପସ୍ଥିତ ପଡ଼ିରହି ମୁହୂର୍ତ୍ତି କଥା ଚିନ୍ତା କଲାବେଳେ ଫୋଏବ୍ ପୁଣି ତା' ଗାଁ'ରୁ ଫେରିଆସିଛି । ଦୁହେଁ ଦୁହିଁଙ୍କୁ ପାଇ ବେଶ୍ ଦୃଢ଼ ହୋଇଯାଇଛନ୍ତି । କିନ୍ତୁ ପରିସ୍ଥିତି ତାଙ୍କୁ କେତେକାଂଶରେ ଦୁର୍ବଳ କରିଦେଇଛି । ତଥାପି ସେମାନେ ଚିନ୍ତା କରିଛନ୍ତି ଯଦି ହେପ୍‌ସିବା ଓ କ୍ଲିଫର୍ଡ଼ ଏବେ ଫେରିଆସନ୍ତି, ତେବେ ସେମାନେ ପ୍ରମାଣ କରିଦେବେ ଯେ, ଜଜ୍‌ଙ୍କ ମୃତ୍ୟୁ ପାଇଁ ସେମାନେ ଦାୟୀ ନୁହନ୍ତି । ସେହି ସମୟରେ ହେପ୍‌ସିବା ଓ କ୍ଲିଫର୍ଡ଼ ମଧ୍ୟ ଫେରିଆସିଛନ୍ତି । ଫୋଏବ୍‌କୁ ଦେଖି ସେମାନେ ଖୁବ୍ ଖୁସି ହୋଇ-ଯାଇଛନ୍ତି । ଫୋଏବ୍‌ର ଗଭୀର ପ୍ରେମ, ଚରମ ଅନୁଚିନ୍ତା ଆଲୋଚ୍ୟ ଉପନ୍ୟାସର ଅନ୍ତିମ ଭାଗରେ ବେଶ୍ ଆବେଗର ସହ ପରିସ୍ଫୁଟିତ ହୋଇଛି । ତେଣୁ ହୋଲ୍‌ଗ୍ରେଭ୍‌ଙ୍କ ପ୍ରଶ୍ନର ଉତ୍ତରରେ ସେ ଅତି ଆବେଗର ସହ କହିଛି—"You look in to my heare," said she, Letting her eyes drop, "you know I Love

you.” (୨୫) ବଂଶ ପରମ୍ପରାରେ ଜଣେ ପିନ୍‌ଚନ୍ ବଂଶୀୟା ହେଲେ ବି ସେ ହୋଲ୍‌ଗ୍ରେଭ୍‌ଙ୍କ ଜଣେ ସାଧୁଳୋ ବଂଶୀୟ ଯୁବକ ବୋଲି ଜାଣିବା ପରେ ମଧ୍ୟ ତା' ଭଲ ପାଇବାରୁ ବଞ୍ଚିତ ହୋଇନାହିଁ । ସେ ହୋଲ୍‌ଗ୍ରେଭ୍‌ଙ୍କୁ ବିବାହ କରନ୍ତି । ପ୍ରେମର ଶେଷ ପରିଣତି ବିବାହ—ବୋଧେ ତା' ମନରେ ଅଲକ୍ଷ୍ୟ ଗାର ଟାଣି ଦେଇଥିଲା । ଏ ବିବାହ ସମ୍ପର୍କରେ ସମାଲୋଚକ Darrel Able କହନ୍ତି—“In the end Phoebe and Holgrave marry, their marriage signifying the necessary abandonment of aristrocratic pretension to superiority and the reconciliation through their common humanity of artificially opposed social classes.” (୨୬)

ଫୋଏବ୍ ଚରିତ୍ରଟି ଉପନ୍ୟାସରେ ଆବିର୍ଭାବ ହେବାଠାରୁ ଉପନ୍ୟାସଟିର ସବୁ କ୍ଷେତ୍ରରେ ଏକ ପବିତ୍ରତା (Holyness), ସବୁଜତା (Romance) ଦେଖାଦେଇଛି । ତା' ବିନା ଉପନ୍ୟାସର ମୁଖ୍ୟନାୟିକା ଓ କଥାବସ୍ତୁ ଯେ ଏକାନ୍ତ ଅସହାୟ ଓ ଅପାର ତାହା ତା'ର ଗାଁ'କୁ ଯିବା ପର ପରିଚ୍ଛେଦଠାରୁ ସ୍ପଷ୍ଟ ଅନୁମେୟ । ଫୋଏବ୍ ପରି ଏକ ନିଷ୍ପାପ, ନିଷ୍କଳଙ୍କ, ସ୍ନେହ ଓ ପ୍ରୀତିର ମୂର୍ତ୍ତିମନ୍ତ ଚରିତ୍ର ସୃଷ୍ଟି କରି ହଥର୍ଣ୍ଣ 'The House of the Seven Gables' ଉପନ୍ୟାସକୁ ଚିରନ୍ତନ ମୂଲ୍ୟ ପ୍ରଦାନ କରି-ଯାଇଛନ୍ତି ।

## ଜର୍ଜ ପିନ୍‌ଚନ୍—Judge Pyncheon :

“The villain of the story is judge Pyncheon whose ruthless ambition has carried him through actual criminality and fraud to worldly success, but who lacks the traditional Pyncheon culture.” (୨୭) କର୍ଣ୍ଣେଲ୍ ପିନ୍‌ଚନ୍‌ଙ୍କର ପରମ ଅନୁରକ୍ତ ଉତ୍ତରଦାୟାଦ ଭାବେ ପରିଚିତ ଜର୍ଜ ପିନ୍‌ଚନ୍ ଏହି ଉପନ୍ୟାସଟିର ମୁଖ୍ୟ ଖଳନାୟକ (Villain) । କର୍ଣ୍ଣେଲ୍ ଯେଉଁ କନ୍ଦଳ ସୃଷ୍ଟି କରିଥିଲେ, ତା' ଦ୍ୱାରା ଅନୁପ୍ରାଣିତ ହୋଇ ଏବଂ ତାଙ୍କର ଚରିତ୍ର ଦ୍ୱାରା ପ୍ରଭାବିତ ହୋଇ ସେ ଯେଉଁ ଚରମ ଅନୁଶୋଚନାମୟ ପରିସ୍ଥିତି ସୃଷ୍ଟି କରିଛନ୍ତି, ସେଥିପାଇଁ ସେ ଅକ୍ଷମଣୀୟ ।

---

(୨୫) The House of the Seven Gables, Page-350

(୨୬) American literatare, Vol-2, Page-204

(୨୭) American literature, Vol-2, by-Abel, Page-203

କେବଳ ଚକ୍ରାନ୍ତକାରୀ, ଶୋଷଣକାରୀ ଭାବେ ନୁହେଁ, ଜଣେ ବିଶ୍ୱାସଘାତକ ବ୍ୟକ୍ତି ଭାବେ ଜଜ୍ ପିନ୍‌ଚନ୍‌ଙ୍କ ଚାରିତ୍ରିକ ଦୁର୍ବଳତା ଔପନ୍ୟାସିକ ହଥର୍ଣ୍ଣଙ୍କ ଲେଖନୀରେ ସ୍ପଷ୍ଟ ଭାବେ ରୂପ ପାଇଛି । କ୍ଲିଫର୍ଡ଼ଙ୍କ ଭଳି ଏକ ସରଳ, ନିରୀହ ଚରିତ୍ରକୁ ଜେଲ୍ ଦେବାର ମୂଳ ଉତ୍ସ ହେଉଛନ୍ତି ଜଜ୍ । ପିଲାବେଳେ ଜଜ୍ ଖୁବ୍ ଚଞ୍ଚଳ ପ୍ରକୃତିର ଥିଲେ । କ୍ଲିଫର୍ଡ଼ ଥିଲେ ଖୁବ୍ ସୌନ୍ଦର୍ଯ୍ୟବାଦୀ, କୋମଳ ପ୍ରକୃତିର । ଏଇ ଦୁଇ ପୁରୁଷଙ୍କୁ କକା ଜାଫେରି ପ୍ରତିପାଳନ କରୁଥିଲେ । କିନ୍ତୁ ସେ କ୍ଲିଫର୍ଡ଼ଙ୍କୁ ଖୁବ୍ ଭଲ ପାଉଥିଲେ । ତାଙ୍କୁ ସବୁଦା ସେ ନିଜ ପାଖରେ ଏପରି କି ରାତିରେ ପାଖରେ ଶୋଇପକାଉଥିଲେ । କିନ୍ତୁ ସେ ମରିବାର କିଛିଦିନ ପୂର୍ବରୁ ତାଙ୍କର ସମସ୍ତ ଜମି ଓ ଧନ ସମ୍ପତ୍ତି ପାଇବାର ଗୋଟିଏ ଉଇଲ୍ ଜଜ୍‌ଙ୍କ ନାଁରେ କରିଦେଇଥିଲେ ଏବଂ ଏହି ଉଇଲ୍ ପରେ ପରେ ସେ ଆଉ ଗୋଟିଏ ଉଇଲ୍ କରିଥିଲେ କ୍ଲିଫର୍ଡଙ୍କ ନାମରେ । ଏଥିରେ ଉଲ୍ଲେଖ ଥିଲା ଯେ, "ସେ ତାଙ୍କର ସମସ୍ତ ସମ୍ପତ୍ତି ଜଜ୍‌ଙ୍କୁ ଦେବା ପରିବର୍ତ୍ତେ କ୍ଲିଫର୍ଡ଼ଙ୍କୁ ଦେଲେ ।"

ପରେ ରାତିରେ ବୃଦ୍ଧ ଜାଫେରି—କ୍ଲିଫର୍ଡଙ୍କୁ ନେଇ ଶୋଇଥିଲାବେଳେ ଜଜ୍ ସେଇ ଘରେ ଚୁପ୍‌ଚାପ୍ ପ୍ରବେଶ କରି ଘରର ଏଣେତେଣେ ଥିବା କାଗଜପତ୍ରକୁ ଖୋଲାଉଥିଲେ । ସେହି ସମୟରେ ବୃଦ୍ଧ କକା ଜାଫେରିଙ୍କ ନିଦ ଭାଙ୍ଗିଗଲା । ଏତେ ରାତିରେ ଜଜ୍‌ଙ୍କର ଏତାଦୃଶ କାର୍ଯ୍ୟରେ ସେ ଖୁବ୍ କ୍ଷୁବ୍ଧ ହୋଇଗଲେ ଏବଂ ତାଙ୍କର ରକ୍ତଚାପ ବଢ଼ିଗଲା । ସେ ରକ୍ତବାନ୍ତି କରି ହଠାତ୍ ପଡ଼ିଗଲେ ଓ ଟେବୁଲ୍‌ରେ ତାଙ୍କ ମୁଣ୍ଡ ପିଟିହୋଇ ଗମ୍ଭୀର ଭାବେ ଆଘାତ ଲାଗିବାରୁ ସେ ହଠାତ୍ ମୃତ୍ୟୁବରଣ କଲେ । ଜଜ୍ କିନ୍ତୁ ଏଥିରେ ବିଚଳିତ ନ ହୋଇ ଉପସ୍ଥିତ ବୁଦ୍ଧି ପ୍ରୟୋଗ କରି ନିଜ ନାଁରେ ହୋଇଥିବା ଉଇଲ୍‌ଟି ରଖି କ୍ଲିଫର୍ଡ଼ ନାଁରେ ହୋଇଥିବା ଉଇଲ୍‌ଟି ଲୁଚାଇ ଦେଲେ । ଏବଂ ପ୍ରମାଣିତ କରି ଦେଖାଇଦେଲେ ଯେ, ଜାଫେରି କକା ତାଙ୍କ ନାଁରେ ତାଙ୍କର ସମସ୍ତ ସମ୍ପତ୍ତି ଉଇଲ୍ କରିଦେଇଥିବାରୁ କ୍ଲିଫର୍ଡ଼ ସେଥିରେ ଈର୍ଷାନ୍ୱିତ ହୋଇ ରାତିରେ ତାଙ୍କ ପାଖରେ ଶୋଇଥିବା ବେଳେ ତାଙ୍କୁ ମାରି ଦେଇଛି । କ୍ଲିଫର୍ଡ଼ଙ୍କୁ ଏହି ଦୋଷ ପାଇଁ ବିଶବର୍ଷରେ ଜେଲ୍ ଦଣ୍ଡ ଦିଆଗଲା । ଜୀବନର ପ୍ରଥମ ଚକ୍ରାନ୍ତ ସଫଳ ହେବା ପରେ ଜଜ୍ ଜାଫେରି କକାଙ୍କ ସମ୍ପତ୍ତିରେ ଜଣେ ପ୍ରତିଷ୍ଠିତ ମାନ୍ୟଗଣ୍ୟ ବ୍ୟକ୍ତି ଭାବରେ ପରିଚିତ ହେଲେ । ସେ ଯଦିଓ ସିଧାସଳଖ ଭାବେ କୌଣସି ଲୋକର ସମ୍ପତ୍ତିକୁ ଅପହରଣ କରି ନ ଥିଲେ, ତଥାପି ସେ ନିରୀହ କ୍ଲିଫର୍ଡଙ୍କ ଜୀବନକୁ ଯେପରି ଭାବେ ତିଳ ତିଳ କରି ଦଗ୍ଧ କରିବାର ମାର୍ଗ ତିଆରି କରିଦେଇଥିଲେ, ତାହା ସମଗ୍ର ଉପନ୍ୟାସଟି ପାଇଁ ଏକ ବିଷାଦର ଛାୟା ଖେଳାଇ ଦେଇଥିଲା । ଜଜ୍‌ଙ୍କର ଏକମାତ୍ର ସନ୍ତାନ ଯିଏ କି ଇଉରୋପରେ ଥିଲା, ତାହାରି ପାଇଁ ଧନର ମୋହରେ ଅନ୍ଧ ହୋଇ ଯାବତୀୟ ଅପକର୍ମ-ମାନ ଅର୍ଜନ କରିବାକୁ ଜଜ୍ ପଛାଇ ଯାଇ ନାହାନ୍ତି । ହେପ୍‌ଜିବାଙ୍କୁ ତାଙ୍କର ବଦ୍‌ରୂପ, ତାଚ୍ଛଲ୍ୟ ଭାଷା ଆଘାତ ଦେଇଛି । ଫୋଏବ୍‌କୁ ଦୋକାନରେ ପ୍ରଥମେ ଦେଖି ତା'ର

ପରିଚୟ ଜାଣିଲା ପରେ ତାକୁ ଦୃପା ଦେବାକୁ ଇଚ୍ଛାକରି ଫୋଏବ୍‌ଠାରୁ ଅସଫଳ ହେବାରେ ତାଙ୍କୁ ଯେପରି ଅପମାନ ହେଲା, ତାହା ତାଙ୍କର ପ୍ରାପ୍ୟ ଭାବେ ଗ୍ରହଣୀୟ । ଏହାର ଅନ୍ତରାଳରେ ତାଙ୍କର ସ୍ନେହ ନଥିଲା, ଥିଲା ମାଂସ ଲୋଭ । ସ୍ପେକ୍ସାରି ମୃତ୍ୟୁ ପରେ ସେ ବିବାହ କରିନଥିଲେ । କାରଣ ହେଲା—ପର ସ୍ତ୍ରୀ ହରଣ କରିବାର ମୋହ ଓ ଅବାଞ୍ଛିତ, ଅବୈଧ ଧର୍ଷଣ—ନାନାର ସମ୍ପତ୍ତି ଜରିଆରେ ହାସଲ କରି ଜୀବନକୁ ଉପଭୋଗ କରିବା । ଏହା ଥିଲା ଜର୍ଜଙ୍କ ଚରିତ୍ରର ଶ୍ରେଷ୍ଠ ଦୁର୍ବଳତା । ପୁଣି ଜାଫେଥ ଫିନ୍‌ଚନ୍ ମରିଗଲେ ପରେ ସେ ଯେତେ ସମ୍ପତ୍ତି ପାଇବେ ବୋଲି ଆଶା କରିଥିଲେ, ତାହା ପାଇପାରି ନଥିଲେ ଏବଂ ଏକଦା ଏହି ସମ୍ପତ୍ତି ବିଷୟରେ କହୁଁଥା କ୍ଲିଫର୍ଡ଼ ଜାଣନ୍ତି ବୋଲି ପିଲାବେଳେ ଜର୍ଜଙ୍କୁ ମଜା ମଜା ଗପ କହିବା ପ୍ରସଙ୍ଗରେ ସେ କହିଥିଲେ ।

କ୍ଲିଫର୍ଡ଼ ଜେଲ୍‌ରୁ ଫେରିଆସିବା ପରେ, ଜର୍ଜ ଏହି ଲୁପ୍ତ ଧନ-ସମ୍ପତ୍ତିର ମୋହକୁ ଏଡ଼ାଇ ନପାରି, କ୍ଲିଫର୍ଡ଼ ଓ ହେପ୍‌ସିବାଙ୍କ ପ୍ରତି ଶତ୍ରୁତା ପ୍ରକାଶ କରିବାକୁ ଆସିଛନ୍ତି । ଉଦ୍ଦେଶ୍ୟ କ୍ଲିଫର୍ଡ଼ଙ୍କଠାରୁ ଲୁପ୍ତ ଧନର ସନ୍ଧାନ ନେବା । ମାତ୍ର ହେପ୍‌ସିବା ଭଲଭାବେ ଚିହ୍ନନ୍ତି ଜର୍ଜଙ୍କୁ । ସେ କୌଣସିମତେ କ୍ଲିଫର୍ଡ଼ଙ୍କ ସହ ତାଙ୍କୁ ଭେଟ କରାଇ ଦେଇନାହାନ୍ତି । ପରେ ବାଧ୍ୟହୋଇ ଜର୍ଜ ଖଳବୁଦ୍ଧି ପ୍ରୟୋଗକରି ଏବଂ ହେପ୍‌ସିବାଙ୍କୁ ଗାଳି-ଗୁଲଜ କରି କ୍ଲିଫର୍ଡ଼ଙ୍କୁ ଜନସାଧାରଣରେ ପାଗଳ କହି ବୁଲିବେ ବୋଲି ଧମକ ଦେଇଛନ୍ତି । ସେଥିପାଇଁ ବାଧ୍ୟହୋଇ ହେପ୍‌ସିବା କ୍ଲିଫର୍ଡ଼ଙ୍କୁ ତାଙ୍କ ସହ ସାକ୍ଷାତ୍ କରାଇବା ଲାଗି କ୍ଲିଫର୍ଡ଼ଙ୍କ କୋଠରୀକୁ ତାଙ୍କୁ ଡାକିବାକୁ ଯାଇଛନ୍ତି । କିନ୍ତୁ ସେ ଫେରିବା ପୂର୍ବରୁ ଜର୍ଜ ଏକାନ୍ତ ଅସ୍ୱାଭାବିକ ଓ ଅସହାୟ ଭାବେ ହୃଦ୍‌ଘାତ କରି ମରି-ଯାଇଛନ୍ତି । ଏହି ଦୁର୍ଦ୍ଦାନ୍ତ, ଅଶୋଭନୀୟ ଚରିତ୍ରଟିର ମୃତ୍ୟୁ ପରେ ଉପନ୍ୟାସର ଗତି ଶିଥିଳ ହୋଇଆସିଛି ଓ ଉପନ୍ୟାସଟି ପରିଣତିରେ (Climax) ପହଞ୍ଚିଛି ଅତି ଅସ୍ୱାଭାବିକ ଭାବେ ।

ହଥର୍ଣ୍ଣଙ୍କ ଚରିତ୍ରଚିତ୍ରଣ ଦୃଷ୍ଟିରୁ ଜର୍ଜଙ୍କ ଚରିତ୍ର ଏକ ସରଳରେଖାରେ ଚିତ୍ରିତ । ଏହାର ଉତ୍‌ଥାନ, ପତନ ବା ଅନୁଶୋଚନା ନାହିଁ । ଜୀବନରେ ସ୍ନେହ, ସୌହାର୍ଦ୍ଦ୍ୟ, ପ୍ରୀତି ଆଦି ମାନବସୁଲଭ ସକଳ ଗୁଣରୁ ବଞ୍ଚିତ ହୋଇ କ୍ଷମତା ଓ ଅର୍ଥର ମୋହରେ ଜର୍ଜ ଅନ୍ଧ ହୋଇଯାଇଛନ୍ତି । ହଥର୍ଣ୍ଣଙ୍କ ଚରିତ୍ରଚିତ୍ରଣରେ ଯେଉଁ ମୃତ୍ୟୁତତ୍ତ୍ୱ ବର୍ଣ୍ଣିତ, ତାହା ଏକାନ୍ତଭାବେ ଅସ୍ୱାଭାବିକ । କର୍ଣ୍ଣେଲ୍, ଜାଫେଥ, ଜର୍ଜ—ସମସ୍ତେ ଏକାଭଳି ମୃତ୍ୟୁ-ବରଣ କରିଛନ୍ତି । ଅବଶ୍ୟ ଏହା ଅବାସ୍ତବ ଓ ଅବାନ୍ତର ହୋଇଛି । ଯଦି ଏହାକୁ ମାଉଲେଙ୍କ ଅଭିଶାପ ବୋଲି ଧରିନିଆଯାଏ, ତେବେ ଉପନ୍ୟାସଟିରେ ବର୍ଣ୍ଣିତ ହୋଇ-ଥିବା—ପିନ୍‌ଚନ୍‌ମାନେ 'ରଗିଲେ ରକ୍ତବାନ୍ତି କରି ମରନ୍ତି' ଘଟଣାର ଏହି ମୃତ୍ୟୁ ଚିତ୍ର

ସହ କୌଣସି ସମ୍ପର୍କ ନାହିଁ ବୋଲି କହିବାକୁ ହେବ । ହୃଅର୍ଣ୍ଣ ତାଙ୍କ ଚରିତ୍ର-ଚିତ୍ରଣରେ ଯେପରି ବାସ୍ତବ ଓ ସଫଳ ହୋଇପାରିଛି ସେହିପରି ଅବାସ୍ତବ ମନେହୋଇଛନ୍ତି ତାଙ୍କର 'ମୃତ୍ୟୁଚିତ୍ର' ବର୍ଣ୍ଣନାରେ । ଅବଶ୍ୟ ତତ୍କାଳୀନ ସମାଜରେ 'ମନୁଷ୍ୟର ଅଭିଶାପରେ ଅକାଳ ମୃତ୍ୟୁ ଘଟେ' ଏଇ ଯେଉଁ ବିଶ୍ୱାସ ଥିଲା, ଏହାକୁ ଆହୁରି ବଦ୍ଧମୂଳ କରିବାପାଇଁ ହୃଅର୍ଣ୍ଣ ଏପ୍ରକାର 'ମୃତ୍ୟୁଚିତ୍ର' ବର୍ଣ୍ଣନାର ଆଶ୍ରୟ ନେଇଛନ୍ତି ବୋଲି କୁହାଯାଇପାରେ ।

ଉପରୋକ୍ତ ଆଲୋଚ୍ୟ ଚରିତ୍ରମାନେ ଉପନ୍ୟାସର କଙ୍କାଳ ଏବଂ ଏମାନଙ୍କୁ ଜୀବନ୍ୟାସ ଦେଇ ଉପନ୍ୟାସର ସୁସଂହତ ଘଟଣାର ପ୍ରବାହମାନତାରେ ସହାୟକ ଚରିତ୍ର, ଯଥା କ୍ଲିଫର୍ଡ ଓ ହୋଲ୍‌ଗ୍ରେଭ୍‌ଙ୍କ ଭଳି ଚରିତ୍ରର ଆବଶ୍ୟକତା ବେଶ୍ ଉପଲବ୍ଧ ।

**କ୍ଲିଫର୍ଡ :**

ପୃଥିବୀରେ ଏକ ଅଭିଶପ୍ତ ଜୀବନ ନେଇ ଜନ୍ମ ହୋଇଥିବା କ୍ଲିଫର୍ଡ ଯୌବନ ସମୟରେ ଜର୍ଜଙ୍କ ଷଡ଼ଯନ୍ତ୍ରର ଶୀକାର ହୋଇ ଯୌବନ ଅତିବାହିତ ହେବାର ପ୍ରାୟ ବହୁବର୍ଷ ପର୍ଯ୍ୟନ୍ତ ଜେଲ୍ ଦଣ୍ଡରେ ଦଣ୍ଡିତ ହୋଇଥିଲେ । ସେ ଅର୍ଥପିପାସୁ ବା କ୍ଷମତାଲିପ୍ସୁ ନଥିଲେ; ବରଂ ସେ ଥିଲେ ସୌନ୍ଦର୍ଯ୍ୟପିପାସୁ । ସେଥିପାଇଁ ସେ ଦୁନିଆର ସମସ୍ତ ସୌନ୍ଦର୍ଯ୍ୟ ପଦାର୍ଥକୁ ଭଲପାଇ ବସିଛନ୍ତି । ଘରକୁ ଫେରିଆସି ସେ ତାଙ୍କର ଦୂରସମ୍ପର୍କୀୟା ଝିଅଟି ଫୋଏବ୍‌କୁ ଏକାନ୍ତ ଆପଣାର କରିଛନ୍ତି । ଏ ଆପଣାର କରିବାର ଇଚ୍ଛା ଜର୍ଜଙ୍କ ପରି ସ୍ୱତନ୍ତ୍ରିତ ନୁହେଁ ବରଂ ଏହା ହେଉଛି ଏକାନ୍ତ ସ୍ନେହ ଓ ଅକୃତ୍ରିମ ସୌନ୍ଦର୍ଯ୍ୟ ଦୃଷ୍ଟିର । ତାଙ୍କ ଭିତରେ ଏକ ନମନୀୟ ପୁରୁଷ ତାଙ୍କୁ ଜଣେ ବଳିଷ୍ଠ ଚରିତ୍ର ଭାବରେ ଆଲୋଚ୍ୟ ଉପନ୍ୟାସରେ ଠିଆକରାଇଛି । ସେ ରକ୍ଷଣଶୀଳ, ଶୋଷଣକାରୀ କର୍ଣ୍ଣେଲଙ୍କ ଫଟୋକୁ ଘୃଣା ଦୃଷ୍ଟିରେ ଦେଖିଛନ୍ତି । ଏହି ଫଟୋ ତାଙ୍କ ଘରେ ଥିବାରୁ ସେ ତାଙ୍କ ଭଉଣୀ ହେପ୍‌ସିବାଙ୍କ ଉପରେ ବିରକ୍ତ ହୋଇଛନ୍ତି ।

ବଗିଚାରେ ଦୀର୍ଘସମୟ ଧରି ସେ ହୋଲ୍‌ଗ୍ରେଭ୍, ଭେନର୍ କକା, ହେପ୍‌ସିବା ଓ ଫୋଏବ୍‌ଙ୍କ ସହ ମଜାରେ ଦିନ କଟାଇଛନ୍ତି । ସେ ଶିଶୁଭଳି ଚପଳ, ତାଙ୍କ ମୁହଁ ଗୋଟିଏ ନମନୀୟ ଶିଶୁର ମୁହଁ ପରି ସରଳ । ବୋଧେ ଏହି ସୁଯୋଗ ନେଇ ଜର୍ଜ ତାଙ୍କ ମଧୁମୟ ଜୀବନକୁ ଜେଲ୍‌ରେ ଅଟକାଇ ନଷ୍ଟ କରିଦେଲେ । ଜେଲ୍‌ରୁ ମୁକ୍ତ ହେବା ପରେ ବି ଜର୍ଜ ତାଙ୍କ ପିଛା ଛାଡ଼ୁନାହାନ୍ତି । ପୁରୁଣା କଥାକୁ ମନେପକାଇ କ୍ଲିଫର୍ଡଙ୍କଠାରୁ ସେ କଥା ଆଦାୟ କରି ଜାଫେରି କକାଙ୍କ ଗୁପ୍ତଧନ ପାଇବାକୁ ବ୍ୟସ୍ତ ହୋଇପଡ଼ିଛନ୍ତି । ସେଥିପାଇଁ ସେ କ୍ଲିଫର୍ଡଙ୍କ ଶୁଭେଚ୍ଛୁ ଭାବେ ହେପ୍‌ସିବାକୁ କହିଛନ୍ତି ତାଙ୍କ ସହ ସାକ୍ଷାତ୍ କରାଇଦେବାକୁ । ମାତ୍ର ହେପ୍‌ସିବା ମନାକରି ଦେବାପରେ ଜର୍ଜ ସାଙ୍ଘାତିକ ହୋଇଉଠିଛନ୍ତି ଓ କ୍ଲିଫର୍ଡଙ୍କୁ ପାଗଳ ବୋଲି କହିବୁଲିବେ ବୋଲି ଧମକ ଦେଇଛନ୍ତି ।

ହେପ୍‌ସିବା ବାଧ୍ୟ ହୋଇଛନ୍ତି କ୍ଲିଫର୍ଡ଼ଙ୍କୁ ଡାକଦେବାକୁ । ମାତ୍ର କ୍ଲିଫର୍ଡ଼ ଏହି ଘଟଣା ଘଟୁଥିବା ସମୟରେ ଘରର ଅନ୍ୟପଟ ଦେଇ ବାହାରକୁ ଚାଲିଯାଇଛନ୍ତି, ଏଥିରେ ଅସହାୟ ହୋଇ ହେପ୍‌ସିବା ଯେତେବେଳେ ଜର୍ଜଙ୍କ ସାହାଯ୍ୟ ଚାହିଁଛନ୍ତି, ସେତେବେଳେ କ୍ଲିଫର୍ଡ଼ ଆସି ପହଞ୍ଚିଯାଇଛନ୍ତି ଓ ସେ ଘର ଛାଡ଼ି ଅନ୍ୟତ୍ର ଚାଲିଯିବାକୁ ହେପ୍‌ସିବାଙ୍କୁ ବ୍ୟସ୍ତ କରି-ପକାଇଛନ୍ତି । ବାହାରେ—ସେତେବେଳେ ଭୀଷଣ ବର୍ଷା । ଦୁହେଁ ସେହି ବର୍ଷଣମୁଖରେ ଦିନରେ ଟ୍ରେନ୍ ଚଢ଼ି ଏକ ଅନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ଚାଲିଛନ୍ତି । ଟ୍ରେନ୍ ଭିତରେ ଜଣେ ବୃଦ୍ଧ ଭଦ୍ରବ୍ୟକ୍ତିଙ୍କ ସହ କ୍ଲିଫର୍ଡ଼ଙ୍କର କଥୋପକଥନ କ୍ଲିଫର୍ଡ଼ଙ୍କୁ ବେଶ୍ ଭାବପ୍ରବଣ କରି-ଦେଇଛି । ଏଇଠି ସେ ପ୍ରଥମ ଥର ପାଇଁ ସମାଜରୁ ନ୍ୟାଯ୍ୟ ଦାବିର ପ୍ରଶ୍ନ ଉଠାଇଛନ୍ତି । ଜୀବନରେ ପ୍ରଥମଥର ପାଇଁ ସେ ଏଇଠି ଆପଣାର ସ୍ୱରୋଦ୍‌ଘାଟନ କରିଛନ୍ତି । କ୍ଲିଫର୍ଡ଼ ତାଙ୍କ ଜୀବନରେ ବୋଧେ କେବେ କାହା ପାଖରେ ଏପରି କଥାବାର୍ତ୍ତା କରିନଥିଲେ କିମ୍ବା ତାଙ୍କୁ କିଛି କହିବା ପାଇଁ ବୋଧେ ଅତୀତରେ ସୁଯୋଗ ମିଳିନଥିଲା ।

ଅପରପକ୍ଷରେ ଜଜ୍ ଏକାନ୍ତ ଅସହାୟ ଭାବେ ସେଦିନ ସେହି House of the Seven Gablesରେ ମୃତ୍ୟୁବରଣ କରିଥିଲେ । ହେପ୍‌ସିବା ଓ କ୍ଲିଫର୍ଡ଼ ଏକ ଅନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ଟ୍ରେନ୍‌ଯାତ୍ରା କରିଥିବାରୁ ବାଧ୍ୟ ହୋଇ ଏକ ଅଜଣା ସ୍ଥାନରେ ସେମାନେ ଓହ୍ଲାଇଲେ ଓ ବହୁ ଅସୁବିଧାର ସମ୍ମୁଖୀନ ହୋଇ ସେମାନେ ତା'ପରଦିନ ପୁଣି ଘରକୁ ଫେରିଆସିଛନ୍ତି । ଏହି ସମୟରେ ନିଜ ମା' ପାଖକୁ ଯାଇଥିବା ଫୋଏବ୍ ପୁଣି House of the Seven Gablesକୁ ଫେରିଆସିଛି । ଫୋଏବ୍ ଓ ହୋଲ୍-ଗ୍ରେଭ୍ ଦୁହେଁ ମିଶି ପ୍ରମାଣିତ କରିଦେଇଛନ୍ତି ଯେ, କ୍ଲିଫର୍ଡ କ ହେପ୍‌ସିବା କେହି ଜର୍ଜଙ୍କୁ ମାରିନାହାନ୍ତି, ଏପରିକି ବୃଦ୍ଧ ଜାଫେରି କକାଙ୍କ ମୃତ୍ୟୁରେ କ୍ଲିଫର୍ଡ ମଧ୍ୟ କିପରି ନିର୍ଦ୍ଦୋଷ ତାହା ହୋଲ୍‌ଗ୍ରେଭ୍ ପ୍ରମାଣିତ କରିଦେଇଛନ୍ତି ।

ଜଜ୍‌ଙ୍କ ମୃତ୍ୟୁପରେ କ୍ଲିଫର୍ଡ଼ ହୋଇଛନ୍ତି ସମ୍ପୂର୍ଣ୍ଣ ବିପଦମୁକ୍ତ । ଜୀବନରେ ବୋଧେ ଏତେବେଳେ ·ସେ ପ୍ରଥମଥର ପାଇଁ ମୁକ୍ତିର ସ୍ୱାଦ ଅନୁଭବ କରିଛନ୍ତି । 'The House of the Seven Gables'କୁ ଛାଡ଼ି ସେ—ଫୋଏବ୍, ହୋଲ୍‌ଗ୍ରେଭ୍ ହେପ୍‌ସିବା ଓ ଭେନର୍ କକାଙ୍କ ସହ ଜଜ୍ ରହୁଥିବା ନୂତନ ନିର୍ମିତ ଗୃହକୁ ଚାଲି-ଯାଇଛନ୍ତି ।

ଏହି ଚରିତ୍ରଟି ଉପନ୍ୟାସର କେନ୍ଦ୍ରବିନ୍ଦୁ । ଏ ·ଚରିତ୍ରଟି ଯଦି ଆବଶ୍ୟକତାନୁଯାୟୀ ନ'ଆନ୍ତା, ତେବେ ବୋଧେ ଜର୍ଜଙ୍କ ଚରିତ୍ରକୁ ଏତେଟା କୁଟିଳ, ଜଟିଳ କରି ଚିତ୍ରିତ କରିବା ଔପନ୍ୟାସିକଙ୍କ ପକ୍ଷେ ସମ୍ଭବ ହୋଇନଥାନ୍ତା । ସେଥିପାଇଁ ଉପନ୍ୟାସର ଗତି-ଶୀଳତା ଓ ମୁଖ୍ୟଚରିତ୍ରର ଏକ ମୁଖ୍ୟ ସହାୟକ ଚରିତ୍ର ଭାବେ କ୍ଲିଫର୍ଡ ଚରିତ୍ରଟି ବେଶ୍ ବଳିଷ୍ଠ ଓ ସଫଳ ହୋଇପାରିଛି ।

ହୋଲଗ୍ରେଭ୍ :

ମାଥିଉ ମାଉଲେ ଯିଏକି ଉପନ୍ୟାସଟିର ଅନ୍ୟତମ ମୁଖ୍ୟ ଚରିତ୍ର ଓ ସକଳ ଘଟଣାର ମୂଳାଧାର, ତାଙ୍କରି ଉତ୍ତରଦାୟାଦ ଭାବେ ହୋଲ୍‌ଗ୍ରେଭ୍ ପରିଚିତ । କିନ୍ତୁ ସେ ଯାଏଁ ଧରି 'House of the Seven Gables'ରେ ଭଡ଼ାରେ ବସବାସ କରୁଥିଲେହେଁ ନିଜେ ଜଣେ ମାଉଲେ ବଂଶଜ ଏକଥା ସେ କାହାରିକୁ ଜାଣିବାକୁ ଦେଇ-ନଥିଲେ । ଉପନ୍ୟାସଟିର ଶେଷରେ ନିଜ ଚରିତ୍ରର ବିଶେଷତ୍ୱ ଅନ୍ୟମାନଙ୍କୁ ଜାଣିବାକୁ ଦେବା ପରେ ନିଜକୁ ଜଣେ ମାଉଲେ ବଂଶଜ ବୋଲି ସମସ୍ତଙ୍କ ଆଗରେ ନିଜର ବହୁଦିନର ଗୋପନୀୟ ରୂପକୁ ସେ ପ୍ରକାଶ କରିଅଛନ୍ତି ।

ଅନ୍ୟ ମାଉଲେଙ୍କ ପରି ସେ କେବେ ବି ପ୍ରତିଶୋଧପରାୟଣ ହୋଇପାରିନାହାନ୍ତି । କିନ୍ତୁ ପିନ୍‌ଚନ୍ ପରିବାର ଉପରେ ତାଙ୍କର ଅତ୍ୟନ୍ତ ଭାବେ ଅଭିମାନ ଓ ଗ୍ଲାନି ରହିଥିଲା । ତାଙ୍କର ଏହି ଅଭିମାନ ଓ ଗ୍ଲାନିର ପରିଚାୟକ ହେଉଛି ତାଙ୍କ ଲିଖିତ କଳ୍ପିତ ଗଳ୍ପ ଆଲିସେ ପିନ୍‌ଚନ୍ ଏହି ଗଳ୍ପକୁ କୌଣସି ପତ୍ରିକାକୁ ଦେବା ପୂର୍ବରୁ ବଗିଚାରେ ସେ ଏହାକୁ ପ୍ରଥମେ ଫୋଏବ୍‌କୁ ଶୁଣାଇଥିଲେ । 'The House of the Seven Gables'ରେ ଜଣେ ଭଡ଼ାଟିଆ ଭାବେ ସେ ରହିଥିଲେ ବି ଘରଟିକୁ ନିଜର ଭାବି ଏହାର ବଗିଚାରେ ସେ ମନପ୍ରାଣ ଦେଇ କାମ କରନ୍ତି । ହେପ୍‌ସିବା ଦୋକାନ କଲାବେଳେ ତାଙ୍କ ଅସହାୟ ଅବସ୍ଥାରେ ସେ ତାଙ୍କୁ ଆଶ୍ୱାସନା ଦେଇଛନ୍ତି । ତାଙ୍କର ଚିନ୍ତାଧାରା ଥିଲା ଜଣେ ଦାର୍ଶନିକର ଚିନ୍ତାଧାରା ପରି । ତାଙ୍କୁ ମାତ୍ର ବାଇଶ ବର୍ଷ ହୋଇଥିଲେ ବି ସେ ତାଙ୍କ ଜୀବନରେ ବହୁ ଅନୁଭୂତି ଓ ବହୁ ଅଭିଜ୍ଞତା ଅର୍ଜନ କରିଥିଲେ । ଖବରକାଗଜରେ ଲେଖାଲେଖି କରିବା, ପିଲାଙ୍କୁ ପାଠ ପଢ଼ାଇବା, ଏବଂ ଶେଷରେ ନିଜକୁ ଜଣେ ଫଟୋ-ଗ୍ରାଫର କରି ଜୀବିକାର୍ଜନ କରିବା ପରି ନାନା ଘଟଣା ସହ ସେ ଜଡ଼ିତ ଥିଲେ । ଏସବୁ ସତ୍ତ୍ୱେ ତାଙ୍କର ଉଦ୍ଦେଶ୍ୟ ଯେପରି ଥିଲା—"ସେ House of the Seven Gables'ରେ ରହିଥିଲେ ଏହାର ଐତିହ୍ୟକୁ ଉଦ୍‌ଘାଟନ କରିବା ପାଇଁ ।" ଫୋଏବ୍ ସହ ତାଙ୍କର ବେଶ୍ ଘନିଷ୍ଠତା ଜମିଯିବା ପରେ ସେ ଏହି କଥାକୁ ତାଙ୍କ ଆଗରେ ପ୍ରକାଶ କରିଛନ୍ତି ।

ହେପ୍‌ସିବା ଓ କ୍ଲିଫର୍ଡ଼ଙ୍କୁ ସେ ଖୁବ୍ ଭଲ ପାଉଛନ୍ତି । ନିଜ ବଂଶର ଅକାଳ ଅବକ୍ଷୟତା ସମ୍ପର୍କରେ ତାଙ୍କର ତିଳେମାତ୍ର ଅନୁଶୋଚନା ନାହିଁ; ବରଂ ପିନ୍‌ଚନ୍ ପରିବାରର ଅସହାୟତାରେ ସେ ଦୁଃଖିତ । ସେ କ୍ଲିଫର୍ଡ଼, ଭେନର୍‌କିକା ଓ ହେପ୍‌ସିବାଙ୍କୁ ବହୁ କ୍ଷେତ୍ରରେ ସାହାଯ୍ୟ କରିଛନ୍ତି । ଉପନ୍ୟାସର ଶେଷରେ 'କ୍ଲିଫର୍ଡ଼ ଯେ ନିର୍ଦ୍ଦୋଷ' —ଏହି କଥା ହୋଲଗ୍ରେଭ୍‌ଙ୍କ ଚରିତ୍ର ମାଧ୍ୟମରେ ଔପନ୍ୟାସିକ ହଥର୍ଣ୍ଣ ପ୍ରମାଣିତ କରାଇଛନ୍ତି ।

ହୋଲ୍‌ଗ୍ରେଭ୍ ଭଲପାଇବସିଛନ୍ତି ଫୋଏବ୍‌କୁ । ମାତ୍ର ଫୋଏବ୍ ସେଠାକୁ ଆସିବାର ପ୍ରଥମ ପର୍ଯ୍ୟାୟରେ ତାଙ୍କର ତାହା ପ୍ରତି ଥିବା ପ୍ରେମିକସୁଲଭ ମନୋଭାବ ପ୍ରକାଶ ପାଇନାହିଁ । ବରଂ ତାଙ୍କ ଦର୍ଶନ ଦୃଷ୍ଟିରେ ଫୋଏବ୍ ତାଙ୍କୁ ଜଣେ କଠୋର ତଥା ରସହୀନ ପ୍ରକୃତିର ବ୍ୟକ୍ତି ବୋଲି ଧରିନେଇଛନ୍ତି । କିନ୍ତୁ ଫୋଏବ୍ ଗାଁ'ରୁ ଫେରି-ଆସିବାର ଦ୍ୱିତୀୟ ପର୍ଯ୍ୟାୟରେ ହୋଲ୍‌ଗ୍ରେଭ୍ ଫୋଏବ୍‌କୁ ତାଙ୍କ ମନକଥା ଖୋଲି କହିଛନ୍ତି ଓ ପରିଣତିରେ ସେ ଫୋଏବ୍‌କୁ ଏକାନ୍ତ ଆପଣାର କରିନେଇଛନ୍ତି । କିନ୍ତୁ ବିବାହ ପୂର୍ବରୁ ସେ ପ୍ରଥମେ ନିଜର ବଂଶ ପରିଚୟ ଫୋଏବ୍ ଆଗରେ ଉପସ୍ଥାପିତ କରିଛନ୍ତି । କିନ୍ତୁ ଏଥିରେ ଫୋଏବ୍‌ର କୌଣସି ପ୍ରତିକ୍ରିୟା ପ୍ରକାଶ ପାଇନାହିଁ କି ତା' ଭଲ ପାଇବା ବ୍ୟାହତ ହୋଇନାହିଁ । ହୋଲ୍‌ଗ୍ରେଭ୍‌ଙ୍କୁ ମାଉଲେ ବଂଶର ଜଣେ ଯୁବକ ବୋଲି ଜାଣିବା ପରେ ପିନ୍‌ଚନ୍ ପରିବାରର କନ୍ୟା ଫୋଏବ୍ ସହ ତାଙ୍କର ବିବାହ ପାଇଁ ମଧ୍ୟ କେହି ଅସମ୍ମତ ହୋଇନାହାନ୍ତି । କ୍ଲିଫର୍ଡ଼, ହେପ୍‌ସିବା ବରଂ ଏଥିରେ ଆନନ୍ଦିତ ହୋଇଛନ୍ତି । ପିନ୍‌ଚନ୍ ପରିବାରର ସମସ୍ତ ଗୁପ୍ତ ନଥିପତ୍ର ଓ କଥାବାର୍ତ୍ତାକୁ ପଦାରେ ପକାଇ ପିନ୍‌ଚନ୍ ପରିବାରକୁ ସଂଶୋଧିତ ତଥା ଏକ ନୂତନ ସଂସ୍କରଣ କରିବାରେ ହୋଲ୍‌ଗ୍ରେଭ୍‌ଙ୍କ ଭୂମିକାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ହୋଲ୍‌ଗ୍ରେଭ୍ ଚରିତ୍ରଟି ଉପନ୍ୟାସର ଆରମ୍ଭରୁ ହେପ୍‌ସିବାଙ୍କ କାର୍ଯ୍ୟକଳାପ ଓ 'House of the Seven Gables' ଘରଟି ସହ ଏକାନ୍ତ ନିବିଡ଼ ହୋଇଯାଇଥିବା ପରି ଜଣାଯାଏ । ଏହି ଚରିତ୍ରଟି ପାଇଁ ପାଠକ କେତେକ ଅସ୍ୱାଭାବିକ ଏବଂ ଗୁପ୍ତ ଘଟଣା, ଯଥା—ଜାଫେରି କକାଙ୍କ ମୃତ୍ୟୁ ରହସ୍ୟ, ମାଇନେ ରାଜ୍ୟରୁ କିଛି ଜମି ପାଇବା ପାଇଁ ଖୋଜା ଚାଲିଥିବା କାଗଜପତ୍ରକୁ ଜାଣିବାକୁ ପାଇଛନ୍ତି ।

ହଥର୍ଣ୍ଣ ଆପଣାର ବୌଦ୍ଧିକ ଜ୍ଞାନର ପରିଚୟ ଦେବାକୁ ଯାଇଁ ବହୁ ସତର୍କତାର ସହିତ ଏହି ସହାୟକ ଚରିତ୍ରଟିକୁ ସୃଷ୍ଟି କରିଅଛନ୍ତି । ବାସ୍ତବିକ ଏପରି ଚରିତ୍ରର ଆବଶ୍ୟକତା ଉପନ୍ୟାସର ପ୍ରତ୍ୟେକ କ୍ଷେତ୍ରରେ ଉପଲବ୍ଧ ଓ ସ୍ୱାଗତଯୋଗ୍ୟ ।

ଆଲୋଚ୍ୟ ଚରିତ୍ରଗୁଡ଼ିକ ବ୍ୟତୀତ ଭେନର୍‌କକା, ନେଡ୍‌ଙ୍କ ପରି ଦୁଇଟି ଚରିତ୍ରର ଭୂମିକା ଏହି ଉପନ୍ୟାସରେ ବେଶ୍ ଚିତ୍ତାକର୍ଷକ । ଉପନ୍ୟାସଟିରେ ବର୍ଣ୍ଣିତ 'ଆଲିସ୍‌ହେ-ପିନ୍‌ଚନ୍' କାହାଣୀଟିରେ ଥିବା ୩ଟି ଚରିତ୍ର ଉପନ୍ୟାସଟିର କାହାଣୀ ପାଇଁ କେତେକ ଖୋରାକ ଯୋଗାଇଥିବା ପରି ମନେହୁଏ । ଗର୍‌ଭେସ୍‌ସ୍ ପିନ୍‌ଚନ୍ ଯିଏ କି ଖଣ୍ଡିଏ ମୂଲ୍ୟବାନ୍ ଅଥଚ ଗୁପ୍ତ କାଗଜ ପାଇଁ ନିଜ ଝିଅ ଆଲିସ୍‌ଙ୍କୁ ଥମାସ୍ ମାଉଲେଙ୍କ ପରି ଜଣେ ନିଷ୍ଠୁର ଯାଦୁକର ହାତରେ କ୍ରୀଡ଼ନକ ହେବାକୁ ଛାଡ଼ିଦେଇଥିଲେ—ଏପରି ଏକ ଚରିତ୍ର ସୃଷ୍ଟି କରି ପିନ୍‌ଚନ୍ ପରିବାରର ଅର୍ଥଲିପ୍‌ସୁ ଓ ଭୂମିଲିପ୍‌ସା ମନୋଭାବକୁ ଔପନ୍ୟାସିକ ଚିତ୍ରିତ କରିଛନ୍ତି ।

ଅତଏବ ସଫଳ ଚରିତ୍ର ସୃଷ୍ଟିରେ ହଥର୍ଣ୍ଣଙ୍କ 'The House of the Seven Gables' ଉପନ୍ୟାସ ହେଉଛି ଏକ ଅନବଦ୍ୟ ଅବଦାନ । ଆମେରିକୀୟ ଉପନ୍ୟାସ ଜଗତରେ ଏହାର ମୂଲ୍ୟବୋଧ ନଜର ବଳିଷ୍ଠ ଚେତନା ଓ ଚରିତ୍ରର ଉପସ୍ଥାପନା ପାଇଁ ଏକ ସ୍ୱତନ୍ତ୍ର ଆସନ ଦାବି କରିଛି । ଯେଉଁ ଉଦ୍ଦେଶ୍ୟରେ ହଥର୍ଣ୍ଣ ଏହି ଉପନ୍ୟାସଟିର ରଚନା କରିଥିଲେ, ତାକୁ ସଫଳ ରୂପ ପ୍ରଦାନରେ ସେସବୁ ଏହି ଉପନ୍ୟାସର ସମସ୍ତ ଚରିତ୍ର ବ୍ୟଗ୍ର ହୋଇଉଠିଛନ୍ତି । ଏମାନେ ସମସ୍ତେ ଜୀବନ୍ତ ଓ ପ୍ରାଣସ୍ପର୍ଶୀ ମନେହୁଅନ୍ତି । ବୋଧେ ଏଥିପାଇଁ ସଫଳ ଚରିତ୍ର ସୃଷ୍ଟିରେ ହଥର୍ଣ୍ଣ ଊନବିଂଶ ଶତାବ୍ଦୀର ଆମେରିକୀୟ ଉପନ୍ୟାସ ଜଗତରେ ଅଦ୍ୱିତୀୟ ଓ ଅବିସ୍ମରଣୀୟ ।

ଆମେରିକୀୟ ଉପନ୍ୟାସ ଜଗତରେ ହଥର୍ଣ୍ଣ ଯେପରି ଥିଲେ ଚରିତ୍ର ଚିତ୍ରଣ କ୍ଷେତ୍ରରେ କୁଶଳୀ ଶିଳ୍ପୀ, ସେହିପରି ଆମ ଓଡ଼ିଆ ଉପନ୍ୟାସ ଜଗତରେ ଚରିତ୍ର ଚିତ୍ରଣରେ ଦକ୍ଷ କଳାକାର ହେଉଛନ୍ତି ଔପନ୍ୟାସିକ ଫକୀରମୋହନ । ହଥର୍ଣ୍ଣ ଯେପରି ସଫଳ ଚରିତ୍ର ଚିତ୍ରଣରେ ତାଙ୍କ ଉପନ୍ୟାସ 'The House of the Seven Gables'କୁ ବାସ୍ତବ ତଥା ମହିମାମଣ୍ଡିତ କରିପାରିଛନ୍ତି, ଔପନ୍ୟାସିକ ଫକୀରମୋହନ ମଧ୍ୟ ଅନୁରୂପ ଭାବେ 'ଛ' ମାଣ ଆଠଗୁଣ୍ଠ' ଉପନ୍ୟାସରେ ଚରିତ୍ର ଚିତ୍ରଣର ମନୋଜ୍ଞ ବିଳାସ ଦର୍ଶାଇ ପାରିଛନ୍ତି । ଏହି ପରିପ୍ରେକ୍ଷୀରେ 'ଛ' ମାଣ ଆଠଗୁଣ୍ଠ' ଉପନ୍ୟାସର ଚରିତ୍ର ବିଚାର କରାଯାଇପାରେ ।

**(ଖ) ଫକୀରମୋହନଙ୍କ 'ଛ' ମାଣ ଆଠଗୁଣ୍ଠ' ଉପନ୍ୟାସର ଚରିତ୍ର ବିଚାର :**

"ଫକୀରମୋହନଙ୍କ ଉପନ୍ୟାସଗୁଡ଼ିକୁ ଚରିତ୍ର ଚିତ୍ରଶାଳା କହିଲେ ଅତ୍ୟୁକ୍ତି ହେବନାହିଁ । ଚରିତ୍ର ଚିତ୍ରଣ ହିଁ ଥିଲା ଔପନ୍ୟାସିକ ଫକୀରମୋହନଙ୍କର ଏକମାତ୍ର ଧ୍ୟାନ ।" (୨୮) ତେଣୁ ତାଙ୍କର କଥାବସ୍ତୁ ଚରିତ୍ର ଚିତ୍ରଣ ତୁଳନାରେ ସମସ୍ତେ ସମସ୍ତେ ଦୁର୍ବଳବୋଧ ହୋଇଛି । ସେଥିପାଇଁ ତାଙ୍କ ଉପନ୍ୟାସର ଘଟଣା, ଚରିତ୍ରମାନଙ୍କର କଳରୋଳରେ ମୁଖରିତ । ମାତ୍ର ଘଟଣା ପ୍ରବାହରେ ଚରିତ୍ରମାନେ ପରିପୁଷ୍ଟ ନୁହନ୍ତି, ବରଂ ସେମାନେ ନାନା ଦିଗରୁ କାହାଣୀକୁ ନିୟନ୍ତ୍ରିତ କରିଅଛନ୍ତି । ଫକୀରମୋହନଙ୍କର ଏହିସବୁ ଚରିତ୍ରମାନେ ବାସ୍ତବବାଦୀ ହୋଇଥିବାରୁ ଜୀବନ୍ତ ରୂପେ ପ୍ରତିଭାତ ହୁଅନ୍ତି । ଫଳରେ ଫକୀରମୋହନଙ୍କ ଉପନ୍ୟାସ ଚଳଚ୍ଚିତ୍ର ବା ନାଟକ ପରି ପାଠକର ମାନସପଟରେ ପ୍ରତିଭାତ ହୋଇଥାଏ ।

---

(୨୮) ଫକୀରମୋହନ ସମୀକ୍ଷା, ପୃ-୫୭

ଚରିତ୍ର ସୃଷ୍ଟିରେ ଫକୀରମୋହନଙ୍କ ନୂତନ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ । ଫକୀରମୋହନଙ୍କ ପୂର୍ବରୁ ଯଦିଓ ଓଡ଼ିଆ ସାହିତ୍ୟରେ ପ୍ରଚୁର ଉପନ୍ୟାସ ସୃଷ୍ଟି ସମ୍ଭବ ହୋଇନଥିଲା, ତଥାପି କାବ୍ୟିକତା ଏବଂ ଅଳଙ୍କାରବହୁଳ ଗଦ୍ୟ, ଉପନ୍ୟାସ ରଚନାରେ ସମ୍ଭ୍ରାନ୍ତ ବଂଶୀୟ, କୁଳୀନ ଚରିତ୍ରଗଣ ସଂଯୋଜିତ ହୋଇଥିଲେ । ଫକୀରମୋହନ; କିନ୍ତୁ ସମାଜର ଅବହେଳିତ, ସାଧାରଣ, ଦରିଦ୍ର ପରିବାରର ଚରିତ୍ରମାନଙ୍କୁ ବହୁ ସଂଖ୍ୟାରେ ସଂଗ୍ରହ କରି ଉପନ୍ୟାସ ରଚନାରେ ଏକ କ୍ରାନ୍ତିକାରୀ ପଦକ୍ଷେପ ନେଲେ । ଅବଶ୍ୟ ଏଥିପାଇଁ ଅନେକାଂଶରେ ଫକୀରମୋହନଙ୍କ କାଳ (ସମୟ)ହିଁ ଦାୟୀ । ଫକୀରମୋହନଙ୍କ ସାହିତ୍ୟ ସାଧନାର ସମୟ ଓଡ଼ିଶା ଇତିହାସରେ ଏକ କ୍ରାନ୍ତିକାରୀ ପର୍ଯ୍ୟାୟ । ଏ କାଳରେ ଓଡ଼ିଶା ପରାଧୀନ । ଓଡ଼ିଶାର ପ୍ରଶାସନିକ ଦାୟିତ୍ୱ ବିଦେଶୀମାନଙ୍କ ହାତରେ । ଅପର ପକ୍ଷରେ ପଡ଼ୋଶୀ ବଙ୍ଗଭାଷୀମାନଙ୍କର ଓଡ଼ିଆ ଭାଷାକୁ ଲୋପ କରିବାର ହୀନ ଚକ୍ରାନ୍ତ ଚାଲିଥାଏ । ଅଧିକାଂଶ ଓଡ଼ିଆମାନେ ସେତେବେଳକୁ ମଧ୍ୟ ନିରକ୍ଷର । ଏଭଳି ଏକ ସଙ୍କଟଜନକ ମୁହୂର୍ତ୍ତରେ ଫକୀରମୋହନ ଉପନ୍ୟାସ ରଚନାରେ ମନୋନିବେଶ କରିଥିଲେ ଏବଂ ତାଙ୍କ ଦୃଷ୍ଟିରେ ଯେଉଁସବୁ ଚରିତ୍ର ଧରାପଡ଼ିଥିଲେ, ସେ ତାଙ୍କୁ ସରଳ, ନିରାଡ଼ମ୍ବର ଭାବରେ ଚିତ୍ରିତ କରିଯାଇଛନ୍ତି ତାଙ୍କ ଉପନ୍ୟାସରେ ।

ଚରିତ୍ର ଚିତ୍ରଣ ଦୃଷ୍ଟିରୁ ଔପନ୍ୟାସିକ ଫକୀରମୋହନଙ୍କୁ ଅଦ୍ୟାବଧି ଅତିକ୍ରମ କରିପାରିବାର କଳା କୌଶଳ କୌଣସି ଓଡ଼ିଆ ଔପନ୍ୟାସିକଙ୍କ ଉପନ୍ୟାସରେ ପରିଦୃଷ୍ଟ ହୁଏନାହିଁ । ଗଣଚରିତ୍ର ପରିବେଷଣ ମାଧ୍ୟମରେ ଦେଶର ସାମ୍ୟବାଦୀ ଚିନ୍ତାର ଉଦ୍‌ବର୍ତ୍ତନ ବା ସମାଜବାଦ ଚେତନାର ପରିପୋଷଣ ଫକୀରମୋହନଙ୍କୁ ଯୁଗଯୁଗ ଧରି ଅମର କରି ରଖିଥିବା ଫକୀରମୋହନ ଥିଲେ ତତ୍କାଳୀନ ଓଡ଼ିଶାର ଜଣେ ଉଚ୍ଚପଦସ୍ଥ କର୍ମଚାରୀ । କାର୍ଯ୍ୟୋପଲକ୍ଷେ ଓଡ଼ିଶାର ବିଭିନ୍ନ ଅଞ୍ଚଳ ତାଙ୍କୁ ପରିକ୍ରମା କରିବାକୁ ପଡ଼ିଛି ଏବଂ ବିଭିନ୍ନ କ୍ଷେତ୍ରରେ ପ୍ରଶାସନିକ ଜଟିଳ ସମସ୍ୟାମାନଙ୍କର ସମାଧାନ ନିମିତ୍ତ ସେ ଲୋକମାନଙ୍କ ନିକଟରେ ବୁଦ୍ଧିବୃତ୍ତିର ବିଚକ୍ଷଣତା, କୌଶଳ ଓ ଧୂର୍ତ୍ତତା ପ୍ରଦର୍ଶନ କରିଛନ୍ତି । ଏହି ଅବସରରେ ଅଦୃଷ୍ଟ-ଲୋକଚରିତ୍ରର ବିଭିନ୍ନ ଲୁକ୍‌କାୟିତ ଗୁଣାବଳୀ ତାଙ୍କ ନିକଟରେ ଆତ୍ମପ୍ରକାଶ କରିଛି । ଫଳରେ ଫକୀରମୋହନଙ୍କ ଚରିତ୍ର ଚିତ୍ରଣ ପାଇଁ ସେମାନେ ଯୋଗାଇଛନ୍ତି ପ୍ରଚୁର ଉପାଦାନ ।

ନାରୀ ଓ ପୁରୁଷ ଉଭୟ ସମ୍ପ୍ରଦାୟର ଚରିତ୍ର ଫକୀରମୋହନଙ୍କ ଲେଖନୀରେ ମନୋଜ୍ଞ ଭାବେ ଚିତ୍ରିତ ହୋଇଛି । ପୁରୁଷ ଚରିତ୍ର ତୁଳନାରେ ନାରୀଚରିତ୍ରର ଯଥାର୍ଥ ଚିତ୍ରଣ ଫକୀରମୋହନଙ୍କର ବୈଶିଷ୍ଟ୍ୟ । ଜଣେ ପୁରୁଷ ଲେଖକ ଭାବରେ ନାରୀଚରିତ୍ରର ସଫଳ ଅଧ୍ୟୟନ ଓ ଜୀବନ୍ତ ରୂପାୟନରେ ତାଙ୍କୁ ଅପ୍ରତିଦ୍ୱନ୍ଦ୍ୱୀ କଳାକାର ଭାବେ ଅନାୟାସରେ ଗଣାଯାଇପାରେ । ତାଙ୍କ ଲେଖନୀର ଅନ୍ୟଏକ ବିଶେଷତ୍ୱ ହେଉଛି, ସାଧୁ

ଚରିତ୍ର ଏବଂ ଖଳଚରିତ୍ର ପରିବେଷଣରେ ସମଦୃଷ୍ଟି ଭଙ୍ଗୀର ପରିପ୍ରକାଶ । ସାଧୁଚରିତ୍ର ଯେପରି ଚାରିତ୍ରିକ ନିର୍ମଳତା, ନିଷ୍ଠାପରତା, ଶାନ୍ତ ତଥା ଆଦର୍ଶରେ ପରିପୁଷ୍ଟ, ଖଳ ଚରିତ୍ର ସେହିପରି କୁ-କର୍ମ, ଅସାଧୁତା, ଅସାମାଜିକତାର ସଂମିଶ୍ରଣ । ଅର୍ଥାତ୍ ଫକୀରମୋହନଙ୍କ ବର୍ଣ୍ଣିତ ସାଧୁ ଚରିତ୍ର ପ୍ରତି ପାଠକ ଯେପରି ସହାନୁଭୂତିସମ୍ପନ୍ନ ଏବଂ ପ୍ରଶଂସାମୁଖର ହୋଇପଡ଼େ, ଖଳ ଚରିତ୍ର ଅଧ୍ୟୟନରେ ସେହିପରି ପାଠକ ହୃଦୟରେ କ୍ରୋଧ ଓ ଅସହିଷ୍ଣୁତା, ଘୃଣା ଭରିଉଠେ । ଏ ସମସ୍ତ ସୃଷ୍ଟିରେ ଫକୀରମୋହନଙ୍କ କଳ୍ପନାବିଳାସ ବା ଅତିରଞ୍ଜନର ପରିସର ଖୁବ୍ ସୀମିତ ବରଂ ବାସ୍ତବତାର ସୀମା ଖୁବ୍ ବ୍ୟାପକ ।

ଆଦର୍ଶ ସୃଷ୍ଟି ପାଇଁ ଫକୀରମୋହନ କଳ୍ପନାବିଳାସୀ ନୁହନ୍ତି; ବରଂ ସେ ବାସ୍ତବବାଦୀ-ପ୍ରତ୍ୟକ୍ଷ ଦ୍ରଷ୍ଟା । ଫଳରେ ତାଙ୍କ ଉପନ୍ୟାସ ସଂସାରରେ ଚରିତ୍ରମାନଙ୍କ ନିକଟରେ ଅତି ବାସ୍ତବତା ବା ଅବାସ୍ତବତାର ସ୍ପର୍ଶ ନାହିଁ । ତାଙ୍କ ଚରିତ୍ର ସୃଷ୍ଟିରେ ବାସ୍ତବତା ଏବଂ ସାର୍ଥକତାର ଅନ୍ୟଏକ ଦିଗ ହେଉଛି, ଚରିତ୍ରଗୁଡ଼ିକ ଭାଗ୍ୟବାଦୀ ନୁହନ୍ତି, ସବୁଗୁଡ଼ିକ ପ୍ରାୟ ସ୍ୱ ସ୍ୱ କର୍ମଫଳର ପରିଣତି ଭୋଗକାରୀ । ଭିନ୍ନ ଅର୍ଥରେ କହିବାକୁ ଗଲେ ଭାଗ୍ୟ ବିପର୍ଯ୍ୟସ୍ତ, ଦୈବୀ ଅଭିଶପ୍ତ, ନିଷ୍ପ୍ରଭ ବା ଯନ୍ତ୍ରଚାଳିତ ଚରିତ୍ରମାନଙ୍କୁ ନେଇ ଫକୀରମୋହନଙ୍କ ଉପନ୍ୟାସଜଗତ ପରିକଳ୍ପିତ ନୁହେଁ ; ମାତ୍ର ନିଜ ନିଜର କ୍ରିୟା-କଳାପର ପରିଣତି ପ୍ରତି ପ୍ରସ୍ତାବିତ, ଉଜ୍ଜ୍ୱଳ ଓ ସଜୀବ ମଣିଷମାନଙ୍କୁ ନେଇ ଏହା ରଚିତ । ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଏହାର ଜ୍ୱଳନ୍ତ ଉଦାହରଣ । ଏହାର ଚରିତ୍ରଗୁଡ଼ିକ ପ୍ରଥମେ ନିଜ ବଗୁରଟିର କର୍ମକର ପରିଣାମରେ ହିଁ ଏତେ ଅଦୃଷ୍ଟ ଦ୍ୱାରା ଅର୍ଜିତ ବା ଅଭିଶପ୍ତ ହୋଇଛନ୍ତି । ଏହାହିଁ ଫକୀରମୋହନଙ୍କ ଚରିତ୍ର ସର୍ଜନାରେ ମାନବବାଦୀତାର ନିଦର୍ଶନ । ଭାଗ୍ୟଫଳରେ ବିଶ୍ୱାସ ଏ ଯୁଗ ମନୁଷ୍ୟର ପୂର୍ବ ବଂଶଧର-ମାନଙ୍କ ପକ୍ଷରେ ସମ୍ଭବପର ହୋଇପାରେ । କିନ୍ତୁ ଏ ଯୁଗର ମନୁଷ୍ୟ କର୍ମଫଳ ବିଶ୍ୱାସୀ । ସେଥିପାଇଁ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ଚରିତ୍ର ସୃଷ୍ଟି ସଫଳ ଏବଂ ଏହି ଦୃଷ୍ଟିରୁ ଏହା ଖୁବ୍ ଲୋକପ୍ରିୟ ଓ ଉପାଦେୟ ମଧ୍ୟ । ଏହି ପରିପ୍ରେକ୍ଷୀରେ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ଚରିତ୍ରମାନଙ୍କୁ ବିଶ୍ଳେଷଣ କରାଯାଇପାରେ ।

**ରାମଚନ୍ଦ୍ର ମଙ୍ଗରାଜ :**

ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଯୋଜନାର ସମସ୍ତ ଉପାଦାନ ରାମଚନ୍ଦ୍ର ମଙ୍ଗରାଜଙ୍କଠାରେ କେନ୍ଦ୍ରୀଭୂତ । 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ଆରମ୍ଭ ମଙ୍ଗରାଜଙ୍କ-ଠାରୁ ଓ ଶେଷ ମଧ୍ୟ ସେଇ ମଙ୍ଗରାଜଙ୍କଠାରେ । ସୁତରାଂ ରାମଚନ୍ଦ୍ର ମଙ୍ଗରାଜ ସମଗ୍ର ଉପନ୍ୟାସର ଆମୂଳଚୂଳ ବର୍ଣ୍ଣିତ ସକଳ ବିଷୟବସ୍ତୁର କର୍ଣ୍ଣଧାର । ତା'ର ପରିବାର, ପାରିପାର୍ଶ୍ୱିକ ଅବସ୍ଥା, ମାନସିକ ରୂପରେଖ ଏବଂ କ୍ରିୟାକଳାପକୁ ନେଇ ଉପନ୍ୟାସର ଅଙ୍ଗସୌଷ୍ଠବ ମଣ୍ଡିତ । ଫଳରେ ମଙ୍ଗରାଜଙ୍କୁ ଉପନ୍ୟାସର ନାୟକ ବା ମୁଖ୍ୟ ଚରିତ୍ର

ଭାବେ ନିର୍ବିବାଦରେ ଗ୍ରହଣ କରାଯାଇପାରେ । ସମଗ୍ର ଉପନ୍ୟାସରେ ପାଠକର ଦୃଷ୍ଟି ଆକର୍ଷଣକାରୀ ଚରିତ୍ରଭାବେ ମଙ୍ଗରାଜଙ୍କ ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ମଙ୍ଗରାଜଙ୍କ ବ୍ୟତିରେକେ 'ଛ'ମାଣ ଆଠଗୁଣ୍ଠ'ର ପରିକଳ୍ପନା ଏକାନ୍ତ ଅସମ୍ଭବ ବୋଧହୁଏ । ଏହି ଉପନ୍ୟାସର ଅନ୍ୟାନ୍ୟ ଚରିତ୍ରଗୁଡ଼ିକ ମଙ୍ଗରାଜଙ୍କ ଚରିତ୍ରକୁ କେନ୍ଦ୍ରବିନ୍ଦୁ ଭାବେ ରଖି ତାଙ୍କର ଚତୁଃପାର୍ଶ୍ୱରେ ପରିକ୍ରମା କରିଛନ୍ତି । ସୁତରାଂ ମଙ୍ଗରାଜ ଚରିତ୍ରର ସୂର୍ଯ୍ୟରୂପୀ ଆଲୋକରେ ଅନ୍ୟାନ୍ୟ ଉପଗ୍ରହରୂପୀ ଚରିତ୍ରଗୁଡ଼ିକ ଆଲୋକିତ ଓ ଉଦ୍ଭାସିତ । ଉପନ୍ୟାସ ବର୍ଣ୍ଣିତ ସମସ୍ତ ଚରିତ୍ରଙ୍କର ମଙ୍ଗରାଜଙ୍କଠାରେ ସମ୍ପର୍କ ରହିଛି ଏବଂ ସବୁ ଘଟଣା ମଙ୍ଗରାଜଙ୍କ ପ୍ରଭାବରେ ସଙ୍ଘଟିତ । ମଙ୍ଗରାଜଙ୍କ ଘୃଣ୍ୟ ଜୀବନ ଓ କୁତ୍ସିତ ଅପକର୍ମ ଲୋକଚକ୍ଷୁରେ ଉପେକ୍ଷଣୀୟ ହୋଇପାରେ; କିନ୍ତୁ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସ ପାଇଁ ଏହା ହେଉଛି ବଳିଷ୍ଠ ଉପାଦାନ ଓ ଚିରନ୍ତନ ସାମଗ୍ରୀ ।

ରାମଚନ୍ଦ୍ର ମଙ୍ଗରାଜ ତତ୍କାଳୀନ ସମାଜର ଏକ ପ୍ରତିନିଧିମୂଳକ ଚରିତ୍ର । ତତ୍କାଳୀନ ଅବସ୍ଥାରେ ଧନୀ-ଗରିବର ଭେଦାଭେଦ ଥିଲା ଆକାଶଛୁଆଁ । ଥିଲାବାଲା ନଥିଲାବାଲା ଉପରେ ପ୍ରଭୁତ୍ୱ ଜାହିର୍ କରୁଥିଲା । ସମାଜପତି ସମାଜକୁ ଶୋଷଣ କରୁଥିଲା । ଏହି ଶୋଷଣମୂଳକ ସମାଜର ଏକ ମୂର୍ତ୍ତିମନ୍ତ ପ୍ରତୀକ ହେଉଛନ୍ତି ରାମଚନ୍ଦ୍ର ମଙ୍ଗରାଜ । ସେ ଅତ୍ୟାଚାରୀ, ପ୍ରଜାପୀଡ଼କ ଗୋଷ୍ଠୀର ଏକ ଜ୍ୱଳନ୍ତ ନିଦର୍ଶନ । ତା'ର କୁଟ ଚକ୍ରାନ୍ତରେ ଜମିଦାର ଫତେଲ୍ ଦାର ମିଆଁଙ୍କ ଜମିଦାରୀ ବିଲୋପ, ଭଗିଆ ସାରିଆଙ୍କ ଜୀବନର କରୁଣ ସମାପ୍ତି, ଜମିଦାର ବାସୁସିଂହ ବଂଶର ସର୍ବନାଶ, ରତନପୁର ହରିଜନମାନଙ୍କର ଦୁର୍ଦ୍ଦଶା, ଚୌକିଦାର ଗୋବରା ଜେନାର ନିର୍ଯ୍ୟାତନା ଏବଂ ସର୍ବୋପରି ଅସଂଖ୍ୟ ଦରିଦ୍ର, ନିରୀହ ପ୍ରଜାଙ୍କର ସର୍ବସ୍ୱ ହରଣ ସମ୍ଭବ ହୋଇଛି । ଏପରିକି ନିଜର କୁଟିଳତା ଚରିତାର୍ଥ କରିବା ଅଭିପ୍ରାୟରେ ପ୍ରତାରକ ମଙ୍ଗରାଜ ନିଜ ମାଉସୀପୁଅ ଭାଇର ସମ୍ପତ୍ତି ହସ୍ତଗତ କରିବାକୁ କୁଣ୍ଠାବୋଧ କରିନାହିଁ । ମଙ୍ଗରାଜ ଆଜନ୍ମରୁ ଜମିଦାର ନଥିଲେ । ପୈତୃକ ଜମିଦାରୀର ଉତ୍ତରାଧିକାରୀ ରୂପେ ମଙ୍ଗରାଜର ଅଦମ୍ୟ ଶୋଷଣ-ପିପାସା ସଞ୍ଜାତ ନୁହେଁ; ବରଂ ଏ ପିପସା ତା'ର ବଂଶଗତ ଦାରିଦ୍ର୍ୟ ଏବଂ ଶୈଶବାବସ୍ଥାର ନିରାଶ୍ରୟତା କାରଣରୁ । ବାଲ୍ୟକାଳରେ ମଙ୍ଗରାଜ ଅନାଥ, ସୁଏତ ତା'ର ଅସନ୍ତୁ ବର୍ଦ୍ଧିତ । ଅବହେଳିତ ନିରାଶ୍ରୟ ଜୀବନର ମାନସିକ ଅଶାନ୍ତ ଏବଂ ତତ୍ସମ୍ପର୍କୀୟ ପ୍ରତିକ୍ରିୟାଶୀଳ ସ୍ୱଭାବ ତାକୁ ପରସ୍ୱାପହରଣର ପ୍ରେରଣା ଯୋଗାଇଥାଇପାରେ ବା ତା'ର ଗୃହିତ୍ରିକ ଅସାଧୁତାକୁ ପ୍ରଭାବିତ କରିଥାଇପାରେ । ସେ ସମୟର ପାରିପାର୍ଶ୍ୱିକ ଅବସ୍ଥାର ତାଡ଼ନା ଓ ନିଜ ଦାରିଦ୍ର୍ୟର କଷାଘାତ ଅନାଥ ମଙ୍ଗରାଜଙ୍କ କୁଟିଳତା ପାଇଁ ଅନେକ ପରିମାଣରେ ଦାୟୀ । ଅପରିଣତ ବୟସରେ ଅପୂର୍ଣ୍ଣ ମାନସିକ ବାସନାର ଅବଚେତନ ଅଭୀପ୍ସା, ପରିଣତ ବୟସରେ ମଙ୍ଗରାଜଙ୍କୁ ଷଡ଼ଯନ୍ତ୍ର ପନ୍ଥାର ଧୂର୍ତ୍ତ ଅନୁସନ୍ଧାନୀ ହେବାଲାଗି ପ୍ରବର୍ତ୍ତାଇଛି ।

ଏ ଅବଚେତନ ମାନସକୁ ତା'ର ଚରିତାର୍ଥ କରିଛନ୍ତି ଅନୁକୂଳ ପରିବେଷ୍ଟନୀ, ତତ୍କାଳୀନ ସାମାଜିକ ପ୍ରଶାସନିକ ବ୍ୟବସ୍ଥା ଏବଂ ସମାଜର କୁଟିଳ ବ୍ୟକ୍ତିମାନେ । ଫଳରେ ବାଲ୍ୟ-କାଳର ନିଃସ୍ୱ, ନିରାଶ୍ରୟ ରାମଚନ୍ଦ୍ର ମଙ୍ଗରାଜ ପ୍ରାପ୍ତ ବୟସରେ ପରିଣତ ହୋଇଛି ପ୍ରବଞ୍ଚକ, ନିଷ୍ପେଷଣକାରୀ ଜମିଦାର ମଙ୍ଗରାଜ ଭାବେ ।

ଧନ ସମ୍ପତ୍ତିର ମୋହ ମାନବ ନିକଟରେ ଚିରନ୍ତନ । ବ୍ୟକ୍ତିଗତ ଭାବେ ଏହା ସ୍ଥଳବିଶେଷରେ ସ୍ୱଳ୍ପ ବା ବହୁଳ । ରାମଚନ୍ଦ୍ର ମଙ୍ଗରାଜ ଏହି ସ୍ୱଭାବଜନିତ ଅବଦମିତ ଲାଳସାର ଏକ ଦୁର୍ବାର ଚରିତାର୍ଥକାରୀ । ତା' ଦୃଷ୍ଟିରେ ତା' ନିଜ ସମ୍ପତ୍ତି ସ୍ୱଳ୍ପ । ଅଧିକରୁ ଅଧିକ ସମ୍ପତ୍ତି ତା'ର କାମନା । ଏ କାମନା ଅବଶ୍ୟ ଅଯଥାର୍ଥ ନୁହେଁ । ଅଗାଧ ଜଳରାଶିକୁ ନିଜ ବକ୍ଷରେ ସ୍ଥାନ ଦେଇ ସାରି ସାଗର ଅଧିକ ଜଳ ଆଶାରେ ସ୍ରୋତସ୍ୱିନୀ ପ୍ରତି ପ୍ରତୀକ୍ଷାରତ। ବିଶାଳ ବିଶ୍ୱର ଅଧିକାରୀ ହୋଇ ମନୁଷ୍ୟ ଗ୍ରହରାଜ୍ୟରେ ବିଚରଣ ପାଇଁ ଆଗ୍ରହୀ । ସେହିପରି ଧନସମ୍ପତ୍ତିର ପ୍ରାଚୁର୍ଯ୍ୟରେ ପରିତୃପ୍ତି ଲାଭ ନ କରି ଧନୀକ ପୁଞ୍ଜିପତି ଅଧିକ ଧନ ସଞ୍ଚୟର କାମନାରେ ବ୍ୟତିବ୍ୟସ୍ତ । ତେଣୁ ରାମଚନ୍ଦ୍ର ମଙ୍ଗରାଜ ଏ ସୃଷ୍ଟି ପରିଧିରୁ ବିଚ୍ୟୁତ ହେବେ ବା କିପରି ? ସେ ମଧ୍ୟ ନିଜର ଜମିଦାରୀର ପ୍ରସାର ଏବଂ ସମ୍ପଦର ପରିମାଣ ବୃଦ୍ଧି ପାଇଁ ପାଗଳ ହୋଇଉଠିଛି । ଏହି ସମ୍ପଦ ଲାଳସା ତା' ମନରେ ଷଡ଼ଯନ୍ତ୍ର ଓ ଚକ୍ରାନ୍ତର ବୀଜ ବପନ କରିଛି ଏବଂ ଦୃଢ଼ ପ୍ରତିରୋଧ ବିନା ତା'ର ଏହି ଧନ ଲାଳସା ଉତ୍ତରୋତ୍ତର ବୃଦ୍ଧି ହେବାରେ ଲାଗିଛି । ଏ ସମ୍ପତ୍ତି ସଂଗ୍ରହରେ ତା'ର ବିବେକ, ବିଚାରବୁଦ୍ଧିର ବିମର୍ଷ ଘଟିଛି ଏବଂ ଅସାଧୁ ବିଚାରତା ତା ଜୀବନକୁ ପୂର୍ଣ୍ଣ ଭାବେ ପ୍ରଭାବିତ କରିଛି । ଏଇଥିପାଇଁ 'ଛ'ମାଣ ଆଠଗୁଣ୍ଠ'ର ମଙ୍ଗରାଜ ଆମ ନିକଟରେ କୁଚକ୍ରୀ, ପ୍ରବଞ୍ଚକ, ପରସ୍ୱାପହରଣକାରୀ, ପ୍ରଜାପୀଡ଼କ ଓ ଖଳଚରିତ୍ର ରୂପେ ପ୍ରତିଭାତ ହୋଇଛି ।

ସମ୍ପଦ ଲିପ୍ସା ସହିତ ପରିପୂରକ ଭାବେ କୃପଣତା ମଙ୍ଗରାଜ ଚରିତ୍ରର ଅନ୍ୟଏକ ଅମଙ୍ଗଳକାରୀ ଉପାଦାନ । ଏହି ଦୁଇ ମନ୍ଦପ୍ରବୃତ୍ତିର ତାଡ଼ନାରେ ମଙ୍ଗରାଜ କୁତ୍ସିତ ଅପକର୍ମର ସର୍ଜନାକାରୀ ଭାବେ ସୁ-ବିଦିତ ହୋଇଛନ୍ତି । ଏଥିପାଇଁ ତାଙ୍କ ନିକଟରୁ ଦୟା, କ୍ଷମା, ସହନଶୀଳତା ଆଦି ମାନବୋଚିତ ଗୁଣଗୁଡ଼ିକ ମଧ୍ୟ ଅପସାରିତ ହୋଇଯାଇଛି । ଜମିଦାରଙ୍କ ହଳିଆ, ମୂଲିଆମାନେ ପେଜ, ତୋରାଣୀ ଓ ସଜନା ଶାଗରେ ଜୀବନ ବିତାନ୍ତି । ଅନ୍ୟାନ୍ୟ ରୁଚିକର ଖାଦ୍ୟ ସେମାନଙ୍କ ପାଇଁ ନିଷିଦ୍ଧ । ଏପରିକି ସଜନାଛୁଇଁ ଓ ଅନ୍ୟାନ୍ୟ ଶାକ ସବଜି ଗୋବିନ୍ଦପୁର ହାଟରେ ମଙ୍ଗରାଜ ବିକ୍ରୀ କରନ୍ତି; କିନ୍ତୁ ତାଳୁ ଝାଳ ତଳିପାରେ ମାରି ମଙ୍ଗରାଜ କ୍ଷେତରେ ସୁନା ଫଳାଉଥିବା ଶ୍ରମିକଗଣ ସେମାନଙ୍କ ପେଟପୂରା ରୁଚିକର ଖାଦ୍ୟ ମୁଠାକରୁ ବଞ୍ଚିତ ହୁଅନ୍ତି । ମଙ୍ଗରାଜଙ୍କ ଉଦାରତାର ବୀଭତ୍ସ ରୂପ ଏହାଠାରୁ ବଳି ଆଉ କ'ଣ ଥାଇପାରେ ? କେବଳ ଏତିକି ନୁହେଁ, ମଙ୍ଗରାଜଙ୍କ ଉତ୍ଥାନ ପାଇଁ ଏ ସବୁର ମୂଳ ଯେତେ ଦାୟୀ ନୁହେଁ, ତାଙ୍କର ପରସ୍ୱାପହରଣର ଉଦଗ୍ର ଲାଳସାର

ମୂଲ୍ୟବୋଧ ତା'ଠାରୁ ଯଥେଷ୍ଟ ପରିମାଣରେ ଦାୟୀ । ଜମିଦାର ଢଲ୍‌ଦାର ମିଆଁଠାରୁ ଜମିଦାରୀ ନେବା ପରେ ଓ ଚମ୍ପା ପରି ଧୂର୍ତ୍ତା-ନାରୀର ବଶ ହେବା ପରେ ରାମଚନ୍ଦ୍ର ମଙ୍ଗରାଜଙ୍କର ଏହି ଲାଳସା ଅଧିକରୁ ଅଧିକ ତୀବ୍ର ହୋଇଛି । ତେଣୁ ତାଙ୍କଠାରୁ ସାମାଜିକ ମୂଲ୍ୟବୋଧ ଓ ପ୍ରତିଷ୍ଠା ଦୃଷ୍ଟିରୁ ଯଥେଷ୍ଟ ତଳେ ଥିବା ତନ୍ତୀ-ଦମ୍ପତି (ସାରିଆ-ଭଗିଆ)ଙ୍କ 'ଛ'ମାଣ ଆଠଗୁଣ୍ଠ' ଜମି ଅପହରଣ କରିବାକୁ ସେ କୁଣ୍ଠା ପ୍ରକାଶ କରିନାହାନ୍ତି । ଅବଶ୍ୟ ଏଥିପାଇଁ ଚମ୍ପାର ସହାୟତାକୁ ଏଡ଼ାଇ ଦିଆଯାଇ ନପାରେ ।

ମଙ୍ଗରାଜଙ୍କ ଅସାମାଜିକତା ପାଇଁ ଅନେକ ପରିମାଣରେ ଦାୟୀ ତାଙ୍କର ଗୁଣଗ୍ରାହିକ ଦୁର୍ବଳତା ଏବଂ ପରବୁଦ୍ଧିରେ ପରିଚାଳିତ ହେବାର ମନୋବୃତ୍ତି । କିନ୍ତୁ ତାଙ୍କର ମାନସିକ ଦୃଢ଼ତା ଅପରିସୀମ । ମାତ୍ର ଚମ୍ପା ଭଳି କୁଟିଳ ଚରିତ୍ରା, ଉଦ୍‌ବାସ୍ତୁ, ନିଜ ଘରର ପରିଚାରିକାକୁ ନିଜର ମନ୍ତ୍ରଣାକାରିଣୀ, ପରାମର୍ଶଦାତ୍ରୀ ରୂପେ ଆସ୍ଥା ପ୍ରଦାନ କରିବା, ସମ୍ପୂର୍ଣ୍ଣ ଉପନ୍ୟାସରେ ମଙ୍ଗରାଜଙ୍କ ! ଏକ ଉଲ୍ଲେଖଯୋଗ୍ୟ ଦୁର୍ବଳତା । ହୁଏତ ଚମ୍ପାହିଁ ହେଉଛି ମଙ୍ଗରାଜଙ୍କ କର୍ମକ୍ଷେତ୍ରର ପୃଷ୍ଠଭୂମି ।

ଚମ୍ପା ଚରିତ୍ରର କୁଟିଳତା, ମଙ୍ଗରାଜ ହୃଦୟରେ ଭରିଦେଇଛି ସର୍ବଗ୍ରାସୀ ଗରଳ । ଚମ୍ପାର ତୋଷାମଦ, ବିଶ୍ୱସ୍ତ ପ୍ରଭୁ ସ୍ତାବକତା ମଙ୍ଗରାଜଙ୍କୁ କରିଛି ସର୍ବନାଶ ପଥର ପଥିକ । ସେ ତା'ର ସହାୟତାରେ ସାରିଆ ଭଗିଆଙ୍କ 'ଛ'ମାଣ ଆଠଗୁଣ୍ଠ' ଜମିକୁ ଆତ୍ମସାତ୍ କରି ଦୁଇ ନିରୀହ ପ୍ରାଣୀଙ୍କର ସୁଖର ସଂସାରକୁ ଧ୍ୱଂସନାଶ କରିବା ସଙ୍ଗେ ସଙ୍ଗେ ଆପଣାର ପତନକୁ ମଧ୍ୟ ଡାକିଆଣିଛନ୍ତି । ସୁତରାଂ ନିଜ ମାନସିକ ଶକ୍ତିରେ ଏତେ ଅଟଳ ଓ ନିଜ ଲାଳସା ଚରିତାର୍ଥରେ ଏଭଳି ଧୂର୍ତ୍ତ ଓ ଚତୁର ମଙ୍ଗରାଜ ଚମ୍ପାର ସ୍ତାବକତାକୁ ବିଶ୍ୱାସ କରି କରି ତାର ନିର୍ଦ୍ଦେଶିତ ପନ୍ଥାରେ ପରିଚାଳିତ ହେବା ବାସ୍ତବରେ ମଙ୍ଗରାଜଙ୍କ ଅସ୍ୱାଭାବିକ-ତାର ଏକ ଶ୍ରେଷ୍ଠ ନିଦର୍ଶନ ।

'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ମଙ୍ଗରାଜ ଏକ ଘୃଣ୍ୟ, ଶୋଷଣକାରୀ ଓ ପାପୀ ଚରିତ୍ର ଭାବେ ବର୍ଣ୍ଣିତ । ଏ ପାପ ତାର ନିଜକୃତ । କେବଳ ପ୍ରଜ୍ୱଳିତ ଅନଳରେ ଇନ୍ଧନ ଯୋଗାଇବା ପରି ଚମ୍ପା, ଗୋବରା ପ୍ରଭୃତି ଏଥିପାଇଁ ପୃଷ୍ଠପୋଷକତା କରିଛନ୍ତି । ନିଜ ଅର୍ଜିତ ପାପର ପ୍ରାୟଶ୍ଚିତ୍ତ ମଙ୍ଗରାଜ ଆପେ ଆପେ କରିଛନ୍ତି । ଅନ୍ୟ ସମ୍ପୃକ୍ତ ଚରିତ୍ରମାନେ ମଙ୍ଗରାଜ—ପାପର ହଳାହଳରେ ଜର୍ଜରିତ ହୋଇ ଦମଦଣ୍ଡ ଭୋଗ କରିବାକୁ ବାଧ୍ୟ ହୋଇଛନ୍ତି । ପାପ-ପୁଣ୍ୟର ବିଗ୍ଭର ପ୍ରକୃତ ନ୍ୟାୟାଳୟର ଅଧୀନ । ମନୁଷ୍ୟ ଏହାକୁ ବେଖାତିର୍ କରିପାରେନା । ପାପର ପ୍ରାୟଶ୍ଚିତ୍ତ ଓ ପୁଣ୍ୟର ବିଜୟ ମାନବଜୀବନ ଇତିହାସ ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ । ଏ ଅନୁଶାସନ ସର୍ବଯୁଗୀୟ । ମାନବ ପରିସ୍ଥିତିର ଆଜ୍ଞା ପାଳନକାରୀ । ପରିସ୍ଥିତିହିଁ ତା'ର କର୍ମକ୍ଷେତ୍ରରେ ଏ ପାପ-ପୁଣ୍ୟର ସ୍ରଷ୍ଟା । ମାନବିକତାର

ଅନୁଶାସନ ବହିର୍ଭୂତ ବ୍ୟକ୍ତି ପକ୍ଷରେ ସ୍ୱଗ୍ଗର ବହ୍ନାଂଶ ନିଶ୍ଚିତ ଘଟେ । ଫଳରେ ସେ ପାପ କରେ । ମଙ୍ଗରାଜ ମାନବିକତାର ଅନୁଶାସନକୁ ନମାନି ତାଙ୍କ ଜୀବନରେ ଅନେକ ଅକ୍ଷମଣୀୟ ପାପ କରିଯାଇଛନ୍ତି ।

ସ୍ୱାନଚନ୍ଦ୍ରାନ୍ତି କରି ସେ ସର୍ବସ୍ୱାନ୍ତ କରିଛନ୍ତି ସାରିଆ-ଭଗିଆଙ୍କୁ । ସାରିଆ ମନରେ ମାତୃତ୍ୱର କାମନା ଜଗାଇ ଦେଉଳତୋଳା ବାହାନାରେ ତା'ର ସ୍ୱାମୀ ଓ ତାକୁ ନିଜ ଅନ୍ତଃପୁରକୁ ଆଣି 'ଛ'ମାଣ ଆଠଗୁଣ୍ଠ'କୁ ଯେପରି ରାମଚନ୍ଦ୍ର ମଙ୍ଗରାଜ ବନ୍ଧା ରଖିଛନ୍ତି ଓ ପରେ ପରେ ଏକତରଫା ଡିଗ୍ରୀ ଆଣି ତାକୁ ଆତ୍ମସାତ୍ କରିଛନ୍ତି, ସେପରି ବର୍ବର କାର୍ଯ୍ୟ ହୁଏତ ଅନ୍ୟ କୌଣସି ଖଳ ଚରିତ୍ରଠାରେ ସମ୍ଭବ ନୁହେଁ । କେବଳ ସେତିକି ନୁହେଁ, ମକଦ୍ଦମାର ଖର୍ଚ୍ଚ ବାବଦକୁ ରାମଚନ୍ଦ୍ର ମଙ୍ଗରାଜ ସାରିଆ ଭଗିଆଙ୍କ କୁଡ଼ିଆ ଖଣ୍ଡିକ ମଧ୍ୟ ଘେରି ଦେଇଛନ୍ତି ଏବଂ ତା'ର ସମସ୍ତ ଜିନିଷପତ୍ର ନିଜ ଘରକୁ ବୁହାଇ ଆଣିଛନ୍ତି । ସାରିଆର ଶେଷ ଅବଲମ୍ବନ ନେତ ଗାଈ ସୁଦ୍ଧା ବନ୍ଧା ହୋଇଯାଇଛି ମଙ୍ଗରାଜଙ୍କ ଗୁହାଳକୁ । ଘର ଭଙ୍ଗାଗଲା ଦିନଠାରୁ ଭଗିଆ ବାଇଆ ହୋଇ ଦ୍ୱାର ଦ୍ୱାର ବୁଲିଛି । ସାରିଆ ମଙ୍ଗରାଜଙ୍କ ଦୁଆରେ ଅଖିଆ ଅପିଆ ପଡ଼ି ଶେଷରେ ମାଡ଼ଖାଇ ପ୍ରାଣ ଦେଇଛି । ଏଥିରେ ମଙ୍ଗରାଜଙ୍କ କଠୋର ହୃଦୟ ତରଳି ନାହିଁ । ସାରିଆ ଦୁଃଖରେ ଆଘାତ ପାଇ ସା'ନ୍ତାଣୀ ମଧ୍ୟ ମୃତ୍ୟୁବରଣ କରିଛନ୍ତି । ଏତେବେଳେ ରାମଚନ୍ଦ୍ର ମଙ୍ଗରାଜ ଅନୁତାପ କରିଛନ୍ତି; କିନ୍ତୁ କୃତକର୍ମର ପାପ ଭୋଗିବାର ସମୟ ସେତେବେଳକୁ ତାଙ୍କର ଅତି ନିକଟ ହୋଇଆସି-ଥିଲା । ତେଣୁ ତାଙ୍କ ଅନୁଶୋଚନା ମୂଲ୍ୟହୀନ ହୋଇପଡ଼ିଥିଲା ।

ରାମଚନ୍ଦ୍ର ମଙ୍ଗରାଜ ଆଇନାନୁଯାୟୀ ଦଣ୍ଡିତ ହୋଇଛନ୍ତି । ସେ ସାରିଆର ମୃତ୍ୟୁ ପାଇଁ ଦାୟୀ ନୁହନ୍ତି କିମ୍ବା ଭଗିଆର ପାଗଳାମି ପାଇଁ ଦାୟୀ ନୁହନ୍ତି ବୋଲି ଆଇନ୍ ତାଙ୍କୁ ସେ ଦୋଷରୁ ମୁକ୍ତ ଦେଇଛି । ମାତ୍ର 'ନେତ ନାମକ ଗାଈକୁ ଆତ୍ମସାତ୍ କରିଥିବାର ଅଭି-ଯୋଗରେ ତାଙ୍କୁ ଦଣ୍ଡିତ କରାଯାଇଛି । ତାଙ୍କୁ ଛ'ମାସ କାରାଦଣ୍ଡ ଓ ପାଞ୍ଚଶହ ଟଙ୍କା ଜୋରିମାନା ହୋଇଛି । ରାମଚନ୍ଦ୍ର ମଙ୍ଗରାଜଙ୍କୁ ଜେଲ୍‌ରେ ଭଗିଚନ୍ଦ କାମୁଡ଼ି ଦେଇଛି । ଏତେବେଳେ ତାଙ୍କର ଅନୁଶୋଚନା, ଅନୁତାପ, ଏକ ଭିନ୍ନ ମଣିଷ ଭାବେ ଠିଆକଲେହେଁ ଏହା ଯେ ତାଙ୍କ କୃତକର୍ମର ଅବଶ୍ୟମ୍ଭାବୀ ପରିଣତି ତାହାହିଁ ଔପନ୍ୟାସିକ ଏହି ମର୍ମରେ ଦର୍ଶାଇଛନ୍ତି ।

ରାମଚନ୍ଦ୍ର ମଙ୍ଗରାଜ ଏହିଭଳି ଅବିବେକିତାର ପୃଷ୍ଠପୋଷକତା କରି ପୁଣ୍ୟ ପରିବର୍ତ୍ତେ ଯେଉଁ ପାପାର୍ଜନ କରିଛନ୍ତି । ଆଲୋଚ୍ୟ ଉପନ୍ୟାସର ଅନ୍ତିମ ପର୍ଯ୍ୟାୟରେ ତା'ର ପ୍ରାୟଶ୍ଚିତ ଘଟିଛି । ସେ ବ୍ୟାକୁଳ ଚିତ୍ତରେ ସ୍ୱ ପାପର ପ୍ରାୟଶ୍ଚିତ ପାଇଁ ଭଗବାନଙ୍କୁ ଡାକିଛନ୍ତି । ସେଥିପାଇଁ ପାପୀ ମଙ୍ଗରାଜ ପ୍ରଥମେ ସବୁରି ଘୃଣା ଓ ତାଚ୍ଛଲ୍ୟର ପାତ୍ର ହୋଇଛି

ଏବଂ ସମସ୍ତେ ତା'ର ଅପକର୍ମ ପାଇଁ ଶାସ୍ତି କାମନା କରିଛନ୍ତି । ମାତ୍ର ଶେଷରେ ଯେତେବେଳେ ପ୍ରାୟଶ୍ଚିତ୍ତକାଙ୍କ୍ଷୀ ମଙ୍ଗରାଜ 'ଅ-ମା-ଆ-ଗୁ' ଅ-ମା-ଆ-ଗୁ' ବୋଲି ଏକ କରୁଣ ତଥା ଅସହାୟ, ନିଃସଙ୍ଗ ପରିବେଶରେ ସ୍ୱର୍ଗପୁରରୁ ସ୍ୱ-ପତ୍ନୀର ଆହ୍ୱାନ ପାଇ ମୃତ୍ୟୁ ପଥର ଯାତ୍ରୀ ହୋଇଛି, ସେତେବେଳେ ପାଠକ ମଙ୍ଗରାଜର ପୂର୍ବକୃତ ପାପର ଅମାନୁଷିକତାକୁ ସମ୍ପୂର୍ଣ୍ଣ ବିସ୍ମୃତ ହୋଇ ତାଙ୍କ ପ୍ରତି ନିଜର ଅପଣାର ଦରଦ ପ୍ରକାଶ କରିବାରେ କୁଣ୍ଠା କରେ ନାହିଁ । ତେବେ ଶୋଷଣ, ଅତ୍ୟାଚାର ଓ ସ୍ୱାର୍ଥକୈନ୍ଦ୍ରିକ ଦୁର୍ବଳତାର ଉନ୍ମାଦ ସାଧାରଣ ରାମଚନ୍ଦ୍ର ମଙ୍ଗରାଜ ଜୀବନର କୃତକର୍ମର ଫଳ ଯେ ତା'ର ଅନ୍ତିମ ଦଶାରେ ପ୍ରାପ୍ତ ହୋଇଛି, ଏକଥା ଅସ୍ୱୀକାର କରିହେବ ନାହିଁ ।

'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ 'ରାମଚନ୍ଦ୍ର ମଙ୍ଗରାଜ ଏକ ବିୟୋଗାନ୍ତକ ଚରିତ୍ର । ବିଶ୍ୱବିଖ୍ୟାତ ବିୟୋଗାନ୍ତକ କୃତି ମାନଙ୍କର ନାୟକଙ୍କ ସହିତ ମଙ୍ଗରାଜଙ୍କ ସାଦୃଶ୍ୟ ନିର୍ଭରରେ ପ୍ରତିଷ୍ଠା କରାଯାଇପାରେ । ପ୍ରତିଭାଶାଳୀ ଔପନ୍ୟାସିକ ଫକୀରମୋହନଙ୍କ ନୀତିବାଦୀ ମାନବୀୟ ଆଦର୍ଶ ଓ ସମାଜ ପ୍ରବୃତ୍ତିର ଚରିତାର୍ଥତା ମୂଳରେ ମଧ୍ୟ ମଂଗରାଜଙ୍କ ପରି ଏକ ସ୍ୱତନ୍ତ୍ର ଚରିତ୍ର ସୃଷ୍ଟିର ଯଥାର୍ଥତା ନିହିତ । ନିଜ ଜୀବନର ଦୁର୍ଗତି ପାଇଁ ମଂଗରାଜ ନିଜେ ଦାୟୀ । ଫଳରେ ସ୍ପଷ୍ଟ ମନେହୁଏ ଯେପରି ମଂଗରାଜ ଭାଗ୍ୟ ହସ୍ତରେ ଏକ କ୍ରୀଡ଼ନକ । ବିୟୋଗାନ୍ତକ ରଚନା ଯେପରି ଏକ ବିଚିତ୍ର ଧରଣର ବିପର୍ଯ୍ୟ ସଙ୍କୁଳିତ ଘଟଣାକୁ ବର୍ଣ୍ଣନା କରି ତାର ମୁଖ୍ୟ ଚରିତ୍ରର ଏକ ଦାରୁଣ ପରିସମାପ୍ତି ଘଟାଇବା ସଂଗେ ସଂଗେ ମାନବିକ ଅପକର୍ମର କୁପରିଣତି ସୂଚାଇ ପାଠକଙ୍କୁ ଭୟଭୀତ ଓ କରୁଣା ବିଗଳିତ କରିଥାଏ; ସେହିପରି ମଂଗରାଜର ଅପକର୍ମଜନିତ ଶାସ୍ତିରେ ପାଠକ ଭୟଭୀତ ହୁଏ ଏବଂ ତା' ନିଜ କବରର ଚେଷ୍ଟିତା ଯେ ସେ ନିଜେ, ଏ କଥା ଚିନ୍ତାକରି ତା' ପ୍ରତି କରୁଣାବ୍ୟଥିତ ହୋଇପଡ଼େ । ତେଣୁ ଫକୀରମୋହନ ଏ ପ୍ରସଂଗରେ ଲେଖିଛନ୍ତି —"ହେ ବୁଦ୍ଧିମାନ୍ ! ତୁମ୍ଭେ ଅତି ନିର୍ଜନରେ, ଅତି ସାବଧାନରେ କିଛି କର୍ମକରି ମନେ-କରୁଅଛ, ମନୁଷ୍ୟର ଦୃଷ୍ଟିରେଖାର ଅନ୍ତରାଳରେ ରହିଅଛ । ଭୂମିରେ ଗୋଟିଏ କ୍ଷୁଦ୍ର ବୀଜ ପୋତିବାବେଳେ କେହି ଦେଖେ ନାହିଁ ସତ୍ୟ; ମାତ୍ର ସେଥିରୁ ଜାତ ବୃକ୍ଷ ମନୁଷ୍ୟ ନେତ୍ର ଅତିକ୍ରମ କରିବାର ଉପାୟ ନାହିଁ । ପୁଣି ତୁମ୍ଭେ ଯେଉଁ ବୃକ୍ଷ ରୋପଣ କଲ, ତାହାର ଫଳ ତୁମ୍ଭଙ୍କୁ—କଦାଚିତ୍ ବଂଶ ପରମ୍ପରାକୁ ଭୋଗ କରିବାକୁ ପଡ଼ିବ ।'' ରାମଚନ୍ଦ୍ର ମଙ୍ଗରାଜଙ୍କ କୃତକର୍ମଜନିତ ପରିଣତିରେ ଫକୀରମୋହନଙ୍କ ଏ ବର୍ଣ୍ଣନା କର୍ମଫଳର ଯଥାର୍ଥ ନିୟାମକ ହୋଇପାରିଛି ।

**ଭଗିଆ :**

'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ଭଗିଆ ଏକ ପ୍ରତିନିଧିମୂଳକ ଚରିତ୍ର । ଏ ପ୍ରତିନିଧିତ୍ୱ ତତ୍କାଳୀନ ସର୍ବହରା ଶୋଷିତ ଗୋଷ୍ଠୀର, ଅଶିକ୍ଷିତ,

ନିର୍ବୋଧ ସମ୍ପ୍ରଦାୟର ଏବଂ ପ୍ରତିବାଦହୀନ ସହନଶୀଳ ଶାନ୍ତ ନିରୀହ ସମାଜର । 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ରାମଚନ୍ଦ୍ର ମଂଗରାଜ ଯେପରି ଧନୀକ, ପୁଞ୍ଜିବାଦୀ ଗୋଷ୍ଠୀର ଅନ୍ୟତମ ଅଭିଜାତ, ପ୍ରପୀଡ଼କ ବ୍ୟକ୍ତିବିଶେଷ, ଭଗିଆ ସେହିପରି ମଂଗରାଜ ବିରୋଧୀ ଗୋଷ୍ଠୀ, ଅତ୍ୟାଚାରିତ ଦଳର ଅନ୍ୟତମ ପ୍ରତିନିଧି । ଫକୀରମୋହନଙ୍କ ଉପନ୍ୟାସ ବର୍ଣ୍ଣିତ ସମାଜର ଗୋଟିଏ ପାର୍ଶ୍ୱରେ ମୁଖ୍ୟତଃ ମଂଗରାଜ ରୂପୀ ସାହୁକାର ଗୋଷ୍ଠୀ ଏବଂ ଅନ୍ୟ ପାର୍ଶ୍ୱରେ ଭଗିଆ-ସାରିଆ ଭଳି ସର୍ବହରା ଓ ନିଷ୍ପେଷିତ ଦଳ । ଏ ଭିନ୍ନ ଅନ୍ୟ ଯେଉଁମାନେ ରହିଲେ, ସେମାନଙ୍କ ମଧ୍ୟରୁ ଅଳ୍ପ ଶିକ୍ଷିତ କର୍ମଚାରୀଙ୍କୁ ବାଦ୍ ଦେଲେ ଆଉ ପ୍ରାୟ ସେପରି ଦୃଷ୍ଟି ଆକର୍ଷଣକାରୀ ସାମାଜିକ ଗୋଷ୍ଠୀ ପାଠକର ଦୃଷ୍ଟି ସୀମାନ୍ତରେ ପଡ଼ନ୍ତି ନାହିଁ ।

ଭଗିଆ ଏକ ଅଭିଶପ୍ତ ଚରିତ୍ର । ତା' ଜୀବନର ପ୍ରାକ୍ ଅଭିଶାପ ପ୍ରତିଫଳିତ ତା'ର ନିରକ୍ଷରତା ନିର୍ବୋଧତାରେ ପରବର୍ତ୍ତୀ ପର୍ଯ୍ୟାୟରେ ଦାରିଦ୍ର୍ୟର ନିର୍ମମ ଅଭିଶାପ ତା' ଜୀବନର ଭୋଗବିଳାସ ଓ ସୁଖ ସୋହାଗକୁ ସମ୍ପୂର୍ଣ୍ଣ ବିଦୂରିତ କରିଅଛି । ଭଗିଆ ଉପରେ ଭାଗ୍ୟର ଚରମ ଉପହାସ ତା'ର ସନ୍ତାନହୀନତା । ପାରିବାରିକ ଜୀବନକୁ ସୁଖଶାନ୍ତି ଓ ଆନନ୍ଦ କୋଳାହଳରେ ଅନୁରଣିତ କରେ ଶିଶୁ ସନ୍ତାନ । ଦମ୍ପତି ସକଳ ନିଜ ନିଜର ପୁତ୍ର କନ୍ୟାମାନଙ୍କୁ ପାଇ ପାରିବାରିକ ଜୀବନକୁ ସ୍ୱର୍ଗ ସୁଖ ପରି ମନେକରନ୍ତି । ଭଗିଆ ପରିବାର ଏ ସୁଖଶାନ୍ତିରୁ ବଞ୍ଚିତ ଥିବାରୁ ଭଗିଆ ଓ ସାରିଆ ଉଭୟଙ୍କ ପ୍ରାଣରେ ଏକ ହା' ହୁତାଶମୟ ଅଶାନ୍ତିର ବାତାବରଣ ସୃଜନ କରୁଥିଲା । ଏହିପରି ଦୁଇ ଅଭିଶପ୍ତ ପ୍ରାଣୀଙ୍କୁ ସମାଜର ଉପାନ୍ତ ଅଞ୍ଚଳରୁ ସାଉଣ୍ଟି ଆଣି ଫକୀରମୋହନ ତାଙ୍କର 'ଛ'ମାଣ ଆଠଗୁଣ୍ଠ'ରେ ମଂଗରାଜ ବିରୋଧରେ ଛିଡ଼ା କରାଇ ଦେଇଛନ୍ତି ଓ ତାଙ୍କ ଉପନ୍ୟାସ ଘଟଣାର ଦ୍ୱନ୍ଦ୍ୱକୁ ସଫଳ କରିପାରିଛନ୍ତି । ଭଗିଆ ହୁଏତ ଏହି ଦ୍ୱନ୍ଦ୍ୱ ଓ ପ୍ରତିବାଦର ଉପଯୁକ୍ତ ପ୍ରତିପକ୍ଷ ନୁହେଁ । ତଥାପି ଭଗିଆର ପ୍ରତିବାଦହୀନ ଭୂମିକା ପାଠକ ନିକଟରେ ପ୍ରଶଂସନୀୟ । ଭଗିଆ ସବୁରି ପାଖରେ ସ୍ନେହ ଓ ସହାନୁଭୂତିର ପାତ୍ର, ଠିକ୍ ମଂଗରାଜ ଯେପରି ସମସ୍ତଙ୍କର ଘୃଣା ଓ ତାଚ୍ଛଲ୍ୟରେ ଜର୍ଜରିତ । ସୁତରାଂ ଭଗିଆ ଚରିତ୍ରର ଆବଶ୍ୟକତା 'ଛ'ମାଣ ଆଠଗୁଣ୍ଠ'ରେ ଅତୁଳନୀୟ । ଆଲୋକ ଓ ଅନ୍ଧକାର ଚନ୍ଦ୍ରମାର ଉଭୟ ପାର୍ଶ୍ୱପରି ଭଗିଆ ଓ ମଂଗରାଜ ରୂପୀ ଦୁଇ ପରସ୍ପର ବିରୋଧୀ ଚରିତ୍ରର ରୂପାୟନରେ ଉତ୍କଳର ପ୍ରାକ୍ତନ ସମାଜର ସମ୍ପୂର୍ଣ୍ଣ ଚିତ୍ର 'ଛ'ମାଣ ଆଠଗୁଣ୍ଠ'ରେ ପ୍ରକାଶ ପାଇଛି ।

ଭଗିଆ ଏ ଯୁଗର ପ୍ରତିବାଦକାରୀ ସର୍ବହରା ଗୋଷ୍ଠୀର—ବ୍ୟତିକ୍ରମ । ଭାଗ୍ୟ ହସ୍ତରେ ସେ କ୍ରୀଡ଼ନକ । ଅବସ୍ଥାର ସେ ଦାସ । ଶୋଷଣ ନିଷ୍ପେଷଣର ପ୍ରତିବାଦ କରିବାର, ଦାବି, ସାବ୍ୟସ୍ତ କରିବାର ଶକ୍ତି ଭଗିଆ ନିକଟରେ ନାହିଁ । ସୁବିଧାବାଦୀ, ପରାଂଗପୁଷ୍ଟ, ପୁଞ୍ଜିପତି ଗୋଷ୍ଠୀର କାର୍ଯ୍ୟକଳାପ ବିରୁଦ୍ଧରେ ତା'ଠାରେ ମାନସିକ

ପ୍ରତିଦ୍ୱନ୍ଦ୍ୱୀ ବା ତା' ହୃଦୟରେ ପ୍ରତିରୋଧ ଶକ୍ତିର ଅଭାବ । ବରଂ ଯାଦୁକରର ଅତ୍ୟାଗ୍ରହ ଓ ପ୍ରଚାରକର ମାୟାଜାଲ ନିକଟରେ ସେ ନତମସ୍ତକ । ଏଥି-ପାଇଁ ବହୁ ପରିମାଣରେ ଦାୟୀ ତା'ର ସରଳତା ଏବଂ ଅନ୍ଧବିଶ୍ୱାସ । ନିଜର ବିଚାରବୁଦ୍ଧି ପ୍ରୟୋଗ କରି ସେ ଯଦି ସାରିଆକୁ ଚମ୍ପା କୌଶଳରେ ନପଡ଼ିବାକୁ ପ୍ରବର୍ତ୍ତାଇ ପାରିଥା'ନ୍ତା ବା ଚମ୍ପାର ପ୍ରତାରଣାକୁ ପ୍ରତ୍ୟାଖ୍ୟାନ କରିଥା'ନ୍ତା, ତେବେ ସେ ମଂଗରାଜ ମାୟାଜାଲର ଶୀକାର ଏତେ ସହଜରେ ହୁଏତ ହୋଇପାରି ନଥା'ନ୍ତା । ନିଜ ସ୍ତ୍ରୀ କଥାରେ ବିଶ୍ୱାସ ନକରି ସେ ଯଦି ବୁଢ଼ୀମଂଗଳାଙ୍କ ଆଶୀର୍ବାଦରେ ଧନ, ସମ୍ପତ୍ତି ଓ ପୁତ୍ରଲାଭ କାମନାର ପ୍ରତିବାଦ କରିପାରିଥାଆନ୍ତା, ତା'ହେଲେ ହୁଏତ ତାଙ୍କ ଦାମ୍ପତ୍ୟ ଜୀବନରେ କ୍ଷଣିକ ଅଶାନ୍ତି ମୁଣ୍ଡଟେକି ଥାଆନ୍ତା; କିନ୍ତୁ ତାର ସମଗ୍ର ପାରିବାରିକ ଜୀବନ ଧୂଳିସାତ ହୋଇଯାଇ ନଥା'ନ୍ତା ।

ଈଶ୍ୱର ବିଶ୍ୱାସ ଓ ସନ୍ତାନ କାମନା ଭଗିଆର ବିପତ୍ତି ସୃଷ୍ଟିକାରୀ ଘଟଣା ବୋଲି ନିଶ୍ଚିତ ଭାବେ କୁହାଯାଇପାରେ । ଈଶ୍ୱରଙ୍କୁ ଭକ୍ତି କରିବା ମାନବ ସଭ୍ୟତାର ପାରମ୍ପରିକ ବିଶ୍ୱାସ । କିନ୍ତୁ ଏ ଭକ୍ତିର ଉଚ୍ଛ୍ୱାସ ସହରେ ପଲ୍ଲୀବାସୀଠାରେ ଭିନ୍ନ ରୂପରେ ପ୍ରକାଶିତ ହୁଏ । ଈଶ୍ୱରଙ୍କ ଆଶୀର୍ବାଦ ବିନା ମନୁଷ୍ୟ ସୁଖ ସମୃଦ୍ଧି ବା ଅପତ୍ୟ ସୁଖ ଲଭରୁ ବଞ୍ଚିତ ହୁଏ । ଏହିଭଳି ଏକ ଦୃଢ଼ ପ୍ରତ୍ୟୟ ପଲ୍ଲୀଜୀବନର ସରଳତାର ନିଦର୍ଶନ । ଭଗିଆ ଓ ସାରିଆ ଦୁହେଁଯାକ ସମାଜର ଏହି ଲୋକ ପ୍ରଚଳିତ ବିଶ୍ୱାସର ସ୍ରୋତ ମୁଖରେ ପ୍ରବାହିତ ହୋଇ ନିଜ ନିଜର ଭବିଷ୍ୟତ ଜୀବନ ଜଳଧିରେ କୂଳକିନାରା ହରାଇ ବସିଛନ୍ତି । ଏ ବିଶ୍ୱାସ ଭଗିଆ ଓ ସାରିଆଙ୍କୁ ପ୍ରଭାବିତ କରିନଥିଲେ ମଙ୍ଗରାଜ ବା ଚମ୍ପାର ଚତୁର କୂଟ କୌଶଳ କଦାପି ଫଳବତୀ ହୋଇ ନ'ଥାନ୍ତା । ସୁତରାଂ ମଙ୍ଗରାଜ ଓ ଚମ୍ପାର ଚତୁର ଇନ୍ଦ୍ରଜାଲ ବିଦ୍ୟାରେ ଭଗିଆ ଏକ କ୍ରୀଡ଼ାପୁତ୍ତଳିକା । ଏ ପୁତ୍ତଳିକାକୁ ଚମ୍ପା ଓ ମଙ୍ଗରାଜ ସାରିଆ ରୂପୀ କାଉଁରୀ କାଠି ସାହାଯ୍ୟରେ ନିର୍ବିଘ୍ନରେ ନଚାଇ ପାରିଛନ୍ତି ।

ପତ୍ନୀ ସ୍ନେହୀ ଭଗିଆ ନିଜ ସ୍ତ୍ରୀ ବୁଦ୍ଧିରେ ପରିଚାଳିତ ଏକ ଅପରିଣାମଦର୍ଶୀ ଚରିତ୍ର । ନିରକ୍ଷରତା ଓ ନିର୍ବୋଧତା ତାର ଏହି ଅପରିଣାମଦର୍ଶିତାର କାରଣ । ସେଥିପାଇଁ ଅନ୍ୟାନ୍ୟ ଅନେକଙ୍କ ପରି ନିଜ ସ୍ତ୍ରୀର ପ୍ରସ୍ତାବକୁ ଆନ୍ତରିକତାର ସହିତ ସେ ସମର୍ଥନ କରିଛି । ପୁତ୍ରେଚ୍ଛୁ ଭଗିଆ ଚାହିଁଥିଲେ ହୁଏତ ତାର ସ୍ତ୍ରୀକୁ ନିଷ୍ଫଳ ପ୍ରତ୍ୟାଶାରୁ ବିରତ କରିପାରିଥାଆନ୍ତା । ମାତ୍ର ତାର ସେ ବିଚାର ଦୃଢ଼ତା ନଥିଲା କିମ୍ବା ସାରିଆ ମନରେ ଆଘାତ ଦେବାର ପୌରୁଷତ୍ୱ ତା'ର ନଥିଲା । ଫଳରେ ଗୋଟିଏ ପାର୍ଶ୍ୱରେ ସରଳ, ଅନାବିଳ, ଦାରିଦ୍ର୍ୟ—ପ୍ରପୀଡ଼ିତ ଜୀବନରେ ଧନ – ସନ୍ତାନର ମୋହ ଓ ଅନ୍ୟ ପାର୍ଶ୍ୱରେ ତାର ଆଦରର ଗୃହିଣୀ ସାରିଆ ପ୍ରତି ଅନାବିଳ ସ୍ନେହ, ତା'ମନରେ ଦ୍ୱନ୍ଦ୍ୱ ବା ଜଟିଳତା ସୃଷ୍ଟି ନକରି; ବରଂ ତାକୁ ସହଜରେ ଜମିଦାର ମାୟା ଜାଲରେ ଆବଦ୍ଧ ହେବାପାଇଁ ପ୍ରବୃତ୍ତ

ଦେଇଛୁ । ସ୍ତ୍ରୀର ପ୍ରେମ ତା' ପାଇଁ ଅଗାଧ, ଅକଳନା ତେଣୁ—"ସାରିଆ ଖାଇ ଗାଧିବା ବେଳେ ଭଗିଆ ଚୂଲି ଫୁଙ୍କେ, ପାଣି ଆଣି ଦିଏ ।" (୨୯) କିନ୍ତୁ ଏପରି ସରଳ ନିର୍ବୋଧ ପ୍ରେମର ପରିଣତି ପରବର୍ତ୍ତୀ ସମୟରେ ଭଗିଚନ୍ଦର ସଂସାରକୁ ଧ୍ୱଂସାଭିମୁଖୀ କରିଦେଇଛି । ଦାରିଦ୍ର୍ୟ ଭଗିଆ ଜୀବନରେ ଝଡ଼ ସୃଷ୍ଟିର ଆବାହକ । ଧନ ସମ୍ପତ୍ତିର ପ୍ରାଚୁର୍ଯ୍ୟ ମନୁଷ୍ୟକୁ ଏ ବସ୍ତୁ-ବାଦୀ ଯୁଗରେ ଅନେକାଂଶରେ ଶକ୍ତିଶାଳୀ କରିପାରୁଛି । ମନୁଷ୍ୟ ତା' ଜୀବନର ଅନ୍ୟାନ୍ୟ ଅଭାବ ଅନଟନକୁ ଧନ ସମ୍ପଦର ବହୁଳତା ଭିତରେ ବିସ୍ମୃତ ହୋଇଯାଏ । ଭଗିଆ ସେହିପରି ପ୍ରାଚୁର୍ଯ୍ୟର ଅଧିକାରୀ ନଥିଲା, ଯାହାକି ତାର ସନ୍ତାନହୀନତା ଦୁଃଖକୁ ଘୁଞ୍ଚାଇ ଦେଇ ପାରିଥା'ନ୍ତା । ଅଧିକନ୍ତୁ ତାର ଅଭାବଗ୍ରସ୍ତ ଜୀବନରେ ଧନସମ୍ପଦ । ଭୋଗ-ବିଳାସର କାମନା କରିବା ମଧ୍ୟ ସ୍ୱାଭାବିକ । ଫଳରେ ସେ ବହୁ 'ଛମାଣ ଆଠଗୁଣ୍ଠ'ର ଅଧିକାରୀ ହେବାର ସ୍ୱପ୍ନ ଦେଖି ନିଜର ଏକମାତ୍ର 'ଛମାଣ ଆଠଗୁଣ୍ଠ' ଜମିକୁ ମଙ୍ଗରାଜଙ୍କ ପାଖରେ ବନ୍ଧା ପକାଇ ଦେଇ ନିଜ ଜୀବନରେ ଏକ ପ୍ରଳୟଙ୍କରୀ ଝଡ଼କୁ ଆହ୍ୱାନ କରିଥିଲା କହିଲେ ଚଳେ ।

ସମାଜର ବିଭିନ୍ନ ଚରିତ୍ରର ଲୋକଙ୍କୁ ଚିହ୍ନିବା ଏବଂ ସେମାନଙ୍କର ସଂସ୍ପର୍ଶରେ ଆସି ନିଜର କାର୍ଯ୍ୟକଳାପ ନିର୍ଦ୍ଧାରଣ କରିବାର ଦୁର୍ବଳତା ବା ସମାଜ-ଚେତନାର ଅଭାବ ଭଗିଆ ଜୀବନର ଶୋଚନୀୟ ପରିଣତି ପାଇଁ ଦାୟୀ । ସରଳ ବିଶ୍ୱାସ କରି ସେ ଚମ୍ପା କିମ୍ବା ମଙ୍ଗରାଜ କାହାର କପଟ ଭେଦ କରିପାରିନଥିଲା । ଭଗିଆ ପୂର୍ବରୁ ମଙ୍ଗରାଜଙ୍କ ମାୟା ଜାଲର ବିସ୍ତୃତିକା ବହୁ ନିରୀହ ପ୍ରଜାଙ୍କୁ ଉଚ୍ଛନ୍ନ କରିସାରିଥିଲା । ମଂଗରାଜ ଟଙ୍କା, ଧାନ କରଜ ଲଗାଇ ଅନ୍ୟକୁ ସର୍ବସ୍ୱାନ୍ତ କରିବା ସେତେବେଳେ ସମାଜ ନିକଟେ ଅଜ୍ଞାତ ନଥିଲା । ଏପରିକି ସାରିଆ ମଧ୍ୟ ଚମ୍ପା କଥାରେ ପ୍ରତିବାଦ କରି କହିଥିଲା—"ଜମିଦାର ବନ୍ଧା ରଖିଲେ ଆଉ ଜମି ଫେରାଇବେ ନାହିଁ ।" (୩୦) ସେପରି ସ୍ଥଳେ ଅନ୍ୟମାନଙ୍କ ପରି ମଂଗରାଜଙ୍କୁ ଜମି କଣ୍ଠ-କବଳ କରିଦେବା, ତା' ନିଜ ବିପଦକୁ ନିଜେ ବରଣ କରିବା ଛଡ଼ା ଅନ୍ୟ କିଛି ନୁହେଁ । ସେହିପରି ଜମିଦାର ଉଆସରେ ଚମ୍ପାର ଭୂମିକା ସମଗ୍ର ଗୋବିନ୍ଦପୁର ଓ ଆଖପାଖ ମୌଜାରେ ପ୍ରସାର ଲାଭ କରିଥିଲା । ତାର ଅସାମାଜିକ କାର୍ଯ୍ୟକଳାପ, ମଂଗରାଜ ଉଆସରେ ତା'ର ଆଧିପତ୍ୟ ଏବଂ ତାର ଅସ୍ୱାଭାବିକ ଗତିବିଧି ଓ ସୌନ୍ଦର୍ଯ୍ୟ ପ୍ରଭୃତି କାରଣରୁ ଲୋକେ ତାକୁ ହରକଲା ବୋଲି ନାମିତ କରିଥିଲେ । ଭଗିଆକୁ ଏକଥା ନିଶ୍ଚିତ ରୂପେ ଅଜଣା ନଥିଲା । ତା' ସତ୍ତ୍ୱେ ସାରିଆ ଚମ୍ପା କଥାରେ ବିଶ୍ୱାସ କରି ପରିଚାଳିତ ହେବାକୁ ସମର୍ଥନ କରିବା ଭଗିଆର ନିର୍ବୋଧତା ତଥା ଚାରିତ୍ରିକ ଦୁର୍ବଳତା ଛଡ଼ା ଆଉ କ'ଣ ହୋଇପାରେ ?

(୨୯) ଛମାଣ ଆଠଗୁଣ୍ଠ—ଫକୀରମୋହନ ସେନାପତି ।
(୩୦) ଛମାଣ ଆଠଗୁଣ୍ଠ—ଫକୀରମୋହନ ସେନାପତି ।

'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର 'ଭଗିଆ-ମଙ୍ଗରାଜ' ସଙ୍ଘର୍ଷରେ ଭଗିଆ ପରାଜିତ; କିନ୍ତୁ ମଙ୍ଗରାଜଙ୍କର ଯନ୍ତ୍ରଣାଦାୟକ ପରିଣତି ପାଇଁ ଆମେ ଭଗିଆକୁ ହିଁ ବିଜୟୀ ଘୋଷଣା କରିପାରୁ । ଫକୀରମୋହନଙ୍କ ଚରିତ୍ରାଧାରିତ ପରୀକ୍ଷ ପୃଷ୍ଠଭୂମି ମଧ୍ୟ ତଦନୁରୂପ । ସେ ଅବଚେତନ ଅବସ୍ଥାରେ ପାଗଳ ଭାବରେ ଭଗିଆ, ରାମଚନ୍ଦ୍ର ମଙ୍ଗରାଜଙ୍କଠାରୁ ପ୍ରତିଶୋଧ ନେବାର ବ୍ୟବସ୍ଥା କରିଛନ୍ତି । ଫଳରେ ଜେଲ୍‌ଖାନା ପାଗଳଗାରଦରେ ଜମିଦାର ରାମଚନ୍ଦ୍ର ମଙ୍ଗରାଜଙ୍କୁ ଭଗିଆ କାମୁଡ଼ି କ୍ଷତ ବିକ୍ଷତ କରିଛି । (୩୯) ଏବଂ ଶାରୀରିକ ଯନ୍ତ୍ରଣା ଭୋଗ କରି ନପାରି ଭଗିଆର ଭୟାବହ ପ୍ରେତରୂପ ଦର୍ଶନ କରି 'ଥ-ମା-ଆ-ଗୁ', 'ଥ-ମା-ଆ-ଗୁ' ବିଳାପ କରି ମଙ୍ଗରାଜେ ମରଣପଥର ଯାତ୍ରୀ ହୋଇଛନ୍ତି । ଏହାହିଁ ହୋଇଛି ମଙ୍ଗରାଜଙ୍କର ଭଗିଆ ନିକଟରେ ଆତ୍ମସମର୍ପଣ ।

ମାତ୍ର ଭିନ୍ନ ଦୃଷ୍ଟିରୁ ବିଚାରକଲେ, ଭଗିଆର ମାନସିକ ଶକ୍ତି ଦୁର୍ବଳ । ବିପଦର ସମ୍ମୁଖୀନ ହେବାପାଇଁ ତା' ନିକଟରେ ଶକ୍ତିର ଘୋର ଅଭାବ । ଆତ୍ମରକ୍ଷାର କୌଶଳ ଅବଲମ୍ବନରେ ସେ ମଧ୍ୟ ଅସମର୍ଥ । ସେଥିପାଇଁ ନିଜ ଜମି, ଗୃହ ଓ ଗାଈ ମଙ୍ଗରାଜ ଦଖଲ କଲାବେଳେ ସେ ନିଜର ମାନସିକ ସ୍ୱାସ୍ଥ୍ୟ ରକ୍ଷା କରିପାରି ନାହିଁ । ଏ ସମସ୍ତ ଘଟଣା ଏବଂ ସ୍ତ୍ରୀ ସାରିଆର ଶୋଚନୀୟତା ପାଇଁ ସେ ପାଗଳ ହୋଇ ପଡ଼ିଛି । ଏହି ଅବସ୍ଥାରେ ତାକୁ ରାମଚନ୍ଦ୍ର ମଙ୍ଗରାଜଙ୍କଠାରୁ ପ୍ରତିଶୋଧ ନେବାପାଇଁ ଛାଡ଼ିଦେଇଛନ୍ତି ଔପନ୍ୟାସିକ ଫକୀରମୋହନ । ଆପଣାର ସମସ୍ତ ଅପହରଣ କରିଥିବା ମଙ୍ଗରାଜଙ୍କ ପାଇଁ ଭଗିଆର ଏ ଆକ୍ରମଣ ଅନ୍ତତଃ ଘଟଣା ଦୃଷ୍ଟିରୁ ବେଶ୍ ଯଥାର୍ଥ ଓ ଉପଭୋଗ୍ୟ ମଧ୍ୟ ହୋଇପାରିଛି । ଅତଏବ ସମଗ୍ର ଉପନ୍ୟାସରେ ଭଗିଆର ପ୍ରତିବାଦ ଶବ୍ଦହୀନ । ମାତ୍ର ଯେତେବେଳେ ସେ ହତାହତ ଜ୍ଞାନଶୂନ୍ୟ, ସେତେବେଳେ ତା'ର ପ୍ରତିବାଦ ପ୍ରତିଶୋଧକୁ ରୂପାନ୍ତରିତ ହୋଇଯାଇଛି । ତାକୁ ସର୍ବସ୍ୱାନ୍ତ କରି ମଙ୍ଗରାଜ ହିଁ ନିଜର ଅକାଳ ଅଧଃପତନକୁ ଡାକିଆଣିଛନ୍ତି । ଶୋଷଣର ପ୍ରତିକ୍ରିୟା ଓ ପରିଣତି କ'ଣ ହୋଇପାରେ ତାହା ଏହି ଚରିତ୍ରଟି ମାଧ୍ୟମରେ ଫକୀରମୋହନ ଅତି ଜୀବନ୍ତ ଭାବରେ ପ୍ରକାଶ କରି-ଅଛନ୍ତି ।

---

(୩୯) ଭଗିଚନ୍ଦ ପାଗଳ ହୋଇଥିଲା ସତ୍ୟ; ମାତ୍ର ତା'ର ପ୍ରେମମୟୀ ଶାରିଆ ଓ 'ଛ'ମାଣ ଆଠଗୁଣ୍ଠ' ଜମିକୁ ସେ ଭୁଲି ନଥିଲା । 'ଜେଲ୍‌ରେ ସେ ରାତିସାରା ଶୁଏ ନାହିଁ । ମୋ ଶାରିଆ, 'ମୋ ଛ'ମାଣ ଆଠଗୁଣ୍ଠ', କହି କାନ୍ଦେ, ଛାତିମାରେ, ଡକାପାଡ଼େ, ହସେ । ମଙ୍ଗରାଜଙ୍କୁ ଦେଖିଲେ ସର୍ବଦା କାମୁଡ଼ିବାକୁ ଧାଏଁ ।''
( 'ଛ'ମାଣ ଆଠଗୁଣ୍ଠ )—ଫକୀରମୋହନ ସେନାପତି

**ଚମ୍ପା :**

ମଙ୍ଗରାଜଙ୍କ ଜୀବନ କ୍ଷେତ୍ରରେ ଦୁଇଗୋଟି ନଦୀ ପ୍ରବାହିତ ହେଉଥିଲା—"ଗୋଟିଏ ଉତ୍ତାଳ ତରଂଗମୟୀ ସର୍ପ କୁମ୍ଭୀରସଙ୍କୁଳା କୂଳପ୍ଲାବିନୀ ଚର୍ମଣ୍ୱତୀ, ଆଉ ଗୋଟିଏ ଅନ୍ତଃସ୍ରୋତା ପୂତ ସଲିଳା କୂଳପ୍ଲାବିନୀ ଫଲ୍‌ଗୁ ।" (୩୨) ଚମ୍ପା ଜଟିଳା, କୁଟିଳା, ଦୁଃଶ୍ଚରିତ୍ରା, ଉଦ୍‌ବାସ୍ତୁ ଚରିତ୍ରସମ୍ପନ୍ନା ନାରୀ । ତା'ର ଜାତି କୁଳଗୋତ୍ର ଜଣାନାହିଁ । ସେ ଭୟଙ୍କରୀ, ନିଷ୍ଠୁରୀ । ସେ କାମକୁତୁକିନୀ । ସେ ସର୍ପ-କୁମ୍ଭୀର-ସଙ୍କୁଳା ଉତ୍ତାଳ ତରଂଗମୟୀ ଚର୍ମଣ୍ୱତୀ । ମଂଗରାଜଙ୍କ ଜୀବନରେ ଏହି ଚର୍ମଣ୍ୱତୀର ଆବିର୍ଭାବ ମଂଗରାଜଙ୍କ ପାଶବିକ ପ୍ରବୃତ୍ତିକୁ ଜାଗ୍ରତ କରିଛି । ଚମ୍ପା ମଂଗରାଜଙ୍କୁ କରିଛି ଭୟଙ୍କର, ଅର୍ଥଲିପ୍ସୁ, ଶୋଷଣକାମୀ ଓ ହୀନପ୍ରବୃତ୍ତିସମ୍ପନ୍ନ । ଚଂପାର ଜାତି ଗୋତ୍ର ଅଜ୍ଞାତ । ତା'ର ମୁହଁରେ ସେ ସ୍ୱୀକାର କରିଛି—"ମୋ ନାମ ଚମ୍ପା, ବାପର ନାମ ଜଣାନାହିଁ । ଜାତି ଏଇ ଘର ମଣିଷ ।" ଏଇ ଚମ୍ପା ହିଁ ଆଲୋଚ୍ୟ ଉପନ୍ୟାସର ନାୟିକା । ଔପନ୍ୟାସିକ ଫକୀରମୋହନ ପ୍ରାଣଦେଇ ଏହି ଚରିତ୍ରକୁ ବର୍ଣ୍ଣନା କରିଛନ୍ତି । ସତେ ଯେପରି ଏଇ ଚରିତ୍ରଟି ତାଙ୍କର ଏକାନ୍ତ ଜଣାଶୁଣା । 'ଛ'ମାଣ ଆଠଗୁଣ୍ଠ'ରେ ଚମ୍ପା ଚରିତ୍ରର ପରିକଳ୍ପନା ଫକୀରମୋହନଙ୍କ ଅନୁଭୂତି ପ୍ରସୂତ । ଫକୀରମୋହନଙ୍କ ପରିବାରର ମୁଖରା, ପ୍ରଭାବଶାଳିନୀ, ଆଧିପତ୍ୟ ବିସ୍ତାରକାରିଣୀ, ପୋଇଲି କେତକୀର ଅବଦାନ ଫକୀରମୋହନଙ୍କ ଚଂପା ସୃଷ୍ଟିର ଅନୁରୂପ ବୋଲି ତାଙ୍କର ନାତି ଅଧିରାଜ ମୋହନ ସେନାପତି ପ୍ରକାଶ କରିଛନ୍ତି । (୩୩) ଏଇ କେତକୀ 'ଛ'ମାଣ ଆଠଗୁଣ୍ଠ'ରେ ଚମ୍ପା ରୂପରେ ଅବତୀର୍ଣ୍ଣା ହୋଇଛି । ସେ ପୁଣି—"ମଂଗରାଜଙ୍କ ଘରେ ଦାସୀ କି ସାଆନ୍ତାଣୀ, ବ୍ୟବହାର ଦ୍ୱାରା ବୁଝିବାର କାହାରି ଶକ୍ତି ନାହିଁ । ମଂଗରାଜଙ୍କ ଉଆସ ମଧ୍ୟରେ ଚମ୍ପାର କ୍ଷମତା ସୀମାତୀତ । ଅଧିକ କ'ଣ, ସା'ନ୍ତାଣୀ କ୍ଷମତାରୁ ଢେର୍ ବେଶି ।" (୩୪) ଏଇ ଚମ୍ପାକୁ ଜାଣିଲାଶୁଣିଲା ଲୋକେ ଗୁଜରାଣୀ ବୋଲି ଡାକନ୍ତି; କିନ୍ତୁ ନୂଆ ଲୋକଙ୍କ ଆଖିରେ ସେ ସାଆନ୍ତାଣୀ । ଏଇ ସାଆନ୍ତାଣୀ ହେବାର ମୋହ ପରବର୍ତ୍ତୀ ସମୟରେ ତା' ଅସହାୟ ମୃତ୍ୟୁର କାରଣ ହୋଇଛି ।

---

(୩୨) ଛ'ମାଣ ଆଠଗୁଣ୍ଠ—ଫକୀରମୋହନ ସେନାପତି ।

(୩୩) "କେତକୀ ପୋଇଲିଟା ଗୁଡ଼ାଏ ପାଟିମୁଣ୍ଡ କରେ । ସମସ୍ତଙ୍କ ଉପରେ ହୁକୁମ୍ ଜାରି କରିବାକୁ ଚାହେଁ । ସତେ କି ସେପରି ଘରର ମାଲିକାଣୀ । ତାକୁ କେହି ପଦେ କହିବ ତ ସେ ଦ'ପଦ ଶୁଣାଇଦେବ ।"

(୩୪) ଛ'ମାଣ ଆଠଗୁଣ୍ଠ—ଫକୀରମୋହନ ସେନାପତି ।

ଚମ୍ପା 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ଖଳନାୟିକା ଭାବରେ ଅବତୀର୍ଣ୍ଣା । ସେ ସତୀ, ସାଧ୍ୱୀ ନୁହେଁ କି ରୂପବତୀ ନୁହେଁ । ସେ କୁ-ରୂପା, ଉଦ୍‌ବାସ୍ତୁ ଚରିତ୍ରର ଏକ ଭୟାନକ ନାରୀ । ରାମଚନ୍ଦ୍ର ମଂଗରାଜଙ୍କୁ କୁ-ପଥଗାମୀ କରି ତାଙ୍କ ପତନ ମୂଳକୁ ଠେଲିଦେବାର ପୃଷ୍ଠଭୂମି ହେଉଛି ଏହି 'ଚମ୍ପା' ଚରିତ୍ର । ଶଠତା, ନୃଶଂସତା, ବର୍ବରତା ଓ ପୈଶାଚିକ କାର୍ଯ୍ୟରେ ଏମିତ ନାରୀ ଜାତିରେ ବୋଧେ ସେ ଏକ ବ୍ୟତିକ୍ରମ । ଭଗିଆ, ସାରିଆ ଭଳି ସରଳ ପ୍ରାଣ ସ୍ୱାମୀ-ସ୍ତ୍ରୀଙ୍କୁ ଆପଣାର କୁ-ଚକ୍ର ତଥା ଷଡ଼ଯନ୍ତ୍ରରେ ଅଙ୍ଗୀକାର କରି ରାମଚନ୍ଦ୍ର ମଂଗରାଜଙ୍କ ଦ୍ୱାରା ତାଙ୍କୁ ସେ ସର୍ବସ୍ୱାନ୍ତ କରିଛି । ଏଥିରେ ତା'ର ସ୍ୱାର୍ଥ ନାହିଁ । ମାତ୍ର ପରର ଅନିଷ୍ଟ କରିବାରେ ସେ ପାଏ ପରମ ତୃପ୍ତି । ତେଣୁ ସାରିଆ, ଭଗିଆଙ୍କ ଛ'ମାଣ ଆଠଗୁଣ୍ଠ ଅପହରଣଠାରୁ ବାଘସିଂହ ଘରେ ନିଆଁ ଲଗାଇବା ପରି ହୀନକାର୍ଯ୍ୟରେ ନିଜକୁ ନିୟୋଜିତ କରି ସେ ଆନନ୍ଦ ବିଭୋର ହୋଇ-ଉଠିଛି ।

ଚମ୍ପାର ମାନସିକ ଶକ୍ତି ଅପରିସୀମ । ସେଥିପାଇଁ ସେ ତା'ର ଭବିଷ୍ୟତ ଜୀବନର ପ୍ରତି-ନିର୍ଯ୍ୟାତନାରେ ବିତୃଷ୍ଣ ନୁହେଁ । ସେ ଜାଣେ ଯଦି କାହାର ଅନିଷ୍ଟ ସାଧନ କରେ, ତା' ହେଲେ ଦୁନିଆ ଦରବାରରେ ତାକୁ ସେ ଦିନେ ଦଣ୍ଡିତ ହେବା ପାଇଁ ପଡ଼ିବ ବା ପ୍ରାୟଶ୍ଚିତ କରିବାକୁ ପଡ଼ିବ, ଏ ପ୍ରକାର ବିଶ୍ୱାସ ତା' ନିକଟରେ ମୂଲ୍ୟହୀନ । ଯାହା-ଫଳରେ ସେ ଗୋଟିକ ପରେ ଗୋଟିଏ ଷଡ଼ଯନ୍ତ୍ରର ସୂତ୍ରପାତ କରିଚାଲିଛି ନିର୍ବିଘ୍ନରେ । ସେ ଭାଗ୍ୟବାଦୀ ନୁହେଁ; ବରଂ ନିଜ କର୍ମ ଉପରେ ତା'ର ବିଶ୍ୱାସ, ନିଜ ଚତୁରତା ଉପରେ ତା'ର ପ୍ରତ୍ୟୟ ଏବଂ ଧୂର୍ତ୍ତତା ଉପରେ ତା'ର ଦୃଢ଼ତା ବିଦ୍ୟମାନ । ତା' ଅବ୍ୟର୍ଥ ଶର ସନ୍ଧାନରେ ପ୍ରତ୍ୟକ୍ଷ ଶିକାର ସାଜିଛନ୍ତି ଭଗିଆ-ସାରିଆ, ବାଘସିଂହ ବଂଶ ଏବଂ ଏହିପରି ଅନେକ । ଭଗିଆ-ସାରିଆଙ୍କର ବିକଟାଳ ପ୍ରେତାତ୍ମା ତାକୁ ଭୟଭୀତ କରିନାହିଁ ବା 'ଛ'ମାଣ ଆଠଗୁଣ୍ଠ'ର ମର୍ମର ବିଳାପ ଧ୍ୱନି ତା' ହୃଦୟକୁ ବେଦନା ବିଧୁର ବା ମର୍ମାହତ କରିନାହିଁ । ଚମ୍ପା ମାନସିକ ସ୍ତରରେ ବେଶ୍ ଦୃଢ଼ ଏପରିକି ରାମଚନ୍ଦ୍ର ମଂଗରାଜଙ୍କଠାରୁ ।

ଚମ୍ପାର ଚତୁରତା, ଧୂର୍ତ୍ତତା, ତା'ର ଟାଙ୍ଗୀ ମାଉସୀ ଅଭିନୟରୁ ସ୍ପଷ୍ଟ ଅନୁମେୟ । ଏହି ଅଭିନୟ ବାଘସିଂହ ବଂଶର କାଳ ହୋଇଛି । ରାମଚନ୍ଦ୍ର ମଙ୍ଗରାଜଙ୍କ ଅଜେୟ ଶତ୍ରୁ ବାଘସିଂହ ବଂଶକୁ ସାଧନ କରିବା ପାଇଁ ଟାଙ୍ଗୀ ମାଉସୀ ବେଶରେ ଚମ୍ପା ଯାଇ ତାଙ୍କ ଘରେ ନିଆଁ ଲଗାଇ ଦେଇଆସିବା ତା'ର ଅଦ୍ଭୁତ ସାହସିକତାର ପରିଚୟ ଦିଏ । ଏହି ସାହସିକତାର ପଛରେ ତା'ର ନାରୀତ୍ୱର ସ୍ନିଗ୍ଧ, କୋମଳ ରୂପଟି ନିଶ୍ଚିତ ଭାବେ ଯେ ଅନ୍ତର୍ହିତ ହୋଇଯାଇଛି, ଏକଥା ଅସ୍ୱୀକାର କରାଯାଇ ନପାରେ । କେବଳ ଏତିକି ନୁହେଁ, ତା'ର ଚତୁରତା ବଳରେ ସେ ରାମଚନ୍ଦ୍ର ମଙ୍ଗରାଜଙ୍କ ମନରେ ଦୀର୍ଘଦିନଧରି

ଥିବା 'ଛ'ମାଣ ଆଠଗୁଣ୍ଠ' ଜମି ପାଇବାର ମୋହକୁ ଚରିତାର୍ଥ କରିପାରିଛି । ବାଘ-ମଂଗଳାର ଦୁହାଇ ଦେଇ, ସାରିଆ ମନରେ ମାତୃତ୍ୱର କାମନା ଜଗାଇ ଏବଂ ଠାକୁରାଣୀଙ୍କ କୋପର ବର୍ଣ୍ଣନା କରି ସେ ସାରିଆ ଓ ଭଗିଆକୁ ଅନ୍ତଃପୁରକୁ ଆଣିଛି । ଭଗିଚନ୍ଦ ତା'ର ପ୍ରରୋଚନାରେ ଶାଆନ୍ତ ମଂଗରାଜଙ୍କ ନିକଟରେ ଆପଣାର 'ଛ'ମାଣ ଆଠଗୁଣ୍ଠ' ବନ୍ଧା ଦେଇଛି କେବଳ ଠାକୁରାଣୀଙ୍କ ଦେଉଳ ତୋଳା ପାଇଁ । ମାତ୍ର ଏଇଠୁ ତା'ର ଜୀବନର ଗତି ପରିବର୍ତ୍ତିତ ହୋଇଯାଇଛି । ଯଥାସମୟରେ ମଂଗରାଜେ ଏକତରଫା ଡିକ୍ରୀ ଆଣି ତା'ର ଜମି ଦଖଲ କରିଛନ୍ତି । ଏଥିପାଇଁ ଚମ୍ପା ତାଙ୍କର କମ୍ ଧନ୍ୟବାଦର ପାତ୍ରୀ ନୁହେଁ ।

ଭଗିଚନ୍ଦ ଓ ସାରିଆଙ୍କୁ ସର୍ବସ୍ୱାନ୍ତ କରିବାରେ ଚମ୍ପାର ଭୂମିକା ଯେପରି ଅନସ୍ୱୀକାର୍ଯ୍ୟ, ସେହିପରି ମଂଗରାଜଙ୍କୁ ବିପଥଗାମୀ କରିବା, ତାଙ୍କ ପାରିବାରିକ ସମ୍ପର୍କରେ କଳାହଲ ସୃଷ୍ଟି କରିବା ଓ ମଂଗରାଜଙ୍କୁ ପତନ ଭିତରକୁ ଠେଲିଦେବାରେ ତା'ର ଭୂମିକାକୁ ମଧ୍ୟ ଅସ୍ୱୀକାର କରିଯାଇନପାରେ । ମଂଗରାଜଙ୍କ କାନେ କାନେ ସେ ଷଡ଼ଯନ୍ତ୍ର, ପରଧନ ଅପହରଣର ମନ୍ତ୍ର ଫୁଙ୍କିଛି । ସତୀ ସାଧ୍ୱୀ ସା'ଆନ୍ତାଣୀଙ୍କ ଉପରେ ନିଜର କ୍ଷମତା ଜାହିର୍ କରିବାକୁ ଚେଷ୍ଟାକରି ଶାଆନ୍ତାଣୀଙ୍କ ମନସ୍ତାପର ସେ କାରଣ ହୋଇଛି । ଦେଖିବାକୁଗଲେ ଶାଆନ୍ତାଣୀଙ୍କ ମୃତ୍ୟୁର ଅନ୍ୟତମ କାରଣ ମଧ୍ୟ ଚମ୍ପା ।

ଚମ୍ପା ବିଶ୍ୱାସଘାତକିନୀ ଏବଂ ନିମକହାରାମ ପ୍ରକୃତର ବିଶିଷ୍ଟ । ଜମିଦାର ମଂଗରାଜଙ୍କ ଅନ୍ନରେ ପ୍ରତିପାଳିତ ହୋଇ, ସେ ତାଙ୍କର ପ୍ରକାରାନ୍ତରେ ସର୍ବନାଶ କରିଛି । ଶାଆନ୍ତାଣୀଙ୍କ ନିକଟରୁ ମଂଗରାଜଙ୍କୁ ଅନ୍ତର କରି ତାଙ୍କର ଦୁଃଖ ଅଶାନ୍ତିଜନିତ ମୃତ୍ୟୁର କାରଣ ସେ ହୋଇଛି । ଭଗିଆ ସାରିଆଙ୍କୁ ଦାଣ୍ଡରେ ଭିକାରି କରି ସେ ମଂଗରାଜଙ୍କର ପରୋକ୍ଷ ଅନିଷ୍ଟ ସାଧନ କରିଛି । ସର୍ବୋପରି ଶାରିଆ ମୃତ୍ୟୁଦଣ୍ଡରେ ଅଭିଯୁକ୍ତ ମଂଗରାଜେ ଜେଲ୍‌କୁ ଯିବା ସମୟରେ ତାଙ୍କଠାରୁ ଭଣ୍ଡାର ଘରର ଗୁପ୍ତ କୌଶଳକ୍ରମେ ନେଇଆସି ତାଙ୍କର ଭଣ୍ଡାର ଘରୁ ସମସ୍ତ ଧନ ସମ୍ପତ୍ତି ଲୁଟ୍ କରି ଗୋବିନ୍ଦା ସହ ସେ ଚମ୍ପଟ ଦେଇଛି; କିନ୍ତୁ ଏପରି ପ୍ରତାରଣାର ଅନ୍ତରାଳରେ ଯେ ବିଧିର ନିଷ୍ଠୁର ଉପହାସ ରହିଥିଲା ତାହା ବୋଧେ ଚମ୍ପା ଜାଣିନଥିଲା । ସେଥିପାଇଁ ମନୁଷ୍ୟ ସହିତ ପ୍ରକୃତି ମଧ୍ୟ ତା' ଉପରେ ଦଣ୍ଡବିଧାନ କରିବାପାଇଁ ଆଗେଇ ଆସିଛି । ଜନ, ମାନବଶୂନ୍ୟ, ନିର୍ଜନ ଅପରାହ୍ନର ନଦୀ ଘାଟରେ, ବାତ୍ୟା ପ୍ରକମ୍ପିତ, ବୃଷ୍ଟିମୁଖର ଅନ୍ଧକାରାଚ୍ଛନ୍ନ ରାତ୍ରିର ପ୍ରଳୟଙ୍କରୀ ମୂହୂର୍ତ୍ତରେ ଗୋବିନ୍ଦା ଭଣ୍ଡାରି ପରି ଏକ ସାଧାରଣ ଭୃତ୍ୟ ଭଣ୍ଡାରି ହାତରେ ତା'ର ପ୍ରାଣ ନାଶ ହୋଇଛି ।

"ସମଗ୍ର ଓଡ଼ିଆ ସାହିତ୍ୟରେ 'ଛ'ମାଣ ଆଠଗୁଣ୍ଠ'ର ଦ୍ୱାବିଂଶ ପରିଚ୍ଛେଦରେ ବର୍ଣ୍ଣିତ ଚମ୍ପାର ହତ୍ୟାଠାରୁ ବଳି ଭୀଷଣ ବର୍ଣ୍ଣନା ଆଉ ନାହିଁ । ଆଲୋଚିତ ବର୍ଣ୍ଣନା ଯେଉଁ ଭୀମ, ରୁଦ୍ର ପରିବେଶ ସୃଷ୍ଟି କରେ, ପାଠକ ଯଥାର୍ଥରେ ସେଥିରେ ସ୍ତମ୍ଭୀଭୂତ

ହୋଇଯାଏ । ଚମ୍ପାର ଶାସ୍ତି କି ଭୀଷଣ ! "ଘୋର ଅନ୍ଧକାର ରାତ୍ରି । ମଣିଷ ନିଜ ଦେହ ଦେଖିପାରିବ ନାହିଁ । ସାଁ ସାଁ କରି ଦକ୍ଷିଣା ପବନ ବାଉଳାଉଛି । ଝୁହାକୁ ଝୁହା ବରଷା, ବରଗଛଟା ଗୋଟାଏ ଅନ୍ଧକାର ଗଦାପରି ଛିଡ଼ା ହୋଇ ଦୋହଲି ଦୋହଲି ଗୋଟାଏ କେମିତି ଆତଙ୍କଜନକ ଶବ୍ଦ କରୁଛି । ଗୁଡ଼ାଏ ବାଦୁଡ଼ି ସାନ ସାନ ଅନ୍ଧକାର ଖଣ୍ଡ ପରି ଘୂରିଆଡ଼ୁ ଉଡ଼ି ସେହି ଅନ୍ଧକାର ଗଦାରେ ଝୁଲିପଡ଼ୁଅଛନ୍ତି । ପୁଣି କେତେଖଣ୍ଡ ଅନ୍ଧକାର-ପରି ବାହାରି ଆକାଶରେ ଉଡ଼ିଯାଉଛନ୍ତି । କର୍ କର୍ ଶବ୍ଦ କରି ବରଫଳ ଖାଉଛନ୍ତି, ଟପ୍ ଟପ୍ ହୋଇ ବରଫଳ ତଳେ ପଡ଼ୁଅଛି । ଚତୁର୍ଦ୍ଦିଗରେ ପୈଶାଚିକ ଶବ୍ଦ, ଘର ମଧ୍ୟରେ ଚମ୍ପାର ଅନୁନାସିକ ଶବ୍ଦ ଅତିଶ ଭୟଙ୍କର ଶୁଭୁଅଛି । ସେହି ଅନ୍ଧକାର ଗଦାତଳେ କୁକୁରଟା ପଶୁର ଖେଁ ଖେଁ କାମୁଡ଼ା କାମୁଡ଼ି ଶବ୍ଦ ଶୁଣି ଗୋବିନ୍ଦା ଚମକିପଡ଼ି ଅନାଇଲା । ଘର ମଧ୍ୟରେ ଜଳୁଥିବା ଦୀପର ତେଜଟି କ୍ରମଶଃ କ୍ଷୀଣ ହୋଇ ଆସୁଅଛି ।" ଚମ୍ପାର ଚରମ ବିଶ୍ୱାସଘାତକତାର ଏଇ ପୃଷ୍ଠଭୂମି, ଏଇ ପରିବେଶ । ମନୁଷ୍ୟକୁ ନିଜ ଦୁଷ୍କର୍ମର ଯୋଗ୍ୟଶାସ୍ତି ଦେବାପାଇଁ ପ୍ରକୃତି ସୁଦ୍ଧା ଯେପରି ଜଲ୍ଲାଦର ଭୀମରୂପ ଧରିଅଛି । ଗୋବିନ୍ଦା ତ ସେଠି ଯେପରି ଜଲ୍ଲାଦର ଚେଲା । ଚମ୍ପା ସେ ଶାସ୍ତିର ଚରମ ବିଧାନ ଏଡ଼ିପାରିଲା ନାହିଁ ।" (୩୫) ଗୋବିନ୍ଦା ହାତରେ ତା'ର ପ୍ରାଣ ଯିବା ପରେ ବି ସେଠାରେ ତା'ର ଲାସ୍‌ଟା ଅତି ଭୟଙ୍କର ହୋଇ ପଡ଼ିରହିଲା । ତା'ର ଶବ ସତ୍କାର ପୁଣି ହେଲା ମେହେନ୍ତର, ହାଡ଼ିଙ୍କ ହାତରେ । ପୁଣି ତା'ର ମୃତ୍ୟୁପରେ ଲୋକେ ତାକୁ ପେତୁଣୀ ଭାବରେ ଗଣନା କଲେ । "ଜୀବଦ୍ଦଶାରେ କେବଳ କର୍ମଫଳର ଶାସ୍ତି ଭୋଗ ହୁଏନାହିଁ, ମୃତ୍ୟୁପରେ ସୁଦ୍ଧା ତାକୁ ଶାସ୍ତି ଭୋଗ କରିବାକୁ ପଡ଼ିଥାଏ । କର୍ମ ଫଳରେ ଫକୀରମୋହନଙ୍କ ପାଠକମାନଙ୍କର ବିଶ୍ୱାସ ଥାଇପାରେ ବା ନ ଥାଇପାରେ; କିନ୍ତୁ ଯେଉଁ ବିଶ୍ୱାସରେ ସେ ବଢ଼ିଥିଲେ, ତାହା ଯେ ଚମ୍ପାର ପରିଣତିରେ ଅତି ନିପୁଣ ଓ ବଳିଷ୍ଠ ଭାବରେ ଚିତ୍ରଣ କରିପାରିଛନ୍ତି । (୩୬)

ମଂଗରାଜଙ୍କ ପରି ଚମ୍ପା ମଣିଷଗଢ଼ା ଆଇନ୍‌ରୁ ଖସିଗଲା ସତ; ମାତ୍ର କର୍ମଫଳର ଅଲଙ୍ଘନୀୟ ଶାସ୍ତି ତାକୁ ଭୋଗ କରିବାକୁ ପଡ଼ିଲା ଅତି ନିର୍ମମ ଭାବରେ ।

**ସାରିଆ :**

ସାରିଆ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ଏକ ଅତୁଳ ଚରିତ୍ର । ଭଗିଆର ସହଧର୍ମିଣୀ ସେ । ତା'ର ହୃଦୟରେ ଛଳ ନାହିଁ, କପଟ ନାହିଁ । ସାରିଆର ପତିଭକ୍ତିର ପଟାନ୍ତର ନାହିଁ । ପତି-ପତ୍ନୀ ମଧ୍ୟରେ ଅଭେଦ୍ୟ ପ୍ରୀତି ତାଙ୍କ ସଂସାରକୁ ସ୍ୱର୍ଗ ତୁଲ୍ୟ

---

(୩୫) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା-୯୪
(୩୬) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା-୯୫

ମନୋରମ କରିଥିଲ । ସେ ନିଜ ଦୁଃଖରେ ଦୁଃଖୀ, ନିଜ ସୁଖରେ ସୁଖୀ । କାହାରି ଦୁଃଖରେ ବା ସୁଖରେ ସେମାନେ ନଥାନ୍ତି । "ଦୁହେଁ ମିଳିମିଶି ଘରକାମ କରନ୍ତି, ଭଉଣୀ ତନ୍ତ ବୁଣିବା ବେଳେ ସାରିଆ ନଳୀ ବଳେ, ଲୁଣ୍ଡି କାଢ଼େ, ଚରଖାରେ ସୂତା ଦିଏ । ସାରିଆ ଭାତ ରାନ୍ଧିବା ବେଳେ ଭଉଣୀ ଚୂଲି ଫୁଙ୍କେ, ପାଣି ଆଣିଦିଏ । ଗାଁ'ର ମସ୍ତବଡ଼ ନିନ୍ଦୁକ ଲୋକମାନେ ସେମାନଙ୍କୁ ଦେଖି ଢଗ ମେଲନ୍ତି—"ସାରିଆ-ଭଉଣୀଙ୍କୁ ଦେଖ, ବଗଲା-ବଗୁଲି ଲେଖ ।" (୬୭)

ଏହି ସରଳା-ନିରୀହା ସାରିଆର ସୁଖର ସଂସାର ଭାଙ୍ଗିଯାଇଛି ଚମ୍ପା ଓ ମଂଗରାଜର ଷଡ଼ଯନ୍ତ୍ରରେ । ତା' ନିରୀହ ଜୀବନର ସରଳତାର ସୁଯୋଗ ନେଇ ଚମ୍ପା ତା' ପ୍ରତି ଅନାୟାସରେ ମନ୍ତ୍ର ପ୍ରୟୋଗ କରିଛି । ଯାହାର ମାନସିକ ଶକ୍ତି ଦୁର୍ବଳ ସେ ଅନ୍ୟ ନିକଟରେ ସହଜରେ ଆତ୍ମସମର୍ପଣ କରିଥାଏ । ସୂକ୍ଷ୍ମ ବୁଦ୍ଧିର ଚକ୍ର ପ୍ରୟୋଗ କରି ଅନ୍ୟ ଲୋକର ପ୍ରସ୍ତାବକୁ ବିରୋଧ କରିବା ବା ପ୍ରସ୍ତାବକର ଧୂର୍ତ୍ତତା ଉପଲବ୍ଧି କରି ନିଜର ଉପସ୍ଥିତ କର୍ତ୍ତବ୍ୟ ନିର୍ଦ୍ଧାରଣ କରିବା ତା' ପକ୍ଷେ ଆଦୌ ସମ୍ଭବପର ହୁଏନାହିଁ । ସାରିଆର ଏହିପରି ଚିତ୍ତ ଦୁର୍ବଳତା ଓ ମାନସିକ ଦୁର୍ବଳତା ଉଭୟ ଦେଖାଦେଇଛି । ଏହି ଦୁର୍ବଳତା ତା' ଜୀବନର ଚରମ ବିପର୍ଯ୍ୟୟକୁ ଡାକିଆଣିଛି ।

ବାତ୍ସଲ୍ୟମମତା ନାରୀଜୀବନର ଶ୍ରେଷ୍ଠ ସମ୍ପଦ । ସନ୍ତାନସନ୍ତତିଙ୍କର ଜନନୀ ହେବାରେ ନାରୀ ଜୀବନର ଗର୍ବ ଏବଂ ଗୌରବ ନିହିତ । ସନ୍ତାନ ପ୍ରାପ୍ତି ନାରୀ ନିକଟରେ ସ୍ୱର୍ଗ ସୁଖର କଳ୍ପନା ଜାତ କରେ । ଯେଉଁ ନାରୀ ପୁତ୍ର କନ୍ୟା ରୂପୀ ସ୍ୱର୍ଗୀୟ ସୁଖସମ୍ପଦ ଲାଭରୁ ବଞ୍ଚିତା, ତା' ଜୀବନରେ ଥାଏ ଅନେକ ସାମାଜିକ ଲାଞ୍ଛନା, ନିର୍ଯ୍ୟାତନା । ସନ୍ତାନହୀନ ସାରିଆର ଜୀବନ ସେହିପରି ଅଶାନ୍ତ, ଅସନ୍ତୋଷର ପ୍ରବଳ ବହ୍ନିରେ ଦଗ୍ଧୀଭୂତ ହୋଇଉଠିଥିଲା । ନିଜର ସବୁକିଛିର ବିନିମୟରେ ସେ ପୁତ୍ର କାମନା କରିବା କିଛି ବିଚିତ୍ର ନୁହେଁ । ତା' ହୃଦୟ ଭିତରର ଏହି ଅଳିଭାଦାଗ ଚମ୍ପାର କପଟ ଆଚରଣ ପାଇଁ ସହାୟକ ଏବଂ ଏକମାତ୍ର ଉର୍ବର ଶସ୍ୟ ଶ୍ୟାମଳ ଛ'ମାଣ ଆଠଗୁଣ୍ଠ ଜମି ଅପହରଣର କାରଣ । ରମଣୀର ଅପତ୍ୟ-ହୀନତା, ବନ୍ଧ୍ୟାଦୋଷ ସମାଜ ଦୃଷ୍ଟିରେ ପାପ ଓ କଳଙ୍କ । ସନ୍ତାନହୀନ ଦମ୍ପତିଙ୍କୁ ସମାଜ, ସମାଜବାସୀ ଉଭୟ ଘୃଣା ଚକ୍ଷୁରେ ଦେଖନ୍ତି । ଏପରିକି ବନ୍ଧ୍ୟା ରମଣୀର ମୁଖଦର୍ଶନ ଅଶୁଭ ବୋଲି ପଲ୍ଲୀବାସୀଙ୍କର ଏକ ଚିରାଚରିତ ତଥା ବଦ୍ଧମୂଳ ଧାରଣା । ପୂର୍ବ ଜନ୍ମର ଦୋଷ ବା ଦୈବୀ ଅଭିଶାପ ରମଣୀକୁ ଜନନୀ ହେବା ସୁଖରୁ ବଞ୍ଚିତ କରେ । ବହୁ ପ୍ରାଚୀନ ପୁରାଣଶାସ୍ତ୍ରରେ ବର୍ଣ୍ଣିତ ଏହି ଘଟଣା ପଲ୍ଲୀ ଅଞ୍ଚଳର ଜନସାଧାରଣଙ୍କ ଅନ୍ଧବିଶ୍ୱାସକୁ ଅଧିକ ଦୃଢ଼ କରିଛି । ସେଥିପାଇଁ ଚମ୍ପା ଯେତେବେଳେ କହିଛି—"ଆଉ ତମେ ଦେଖିବଟି, ବଡ଼-

(୬୭) ଫକୀରମୋହନ ସେନାପତି—'ଛ'ମାଣ ଆଠଗୁଣ୍ଠ'

ଙ୍କୋଙ୍କୁ ତମ ଦୁଆର ବାଟେ କେହି ଲୋକ ଚାଲନ୍ତି ନାହିଁ । କିଆଁ ଚାଲନ୍ତି ନାହିଁ ? ତମ ମୁହଁ ଦେଖିବେ ନାହିଁ ବୋଲି । ତମେ ଶୁଣିଥିବ ଆମ ଠାକୁରାଣୀ ପ୍ରଥମେ ବାନ୍ଧି ଥିଲେ । ଧନ ପଣ୍ଡିଏ ଯାଏ ଆମ୍ଭେମାନେ ତାଙ୍କ ମୁହଁ ଚାହୁଁନଥିଲୁ ପରା ! ଠାକୁରାଣୀ କାନ୍ଦି କାନ୍ଦି ମଂଗଳାଙ୍କୁ ପୂଜା ଦେଲେ, ଦେବୀଙ୍କର ତମ ଉପରେ ଯେପରି ଦୟା ହେଲା, ସେହିପରି ଦୟା ହେଲା, ତାଙ୍କୁ ଏବେ ଦେଖ, ନାତି-ନାତୁଣୀ ଦେଖିବାକୁ ବସିଲେଣି ।'' ଚମ୍ପାର ଏହି କଥା ଶୁଣି ସାଉଆ ମନରେ ଦେଖାଦେଇଛି ଭାବାନ୍ତର ।

ପୁଅ ନଥିବା କାରଣରୁ ସେ ଯାନ ଖାଇ ପଡ଼ୋଶୀଙ୍କ ଚକ୍ଷୁରେ ଘୃଣ୍ୟ—ଏହି ଜନ୍ୟାତେ ତା' ହୃଦୟରେ ପ୍ରତିକ୍ରିୟା ସୃଷ୍ଟି ହୋଇଛି । କିନ୍ତୁ ସେ ଭୀରୁ, ଦୁର୍ବଳ, ବୁଦ୍ଧି-ବୃତ୍ତିହୀନ । ତେଣୁ ତା' ବିରୁଦ୍ଧରେ ଥାଇ ସାଇଙ୍କର ଏପରି ଅଗ୍ନିଶୀଳା ନୀତିକୁ ସେ ବିରୁଦ୍ଧାଚରଣ କରିପାରିନାହିଁ । ଫଳରେ ସେ ଚମ୍ପା କଥାରେ ବିଶ୍ୱାସ କରିଛି, ବୁଢ଼ୀ-ମଂଗଳାଙ୍କୁ ସନ୍ତାନ କାମନା କରି ସେ ପୂଜା ଦେଇଛି । ପୁଣି ଚମ୍ପା ତାକୁ କୌଶଳରେ ପକାଇ ତା'ର 'ଛ'ମାଣ ଆଠଗୁଣ୍ଠ' ଜମିକୁ ରାମଚନ୍ଦ୍ର ମଂଗରାଜଙ୍କ ପାଖରେ ବନ୍ଧାରଖି-ଦେଇ ତାକୁ ଟଙ୍କା କରାଇଦେଇଛି ବୁଢ଼ୀମଂଗଳାଙ୍କ ମନ୍ଦିର ନିର୍ମାଣ ପାଇଁ । ସରଳ ପଲ୍ଲୀ ଜୀବନର ଅନ୍ଧବିଶ୍ୱାସ ଓ କୁସଂସ୍କାର ସାରିଆର ଦୁର୍ଗତିର କାରଣ ହୋଇଛି । ପୁଣି ଚମ୍ପାର କୌଶଳରୁ କାଳେ ସାରିଆ ଖସିଯିବ, ସେଥିପାଇଁ ଚମ୍ପା କହୁଛି—ବୁଢ଼ୀମଂଗଳାଙ୍କୁ ସନ୍ତୁଷ୍ଟ କରିନପାରିଲେ ସ୍ୱାମୀର ଅମଂଗଳ ହେବ । ସାରିଆ ସବୁ ସହିପାରେ; ମାତ୍ର ଭଂଗିଚନ୍ଦର ଅମଂଗଳ ସେ ସହିପାରେନା । ତେଣୁ ସବୁ କିଛୁର ବିନିମୟରେ ସେ ଚାହିଁଛି ମଂଗଳାଙ୍କ ଦେଉଳ ତୋଳିବାକୁ । ଏହାଫଳରେ ସେ ଅଚିରେ ମଂଗରାଜଙ୍କ ଷଡ଼ଯନ୍ତ୍ରର ଶୀକାର ହୋଇ ଆପଣା ଜୀବନର ଦୁର୍ଗତିର ମାର୍ଗ ଉନ୍ମୋଚନ କରିଦେଇଛି ।

ବିପଦ ଆପଦ ବେଳେ ଧୈର୍ଯ୍ୟ ଓ ସାହସର ଅଭାବ ସାରିଆ ଚରିତ୍ରର ଏକ ପ୍ରଧାନ ଦୁର୍ବଳତା । ମଂଗରାଜେ ଯେତେବେଳେ ଜମି ଓ ଗାଈକୁ ଦଖଲ କରି ତା'ର ଘର ଭାଂଗି ଦେଇଛନ୍ତି, ସେତେବେଳେ ସାରିଆର ମାନସିକ ଭାରସାମ୍ୟ ଦୋହଲିମାନ ହୋଇ-ଯାଇଛି । ନିଜର କରୁଣ ପରିସ୍ଥିତି ତାକୁ ଧୈର୍ଯ୍ୟହୀନ ଓ ବିବ୍ରତ କରିପକାଇଛି । ବାସ୍ତୁହରା ହୋଇ ଭୋକ ଉପାସରେ ଜମିଦାର ଦୁଆରେ ସେ ମୃତ୍ୟୁବରଣ କରିଛନ୍ତି । ଏ କ୍ଷେତ୍ରରେ ଆତ୍ମରକ୍ଷା ପାଇଁ କିମ୍ବା ପ୍ରତିଶୋଧ ପାଇଁ ସାରିଆର କୌଶଳ, ଧୈର୍ଯ୍ୟ ବା ସାହସ ଆଦୌ ପରିଦୃଷ୍ଟ ହୁଏନାହିଁ । ଅବଶ୍ୟ ନାରୀ ହିସାବରେ ଓ ଅକଳ୍ପିତ ଦୁଃଖ ହେତୁ ସେ ତା'ର ମାନସିକ ଭାରସାମ୍ୟ ହରାଇବା ଏକ ସମ୍ଭାବ୍ୟ ଘଟଣା । ଏସବୁ ସତ୍ତ୍ୱେ ଆପଣାର ନିର୍ବୋଧତା, ସରଳତା, ନିରୀହତା ଓ ନିରଭିମାନତା ପାଇଁ ସେ ପାଠକର ସମ୍ବେଦନା ଲାଭ କରିପାରିଛି । ତାର ମାତୃସୁଲଭ ସନ୍ତାନଲିପ୍ସା, ନାରୀସୁଲଭ ବିଭବ କାମନା ଏବଂ ପତ୍ନୀସୁଲଭ ପତିଭକ୍ତି 'ଛ'ମାଣ ଆଠଗୁଣ୍ଠ'ର ଆକର୍ଷଣୀୟ ଉପାଦାନ । ଛ'ମାଣ ଆଠଗୁଣ୍ଠ'ର

ସାମାଜିକ ପୃଷ୍ଠପଟ୍ଟରେ ସାରିଆ ଏକ ଅଞ୍ଚଳ ଚରିତ୍ର ସତ୍ୟ; ମାତ୍ର ସେ ନାରୀ ଜାତିର ଆଦର୍ଶ ।

ସାରିଆର ମୃତ୍ୟୁକୁ 'ଛ'ମାଣ ଆଠଗୁଣ୍ଠ'ର Climax ବା ଚରମ ପରିଣତି ବୋଲି ଧରିନିଆଯାଇପାରେ । କାରଣ ସାରିଆର ମୃତ୍ୟୁ ପରେ ଯାହା ଘଟିଛି, ତାହା ବର୍ଣ୍ଣିତ ଘଟଣାର ପରିଣାମ, ଚରିତ୍ର ମାନଙ୍କର ପୂର୍ବକର୍ମର ପ୍ରାୟଶ୍ଚିତ୍ତ । ସାରିଆର ମୃତ୍ୟୁ ଯେପରି ମଂଗରାଜ, ଚମ୍ପା ଓ ଗୋବିନ୍ଦ ଜେମା ପ୍ରଭୃତିଙ୍କର ଷଡ଼ଯନ୍ତ୍ରର ଲକ୍ଷ୍ୟ ଥିଲା ଏବଂ ସାରିଆର ମୃତ୍ୟୁରେ ସମ୍ପୃକ୍ତ ଏହି ସମସ୍ତ ଚରିତ୍ର କରୁଣ ପରିଣତିର ସମ୍ମୁଖୀନ ହୋଇପଡ଼ିଛନ୍ତି । ସୁତରାଂ ସାରିଆହିଁ ଏକାଧାରରେ ସେମାନଙ୍କର ଅପକର୍ମର ଉପସଂହାର ଓ ପ୍ରାୟଶ୍ଚିତ୍ତର ଅଧ୍ୟମାଂଗ୍ମ ।

**ସାଆନ୍ତାଣୀ :**

'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ସାଆନ୍ତାଣୀ ଏକ ଆଦର୍ଶସ୍ଥାନୀୟା ଚରିତ୍ର । ଏ ବସ୍ତୁବାଦୀ ଯୁଗରେ ଏ ଦେଶର ଲୋକଚରିତ୍ରରେ ଏପରି ତ୍ୟାଗ ଓ ଆଦର୍ଶ ସ୍ୱପ୍ନ ହେଲେ ବି ଫକୀରମୋହନଙ୍କ ସାଆନ୍ତାଣୀ ଚରିତ୍ର ରୂପାୟନରେ ଅନେକ ବାସ୍ତବତା ରହିଛି । ଅନେକ ସମାଲୋଚକ ଏଥିପାଇଁ ସାଆନ୍ତାଣୀଙ୍କୁ ଉପନ୍ୟାସର ମୁଖ୍ୟ ନାୟିକା ଭାବରେ ଗ୍ରହଣ କରିଥାଆନ୍ତି । କିନ୍ତୁ ଉପନ୍ୟାସର ଅନ୍ୟାନ୍ୟ ନାରୀଚରିତ୍ରମାନଙ୍କର ଅବଦାନକୁ ଉପେକ୍ଷା କରି ସା'ନ୍ତାଣୀଙ୍କୁ ମୁଖ୍ୟସ୍ଥାନ ପ୍ରଦାନ କରିବା ଯଥାର୍ଥ ବୋଲି ମନେହୁଏନା । 'ଛ'ମାଣ ଆଠଗୁଣ୍ଠ'ର ବିଶୃଙ୍ଖଳାମୟ ବିଷାକ୍ତ ବାୟୁମଣ୍ଡଳ ଭିତରେ ସାଆନ୍ତାଣୀଙ୍କ ଅବଦାନ ପବିତ୍ର ତଥା ଅମୀୟ । ଉପନ୍ୟାସର ନାଟକୀୟ ଘନଘଟା ଭିତରେ ସାଆନ୍ତାଣୀ ଉଜ୍ଜ୍ୱଳ ଆଲୋକବର୍ତ୍ତିକା ତୁଲ୍ୟ ବିରାଜିତ । ମଂଗରାଜଙ୍କ ଅପକର୍ମକୁ କୁତ୍ସିତ ଓ ବୀଭତ୍ସ ରୂପେ ପ୍ରତିପାଦନ କରି ପବିତ୍ର ସାଧୁତାର ପ୍ରଖ୍ୟାପନ ପାଇଁ ଫକୀରମୋହନଙ୍କର ଅପୂର୍ବ ସୃଷ୍ଟି—ଦେବତୁଲ୍ୟା ରମଣୀ ସାଆନ୍ତାଣୀ ।

"ପୁଣି 'ଛ'ମାଣ ଆଠଗୁଣ୍ଠ'ରେ ଅନ୍ୟ ଯେଉଁ ଦୃଷ୍ଟି ଆକର୍ଷଣକାରୀ ମୁଖ୍ୟ ନାରୀଚରିତ୍ର ସବୁ ଅଛନ୍ତି, ସେମାନଙ୍କ ମଧ୍ୟରୁ ସାରିଆ ନିର୍ବୋଧ, ପ୍ରତିକ୍ରିୟାହୀନ ଅଭିଶପ୍ତ ଚରିତ୍ର ଏବଂ ଚମ୍ପା କୁଟିଳତା ଏକ ନର୍କକୁଣ୍ଡ । ଫଳରେ ଏକମାତ୍ର ଆଦର୍ଶ ଚରିତ୍ର ସାଆନ୍ତାଣୀ ପାଠକ ଉପରେ ଅଖଣ୍ଡ ପ୍ରଭାବ ବିସ୍ତାର କରେ, ଏଥିପାଇଁ ହୁଏତ ସାଆନ୍ତାଣୀଙ୍କୁ ମୁଖ୍ୟ ନାୟିକା ଭାବରେ କେହି କେହି ଗ୍ରହଣ କରନ୍ତି । କିନ୍ତୁ ଏସବୁ ସତ୍ତ୍ୱେ ସା'ନ୍ତାଣୀଙ୍କ ଅବଦାନ 'ଛ'ମାଣ ଆଠଗୁଣ୍ଠ'ରେ ଅତି ସଂକ୍ଷିପ୍ତ । ଉପନ୍ୟାସର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସାଆନ୍ତାଣୀଙ୍କ ସାଆନ୍ତାଣୀକର୍ତ୍ତୃତ୍ୱ କେଉଁଠି ଜାରି ହୋଇଥିବାର ଦେଖିବାକୁ ମିଳେନାହିଁ । ବରଂ ଏ କ୍ଷେତ୍ରରେ ଚମ୍ପାର ଅଖଣ୍ଡ ପ୍ରଭାବ ପରିଲକ୍ଷିତ ହୁଏ । ମଂଗରାଜ ଓ ଚମ୍ପାର ଗୁପ୍ତ ମନ୍ତ୍ରଣା ଭିତରେ ସାଆନ୍ତାଣୀ ନିଷ୍ପିଷ୍ଟ ହୋଇଯାଇଛନ୍ତି, ନିଷ୍ପ୍ରଭ ହୋଇଯାଇଛୁ ।

କର୍ଣ୍ଣଧାର ଭଳି ଉପନ୍ୟାସର ଆମୂଳଚୂଳ ଘଟଣାକୁ ନିୟନ୍ତ୍ରିତ କରିବାର ଶକ୍ତି ସାଆନ୍ତାଣୀଙ୍କ ପାଖରେ ନାହିଁ । କେବଳ ମଂଗରାଜଙ୍କ ସନ୍ତାନ-ସନ୍ତତିଙ୍କ ଜନନୀ ଭାବେ ସେ ମଂଗରାଜଙ୍କ ସହ ସମ୍ପର୍କିତ ପରି ମନେହୁଅନ୍ତି । ମଂଗରାଜଙ୍କ ଜୀବନର ସ୍ୱାଭାବିକତା ଓ ଚମ୍ପାର କୁଟିଳତାକୁ ପ୍ରକଟିତ କରିବାପାଇଁ ତାଙ୍କର ମଝିରେ ମଝିରେ ହୋଇଛି ଆବିର୍ଭାବ ।

ମଂଗରାଜଙ୍କ ଅପକର୍ମ, ଚମ୍ପାର ପ୍ରଚଣ୍ଡ ଅତ୍ୟାଚାର, ସାରିଆର କରୁଣ ବିଳାପରେ ପ୍ରଚଣ୍ଡ ମାନସିକ ଚାପ ସହନ ଘଟିଛି ସାଆନ୍ତାଣୀଙ୍କର । ସେ ସତୀ, ସାଧ୍ୱୀ ଓ ଧର୍ମ-ପରାୟଣା । ଦୟାଳୁ ଭାବରେ ତାଙ୍କର ସମସ୍ତ କେହି ନାହାନ୍ତି । ମଂଗରାଜଙ୍କ ସହଧର୍ମିଣୀ ହେଲେ ବି ତାଙ୍କ ଚରିତ୍ର ମଂଗରାଜଙ୍କ ଚରିତ୍ରର ଠିକ୍ ଓଲଟା । ତେଣୁ ସ୍ୱାମୀ ଉପରେ ସେ ଅଭିମାନିନୀ । ଧୂର୍ତ୍ତା ଚମ୍ପା ତାଙ୍କ ସାଂସାରିକ ଜୀବନକୁ ବିଷମୟ କରିଦେଇଛି । ତେଣୁ ଜୀବନ ପ୍ରତି ତାଙ୍କର ଆସିଛି ଘୋର ବିତୃଷ୍ଣା । ସାଂସାରିକ ଜୀବନରେ ଅସଫଳ ହୋଇଥିବା ବିଶେଷକରି ପତି-ପ୍ରେମରୁ ବଞ୍ଚିତା ହୋଇଥିବା ସାଆନ୍ତାଣୀ 'ଛ'ମାଣ ଆଠଗୁଣ୍ଠ'ର ମଧ୍ୟ ଏକ ଟ୍ରାଜିକ ଚରିତ୍ର । ମାତ୍ର ଅନ୍ୟ ଟ୍ରାଜିକ ଚରିତ୍ର (ଚମ୍ପା, ମଂଗରାଜ)ଙ୍କ ପରି ତାଙ୍କର ମୃତ୍ୟୁ ଭୀଷଣ ନୁହେଁ । ତାଙ୍କ ମୃତ୍ୟୁ ପରେ ସମସ୍ତ ଗୋବିନ୍ଦପୁର ମୌଜା ଶୋକସନ୍ତପ୍ତ ହୋଇପଡ଼ିଛି । ଅଶ୍ରୁବିଗଳିତ ନେତ୍ରରେ ଗ୍ରାମବାସୀମାନେ କଥାବାର୍ତ୍ତା ହୋଇଛନ୍ତି— "ଆଜି ମହାଷ୍ଟମୀ, ପୁଣ୍ୟ ଦିନରେ ଲକ୍ଷ୍ମୀ ଗୁଞ୍ଚିଗଲେ । କେହି କହିଲା—ମଂଗରାଜଙ୍କ ଘର କଡ଼ିନ୍ତୁ ଏତିକି, ଆଜିଠାରୁ ଶିରୀ ଗୁଞ୍ଚିଲା ।" (୭୮) ପ୍ରକୃତରେ ସାଆନ୍ତାଣୀଙ୍କ ମୃତ୍ୟୁ ପରେ ଆକାଶରେ ହଠାତ୍ ଅଦିନ ବଉଦ ଘୋଟିଆସିଲା ପରି ରାମଚନ୍ଦ୍ର ମଂଗରାଜଙ୍କ ଉପରେ ଅଗଣନ ନାନାବିଧ ବିପର୍ଯ୍ୟୟ ଘନେଇ ଆସିଛି । ଏବଂ ତାହାହିଁ ହୋଇଛି ରାମଚନ୍ଦ୍ର ମଂଗରାଜଙ୍କ ବିଳୟର ଅସ୍ତମାଚଳ ।

ସ୍ତ୍ରୀ ମରିଗଲେ ପରେ ରାମଚନ୍ଦ୍ର ମଂଗରାଜଙ୍କ ହୃଦୟରେ ପରିବର୍ତ୍ତନ ଆସିଛି । କିନ୍ତୁ ଅନୁତାପ ଆସିଲା ବେଳକୁ ରାମଚନ୍ଦ୍ର ମଂଗରାଜଙ୍କ ସୁଖର ରବି ଅସ୍ତମିତ ପ୍ରାୟ । ଅଲଙ୍ଘନୀୟ କର୍ମଫଳର ଅବଶ୍ୟମ୍ଭାବୀ ପରିଣତିର ଦ୍ୱାରଦେଶରେ ସେ ଦଣ୍ଡାୟମାନ । ତେବେ ଏକଥା ସତ୍ୟ ଯେ ସାଆନ୍ତାଣୀଙ୍କ ମୃତ୍ୟୁ ମଂଗରାଜଙ୍କ ଅନୁଶୋଚନାର ମୂଳ ହେତୁ । ଅତଏବ ସାଆନ୍ତାଣୀ ଚରିତ୍ରଟି ମଂଗରାଜଙ୍କ ମାନବିକତା ନିର୍ଦ୍ଧାରଣଯୋଗ୍ୟ—ମାପକାଠି । 'ଛ'ମାଣ ଆଠଗୁଣ୍ଠ'ର ସେ ଶାଶ୍ୱତ ପରିପ୍ରକାଶ ।

---

(୭୮) ଛ'ମାଣ ଆଠଗୁଣ୍ଠ—ଫକୀରମୋହନ ସେନାପତି ।

**ଅନ୍ୟାନ୍ୟ ଚରିତ୍ରବୃନ୍ଦ :**

"ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ମୁଖ୍ୟ ଚରିତ୍ର ତିନିଜଣ—ରାମଚନ୍ଦ୍ର ମଂଗରାଜ, ଚମ୍ପା ଓ ସାରିଆ; କିନ୍ତୁ ଫକୀରମୋହନ ଏଥିରେ ମଧ୍ୟ ଗ୍ରାମ ମା' ଭଣ୍ଡାରୁଣୀ, ଜମିଦାର ଶେଖ୍ ଦିଲ୍‌ଦାର ମିଆଁ, ଫତେପୁର ଶାସନର ଶାସନୀ ବ୍ରାହ୍ମଣ, ଚଉକିଦାର, ଗୋବରା ଜେନା, ଅସୁର ପୋଖରୀରେ ସ୍ନାନାର୍ଥିନୀ ଯଶୋଦା ଓ ମାର୍କଣ୍ଡି ଆ ମା', ହଳିଆ ମୁକୁନ୍ଦା ଓ ମାଣିକ ପ୍ରଭୃତି ବହୁ ଗୌଣ ଚରିତ୍ରର ଅବତାରଣା କରିଛନ୍ତି । ଉପନ୍ୟାସର ବିକାଶରେ ଏମାନଙ୍କର କୌଣସି ଅଂଶ ନାହିଁ, ହୁଏତ ସେମାନେ ଅବାନ୍ତର । ତଥାପି ଏହି ଗୌଣଚରିତ୍ରଗୁଡ଼ିକର ସୁନିପୁଣ ଚିତ୍ରଣରେ ହିଁ 'ଛ'ମାଣ ଆଠଗୁଣ୍ଠ'ର ଶୈଳ୍ପିକ ସାର୍ଥକତା ନିହିତ ।" (୩୯)

**ତୁଳନାତ୍ମକ ବିଚାର :**

(୧) ହଥର୍ଣ୍ଣଙ୍କ 'The House of the Seven Gables'ର ମୁଖ୍ୟ ନାୟକ କର୍ଣ୍ଣେଲ୍ ପିନ୍‌ଚନ୍ ଓ ଖଳନାୟକ ଜର୍ଜ ପିନ୍‌ଚନ୍‌ଙ୍କୁ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ'ର ରାମଚନ୍ଦ୍ର ମଙ୍ଗରାଜ ଓ ଚମ୍ପା ସହିତ ତୁଳନା କରାଯାଇପାରେ । ଏ ତୁଳନା ବ୍ୟକ୍ତିବାଦର ନୁହେଁ । ଏ ତୁଳନା ଉଭୟ ଉପନ୍ୟାସରେ ଏହି ନାୟକ-ନାୟିକା କରିଥିବା କୃତକର୍ମର । 'The House of the Seven Gables' ଉପନ୍ୟାସରେ କର୍ଣ୍ଣେଲ୍ ଚକ୍ରାନ୍ତ କରି ମାଥିଉ ମାଉଲେଙ୍କ ଶ୍ରେଷ୍ଠ ଜମି ଖଣ୍ଡିକ ନେଇଛନ୍ତି ଏବଂ ଏଥିପାଇଁ ମାଥିଉ ମାଉଲେ ତ ସର୍ବସ୍ୱାନ୍ତ ହୋଇଛି, ପୁଣି ତା'ର ଜୀବନ ନାଶ ମଧ୍ୟ କରାଯାଇଛି । 'ଛ'ମାଣ ଆଠଗୁଣ୍ଠ'ର ମୁଖ୍ୟ ଚରିତ୍ର ରାମଚନ୍ଦ୍ର ମଙ୍ଗରାଜ ମଧ୍ୟ ଅନୁରୂପ ଭାବେ ଭଗିଆର 'ଛ'ମାଣ ଆଠଗୁଣ୍ଠ' ଜମିକୁ ଚମ୍ପାର କୌଶଳରେ ଅପହରଣ କରି ତାକୁ ସର୍ବସ୍ୱାନ୍ତ କରିଛି ଓ ତା'ର ସ୍ତ୍ରୀ ସାରିଆର ମୃତ୍ୟୁର କାରଣ ହେବା ସଙ୍ଗେ ସଙ୍ଗେ ଭଗିଆର ପାଗଳାମିର ମଧ୍ୟ କାରଣ ହୋଇଛି ।

ମାଥିଉ ମାଉଲେର ଜମି ଅପହରଣ କରିବାକୁ ଯାଇ କର୍ଣ୍ଣେଲ୍ ଆପଣାର ହୀନ-ଚକ୍ରାନ୍ତ, ପ୍ରତିପତ୍ତି ଓ ସାମାଜିକ ପ୍ରତିଷ୍ଠାର ଯେପରି ଆଶ୍ରୟ ନେଇଛନ୍ତି, ଠିକ୍ ସେହିପରି ଭାବରେ ରାମଚନ୍ଦ୍ର ମଙ୍ଗରାଜ ମଧ୍ୟ ଆପଣାର ପ୍ରତିପତ୍ତି, ହୀନଚକ୍ରାନ୍ତ ଓ ପୈଶାଚିକ ପ୍ରବୃତ୍ତିର ପରିଚୟ ଦେଇଛନ୍ତି । ଉଭୟ ଉପନ୍ୟାସର ଏହି ଦୁଇ ଚରିତ୍ର ସମାନ୍ତରାଳ ଭାବେ ନିଜ ନିଜର ଅର୍ଥଲିପ୍ସା, ଭୂମିକେନ୍ଦ୍ରିକ ମନୋବୃତ୍ତି, ପରସ୍ୱାପହରଣ କରିବାର ଚିନ୍ତାଧାରାକୁ ପ୍ରଦର୍ଶନ କରିଅଛନ୍ତି । ପୁଣି ଲକ୍ଷ୍ୟକଲେ ଦେଖାଯିବ ଯେ, କର୍ଣ୍ଣେଲ୍ ଓ

(୩୯) ଫକୀରମୋହନ ସମୀକ୍ଷା – ସୁରେନ୍ଦ୍ର ମହାନ୍ତି, ପୃଷ୍ଠା-୫୬ ।

ରାମଚନ୍ଦ୍ର ମଙ୍ଗରାଜ, ମାଉଲେ ଓ ସାଣଆ-ଭଗିଆର ଜମିକୁ ହସ୍ତଗତ କଲାପରେ ସେମାନଙ୍କ ଜୀବନରେ ବିପର୍ଯ୍ୟୟ ଘନେଇ ଆସିଛି । ଉଭୟଙ୍କ ପ୍ରତିପତ୍ତି, ସାମାଜିକ ପ୍ରତିଷ୍ଠା ହାନି ଘଟିଛି । କର୍ଣ୍ଣେଲ୍ ମାଥିଉ ମାଉଲେଠାରୁ ନେଇଥିବା ଜମିଟି ଉପରେ ଏକ ପ୍ରକାଣ୍ଡକାୟ ଘର କରିଛନ୍ତି ନିଜର ଆଗାମୀ ବଂଶଧରମାନଙ୍କ ପାଇଁ । କିନ୍ତୁ ଆଶ୍ଚର୍ଯ୍ୟର କଥା ଗୃହ ପ୍ରତିଷ୍ଠାଦିନ ସେ ଅତି ଅସ୍ୱାଭାବିକ ଭାବେ ଚକ୍ରବାନ୍ତ କରି ମରିଛନ୍ତି ଓ ଲୋକେ ଏହାକୁ ମାଉଲେଙ୍କ ଅଭିଶାପ ବୋଲି ମନେ କରନ୍ତି । ଅର୍ଥାତ୍—'The House of the Seven Gables'ରେ କର୍ଣ୍ଣେଲ୍ ଏକ ଅଭିଶପ୍ତ ଚରିତ୍ର । ଅନୁରୂପ ଭାବେ ଘଟଣା ଘଟିଯାଇଛି ରାମଚନ୍ଦ୍ର ମଙ୍ଗରାଜଙ୍କ ଜୀବନରେ । ଚମ୍ପାର ସହାୟତାରେ, କୂଟଚକ୍ରାନ୍ତରେ ସେ ଭଗିଆକୁ ସର୍ବସ୍ୱାନ୍ତ କରି ତା'ର ଜମି ଅପହରଣ କରିବା ସଂଗେ ସଂଗେ ମକଦ୍ଦମା ଖର୍ଚ୍ଚକୁ ତା'ର ଘରଦ୍ୱାର, ଆସବାବପତ୍ର ଓ ନେତ ନାମକ ଗାଈକୁ ଆତ୍ମସାତ କରିଛନ୍ତି । ଭଗିଆର ମାନସିକ ଦୁର୍ବଳତା ଦେଖାଦେଇଛି । ସେ ପାଗଳ ହୋଇଯାଇଛି ଓ ଜେଲ୍‌ରେ ରାମଚନ୍ଦ୍ର ମଂଗରାଜଙ୍କୁ କାମୁଡ଼ିଛି । ଏଠାରେ ରାମଚନ୍ଦ୍ର ମଂଗରାଜଙ୍କର ଭାବାନ୍ତର ଜାତ ହୋଇଛି । ସେ ଆପଣାର କୃତକର୍ମ ପାଇଁ ଅନୁତାପ କରିଛନ୍ତି । କିନ୍ତୁ କର୍ଣ୍ଣେଲ୍‌ଙ୍କ ପରି ସେ ମଧ୍ୟ ଉପନ୍ୟାସର ପରିଣତିରେ ଅତି ଅସହାୟ ଭାବେ ମୃତ୍ୟୁବରଣ କରିଛନ୍ତି ।

ମାଥିଉ ମାଉଲେ ଓ ଭଗିଆ ପରି ଦୁଇଟି ସରଳ, ନିରୀହ, ଗରିବ ପ୍ରାଣୀଙ୍କ ଶ୍ରେଷ୍ଠ ଶ୍ରେଷ୍ଠ ଜମି ଦୁଇଖଣ୍ଡ ଅପହରଣ କରି କର୍ଣ୍ଣେଲ୍ ଓ ମଂଗରାଜ ଉଭୟ ଆପଣାର ପ୍ରବଞ୍ଚନା, ଶୋଷଣ, ସ୍ୱାର୍ଥପରତା ନିଷ୍ଠୁରତା ଓ ପୈଶାଚିକ ପ୍ରବୃତ୍ତିର ପରିଚୟ ଦେଇ-ପାରିଛନ୍ତି । ଅତଏବ ଏହି କ୍ଷେତ୍ରରେ ସେମାନେ ଯେ ଦୁଇ ସମଧର୍ମୀ ଚରିତ୍ର ଏକଥା ଅସ୍ୱୀକାର କରାଯାଇ ନପାରେ ।

(୨) ଅପରପକ୍ଷରେ ଜର୍ଜ ପିନ୍‌ଚନ୍‌ଙ୍କୁ ମଧ୍ୟ ରାମଚନ୍ଦ୍ରଙ୍କ ଶୋଷଣ ଓ ଚାରିତ୍ରିକ ଦୁର୍ବଳତା ପ୍ରଭୃତି ସହ ତୁଳନା କରାଯାଇପାରେ । ଆଗରୁ କୁହାଯାଇଛି, 'The House of the Seven Gables'ର କାହାଣୀ ଗୋଟିଏ ପୁରୁଷ ଭିତରେ ସୀମିତ ନୁହେଁ । ଏହା ପୁରୁଷ ପୁରୁଷ ଧରି ଗଡ଼ିଗ୍ଲାଛି ଓ ଏହାର ସମାଧାନ ହୋଇଛି ଅନେକ ଡେରିରେ । ତେଣୁ ଏହି ଉପନ୍ୟାସରେ 'ଛ'ମାଣ ଆଠଗୁଣ୍ଠ'ର ରାମଚନ୍ଦ୍ର ମଂଗରାଜଙ୍କ ପରି ଦୁଇଟି ନିଷ୍ଠୁର ତଥା ଭୟଙ୍କର ଚରିତ୍ର ଆମ ଦୃଷ୍ଟିପଥାରୂଢ଼ ହୋଇଥାଏ । ସେମାନେ ହେଲେ କର୍ଣ୍ଣେଲ୍ ପିନ୍‌ଚନ୍ ଓ ଜର୍ଜ ପିନ୍‌ଚନ୍ । କର୍ଣ୍ଣେଲ୍‌ଙ୍କ ମୃତ୍ୟୁ ପରେ ଜର୍ଜ ଯେପରି ତାଙ୍କ ଚରିତ୍ରର ଏକ ନୂତନ ସଂସ୍କରଣ ଭାବେ ଆତ୍ମପ୍ରକାଶ କରିଛନ୍ତି । ରାମଚନ୍ଦ୍ର ମଂଗରାଜ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ମଧ୍ୟ ଏକମାତ୍ର ଖଳନାୟକ ନୁହେଁ, ଚମ୍ପା ତାଙ୍କୁ

ଏ କ୍ଷେତ୍ରରେ ମଧ୍ୟ ବଳିଯାଇଛି । ଚମ୍ପାର ପୈଶାଚିକ ପ୍ରବୃତ୍ତି ତାକୁ ନାରୀହୃଦର କୋମଳତା, ସ୍ନିଗ୍ଧତା, ସ୍ନେହଶୀଳ ପ୍ରବୃତ୍ତିଠାରୁ ଯଥେଷ୍ଟ ତଳକୁ ନେଇଯାଇଛି । ତେଣୁ ଜନ୍ମରେ ସେ ନାରୀ ହୋଇପାରେ; ମାତ୍ର କର୍ମରେ ସେ ପୁରୁଷଠୁଁ ବଳି । ତେଣୁ ତା'ର ବର୍ବରୋଚିତ କାର୍ଯ୍ୟ ପାଇଁ ସେ 'The House of the Seven Gables' ର ଯେକୌଣସି ଖଳନାୟକ ସଂଗେ ତୁଳନୀୟ । ଏହି ଖଳନାୟକ (କଲୋନେଲ୍ ଓ ଜର୍ଜ)ଙ୍କର ଯେଉଁସବୁ ଚାରିତ୍ରିକ ସ୍ଖଳନ ଥିଲା, 'ଚମ୍ପା' ମଧ୍ୟ ସେଥିରୁ କୌଣସିଥିରେ ନ୍ୟୂନ ନୁହେଁ । ଅବଶ୍ୟ ଫକୀରମୋହନ ନାରୀଚରିତ୍ର ଚିତ୍ରଣରେ ଯେପରି ଆପଣାର ଦକ୍ଷତା ଓ ବାସ୍ତବିକତା ବଜାୟ ରଖିଛନ୍ତି, ହଥର୍ଣ୍ଣ ସେପରି କରିପାରି ନାହାନ୍ତି । କଲୋନେଲ୍‌ଙ୍କ ମୃତ୍ୟୁ ପରେ ପିନ୍‌ଚନ୍ ପରିବାରର ଅବକ୍ଷୟ ହୋଇଛି । ଜର୍ଜ ପିନ୍‌ଚନ୍ ଓ କ୍ଲିଫର୍ଡ଼ ଦୁଇ କକା-ପୁଅ ଭାଇ । କକା ଜାଫେରୀ ପିନ୍‌ଚନ୍‌ଙ୍କ ସହାୟତାରେ ସେମାନେ ଯୁବକସ୍ତରକୁ ଆସିଛନ୍ତି । କିନ୍ତୁ ଜର୍ଜଙ୍କ ମନ ଭିତରେ ଅଛି କ୍ଲିଫର୍ଡ଼ଙ୍କ ପ୍ରତି ଈର୍ଷା, ଅସୂୟାଭାବ । କ୍ଲିଫର୍ଡ଼ ସରଳ, ନିରୀହ ପ୍ରକୃତିର । ତେଣୁ ଜର୍ଜ କ୍ଲିଫର୍ଡ଼ଙ୍କୁ ଚକ୍ରାନ୍ତ କରି ଜେଲ୍ ପଠାଇଛନ୍ତି । ଜାଫେରୀ କକାଙ୍କ ସମ୍ପତ୍ତିର ଏକମାତ୍ର ଉତ୍ତରାଧିକାରୀ ହେବା ପାଇଁ ଜର୍ଜ ଏପରି ନୀଚ, ଘୃଣ୍ୟ କାର୍ଯ୍ୟ କରିବାକୁ ପଶ୍ଚାତ୍‌ପଦ ହୋଇନାହାନ୍ତି । ଏ କ୍ଷେତ୍ରରେ ରାମଚନ୍ଦ୍ର ମଂଗରାଜଙ୍କ କଥା ସ୍ମରଣକୁ ଆସେ । ସେ ମଧ୍ୟ ଆପଣାର ପିଉସୀପୁଅ ଭାଇ ଶ୍ୟାମ ମଲ୍ଲଙ୍କଠାରୁ ପିଆଜଖିଆ ଘଟଣା ନେଇ କିଛି ଜମି କୌଶଳରେ ହସ୍ତଗତ କରିଛନ୍ତି । ଏହା ବ୍ୟତୀତ ସେ ଡମମାନଙ୍କୁ ଜେଲ୍ ପଠାଇଛନ୍ତି । ଶ୍ୟାମ ଗୋଷ୍ଠୀଭିତର ତଳି ଉପାଡ଼ି ନେଇଛନ୍ତି । ଏହିସବୁ କୂଟ ଚକ୍ରାନ୍ତରେ ଜର୍ଜ ଓ ରାମଚନ୍ଦ୍ର ସମଧର୍ମୀ ।

ପୁଣି ଜର୍ଜଙ୍କର ଥିଲା ଚାରିତ୍ରିକ ଦୁର୍ବଳତା । ତାଙ୍କର ସ୍ତ୍ରୀ ମରିଗଲେ ପରେ ସେ ଆଉ ଦ୍ୱିତୀୟବାର ଗ୍ରହଣ କରିନାହାନ୍ତି । ଏହାର କାରଣ ହେଉଛି ପରସ୍ତ୍ରୀ ଅପହରଣ ଓ ଅବୈଧ ପ୍ରଣୟଲିପ୍ସା ତାଙ୍କଠାରେ କ୍ରମଶଃ ବଢ଼ିଉଠିଥିଲା । ଏହାର ଉଦାହରଣରେ ଫୋଏବ୍‌କୁ ଚୁମାଦେବାର ଘଟଣାକୁ ପ୍ରସଙ୍ଗ ମଧ୍ୟକୁ ଅଣାଯାଇପାରେ । ଫୋଏବ୍ ତାଙ୍କର ଦୂର-ସମ୍ପର୍କୀୟା ଝିଅଟିଏ । କିନ୍ତୁ ସେ ତାର ପରିଚୟ ପାଇ ତାକୁ ସ୍ନେହବୋଲା ଚୁମ୍ବନ ଦେବାକୁ ଚାହିଁଲେ । ଜଣେ ପ୍ରାପ୍ତବୟସ୍କ ଝିଅ ପାଇଁ ଅବଶ୍ୟ ଏ ଚୁମ୍ବନର ମୂଲ୍ୟ ଭିନ୍ନ । କିନ୍ତୁ ଯେଉଁ-ପରି ଭାବେ ଜର୍ଜ ତାକୁ ଚୁମା ଦେବାକୁ ଚାହିଁଥିଲେ, ତାହା ତାଙ୍କ ଉଦଗ୍ର କାମଲାଳସାର ପରିଚୟହିଁ କେବଳ ଦେଇଥାଏ । ଘଟଣାରୁ ଯାହା ଜଣାପଡ଼େ ଜର୍ଜ ଥିଲେ ଜଣେ ସୌଖିନ୍ ପ୍ରକୃତିର ବ୍ୟକ୍ତି । ନାରୀମାନଙ୍କ ପ୍ରତି ତାଙ୍କର ଥିଲା ଚରମ ଦୁର୍ବଳତା । କିନ୍ତୁ ଆପଣାର ସ୍ତ୍ରୀକୁ ସେ ଭଲପାଉନଥିଲେ, ଏପରିକି ତାଙ୍କୁ ମାଡ଼ଧର ମଧ୍ୟ କରୁଥିଲେ । ଏହି ହେତୁ ଗମ୍ଭୀର ମନସ୍ତାପରେ ତାଙ୍କ ସ୍ତ୍ରୀ ମୃତ୍ୟୁବରଣ କରିଥିଲେ । ରାମଚନ୍ଦ୍ର ମଙ୍ଗରାଜଙ୍କର ମଧ୍ୟ ଅନୁରୂପ ଭାବେ ଚାରିତ୍ରିକ ଦୁର୍ବଳତା ଥିଲା । ନିଜ ପତ୍ନୀର ପରାମର୍ଶ ନନେଇ ସେ ଅନେକ

କାମ କରୁଥିଲେ । ତାଙ୍କର ମୁଖ୍ୟ ପରାମର୍ଶଦାତ୍ରୀ ଥିଲା, ଘରର ଗୃହକର୍ତ୍ରୀ ଚମ୍ପା । ଏପରିକି ବୃଦ୍ଧ ଅଧରେ ମଧ୍ୟ ସେ ତା' ସାଙ୍ଗରେ ପରାମର୍ଶ କରିଥିବାର ଲକ୍ଷ୍ୟ କରାଯାଏ । ଚମ୍ପା ପାଇଁ ରାମଚନ୍ଦ୍ର ମଙ୍ଗରାଜ ନିଜ ସ୍ତ୍ରୀକୁ ମଧ୍ୟ ଉପେକ୍ଷା କରିଥିଲେ । ଚମ୍ପାର ମଧ୍ୟ ତାଙ୍କ ନଅରରେ ଥିଲା ଅଖଣ୍ଡ ପ୍ରତିପତ୍ତି । କେହି କେହି ତାଙ୍କୁ ଚମ୍ପା ଠାକୁରାଣୀ ବୋଲି ମଧ୍ୟ କହୁଥାଆନ୍ତି । ଏହା ମୂଳରେ ରାମଚନ୍ଦ୍ର ମଙ୍ଗରାଜଙ୍କ ଚାରିତ୍ରିକ ଦୁର୍ବଳତା ହିଁ କାମ କରିଛି । ମଙ୍ଗରାଜଙ୍କୁ ନଚାଇବା ପାଇଁ ଚମ୍ପା ତାଙ୍କର ଚାରିତ୍ରିକ ଦୁର୍ବଳତାକୁ ଅସ୍ତ୍ର ଭାବେ ଗ୍ରହଣ କରିଛି ଏବଂ ଏହି ଅସ୍ତ୍ର ବଳରେ ଠାକୁରାଣୀଙ୍କ ଉପରେ ଆଘାତ କରିବାକୁ ମଧ୍ୟ ସେ କୁଣ୍ଠା ପ୍ରକାଶ କରିନାହିଁ । ସେଥିପାଇଁ ଅତିମାନସିକ ଯନ୍ତ୍ରଣାରେ ଠାକୁରାଣୀ ମୃତ୍ୟୁଗାମୀ ହୋଇଛନ୍ତି । ଅତଏବ ଶୋଷଣ, ପେଷଣ, କୂଟଚକ୍ରାନ୍ତ ଓ ଚାରିତ୍ରିକ ଦୁର୍ବଳତା ଆଦି ପ୍ରକାଶରେ ଜର୍ଜ ଓ ରାମଚନ୍ଦ୍ର ମଙ୍ଗରାଜ ହୋଇଛନ୍ତି ସମଧର୍ମୀ ଚରିତ୍ର ।

(୩) 'The House of the Seven Gables' ଉପନ୍ୟାସଟି କଲେନେଲ୍ ଓ ଜର୍ଜଙ୍କ ପରି ଦୁଇ ଖଳ ଚରିତ୍ରକୁ ନେଇ କଳ୍ପିତ । ଅନୁରୂପ ଭାବେ ଚମ୍ପା ଓ ରାମଚନ୍ଦ୍ର ମଙ୍ଗରାଜ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ Villain ଭୂମିକାରେ ଅବତୀର୍ଣ୍ଣ । ଉଭୟ ଔପନ୍ୟାସିକ ହଥର୍ଣ୍ଣ ଓ ଫକୀରମୋହନ ଏମାନଙ୍କ କୃତକର୍ମର ଫଳ ପାଇଁ ଉପନ୍ୟାସର ପରିଣତିରେ ସେମାନଙ୍କ ଜୀବଦ୍ଦଶାରେ ସେମାନଙ୍କୁ ଦଣ୍ଡ ପ୍ରଦାନ କରିଛନ୍ତି । ଏହି ୪ଟି ଚରିତ୍ର ସମଭାବେ ଅଭିଶାପ ଗ୍ରସ୍ତ । ଅନେକ ଅସହାୟ ବ୍ୟକ୍ତିଙ୍କୁ ସର୍ବସ୍ୱାନ୍ତ କରି ଆପଣାର ସଂପତ୍ତି ଲିପ୍ସା ଓ ଅର୍ଥ ଉପାର୍ଜନ କରିବାର ପୈଶାଚିକ ପ୍ରବୃତ୍ତିକୁ ଏହି ଚରିତ୍ରଗଣ ଚରିତାର୍ଥ କରିଛନ୍ତି । ପରିଣତିରେ ଏମାନଙ୍କର ହୃଦୟର ହୋଇଛି ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ । ଉଭୟ ଔପନ୍ୟାସିକ କର୍ମଫଳରେ ଥିଲେ ବିଶ୍ୱାସୀ । ତେଣୁ ମନୁଷ୍ୟ ଯେଉଁ କର୍ମ କରେ, ତାହାର ଫଳ ସେ ନିଶ୍ଚିତ ପାଏ—ଏହା ଉପରୋକ୍ତ ଚରିତ୍ରମାନଙ୍କ ଅବତାରଣାରେ ପ୍ରମାଣ କରିଦେଇଛନ୍ତି, ଔପନ୍ୟାସିକ ଦ୍ୱୟ । ପୁଣି ଉଭୟ ଔପନ୍ୟାସିକଙ୍କର ଅଟଳ ବିଶ୍ୱାସ ଥିଲା ଯେ, ଆପଣାର କୃତକର୍ମ ପାଇଁ ନିଜ ବଂଶର ଉତ୍ତରଦାୟାଦମାନଙ୍କୁ ମଧ୍ୟ ସମୟେ ସମୟେ ଯନ୍ତ୍ରଣା ଭୋଗ କରିବାକୁ ପଡ଼େ । ଏ ପ୍ରସଂଗରେ ଫକୀରମୋହନଙ୍କ ଉକ୍ତ ଉଦ୍ଧାର-ଯୋଗ୍ୟ ମନେହୁଏ । ସେ ଲେଖିଛନ୍ତି—"ହେ ବୁଦ୍ଧିମାନ୍ ! ତୁମ୍ଭେ ଅତି ନିର୍ଜନରେ, ଅତି ସାବଧାନରେ କିଛି କର୍ମ କରି ମନେ କରୁଅଛ, ମନୁଷ୍ୟର ଦୃଷ୍ଟି ରେଖାର ଅନ୍ତରାଳରେ ରହୁଅଛ । ଭୂମିରେ ଗୋଟିଏ କ୍ଷୁଦ୍ର ବୀଜ ପୋତିବାବେଳେ କେହି ଦେଖେ ନାହିଁ ସତ୍ୟ; ମାତ୍ର ସେଥିରୁ ଜାତ ବୃକ୍ଷ ମନୁଷ୍ୟ ନେତ୍ର ଅତିକ୍ରମ କରିବାର ଉପାୟ ନାହିଁ । ପୁଣି ତୁମ୍ଭେ ଯେଉଁ ବୃକ୍ଷ ରୋପଣ କଲ, ତାହାର ଫଳ ତୁମ୍ଭକୁ—କଦାଚିତ୍ ବଂଶ ପରମ୍ପରାକୁ ଭୋଗ କରିବାକୁ ପଡ଼ିବ ।" 'The House of the Seven Gables' ଉପନ୍ୟାସରେ କଲେନେଲ୍‌ଙ୍କ କୃତକର୍ମର ଫଳକୁ ତାଙ୍କର ପରବର୍ତ୍ତୀ ବଂଶଧର ଭାବେ ହେପ୍‌ଜିବା,

କ୍ଲିଫର୍ଡ୍, ଜର୍ଜ, ଗର୍ଭେସ୍ପସ୍ ଆଦି ଚରିତ୍ରମାନେ ଭୋଗ କରିଛନ୍ତି ଓ ଭୋଗ କରିବାକୁ ବାଧ୍ୟ ହୋଇଛନ୍ତି । 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ଚମ୍ପା ଓ ରାମଚନ୍ଦ୍ର ମଂଗରାଜ ଆପଣାର କୁତ୍ସିତକର୍ମ ପାଇଁ ଯେପରି ଅଲଙ୍ଘନୀୟ କର୍ମଫଳ ଭୋଗ କରିଛନ୍ତି, 'The House of the Seven Gables'ରେ ଅବଶ୍ୟ ସେ ପ୍ରକାର କର୍ମଫଳ ପିଧାପଲଖ ଭାବେ କଲୋନେଲ୍ ବା ଜର୍ଜ ଭୋଗ କରିନାହାନ୍ତି । ମାତ୍ର ଦେଖିବାକୁ ଗଲେ ସେମାନଙ୍କ ବଂଶଧରମାନେ ସେମାନଙ୍କ କୁତ୍ସିତକର୍ମର ଫଳକୁ ଅତି ଅସହାୟ ଭାବେ ଭୋଗ କରିଛନ୍ତି । କଲୋନେଲ୍ ମାଉଲେଙ୍କ ଜମି ଛଡ଼ାଇ ନେବାପରେ ଆପଣାର ବଂଶଧରମାନଙ୍କ ପାଇଁ ଏକ ପ୍ରାସାଦ ତୁଲ୍ୟ ଘର ନିର୍ମାଣ କଲେ । କିନ୍ତୁ ଫଳ କ'ଣ ହେଲା ? ସେ ଘରେ ପୁରୁଷ ପୁରୁଷ ଧରି କେହି ଶାନ୍ତିରେ ବସବାସ କରିପାରିଲେ ନାହିଁ । ଖାଲି ଅସ୍ୱାଭାବିକ ଅକାଳ ମୃତ୍ୟୁ, ବିଷାଦ, ନୈରାଶ୍ୟ ସେ ଘରର ଚତୁର୍ଦ୍ଦିଗକୁ ଘେରି ରହିଥିଲା, ଯାହାର ଶିକାର ହେଲେ ନିରୀହା, ସରଳା ହେପ୍‌ସିବା, ଶାନ୍ତ ଭଦ୍ର କ୍ଲିଫର୍ଡ଼ । କଲୋନେଲ୍ ଓ ଜର୍ଜଙ୍କ କୁତ୍ସିତକର୍ମର ପ୍ରାୟଶ୍ଚିତ୍ତ ପାଇଁ ଉପନ୍ୟାସର ଅନ୍ତିମ ପରିଣତିରେ ସେମାନେ ନିଜ ବଂଶଜ କନ୍ୟା ଫୋଏବ୍‌କୁ ମାଉଲେ ବଂଶୀୟ ଯୁବକ ହୋଲଗ୍ରେଭ୍ ସହ ବିବାହ ଦେଇଛନ୍ତି । ତେଣୁ କର୍ମଫଳର ଅଲଙ୍ଘନୀୟ ପରିଣତିରୁ ପିନ୍‌ଚନ୍ ବଂଶ ମୁକ୍ତ ପାଇପାରି ନାହିଁ । ଅନୁରୂପ ଭାବେ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ରାମଚନ୍ଦ୍ର ମଂଗରାଜ ଓ ଚମ୍ପାର କଥା ବିଚାର କରାଯାଇପାରେ ।

ରାମଚନ୍ଦ୍ର ମଙ୍ଗରାଜ ଜୀବନସାରା କୁଟ ଚକ୍ରାନ୍ତ, ଶୋଷଣ ପୈଶାଚିକ ବୃତ୍ତି କରି କରି ଜୀବନର ଅନ୍ତିମ ସମୟରେ ଅତି ଅସହାୟ ଭାବରେ ନିଜର କର୍ମଫଳକୁ ଭୋଗ କରିଛନ୍ତି । ଜୀବନର ସୁଖଦ ସମୟରେ ମଧ୍ୟ ତାଙ୍କ ପାରିବାରିକ ଅଶାନ୍ତି ଏହି କର୍ମଫଳର ଏକ ଅଂଶବିଶେଷ । ଚମ୍ପାର ପ୍ରରୋଚନାରେ ଭଗିଆ-ସାରିଆଙ୍କ ଜମିନେବା ପରଠାରୁ ତାଙ୍କର ପତନ ଆରମ୍ଭ ହେଲା । ସ୍ୱାମୀର ଶୋଷଣ, ଅତ୍ୟାଚାର, ଚାରିତ୍ରିକ ସ୍ଖଳନକୁ ସହ୍ୟକରି ନପାରି ସାଆନ୍ତାଣୀ ମୃତ୍ୟୁବରଣ କଲେ । ରାମଚନ୍ଦ୍ର ମଂଗରାଜ ଅବଶ୍ୟ ଏତେବେଳେ ଅନୁତାପ କଲେ । କିନ୍ତୁ ସାରିଆର ହତ୍ୟାମାମଲାରେ ତାଙ୍କର ବିଚାର ସେତେବେଳେ ଆରମ୍ଭ ହେଲା ଓ ନେଡ଼ନାମକ ଗାଈକୁ ଆତ୍ମସାତ୍ କରିଥିବା ଅଭି-ଯୋଗରେ ତାଙ୍କୁ ଜେଲଦଣ୍ଡ ମିଳିଲା । ଏତିକବେଳେ ଭଗିଚନ୍ଦ ତାଙ୍କ ନାକକୁ କାମୁଡ଼ି ଦେଇ ଯେଉଁ ଶାରୀରିକ ଯନ୍ତ୍ରଣା ଦେଲା; ତା' ଠାରୁ ତାଙ୍କର ମାନସିକ ଯନ୍ତ୍ରଣା ଆହୁରି ବଳିପଡ଼ିଥିଲା । ଜେଲ୍‌ରୁ କ୍ଷତ ବିକ୍ଷତ ହୋଇ ଏକାନ୍ତ ଅସହାୟଭାବେ ସେ ଫେରିଆସିଲେ । ପୁଅମାନେ ତାଙ୍କୁ ମଧ୍ୟ ପଚାରିଲେ ନାହିଁ । ପତ୍ନୀଙ୍କୁ କେବଳ ସ୍ମରଣକରି ଅସହ୍ୟ ମାନସିକ ଦାବାନଳ ଓ ଭଗିଆ ସାରିଆଙ୍କ ଭୟଙ୍କର ପ୍ରେତରୂପ ଦର୍ଶନକରି ଅତି ଅସହାୟ ଭାବରେ ସେ ମୃତ୍ୟୁବରଣ କଲେ । ଜୀବନସାରା ଧନ ଉପାର୍ଜନକୁ ଜୀବନର ଶ୍ରେଷ୍ଠ କର୍ତ୍ତବ୍ୟ ମନେ

କରିଥିବା ରାମଚନ୍ଦ୍ର, ମଂଗରାଜଙ୍କର ଅସହାୟ ଭାବେ ମୃତ୍ୟୁ ଘଟିଲା ଠିକ୍ କର୍ଣ୍ଣେଲ ଓ ଜର୍ଜଙ୍କ ପରି । କେହି ଏମାନେ ଆପଣାର କୃତକର୍ମର ଫଳରୁ ଏଡ଼ାଇ ପାରିନାହାନ୍ତି ବା ଅର୍ଜିତ ସମ୍ପତ୍ତିକୁ ନିର୍ବିବାଦ, ନିର୍ବିଘ୍ନ ଓ ନିଶଙ୍କ ଭାବରେ ଉପଭୋଗ କରିପାରି ନାହାନ୍ତି । ଚମ୍ପାର ମୃତ୍ୟୁ ରହସ୍ୟ ମଧ୍ୟ ଏହିପରି । ମଂଗରାଜ ଜେଲ୍‌ଯିବା ସମୟରେ କୌଶଳକ୍ରମେ ଚମ୍ପା ତାଙ୍କଠାରୁ ଘର ଚାବିକାଠି ଅପହରଣ କରିଥିଲା ଓ ସୁଯୋଗ ଦେଖି ଗୋବିନ୍ଦା ଭଣ୍ଡାରୀ ସହ ଭଣ୍ଡାର ଘରର ସକଳ ଧନସମ୍ପତ୍ତି ଧରି ଅନ୍ଧକାର ରାତିରେ ଚମ୍ପଟ ଦେଇଥିଲା । କିନ୍ତୁ ତାର ପରିଣତି କ'ଣ ହେଲା ? ଏହି ଧନର ସର୍ବଗ୍ରାସୀ ମୋହ ହେଲା ତାର କାଳ । ଗୋବିନ୍ଦା ଭଣ୍ଡାରୀ ସହ ସାମାନ୍ୟ ବଚସାରେ ତାର ହେଲା ପ୍ରାଣନାଶ । ଯେପରି ଅବସ୍ଥାରେ ତାର ମୃତ୍ୟୁ ହେଲା, ତାହା ଥିଲା ତାର କୃତକର୍ମର ଫଳ । ଗୋବିନ୍ଦା ଭଣ୍ଡାରୀ ମଧ୍ୟ କର୍ମଫଳ ଭୋଗରୁ ବାଦ୍ ପଡ଼ିନ । ଅତଏବ କୃତକର୍ମର ଫଳଭୋଗରେ ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବେ କର୍ଣ୍ଣେଲ୍, ଜର୍ଜ, ମଂଗରାଜ ଓ ଚମ୍ପା ପ୍ରାୟତଃ ସମଧର୍ମୀ ଚରିତ୍ର । ଏମାନଙ୍କ ପାପର ପ୍ରାୟଶ୍ଚିତ ସେମାନଙ୍କ ବଂଶଧରମାନଙ୍କୁ ମଧ୍ୟ କରିବାକୁ କିଛି କମ୍ କଷ୍ଟ ହୋଇନାହିଁ । ପିନ୍‌ଚନ୍ ପରିବାରର ଅବକ୍ଷୟ ପାଇଁ ଯେଉଁସବୁ କାରଣ ବିଦ୍ୟମାନ, ମଂଗରାଜ ବଂଶର ଅବକ୍ଷୟ ପାଇଁ ସେହିସବୁ କାରଣ ଦାୟୀ । ଅତଏବ 'The House of the Seven Gables' ଉପନ୍ୟାସର କର୍ଣ୍ଣେଲ୍ ଓ ଜର୍ଜ ଏବଂ 'ଛମାଣ ଆଠଗୁଣ୍ଠ' ଉପନ୍ୟାସର ମଂଗରାଜ ଓ ଚମ୍ପା ଉପରୋକ୍ତ ନାନା କାରଣରୁ ଯେ ପରସ୍ପର ମଧ୍ୟରେ ଯଥେଷ୍ଟ ସାମ୍ୟ ଦର୍ଶାଇ ପାରିଛନ୍ତି, ଏକଥା ଅସ୍ୱୀକାର କରିହୁଏ ନାହିଁ ।

(୪) ଶଠତା, ପ୍ରବଞ୍ଚନା, ଭଣ୍ଡାମୀ, ଛଳନା, ପ୍ରତାରଣା, ସନ୍ଦେହ, ଅବିଶ୍ୱାସ, ପରସ୍ୱାପହରଣ, ପ୍ରଚଣ୍ଡ ଅର୍ଥଲିପ୍ସା, ପରଧନ ଅପହରଣ ଓ ଚାରିତ୍ରିକ ଦୁର୍ବଳତାରେ ଯେପରି କର୍ଣ୍ଣେଲ୍ ଓ ଜର୍ଜଙ୍କ ଚରିତ୍ର ପରିପୁଷ୍ଟ ଅନୁରୂପ ଭାବେ ରାମଚନ୍ଦ୍ର, ମଂଗରାଜ ଓ ଚମ୍ପାର ଚରିତ୍ର ମଧ୍ୟ ସେହିସବୁ ଅବଗୁଣରେ ଚଳିତ, ଉଦ୍‌ଭାସିତ । ଏହିସବୁ ଗୁଣକୁ ଆଲୋଚ୍ୟ ୪ଟି ଚରିତ୍ର ମାଧ୍ୟମରେ ହଥର୍ଣ୍ଣ ଓ ଫକୀର ମୋହନ ଯେପରି ବାସ୍ତବ ଭାବେ ପ୍ରକାଶ କରିଛନ୍ତି, ତାହା ସମଗ୍ର ବିଶ୍ୱସାହିତ୍ୟରେ ମଧ୍ୟ ବିରଳ । ପୁଣି ଏହି ଚାରି ଚରିତ୍ରଙ୍କ ମୃତ୍ୟୁଚିତ୍ର ମଧ୍ୟ ସମଧର୍ମୀ । ପ୍ରତ୍ୟେକ ଏକ ଏକ ଅସହାୟ ପରିସ୍ଥିତି ଓ ଭୀଷଣ ପରିବେଶରେ ମୃତ୍ୟୁ ବରଣ କରିଛନ୍ତି । ଯଦ୍ୟପି ବିଶ୍ୱସାହିତ୍ୟର ପ୍ରାୟ ଖଳନାୟକ ଓ ଖଳନାୟିକାଙ୍କ ଚରିତ୍ରରେ ଅକାଳ ମୃତ୍ୟୁ ଆସିଥାଏ, ତଥାପି ସେ ମୃତ୍ୟୁଚିତ୍ର କର୍ଣ୍ଣେଲ୍ ବା ମଂଗରାଜ, ଅଥବା ଜର୍ଜ ଓ ଚମ୍ପାଙ୍କ ମୃତ୍ୟୁପରି ଏତେ ଭୀଷଣ, ଏତେ କୁତ୍ସିତ, ଏତେ ଅସହାୟ ଓ ଏତେ ଯନ୍ତ୍ରଣାଦାୟକ ନୁହେଁ ।

'The House of the Seven Gables' ରେ କର୍ଣ୍ଣେଲ୍‌ଙ୍କ ମୃତ୍ୟୁ ଏକ ଅସହାୟ ପରିସ୍ଥିତିରେ ଘଟିଛି । ହଥର୍ଣ୍ଣ ଏହି ମୃତ୍ୟୁ ଚିତ୍ରକୁ ଯେପରି ଜୀବନ୍ତ ଭାବେ

ବର୍ଣ୍ଣନା କରିଛନ୍ତି ଓ ସେହି ସମୟକୁ ଯେପରି ଭୀଷଣ ଓ ଭୟଙ୍କର ରୂପେ ରୂପ ଦେଇଛନ୍ତି, ତାହା ଅନନ୍ୟ। ଅନୁରୂପ ଭାବେ ଜର୍ଜ ମଧ୍ୟ ଅସହାୟ ଭାବରେ ରକ୍ତବାନ୍ତି କରି ମୃତ୍ୟୁବରଣ କରିଛନ୍ତି। ତାଙ୍କ ମୃତ୍ୟୁଦିନ ଭୀଷଣ ଝଡ଼ବର୍ଷା ଲାଗିରହିଛି। ଯେତେ ଯେପରି ବିଶ୍ୱ ପ୍ରଳୟ ହୋଇଯିବ। କାଳରାତ୍ରିର ଭୀମ ଗର୍ଜନ ଜର୍ଜଙ୍କ ମୃତ୍ୟୁକୁ କରିଛି ଶିହରିତ, ଭୀଷଣ, ଉଗ୍ର। ଏପରି ମୃତ୍ୟୁଚିତ୍ର କେବଳ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେହିଁ ଦେଖିବାକୁ ମିଳିଥାଏ। ରାମଚନ୍ଦ୍ର ମଙ୍ଗରାଜଙ୍କ ଅସହାୟ, ବନ୍ଧୁବିହୀନ ଜୀବନରେ ମୃତ୍ୟୁ ଆସିଛି ଲହ ଲହ ଜିହ୍ୱା ବିସ୍ତାର କରି। ସେ ମୃତ୍ୟୁର ତାଣ୍ଡବ ନୃତ୍ୟ ସ୍ୱଚକ୍ଷୁରେ ଦେଖି ଶିହରିଉଠିଛନ୍ତି। ମୃତ୍ୟୁର ନାଚରେ ସେ ହୋଇଛନ୍ତି ଆତଙ୍କିତ। ଶେଷରେ ବିଚିତ୍ର ପ୍ରଳାପକରି ସେ ଜୀବନ ଛାଡ଼ିଛନ୍ତି। ଚମ୍ପାର ମୃତ୍ୟୁ ମଧ୍ୟ କମ୍ ଭୀଷଣ ପରିବେଶରେ ହୋଇନାହିଁ। ନଈକୂଳରେ, ନିସ୍ତବ୍ଧିଆ, ନିର୍ଜନ ପରିବେଶ, ଝଡ଼ଝଞ୍ଜାପୂର୍ଣ୍ଣ ରାତ୍ରିରେ ଗୋବିନ୍ଦାର ଖୁରରେ ତା'ର ମୃତ୍ୟୁପର୍ବ ଅନୁଷ୍ଠିତ କରିଛନ୍ତି ଫକୀରମୋହନ। ଜର୍ଜଙ୍କ ମୃତ୍ୟୁପର୍ବର ଭୀଷଣ ପରିବେଶ ସାଙ୍ଗରେ ଚମ୍ପାର ମୃତ୍ୟୁପର୍ବକୁ ତୁଳନା ମଧ୍ୟ କରାଯାଇପାରେ। ଅତଏବ ଏ ପ୍ରକାର ପ୍ରଳୟଙ୍କରୀ ମୃତ୍ୟୁ ଯେ କେବଳ ପାପୀ, ଅତ୍ୟାଚାରୀ ଚରିତ୍ରମାନଙ୍କର ପ୍ରାପ୍ୟ, ତାହା ହଥର୍ଣ୍ଣ ଓ ଫକୀରମୋହନ ଉଭୟେ ଅନୁଭବ କରିଥିଲେ। ତେଣୁ ହଥର୍ଣ୍ଣଙ୍କ Villain-କର୍ଣ୍ଣେଲ୍ ଓ ଜର୍ଜ ଏବଂ ଫକୀରମୋହନଙ୍କ Villain ମଙ୍ଗରାଜ ଓ ଚମ୍ପାଙ୍କ ମୃତ୍ୟୁଚିତ୍ର ଓ ଜୀବନର ଅନ୍ତିମ ପରିଣତିରେ ଯଥେଷ୍ଟ ସାମ୍ୟ ଥିବାର ସ୍ପଷ୍ଟ ପ୍ରତୀୟମାନ ହୁଏ।

(ଖ) ହଥର୍ଣ୍ଣ ଓ ଫକୀରମୋହନଙ୍କ ଖଳଚରିତ୍ର ଚିତ୍ରଣରେ ଯେପରି ଆଶ୍ଚର୍ଯ୍ୟ ସାମ୍ୟ ପ୍ରକାଶିତ ହୁଏ; ସେହିପରି ଶୋଷିତ, ନିରୀହ ଚରିତ୍ରମାନଙ୍କର ଚିତ୍ରଣ ମଧ୍ୟ ଅନେକାଂଶରେ ସମଧର୍ମୀ ବୋଧହୁଏ। 'The House of the Seven Gables' ଉପନ୍ୟାସରେ ହଥର୍ଣ୍ଣ—ମାଥିଉ ମାଉଲେ, ହେପ୍‌ସିବା କ୍ଲିଫର୍ଡ଼ ଆଦି ଚରିତ୍ରଙ୍କୁ ଶୋଷିତ ଶ୍ରେଣୀଭୁକ୍ତ କରିଅଛନ୍ତି। ଅନୁରୂପ ଭାବେ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ଭଗିଆ ଓ ସାରିଆ ହୋଇଛନ୍ତି ଶୋଷିତ ଗୋଷ୍ଠୀର ପ୍ରତିନିଧି। ଏମାନଙ୍କ ଜୀବନର ସକଳ ରଙ୍ଗୀନ୍ ସ୍ୱପ୍ନ କ୍ଷୁଧିତ ଶୋଷକର ନିଷ୍ଠୁର ଅତ୍ୟାଚାରରେ ପେଷି ହୋଇଯାଇଛି।

'The House of the Seven Gables' ଉପନ୍ୟାସର ଶୋଷିତ ଚରିତ୍ର ମାଥିଉ ମାଉଲେ ସହ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର 'ଭଗିଆ-ସାରିଆ'ଙ୍କୁ ତୁଳନା କରାଯାଇପାରେ। ଏହି ଚରିତ୍ର ତ୍ରୟ ଆପଣା ଆପଣାର ମୂଲ୍ୟବାନ୍ ଜମି ଖଣ୍ଡକ ପାଇଁ ତଥା ନିଜ ନିଜର ସରଳ ବିଶ୍ୱାସତା ପାଇଁ ଶୋଷକ ତଥା ଷଡ଼ଯନ୍ତ୍ରକାରୀ କର୍ଣ୍ଣେଲ୍ ଓ ମଙ୍ଗରାଜଙ୍କର ଶୀକାର ହୋଇଛନ୍ତି। ଏହି ନିଷ୍ଠୁର ତଥା ବର୍ବରୋଚିତ

ଷଡ଼ଯନ୍ତ୍ର ସେମାନଙ୍କ ଜୀବନକୁ ବିପର୍ଯ୍ୟସ୍ତ କରିଦେବା ସଂଗେ ସଂଗେ ଶୋଷକଙ୍କ ପାରିବାରିକ ଜୀବନକୁ ମଧ୍ୟ ଅଧଃପତନ କରିଦେଇଛି ।

ମାଥିଉ ମାଉଲେ 'The House of the Seven Gables' ରେ ଏକ ନିରୀହ, ସରଳ ଚରିତ୍ର । ତା'ର ଶ୍ରେଷ୍ଠ ଜମି ଖଣ୍ଡିକୁ ନେବାପାଇଁ କର୍ଣ୍ଣେଲ୍ ତା' ବିରୁଦ୍ଧରେ ଚକ୍ରାନ୍ତ ଆରମ୍ଭ କରିଦେଇଛନ୍ତି । କିନ୍ତୁ ଏ ଚକ୍ରାନ୍ତ ବିରୁଦ୍ଧରେ ସେ ପ୍ରତିବାଦ କରିପାରି ନାହିଁ । କାରଣ ଶୋଷକ କର୍ଣ୍ଣେଲ୍‌ଙ୍କ ପରି ତା'ର ସାମାଜିକ ପ୍ରଭାବ ବା ପ୍ରତିଷ୍ଠା ନଥିଲା । ସେଇଥିପାଇଁ ମିଥ୍ୟା ଅଭିଯୋଗରେ ଅଭିଯୁକ୍ତ ହୋଇ ତାଙ୍କୁ ଫାଶୀ-ଖୁଣ୍ଟରେ ଝୁଲିବାକୁ ପଡ଼ିଛି । ପରିଣତିରେ ତା'ର ଜମି ଖଣ୍ଡକ କର୍ଣ୍ଣେଲ୍ ହସ୍ତଗତ କରିଛନ୍ତି । ଅନୁରୂପ ଭାବେ ଫକୀରମୋହନ ତାଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ 'ଭଗିଆ ଓ ସାରିଆ' ଦୁଇ ନିର୍ବୋଧ ସରଳ ଚରିତ୍ରଙ୍କୁ ଚିତ୍ରିତ କରିଅଛନ୍ତି । ସାରିଆର ସନ୍ତାନ କାମନା ତା'ର ସର୍ବନାଶର କାରଣ ହୋଇଛି । ଚମ୍ପା ତାକୁ କୌଶଳରେ ବଶ କରିଛି । ଭଗିଚନ୍ଦ-ସାରିଆର ସ୍ୱାମୀ । ତେଣୁ ସନ୍ତାନ ପାଇବା ପାଇଁ ସେ ତା' ଆଗରେ ମିନତି କରିଛି ରାମଚନ୍ଦ୍ର ମଂଗରାଜଙ୍କ ପାଖରେ ନିଜର ମୂଲ୍ୟବାନ ସମ୍ପତ୍ତି 'ଛ'ମାଣ ଆଠଗୁଣ୍ଠ'କୁ ବନ୍ଧାଦେଇ ଟଙ୍କା ଆଣି ମଂଗଳାଙ୍କ ମନ୍ଦିର ତିଆରି କରିବାକୁ । ଫଳରେ ତାଙ୍କ ଜମି ମଂଗରାଜଙ୍କ ହାତକୁ ନେଣ୍ ଚକ୍‌କଣ ଭାବେ ଖସିଯାଇଛି ଏବଂ ପରେ ପରେ ରାମଚନ୍ଦ୍ର ମଂଗରାଜ ଷଡ଼ଯନ୍ତ୍ର କରି ଏକତରଫା ଡିକ୍ରୀ ଆଣି ତା'ର ଜମିକୁ ନିଜ ଜମି ସହ ମିଶାଇ ଦେଇଛନ୍ତି ଓ ତା'ର ଘରଡ଼ିହ, ନେତ ନାମକ ଗାଈ ଉପରେ ଆପଣାର ଦଖଲ ଜାହିର୍ କରିଛନ୍ତି । ଏହି ପରିପ୍ରେକ୍ଷୀରେ ଦେଖିବାକୁ ଗଲେ ଉଭୟ ମାଥିଉ ମାଉଲେ ଓ ଭଗିଆ ନିଜ ନିଜର ଜମି ଖଣ୍ଡିକ ପାଇଁ ଷଡ଼ଯନ୍ତ୍ରର ଶୀକାର ହୋଇଛନ୍ତି ଓ ନିଜ ଜୀବନ ଉପରେ ଶୋଷକର ପ୍ରଚଣ୍ଡ ଅତ୍ୟାଚାରର ରୂପକ ଝଡ଼କୁ ଅନୁଭବ କରିଛନ୍ତି । 'The House of the Seven Gables' ରେ ମାଥିଉ ମାଉଲେ ଯେପରି ନିଷ୍ପେଷିତ, ଅତ୍ୟାଚାରିତ ଓ ମୃତ୍ୟୁଗାମୀ ଚରିତ୍ର 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ସାରିଆ, ଭଗିଆ ମଧ୍ୟ ଠିକ୍ ସେହିପରି ଏକ ଏକ କରୁଣ ଚରିତ୍ର ଭାବେ ଚିତ୍ରିତ ହୋଇଛନ୍ତି ।

ଏହି ତ୍ରୟୀ ଚରିତ୍ରଙ୍କର ସରଳତା ନିରୀହତା ଓ ନିର୍ବୋଧତା—ସର୍ବୋପରି ଦାରିଦ୍ର୍ୟ ଓ ସାମାଜିକ ପ୍ରତିଷ୍ଠାହୀନତା ପାଇଁ ସେମାନେ ଶୋଷିତ ହୋଇଛନ୍ତି ଓ ବିପର୍ଯ୍ୟୟର ଶିକାର ହୋଇଛନ୍ତି । ଉଭୟଙ୍କ ଜୀବନରେ ସେମାନଙ୍କ ଜମି ହିଁ ହୋଇଛି କାଳ । ପୁଣି ଏମାନେ କେହି ଏହି ଶୋଷଣ ବିରୁଦ୍ଧରେ ପ୍ରତିବାଦ କରିପାରି ନାହାନ୍ତି । ଏମାନଙ୍କ ପ୍ରତିବାଦ କେବଳ ସେମାନଙ୍କ ତତଲ ନିଃଶ୍ୱାସରେ ହିଁ ପ୍ରକାଶ ପାଇଛି । ଏହିପରି ଦୁଇ ସରଳ ନିରୀହ ପରିବାରକୁ ଉଚ୍ଛନ୍ନ କରିଦେଇଥିବାରୁ ନା କର୍ଣ୍ଣେଲ୍ ନାଁ ରାମଚନ୍ଦ୍ର ମଙ୍ଗରାଜ କେହି ଶାନ୍ତିରେ ରହିପାରିଛନ୍ତି ? ଦେଖିବାକୁ ଗଲେ ଶୋଷିତ ଚରିତ୍ରରେ ଏ ପ୍ରକାର ସାମ୍ୟ ହଥର୍ଣ୍ଣ ଓ ଫକୀରମୋହନଙ୍କ ସମ-ସାମାଜିକ ସ୍ଥିତିର ପରିଚାୟକ ।

'The House of the Seven Gables' ଉପନ୍ୟାସରେ ମାଥିଉ ମାଉଲେ ପ୍ରତିଶୋଧ ନେଇପାରି ନାହିଁ ପ୍ରତ୍ୟକ୍ଷ ଭାବେ କର୍ଣ୍ଣେଲ୍ ପିନ୍‌ଚନ୍‌ଙ୍କଠାରୁ । କିନ୍ତୁ ଏହି ଉପନ୍ୟାସ ପୁରୁଷ ପୁରୁଷ ଧରି ଗଡ଼ିଚାଲିଥିବାରୁ ଉପନ୍ୟାସର ନାନାସ୍ଥଳେ ମାଉଲେଙ୍କ ପୁଅ ନାତିମାନେ କର୍ଣ୍ଣେଲ୍‌ଙ୍କ ବଂଶଧରମାନଙ୍କ ଉପରେ ହିଂସ୍ର-ପ୍ରତିଶୋଧ ନେଇଛନ୍ତି । 'ଆଲିସ୍ ପିନ୍‌ଚନ୍' ପରିଚ୍ଛେଦରେ ଏହି ପ୍ରତିଶୋଧର ଚିତ୍ର ସୁସ୍ପଷ୍ଟ ହୋଇ ବର୍ଣ୍ଣିତ ହୋଇଛି ବର୍ଣ୍ଣନା କରିଛନ୍ତି । ପୁଣି ପ୍ରତିଶୋଧ ସମ୍ପର୍କରେ କୁହାଯାଇପାରେ ଯେ, 'ଜଣେ ପିନ୍‌ଚନ୍ ବଂଶୀୟା କନ୍ୟାଙ୍କୁ ମାଉଲେ ବଂଶର ଜଣେ ଯୁବକ ବିବାହ କରିବା ପିନ୍‌ଚନ୍ ବଂଶ ଉପରେ ମାଉଲେ ବଂଶର ଯେ ଏକ ସାଙ୍ଘାତିକ ପ୍ରତିଶୋଧ ଏକଥା ଅସ୍ୱୀକାର କରାଯାଇନପାରେ । ଯେଉଁ ପିନ୍‌ଚନ୍‌ମାନେ ଆପଣାର ଅର୍ଥସର୍ବସ୍ୱ ଅହଂ ଓ ପ୍ରତିପତ୍ତି ସର୍ବସ୍ୱ ରକ୍ଷଣଶୀଳତାରେ ନିଜକୁ ଯଥେଷ୍ଟ ବଡ଼ ମନେକରୁଥିଲେ ସେମାନେ ଯେ ଏଇ ବିବାହ ନିକଟରେ ମାଉଲେ ବଂଶ ନିକଟରେ ସମ୍ପୂର୍ଣ୍ଣ ପରାଜିତ ହୋଇଛନ୍ତି—ଏକଥା ନିଃସନ୍ଦେହରେ କୁହାଯାଇ ପାରେ ।

'ଛ'ମାଣ ଆଠଗୁଣ୍ଠ'ର କାହାଣୀ ଗୋଟିଏ ପୁରୁଷ ମଧ୍ୟରେ ସୀମିତ ଥିବାରୁ ଫକୀରମୋହନ ଭଗିଆକୁ ରାମଚନ୍ଦ୍ର ମଙ୍ଗରାଜଙ୍କଠାରୁ ପ୍ରତିଶୋଧ ନେବାର ସୁଯୋଗ ଦେଇଛନ୍ତି । ଭଗିଆ ପାଗଳ ହେବାପରେ ଜେଲ୍‌ରେ ରହିଛି । ରାମଚନ୍ଦ୍ର ମଙ୍ଗରାଜ ମଧ୍ୟ ନିଜ କୃତକର୍ମ ହେତୁ ଜେଲ୍ ଭୋଗିଛନ୍ତି । ଏଇ ଜେଲ୍‌ରେ ରାମଚନ୍ଦ୍ର ମଙ୍ଗରାଜଙ୍କ ଏଥିପାଇଁ ଜେଲ୍‌ରୁ ମୁକ୍ତି ପାଇଛନ୍ତି ସତ୍ୟ; କିନ୍ତୁ ଏଇ ଯନ୍ତ୍ରଣାରେ ସେ ମୃତ୍ୟୁବରଣ କରିଛନ୍ତି । ଅର୍ଥାତ୍ ଏଠାରେ ଶୋଷିତ ସିଧାସଳଖ ଶୋଷକଠାରୁ ପ୍ରତିଶୋଧ ନେଇଛି । ଦେଖିବାକୁ ଗଲେ 'The House of the Seven Gables'ରେ ମାଉଲେ ପରିବାରର ପ୍ରତିଶୋଧ ଓ 'ଛ'ମାଣ ଆଠଗୁଣ୍ଠ'ରେ ଭଗିଆର ପ୍ରତିଶୋଧରେ ବିଶେଷ କୌଣସି ତାରତମ୍ୟ ନାହିଁ । ଏ କ୍ଷେତ୍ରରେ ଉଭୟ ଔପନ୍ୟାସିକ ଶୋଷକ ପ୍ରତି ଶୋଷିତର ଶାସ୍ତି ବିଧାନ କରିବାକୁ ବିସ୍ମୃତ ଯାଇନାହାନ୍ତି ।

(୬) 'The House of the Seven Gables' ଉପନ୍ୟାସରେ ହେପ୍‌ଜିବା ଓ କ୍ଲିଫର୍ଡ଼ ମଧ୍ୟ ଜର୍ଜଙ୍କ ଅନ୍ୟାୟ ଅତ୍ୟାଚାରର ଶୀକାର ହୋଇଛନ୍ତି । ଜର୍ଜ ଏମାନଙ୍କ ସମ୍ପର୍କୀୟା, ସମ୍ପର୍କୀୟର ଅତ୍ୟାଚାରରେ ଯେପରି ଆଲୋଚ୍ୟ ଉପନ୍ୟାସର ଏହି ଦୁଇ ଚରିତ୍ର ବ୍ୟତିବ୍ୟସ୍ତ, ସେହିପରି 'ଛ'ମାଣ ଆଠଗୁଣ୍ଠ'ରେ ରାମଚନ୍ଦ୍ର ମଙ୍ଗରାଜ ମଧ୍ୟ ନିଜର ପିଉସୀପୁଅ ଭାଇ ଶ୍ୟାମମଲ୍ଲ ଓ ନିଜର ପତ୍ନୀ ତଥା ପୁତ୍ରଙ୍କ ଉପରେ କମ୍ ଅତ୍ୟାଚାର, ଅନ୍ୟାୟ କରିନାହାନ୍ତି । କିନ୍ତୁ ଏ କ୍ଷେତ୍ରରେ ମଙ୍ଗରାଜଙ୍କ ଅତ୍ୟାଚାର କୌଶଳକ୍ରମେ ଅନୁଷ୍ଠିତ ହେବାବେଳେ 'The House of the Seven

Gables' ଉପନ୍ୟାସରେ ଜର୍ଜଙ୍କ ଅତ୍ୟାଗ୍ରହ ସୁଚାରୁତ ଭାବେ ଓ ପ୍ରତ୍ୟକ୍ଷରେ ଅନୁଷ୍ଠିତ ହୋଇଛି ।

(୭) 'The House of the Seven Gables' ଉପନ୍ୟାସର ଅଭିବ୍ୟକ୍ତର ଯାହା ମୁଖ୍ୟ ଉଦ୍ଦେଶ୍ୟ, ଯଥା—ପରଧନ ଅପହରଣର ପରିଣତି ବିଷମ, କୃତକର୍ମର ଫଳ ଭୋଗ ଅବଶ୍ୟମ୍ଭାବୀ ଓ ଅତ୍ୟାଗ୍ରହର ଫଳ ଅବଶ୍ୟ ଭୟଙ୍କର—ଏହିସବୁ ଘଟଣାମାନ ମୁଖ୍ୟ ଚରିତ୍ରମାନଙ୍କ ଦ୍ୱାରା ଯଥାଯଥଭାବେ ଅନୁଷ୍ଠିତ ହୋଇଛି । 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ଅଭିବ୍ୟକ୍ତ ମଧ୍ୟ 'The House of the Seven Gables' ଉପନ୍ୟାସର ଅଭିବ୍ୟକ୍ତ ସହ ସମାନ । ତେଣୁ ଏହାର ଚରିତ୍ରମାନେ ମଧ୍ୟ ଏହି ଅଭିବ୍ୟକ୍ତକୁ 'The House of the Seven Gables'ର ଚରିତ୍ରମାନଙ୍କ ପରି ସଫଳ ରୂପାୟନ କରିଛନ୍ତି । ସେଥିପାଇଁ ମୁଖ୍ୟଚରିତ୍ର, ଖଳଚରିତ୍ର ଓ ଶୋଷିତ ଚରିତ୍ର ଆଦି ଭିତ୍ତିରେ ଉଭୟ ଉପନ୍ୟାସର ଚରିତ୍ରଚିତ୍ରଣ ଯେ ଅସମ୍ଭବ ଭାବେ ନିଜ ଭିତରେ ସାମ୍ୟ ପ୍ରକଟିତ କରିପାରିଛି—ଏହା ନିଃସନ୍ଦେହରେ କୁହାଯାଇପାରେ ।

'The House of the Seven Gables' ଉପନ୍ୟାସରେ ଅନେକ ଗୌଣ ତଥା ସହାୟକ ଚରିତ୍ର ଅଛନ୍ତି, ଯେଉଁମାନେ ନାନା ଦିଗରୁ ଘଟଣା ଓ ଚରିତ୍ରମାନଙ୍କୁ ସମୃଦ୍ଧ ତଥା ଗତିଶୀଳ କରିଛନ୍ତି । ଘଟଣାର ଅନୁରୋଧରେ ସେମାନେ ନାନାଭାବେ ପ୍ରକାଶିତ ଓ ଚିତ୍ରିତ । ତେଣୁ ସେମାନଙ୍କ ସହ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ସହାୟକ ଚରିତ୍ରମାନଙ୍କ ତୁଳନା କରିଯିବାର ଅର୍ଥ କିଛି ନାହିଁ, କାରଣ ଏମାନେ ସମସ୍ତେ ଉପନ୍ୟାସର ବିକାଶ ଦିଗରେ ସହାୟକ ହୋଇଛନ୍ତି । ସେଥିପାଇଁ ଉପନ୍ୟାସର ଯାହା ସୌଷ୍ଠବ, ଅର୍ଥାତ୍ ମୁଖ୍ୟ ଚରିତ୍ରମାନଙ୍କର ତୁଳନାରେ ଆଲୋଚ୍ୟ ଉଭୟ ଉପନ୍ୟାସର ଚରିତ୍ର ବିଚାର କରାଯାଇଛି । ଏହି ଚରିତ୍ର ବିଚାରରେ ଯେ ଆଲୋଚ୍ୟ ଦୁଇ ଉପନ୍ୟାସ ମଧ୍ୟରେ ଅସମ୍ଭବ ଧରଣର ସାମ୍ୟ ପରିଲକ୍ଷିତ ହୋଇଛି ତାହା ନିଃସନ୍ଦେହରେ କୁହାଯାଇପାରେ ।

ଅତଏବ ବିଷୟବସ୍ତୁ ଦୃଷ୍ଟିରୁ, ଶୈଳୀ ଦୃଷ୍ଟିରୁ, ସମସ୍ୟ ଦୃଷ୍ଟିରୁ, ସାମାଜିକ ଚେତନା ଦୃଷ୍ଟିରୁ, ସାହିତ୍ୟିକ ମୂଲ୍ୟବୋଧ ଦୃଷ୍ଟିରୁ, କାଳଗତ ଚିରନ୍ତନତା ଦୃଷ୍ଟିରୁ ଓ ଚରିତ୍ର ବିଚାର ଦୃଷ୍ଟିରୁ ହଥର୍ଣ୍ଣଙ୍କ 'The House of the Seven Gables' ଓ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ତୁଳନାତ୍ମକ ବିଚାରରେ ଯେ, ନାନା କ୍ଷେତ୍ରରେ ସାମ୍ୟ ପରିଲକ୍ଷିତ ହୋଇଛି, ତାହା ଅସ୍ୱୀକାର କରିହେବ ନାହିଁ । ତେଣୁ ହଥର୍ଣ୍ଣଙ୍କ 'The House of the Seven Gables' ଓ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସ ଯେ, ଊନବିଂଶ ଶତାବ୍ଦୀର ଦୁଇ ସମଧର୍ମୀ ଅଥଚ କାଳଜୟୀ ଉପନ୍ୟାସ, ତାହା ବେଶ୍ ହୃଦୟଙ୍ଗମ କରିହେବ ।

□□□

# ଔପନ୍ୟାସିକ ହଥର୍ଣ୍ଣ ଓ ଔପନ୍ୟାସିକ ଫକୀରମୋହନଙ୍କ ଅନ୍ୟାନ୍ୟ ଉପନ୍ୟାସର ସମନ୍ୱୟବାଦ ଓ ତୁଳନାତ୍ମକ ବିଚାରବୋଧ

ଔପନ୍ୟାସିକ ହଥର୍ଣ୍ଣ ଓ ଫକୀରମୋହନ ଉଭୟ ତାଙ୍କ ଜୀବଦ୍ଦଶାରେ ଚାରୋଟି ଲେଖାଏଁ ପୂର୍ଣ୍ଣାଙ୍ଗ ଉପନ୍ୟାସ ରଚନା କରିଯାଇଛନ୍ତି । ହଥର୍ଣ୍ଣଙ୍କ ଲିଖିତ ୪ଟି ପୂର୍ଣ୍ଣାଙ୍ଗ ଉପନ୍ୟାସ ହେଲ—(1) The Scarlet Letter (2) The House of the Seven Gables (3) The Marble Faun ଓ (4) Blithedale Romance । ଫକୀରମୋହନ ଯେଉଁ ଚାରୋଟି ପୂର୍ଣ୍ଣାଙ୍ଗ ଉପନ୍ୟାସ ରଚନା କରିଥିଲେ, ତାହା ହେଲ—(୧) ଛ'ମାଣ ଆଠଗୁଣ୍ଠ (୨) ଲଛମା (୩) ମାମୁଁ ଓ (୪) ପ୍ରାୟଶ୍ଚିତ୍ତ । ପୂର୍ବ ଅଧ୍ୟାୟରେ ହଥର୍ଣ୍ଣଙ୍କ 'The House of the Seven Gables' ଉପନ୍ୟାସ ସହ ବିଶ୍ୱ ସାହିତ୍ୟରେ ପ୍ରତିଷ୍ଠା ଅର୍ଜନ କରିଥିବା ଫକୀରମୋହନଙ୍କ କାଳଜୟୀ ଉପନ୍ୟାସ 'ଛ'ମାଣ ଆଠଗୁଣ୍ଠ'ର ତୁଳନାତ୍ମକ ବିଚାର ନାନା ଦିଗରୁ କରାଯାଇ ଏଥିରେ ଥିବା ସାମ୍ୟକୁ ଯଥାଯୋଗ୍ୟ ଉଦାହରଣ ଓ ପ୍ରମାଣ ସହ ଦର୍ଶାଯାଇଛି । ତେଣୁ ଏହି ଅଧ୍ୟାୟରେ ଉପରୋକ୍ତ ଦୁଇ ଉପନ୍ୟାସ ସମ୍ପର୍କରେ ନୀରବ ରହିବାକୁ ପଡ଼ୁଛି । ସେଥିପାଇଁ ଏହି ଅଧ୍ୟାୟରେ ହଥର୍ଣ୍ଣ ଓ ଫକୀରମୋହନଙ୍କ ଅନ୍ୟାନ୍ୟ ଉପନ୍ୟାସମାନଙ୍କର ସମନ୍ୱୟବାଦ ଓ ତୁଳନାତ୍ମକ ବିଚାର କେବଳ ବରଂ ଅଧିକ ଉଲ୍ଲେଖଯୋଗ୍ୟ ମନେହୁଏ । ତେଣୁ ପ୍ରଥମେ ହଥର୍ଣ୍ଣ ଓ ପରେ ଫକୀରମୋହନଙ୍କ ଅନ୍ୟାନ୍ୟ ଉପନ୍ୟାସର ସଂକ୍ଷିପ୍ତ କଥାବସ୍ତୁ ଉଲ୍ଲେଖ କରି ପରେ ପରେ ଏମାନଙ୍କ ମଧ୍ୟରେ ଥିବା ସମନ୍ୱୟ ଓ ଏମାନଙ୍କର ତତ୍ଜନିତ ତୁଳନାତ୍ମକ ବିଚାର କରାଯାଇପାରେ ।

### (କ) ହଥର୍ଣ୍ଣଙ୍କ ଉପନ୍ୟାସ : (1) The Scarlet Letter :

ହଥର୍ଣ୍ଣ ଯେଉଁ ଚାରୋଟି ପୂର୍ଣ୍ଣାଙ୍ଗ ଉପନ୍ୟାସ ରଚନା କରିଥିଲେ (The Scarlet Letter—1850, The House of the Seven Gables—1851, The Blithedale Romance—1852, The Marble Faun—

1860 ) ଉଲ୍ଲେଖରୁ ପ୍ରଥମ ଓ ପ୍ରଖ୍ୟାତ ଉପନ୍ୟାସ ଭାବେ 'The Scarlet Letter'ର ପ୍ରକାଶନ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ୧୮୫୦ ମସିହାରେ ଏହାର ପ୍ରଥମ ପ୍ରକାଶନ ଘଟିଥିଲା ।

ରକ୍ଷଣଶୀଳ ବୋଷ୍ଟନ ସହରର ଏକ ସାଧାରଣ ତଥା ରୁକ୍ଷ ଚିତ୍ର ଏଥିରେ ଉଦ୍ଭାସିତ । ସମଗ୍ର ଉପନ୍ୟାସଟିର ମୂଳପିଣ୍ଡ ବୋଷ୍ଟନ ସହରର ପୃଷ୍ଠଭୂମିରେ ଆଧାରିତ । ହଥର୍ଣ୍ଣ Old Manseରୁ ସାଲେମ୍ ଫେରିଆସିବା ପରେ Custom House ରେ କିଛି ଦିନ ପାଇଁ ନିଯୁକ୍ତ ପାଇଥିବା ସମୟରେ ଏହି 'Scarlet Letter' ଉପନ୍ୟାସଟିକୁ ସେ ରଚନା କରିଥିଲେ । ସପ୍ତଦଶ ଶତାବ୍ଦୀର ଆମେରିକାସ୍ଥ ରକ୍ଷଣଶୀଳ ସମାଜର ନିଷ୍ଠୁର ନିର୍ଯ୍ୟାତନା ତଥା ରକ୍ଷଣଶୀଳତାର ନଗ୍ନରୂପକୁ ଚିତ୍ରିତ କରିବାକୁ ପାଇଁ ହଥର୍ଣ୍ଣ ଏଥିରେ ବୋଷ୍ଟନ ସହରର ତତ୍କାଳୀନ ଦୁର୍ନୀତିଗ୍ରସ୍ତ ଶାସକ, ବିଚାରକ ଓ ବୁଦ୍ଧିଜୀବୀ ଗୋଷ୍ଠୀଙ୍କୁ ବଧ ଦେଇଛନ୍ତି ।

ଉପନ୍ୟାସଟିରେ ୪ଟି ଚରିତ୍ର ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି । ମୁଖ୍ୟ ନାୟିକା Hester Prynne ର ସ୍ୱାମୀ Rogger Chilling Worth ଜଣେ ଡାକ୍ତର । Chilling Worth ଙ୍କ ଦୀର୍ଘ ଦିନର ଅନୁପସ୍ଥିତିରେ ବୋଷ୍ଟନ ସହରର ଜଣେ ଯୁବନେତା Arthur Dimmesdale ଙ୍କ ଦ୍ୱାରା Hester ଅବୈଧ ଭାବରେ Pearl କୁ ଜନ୍ମ ଦେଇଛି । ଏହି ଗୁଡ଼ିକ ଚରିତ୍ର ଅଦ୍ୟାବଧି ଆମେରିକାସ୍ଥ ଉପନ୍ୟାସ ଜଗତରେ ବିରଳ । (୧) ଚରିତ୍ରର ବଳିଷ୍ଠତା, କାହାଣୀର ଯଥାର୍ଥତା ପାଇଁ 'The Scarlet Letter' ଆମେରିକାସ୍ଥ ଉପନ୍ୟାସ ଜଗତରେ ଏକ ଅନବଦ୍ୟ ସୃଷ୍ଟି ଭାବରେ ବିଦିତ ।

---

(୧) "× × × Hawthorne created four unforgettable characters of American fiction : Hester Prynne, condemned to wear a scarlet 'A' on her breast in token of her sin of adultery; the Reverend Arthur Dimmesdale, revered as saintly by his parishioners but torn by hidden guilt; theirir child the 'Pearl'··· of great price; and Roger Chilling Worth, Hestor's husband, who as he probes into the hearts of those who have wronged him becomes the greatest sinner of them all. The identity of Hester's lover, secret her ministerial inquisitors cannot force her to

ଅବୈଧ ଭାବରେ 'Pearl' କୁ ଜନ୍ମ ଦେଇଥିବା ଦୃଷ୍ଟିରୁ ଏବଂ ଏହି ଶିଶୁର ଜନକର ପ୍ରକୃତ ପରିଚୟ ଲୁକ୍‌କାୟିତ ରଖିଥିବା କାରଣରୁ କାହାଣୀର ଆରମ୍ଭରେ ନାଟକୀୟ ଭାବେ 'ହେଷ୍ଟର' ତା'ର ଛନମାସର ଶିଶୁ 'ପିଅର୍ଲ'କୁ ଧରି ଜେଲ୍ ସମ୍ମୁଖରେ ଥିବା ଗୋଟିଏ ସ୍ତମ୍ଭ (Pillar) ପାଖରେ ଠିଆ ହୋଇଛି । ଏହା ହେଉଛି ତା'ର ଦଣ୍ଡ । ତା'ର ଦଣ୍ଡାଦେଶକୁ ମଧ୍ୟ ସେ ପିନ୍ଧିଥିବା ପୋଷାକରେ ଠିକ୍ ତାର ବକ୍ଷଦେଶରେ ଏକ ନାଇଗଣି ରଂଗର କାଗଜରେ ଲେଖି ମାରିଦିଆଯାଇଥିଲା । ଏହି ଦଣ୍ଡାଦେଶ ଲିଖିତ କାଗଜ ଖଣ୍ଡିକ ହେଉଛି 'The Scarlet Letter' ।

ହେଷ୍ଟର ଅବୈଧ ଭାବେ ଜନନୀ ହେବାବେଳେ ତା'ର ଡାକ୍ତର ସ୍ୱାମୀ ଥିଲେ ବିଦେଶରେ । କିଛିଦିନ ପରେ ସେ (Doctor Chilling Worth) ଫେରି-ଆସିଛନ୍ତି ଓ ନିଜ ସ୍ତ୍ରୀର ଏଭଳି ଦୁଷ୍ଟ କାର୍ଯ୍ୟକଳାପ ପାଇଁ ଦାୟୀଥିବା ଯୁବକ Demmes-dale କୁ ବିଶ୍ୱସ୍ତ ସୂତ୍ରରୁ ଜାଣିପାରି ଉପଯୁକ୍ତ ଶାସ୍ତି ଦେବାପାଇଁ ଭାବିଛନ୍ତି ଏବଂ ଏହି ଯୁବମନ୍ତ୍ରୀ (ନେତା ପରେ ମନ୍ତ୍ରୀ)ଙ୍କ ଦେହ ଖରାପ ଥିବା ସମୟରେ ସେ ତାଙ୍କର ବ୍ୟକ୍ତିଗତ ଡାକ୍ତର ଭାବେ ନିଯୁକ୍ତ ହୋଇ ତାଙ୍କ ଉଦ୍ଦେଶ୍ୟ ସାଧନ କରିଛନ୍ତି । ପରିଶେଷରେ ହେଷ୍ଟର ଓ ପିଅର୍ଲ ନୂତନ ଭାବେ ଜୀବନ ଗଢ଼ିବା ପାଇଁ ବୋଷ୍ଟନ ସହରର ଗ୍ରାମ ଭାବିଯାଇଛନ୍ତି । ହେଷ୍ଟର ତା'ର ପ୍ରେମିକ ମନ୍ତ୍ରୀ Demmesdale କୁ ଭୁଲି ପାରିନାହିଁ । କିନ୍ତୁ ପିଅର୍ଲ ଜନ୍ମ ହେବାର ସାତବର୍ଷ ବିତିଯାଇଥିଲେ ହେଁ ସେ ତାଙ୍କ ସାଂଗରେ ଯୋଗାଯୋଗ ରଖିପାରି ନାହିଁ ।

ଭଗବାନଙ୍କ ସୃଷ୍ଟିରେ ପାପ କେବେ ଲୁଚିରହେ ନାହିଁ; ଏଇ ପୃଷ୍ଠଭୂମିରେ ଉପନ୍ୟାସଟିର ଅଭିବ୍ୟକ୍ତି ପରିବେଶିତ । ଦୁନିଆ ଦୃଷ୍ଟିରେ ପାପୀ ଘୃଣ୍ୟ, ହୀନ । ମାତ୍ର ହଥର୍ଣ୍ଣଙ୍କ ଦୃଷ୍ଟିରେ ପାପ ହିଁ ଘୃଣ୍ୟ । ଏ ପ୍ରକାର ସାର୍ବଜନୀନ ବିଚାରବୋଧ ଓ ପାପୀ ପାଇଁ ଦଣ୍ଡ, ତତ୍କାଳୀନ ସଜନୀତକ ବ୍ୟକ୍ତିଙ୍କର ଆଦର୍ଶ ଚରିତ୍ର ନାମରେ ସାଉଥି, ନାରକୀୟ, ମାଂସାସୀ ପ୍ରକୃତି, ସନ୍ଦେହ ତଥା ପ୍ରତାରଣା ଆଦି ବର୍ଣ୍ଣନାରେ ହଥର୍ଣ୍ଣଙ୍କ 'The Scarlet Letter' ବେଶ୍ ଉପଭୋଗ୍ୟ ହୋଇପାରିଛି । ନାରୀର ସ୍ଖଳନ ତା'କୁ ଅଧଃପତିତ କରେ; ମାତ୍ର ତା'ର ପ୍ରେମ ତାକୁ କରେ ଚିରବନ୍ଦନୀୟ । ଏ କ୍ଷେତ୍ରରେ

---

reveal, is at last made public in a way the community could not have fore seen and would not have wished."

(Six American Novelists of the 19th century, Page-47/48)

Hester ଜୀବନରେ ତାହା ହିଁ ଘଟିଛି । ସ୍ୱାମୀର ଅନୁପସ୍ଥିତିରେ ସେ ଦେହର ଜ୍ୱାଳା ସମ୍ଭାଳି ପାରିନାହିଁ । ତେଣୁ ସେ ସମର୍ପି ଦେଇଛି ପରପୁରୁଷ ନିକଟରେ ଓ ଅବୈଧ ସନ୍ତାନର ଜନନୀ ହୋଇଛି । ସେ ନିଜର ପାପକୁ ଲୁଚାଇ ରଖିନାହିଁ ବା ନଷ୍ଟ କରି-ଦେବାର ପ୍ରୟାସ କରିନାହିଁ; ବରଂ ନିଜ ପ୍ରେମିକର ସାମାଜିକ ପ୍ରତିଷ୍ଠାରେ ଅଞ୍ଚ ନଆସୁ ସେ ତାହାହିଁ ଗ୍ରହିଛି । ନିଜ ପ୍ରେମର ସେ ଯେଉଁ ପରିଚୟ ଏ କ୍ଷେତ୍ରରେ ପ୍ରଦାନ କରିଛି, ତାହା ଅନନ୍ୟ । ତେବେ ଉପନ୍ୟାସଟି ଯେ ଏକ କରୁଣ ପରିବେଶରେ ଘଟିତ ଏକଥା ଅସ୍ୱୀକାର କରିହେବନାହିଁ ।

ଏହି କରୁଣାତ୍ମକ ଉପନ୍ୟାସଟି ମୁଖ୍ୟ ଅଭିବ୍ୟକ୍ତ ଦେଉଛି, ଯାହାକି Abel ତାଙ୍କ 'American Literature—Vol 2'ରେ ଉଲ୍ଲେଖ କରିଛନ୍ତି— This paints to the theme of the Novel : that it is vain to conceal guilt in order to avoid punishment, for sin can not be hidden from god and it is god's Justice alone that the sinner should fear.' × × × The central view point supplied by the historical setting and situation, is the doctrine of puritanism which regards man as a creature of God. But Born in depravity as a result of original sin of Adamdeserving of damnation and utterly dependent god's murcy for salvation. Dimmesdale and bostom community generally stand for his point of view. A second point of view, that of romantic naturalism assumes that human beings have 'a Right to happiness' and that such a love as that of Arthur and Hester, so sinful from the puritan point of view is sacred. This is Hester's arowed belief and many Romantic Modern readers who sympathize with her, see her as a romantic heroine, the central figure of the book, disregarding the central role which Dimmesdale actually plays.'

ଏହିସବୁ ଦୃଷ୍ଟିକୋଣ ଦେଇ ଉପନ୍ୟାସଟିରେ ହଥର୍ଣ୍ଣଙ୍କର ଯେଉଁ ମୌଳିକ ଚିନ୍ତା-ଧାରାର ପରିପ୍ରକାଶ ଘଟିଛି, ତାହା 'The Scarlet Letter' ଉପନ୍ୟାସକୁ ଆମେରିକୀୟ ଉପନ୍ୟାସ ଜଗତରେ ଏକ ମର୍ଯ୍ୟାଦାବନ୍ତ ଆସନ ପ୍ରଦାନ କରିବାକୁ କ୍ଷମଶୀଳ ହୋଇପାରିଛି ।

**(2) The Blithedale Romance—1852 :**

'The Blithadale Romance' ହଥର୍ଣ୍ଣଙ୍କର ତୃତୀୟ ଉପନ୍ୟାସ । ଏହାର ଗୋଟିଏ ବର୍ଷ ପୂର୍ବରୁ ଅର୍ଥାତ୍ ୧୮୫୧ ମସିହାରେ ସେ ତାଙ୍କର ଦ୍ୱିତୀୟ କାଳଜୟୀ

ଉପନ୍ୟାସ 'The House of the Seven Gables' ରଚନା କରିଥିଲେ; ଯାହାର ଏକ ପୂର୍ଣ୍ଣାଙ୍ଗ ଆଲୋଚନା ପୂର୍ବବର୍ତ୍ତୀ ଅଧ୍ୟାୟରେ କରାଯାଇଛି । ଅତଏବ ହଥର୍ଣ୍ଣ 'The Blithadale Romance' ଉପନ୍ୟାସ ରଚନା କଲାବେଳକୁ ଆମେରିକୀୟ ଉପନ୍ୟାସ ଜଗତରେ ସେ ବେଶ୍ ପ୍ରତିଷ୍ଠିତ ହୋଇସାରିଥିଲେ । ଏହି ଉପନ୍ୟାସରେ ହଥର୍ଣ୍ଣ ତାଙ୍କର ଏକଦା କର୍ମକ୍ଷେତ୍ର 'Brookfirm'ର ଅଭିଜ୍ଞତାକୁ ରୂପ ଦେଇଛନ୍ତି ।

ହଥର୍ଣ୍ଣ ଏହି ଉପନ୍ୟାସରେ ସାମାଜିକ ନ୍ୟାୟଦାବି ସଂସ୍କାର, ନାରୀ ସ୍ୱାଧୀନତା ଆଦି ସମ୍ପର୍କରେ ପ୍ରତ୍ୟାଲୋଚନା କରିଛନ୍ତି । କିନ୍ତୁ ତାଙ୍କର ଏହି ଅଭିପ୍ସା ଫଳବତୀ ହୋଇପାରି-ନାହିଁ । ପ୍ରଚ୍ଛନ୍ନ ସଂସ୍କାରକର ମନୋବୃତ୍ତି ନେଇ ହଥର୍ଣ୍ଣ ଏକ ନୂତନ ସମାଜର କଳ୍ପନା କରି ଏହି ଉପନ୍ୟାସଟି ରଚନା କରିଥିଲେ । ସମାଜବାଦର ଧ୍ୱନି ଥିଲା । ଏହି ଉପନ୍ୟାସର ମୁଖ୍ୟ ସ୍ୱର । ମାର୍ଗାରେଟ ଫୁଲର, ଜେନେବିୟା ଓ ତାର ଭଉଣୀ ପ୍ରିସିଲ୍ଲା ଏହି ଉପନ୍ୟାସର ତିନୋଟି ଉଲ୍ଲେଖଯୋଗ୍ୟ ଚରିତ୍ର । ଏହି ଉପନ୍ୟାସରେ ହଥର୍ଣ୍ଣଙ୍କ ବାସ୍ତବବାଦୀ ଦୃଷ୍ଟିକୋଣ ପ୍ରତିଫଳିତ । ସେ ଏକ ପରୀକ୍ଷାମୂଳକ ପଦ୍ଧତି ନେଇ ଶୁଝିଥିଲେ ସମାଜର ସଂସ୍କାର କରିବାକୁ । ତେଣୁ ଏହି ଉପନ୍ୟାସରେ ଦୋଷୀକୁ ଦଣ୍ଡ ନଦେଇ ତାର ହୃଦ ପରିବର୍ତ୍ତନ କରିବା, କିମ୍ବା ଶତ୍ରୁ ସହିତ ମିତ୍ରତା ଆଚରଣ କରିବାପରି ଗାନ୍ଧିବାଦୀ ଧ୍ୱନି ସେ ଦେଇଥିଲେ । ମାତ୍ର ହଥର୍ଣ୍ଣଙ୍କର ଏହି ଅଭିପ୍ସା ହୁଏତ ସେତେବେଳକାର ରକ୍ଷଣ-ଶୀଳ ଆମେରିକୀୟ ସମାଜରେ ଗ୍ରହଣୀୟ ହୋଇପାରି ନଥିଲା, ଯେଉଁଥିପାଇଁ ସମାଲୋଚକ —Hyatth Waggoner କହିଛନ୍ତି, "This is Hawthornes most hopeless novel." (୨)

---

(2) 'The Blithedale Romance assumes the fall of man and examines the hope of undoing it of returning to an unspoild Eden or arcadia by creating a pilot model of better world. Blithadale is a socialistic collony in which the conditions that have prevailed since the fall should prevail no more. It aspires to be a true community in which man will work together for the common good. The law of love will be put into effect in practical way for perhaps the first time in human history. Man will no longer be shut in the prison of self. But the prosect doesnot work out that way. This is Hawthorne's most hopeless novel."

[ Hyatt—Six, Amer, Novelists in 19th century, Page—75/76 ]

## (3) The Marble Faun—1860 :

ହଥର୍ଣ୍ଣଙ୍କ ଇଟାଲୀ ଭ୍ରମଣ ବୃତ୍ତାନ୍ତକୁ ନେଇ ଉପନ୍ୟାସଟିର କଥାବସ୍ତୁ ପରିକଳ୍ପିତ । ଏହା ହଥର୍ଣ୍ଣଙ୍କର ଶେଷ ଓ ପୂର୍ଣ୍ଣାଂଗ ଉପନ୍ୟାସ । ଏହି ଉପନ୍ୟାସଟି 'Marble Faun ନାମରେ ଆମେରିକାରେ ପ୍ରକାଶିତ ହେବାର ଏକ ମାସ ପୂର୍ବରୁ ଇଂଲଣ୍ଡରେ 'Transformation' ନାମରେ ପ୍ରଥମେ ପ୍ରକାଶିତ ହୋଇ ବହୁ ଜନାଦୃତ ହୋଇପାରିଥିଲା ।

ଇଟାଲୀୟ ଜନଜୀବନର ଚିତ୍ର, କଳା, ସଂସ୍କୃତିର ଏକ ପୂର୍ଣ୍ଣ ଐତିହ୍ୟ ଏହି ଉପନ୍ୟାସରେ ବର୍ଣ୍ଣିତ । ଉକ୍ତ ଉପନ୍ୟାସଟି ହଥର୍ଣ୍ଣଙ୍କୁ ଜଣେ ଐତିହ୍ୟବାଦୀ, ଆନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ଔପନ୍ୟାସିକ ହେବାର ଗୌରବ ପ୍ରଦାନ କରିଥିଲା । ଊନବିଂଶ ଶତାବ୍ଦୀର ଷଷ୍ଠ ଦଶକରେ ଏହି ଉପନ୍ୟାସ ଏକ ଭିନ୍ନ ଧରଣର ଉପନ୍ୟାସ ହୋଇଥିବାରୁ ଏହାର ଆଦୃତି ମଧ୍ୟ ଅନେକ ପରିମାଣରେ ବଢ଼ିଯାଇଥିଲା । ଏହି ଉପନ୍ୟାସରେ ହଥର୍ଣ୍ଣ ଭ୍ରମଣକାରୀର ଦୃଷ୍ଟି ନିକ୍ଷେପ କରି ମଣିଷ ମନର ଅତଳ ରହସ୍ୟବୋଧକୁ ଅନେକାଂଶ ପ୍ରକାଶ କରିବାର ଚେଷ୍ଟା କରିଅଛନ୍ତି । ଏଥିରେ ମଧ୍ୟ ମଣିଷ ଚରିତ୍ରର ବିପର୍ଯ୍ୟୟ, ପାପ-ପୁଣ୍ୟର ବିଶ୍ୱରବୋଧ କଥା ବର୍ଣ୍ଣିତ ହୋଇଛି । ପ୍ରସଂଗକ୍ରମେ ସେ ଏହା ଉପସ୍ଥାପିତ କରିଛନ୍ତି । ସଫଳ ଭ୍ରମଣ କାହାଣୀ ଲେଖାଯାଇପାରେ; ମାତ୍ର ତାକୁ ସଫଳ ଉପନ୍ୟାସରେ ରୂପାନ୍ତର କରିବା ନିଶ୍ଚିତ ଏକ କଷ୍ଟକର ବ୍ୟାପାର । ହଥର୍ଣ୍ଣ ଆପଣାର ଅନୁଭବୀ ହୃଦୟ ସହ, କଳ୍ପନାବିଳାସର ମଧୁର ସମନ୍ୱୟ ଘଟାଇ, ଏହି ଉପନ୍ୟାସକୁ ରଚନା କରିଅଛନ୍ତି । ଭ୍ରମଣ କାହାଣୀର ପୃଷ୍ଠଭୂମିରେ ସେ ମଣିଷର ଅଧଃପତନ, ନୈତିକତାର ବିପର୍ଯ୍ୟୟ, ମାନବିକତାର ଅବକ୍ଷୟ ଆଦି ଘଟଣାକୁ ମନୋଜ୍ଞ ଭାବରେ ବର୍ଣ୍ଣନା କରିଅଛନ୍ତି । ଏଥିରେ ସେ 'ହିଲ୍‌ଡା' ଓ 'ମିରିୟମ୍' ନାମକ ଦୁଇଟି ଉଲ୍ଲେଖଯୋଗ୍ୟ ଚରିତ୍ରର ଅବତାରଣା କରିଅଛନ୍ତି । ଏମାନେ ପରସ୍ପର ଜୀବନଧାରାରେ ଭିନ୍ନ । 'ହିଲ୍‌ଡା' ଆମେରିକାର ଜଣେ କଳା ଶ୍ରେଣୀର ଛାତ୍ର; ଆଉ ମିରିୟମ୍' ଏକ ରହସ୍ୟମୟୀ ନାରୀ, ଯାହାର ଅତୀତ ଜୀବନ ନାନା ନାଟକୀୟ, ଭୀଭତ୍ସ ଘଟଣାରେ ପରିପୂର୍ଣ୍ଣ—ଏହି ଦୁଇଙ୍କ ଜୀବନର ବିଚିତ୍ର କାହାଣୀ ମଧ୍ୟ ଆଲୋଚ୍ୟ ଉପନ୍ୟାସରେ ଉଦ୍‌ଘାଟିତ ହୋଇଛି । ଗୋଟିଏ ପୋଟେଷ୍ଟାଣ୍ଟେଡ୍ ମଣିଷ ହୃଦୟ ସହ, ସଂସ୍କୃତି ସହ ଆଉ ଗୋଟିଏ କ୍ୟାଥଲିକ୍ ରକ୍ଷଣଶୀଳ ସମ୍ପ୍ରଦାୟ ମଣିଷର ସଂସ୍କୃତିକୁ ନାନା ଦିଗରୁ ତୁଳନା କରିଛନ୍ତି ହଥର୍ଣ୍ଣ ।

ଆମେରିକୀୟ ଉପନ୍ୟାସ ଜଗତରେ ଓ ହଥର୍ଣ୍ଣଙ୍କ ଉପନ୍ୟାସ ଇଲାକାରେ 'The Marble Faun' ଉପନ୍ୟାସର ସୃଷ୍ଟି ଏକ ବ୍ୟତିକ୍ରମ । ହଥର୍ଣ୍ଣଙ୍କ ଦୃଷ୍ଟିକୋଣ ଏଥିରେ ଐତିହ୍ୟବାଦ ଦୃଷ୍ଟିରୁ ଭିନ୍ନ ଭାବେ ପରିବେଶିତ । ତେଣୁ ଏହାର ସ୍ୱାଦ ଭିନ୍ନ ଓ ସ୍ଥାନ

ସ୍ୱତନ୍ତ୍ର । ସମାଲୋଚକ Abelଙ୍କ ଭାଷାରେ—"The Marble Faun' is interesting as an early example of the international novel, which Henery James later made a vehicle for a comparison of cultures." (3)

ହଥର୍ଣ୍ଣଙ୍କ 'The House of the Seven Gables' ଓ ଫକୀର-ମୋହନଙ୍କ 'ଛ'ମାଣ ଆଠଗୁଣ୍ଠ'କୁ ପୂର୍ବ ଅଧ୍ୟାୟରେ ଆଲୋଚନା କରାଯାଇଥିବାରୁ ତାହା ଏଠାରେ ବାଦ୍ ଦିଆଯାଇଛି । ତେଣୁ ଫକୀରମୋହନଙ୍କର ଅନ୍ୟ ତିନୋଟି ଉପନ୍ୟାସ ସମ୍ପର୍କରେ ଏଠାରେ ବିଚାର କରାଯାଇପାରେ, ଯେହେତୁ ହଥର୍ଣ୍ଣଙ୍କ ତିନୋଟି ଉପନ୍ୟାସ ସମ୍ପର୍କରେ ଏଠାରେ ଆଲୋଚନା କରାଯାଇଛି ଏବଂ ଏହି ଆଲୋଚନାର ଲକ୍ଷ୍ୟ ହେଉଛି ହଥର୍ଣ୍ଣ ଓ ଫକୀରମୋହନଙ୍କ ଅନ୍ୟ ତିନୋଟି ଲେଖା ଉପନ୍ୟାସର ସମନ୍ୱୟ ଦର୍ଶାଇବା ଓ ଏହାର ତୁଳନାତ୍ମକ ବିଚାର କରିବା । ତେଣୁ ଏହି ପରିପ୍ରେକ୍ଷୀରେ ଫକୀରମୋହନଙ୍କ ଅନ୍ୟାନ୍ୟ ଉପନ୍ୟାସକୁ ଆଲୋଚନାର ପରିସରଭୁକ୍ତ କରାଯାଇପାରେ ।

### (ଖ) ଫକୀରମୋହନଙ୍କ ଉପନ୍ୟାସ : (୧) ଲଛମା : ୧୯୦୧

'ଲଛମା' ଫକୀରମୋହନଙ୍କର ଦ୍ୱିତୀୟ ଉପନ୍ୟାସ । ଏହା ପ୍ରକାଶିତ ହେବା ପୂର୍ବରୁ ତାଙ୍କର ପ୍ରଥମ ଉପନ୍ୟାସ 'ଛ'ମାଣ ଆଠଗୁଣ୍ଠ' ପ୍ରକାଶିତ ହୋଇ ତାଙ୍କୁ ଜଣେ ସଫଳ ଔପନ୍ୟାସିକର ଗୌରବରେ ଭୂଷିତ କରିସାରିଥିଲା । ହଥର୍ଣ୍ଣଙ୍କ 'The House of the Seven Gables' ସହ ଏହାର ତୁଳନା ପୂର୍ବ ଅଧ୍ୟାୟରେ କରାଯାଇଥିବାରୁ ତାହା ଏହି ଆଲୋଚନାର ପରିସରରୁ ଏବେ ବାଦ୍ ଦିଆଯାଇଛି । ଅତଏବ ଏ କ୍ଷେତ୍ରରେ ଫକୀରମୋହନଙ୍କ 'ଲଛମା', 'ମାମୁଁ' ଓ 'ପ୍ରାୟଶ୍ଚିତ' କେବଳ ଆମର ଆଲୋଚନାର ପର୍ଯ୍ୟାୟଭୁକ୍ତ ।

ଫକୀରମୋହନଙ୍କ 'ଲଛମା' ଧାରାବାହିକ ଭାବେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ସେତେବେଳେ ଫକୀରମୋହନ ଏହାକୁ 'ଅପୂର୍ବ ମିଳନ' ନାମରେ ପ୍ରକାଶିତ କରୁଥିଲେ; କିନ୍ତୁ ପରେ ସେ ଏହାର ନାମ ରଖିଲେ 'ଲଛମା' । 'ଲଛମା' ଏକ ଐତିହାସିକ ଉପନ୍ୟାସ । ଇତିହାସର ପ୍ରାଣସତ୍ତା ମଧ୍ୟରେ ଫକୀରମୋହନ ବାଦଲ୍ ସିଂହ ଓ ଲଛମାର ପ୍ରଗାଢ଼ ପ୍ରେମ ଭାବକୁ ବର୍ଣ୍ଣନା କରିଅଛନ୍ତି । ଗୋଟିଏ ପଟରେ ଓଡ଼ିଶାରେ ମହାରାଷ୍ଟ୍ରାବର୍ଗୀମାନଙ୍କର ଅକଥନୀୟ ଅତ୍ୟାଚାର ଓ ଅପରପକ୍ଷରେ ବାଦଲ୍

(3) American Literature, Vol-2, Page-207.

ସିଂହ ପରିବାର ଏହି ଅତ୍ୟାଗ୍ଭରର ସମ୍ମୁଖୀନ ହୋଇ ପୃଷ୍ଠଭଙ୍ଗ ଦେବା ଏବଂ ପରେ ପରେ ଏମାନଙ୍କର ପୁନର୍ମିଳନ ଘଟିବା ଘଟଣାରେ 'ଲଛମା' ମୁଖ୍ୟତଃ ଲଛମା ପରି ନାରୀର ବୀରତ୍ୱ, ସାହସ, ତଥା ଉତ୍କଳୀୟ ଯୁବକ ବାଦଲ୍ ସିଂହର ପ୍ରତିଶୋଧ ସ୍ପୃହା ଏହି ଉପନ୍ୟାସକୁ ବେଶ୍ ମନୋଜ୍ଞ କରିପାରିଛି । 'ଲଛମା'ର ଉଲ୍ଲେଖାଂଶ ବା ପ୍ଲଟ୍ ଅତି ସଂକ୍ଷିପ୍ତ । ଏଥିରେ ପୁଣି ଦୁଇଗୋଟି ବିଶିଷ୍ଟ ଘଟଣାକୁ ଗୋଟିଏ ପ୍ଲଟ୍‌ରେ ଗ୍ରଥିତ କରାଯାଇଛି । ଗୋଟିଏ ହେଉଛି ଭାସ୍କର ପଣ୍ଡିତ ସହିତ ନବାବ ଅଲିବର୍ଦ୍ଦି ଖାଁଙ୍କ ଯୁଦ୍ଧ ଓ ଅନ୍ୟଟି ହେଉଛି ଲଛମା ଓ ବାଦଲ୍ ସିଂହଙ୍କର ଗୋଲଖାଲ ଗ୍ରାମାଜୀବନ । ପିତୃହତ୍ୟା ତଥା ଅନ୍ୟ ଆତ୍ମୀୟସ୍ୱଜନଙ୍କ ହତ୍ୟାର ପ୍ରତିଶୋଧ ଓ ପୁନର୍ମିଳନ । ଚତୁରଃ ଅଲିବର୍ଦ୍ଦି ଖାଁ ଓ ଭାସ୍କର ପଣ୍ଡିତଙ୍କ ମଧ୍ୟରେ ଯୁଦ୍ଧର ପୃଷ୍ଠଭୂମିରେ 'ଲଛମା'-'ବାଦଲ ସିଂହ'ଙ୍କ ବୈଚିତ୍ର୍ୟମୟ ଜୀବନ କାହାଣୀ ନାଟକୀୟ ଢଙ୍ଗରେ ଚିତ୍ରିତ ହୋଇଛି । ପ୍ରଥମୋକ୍ତ ଘଟଣାଟି ଏକ ଐତିହାସିକ ସତ୍ୟ; ମାତ୍ର ଶେଷୋକ୍ତ ଘଟଣାଟି ଫକୀରମୋହନଙ୍କ କଳ୍ପନାପ୍ରସୂତ ।' (୪) ପୁଣି ଏଥିରେ ଓଡ଼ିଶାର ତତ୍କାଳୀନ ସାମାଜିକ ଓ ରାଜନୈତିକ ଚିତ୍ର ଯେପରି ଉତ୍କୀର୍ଣ୍ଣ ହୋଇଛି ତାହା ଯଥାର୍ଥତଃ ଓଡ଼ିଶା ଇତିହାସର ପ୍ରାଣସ୍ପନ୍ଦନ । ଫକୀରମୋହନ ବାସ୍ତବ ଦୃଷ୍ଟିରେ ଏହା ଏକ ସଫଳ ଐତିହାସିକ ଉପନ୍ୟାସ ଭାବେ ରୂପାୟିତ କରି ଓଡ଼ିଆ ସାହିତ୍ୟରେ ଏହାକୁ ଏକ କାଳଜୟୀ କୃତି କରିଯାଇଛନ୍ତି । ସମାଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ—"ଫକୀରମୋହନଙ୍କ ସାମାଜିକ ଉପନ୍ୟାସ ଗୁଡ଼ିକରେ ଊନବିଂଶ ଶତାବ୍ଦୀର ଓଡ଼ିଶାର ସମାଜ ଜୀବନର ଚଳଣୀ, ସଂସ୍କୃତି ଓ ଆଗ୍ରହ ପ୍ରଭୃତି ଅତି ଜୀବନ୍ତ ଭାବରେ ରୂପାୟିତ ହୋଇଛି । ବସ୍ତୁତଃ ଓଡ଼ିଶାର ସାମାଜିକ ଇତିହାସ ପାଇଁ ଫକୀରମୋହନଙ୍କ ଉପନ୍ୟାସଗୁଡ଼ିକରେ ବହୁ ଉପାଦାନ ଅଛି । ସେହିପରି ଉତ୍କଳର ଗଜପତି ରାଜତ୍ୱର ଅବସାନ ପରେ, ଏକ ଦିଗରେ ଦୁର୍ବଳ ମୋଗଲ ଶାସନର ଅପାରଗତା ଓ ଅପର ଦିଗରେ ମରହଟ୍ଟାବର୍ଗୀମାନଙ୍କର ଲୁଣ୍ଠନ ଭିତରେ ଉତ୍କଳର ରାଜନୀତିକ ତଥା ଐତିହାସିକ ପରିସ୍ଥିତିର ଏକ ଖଣ୍ଡ ଚିତ୍ର 'ଲଛମା'ରେ ଲିପିବଦ୍ଧ ହୋଇଅଛି । ସେହି ଦୃଷ୍ଟିରୁ ଲଛମା କେବଳ ଏକ ଉପନ୍ୟାସ ନୁହେଁ, ବ୍ରିଟିଶ ଶାସନ ଭାରତରେ ପ୍ରତିଷ୍ଠିତ ହେବାର ପ୍ରାକ୍ କାଳରେ ଉତ୍କଳ ଇତିହାସର ଏକ ହୃଦୟବିଦାରକ ଅଧ୍ୟାୟ ।" (୫)

(୨) ସ.ମୂ—୧୯୧୩ :

---

(୪) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା-୧୨୫

(୫) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା-୧୨୦

ଅନେକ ସମାଲୋଚକ ଫକୀରମୋହନଙ୍କ 'ମାମୁଁ' ଉପନ୍ୟାସକୁ ତାଙ୍କ ଉପନ୍ୟାସ ଜଗତରେ ଶ୍ରେଷ୍ଠ ସ୍ଥାନ ପ୍ରଦାନ କରନ୍ତି; କିନ୍ତୁ ସମାଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ—"ଏହା ତାଙ୍କର କ୍ଷୀଣାୟୁମାନ (Decadent) ଯୁଗର ରଚନା । ଫକୀର-ମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଓ 'ମାମୁଁ' ଅଧ୍ୟୟନ କଲେ 'ମାମୁଁ' ଯେ 'ଛ'ମାଣ ଆଠଗୁଣ୍ଠ'ଠାରୁ କୌଣସି ଦୃଷ୍ଟିରୁ ପୃଥକ ମନେହୁଏନାହିଁ, ବରଂ 'ମନେହୁଏ ଯେପରିକି ତାଙ୍କର (ଫକୀରମୋହନଙ୍କର) ସବୁ ଭାବାବେଗ, ସୃଜନର ସବୁ ଶକ୍ତି, ଅନୁଭୂତିର ସବୁ ତୀବ୍ରତା, ପ୍ରକାଶର ସବୁ ମର୍ମସ୍ପର୍ଶୀ ପ୍ରଚଣ୍ଡତା 'ଛ'ମାଣ ଆଠଗୁଣ୍ଠ'ରେ ହିଁ ନିଃଶେଷ ହୋଇ-ଯାଇଥିଲି ।" (୬) ତେଣୁ 'ମାମୁଁ' ଉପନ୍ୟାସରେ ଭାଷା ଓ ବର୍ଣ୍ଣନାରେ ଚମତ୍କାରିତା ଲକ୍ଷ୍ୟକରିଗଲେ ବି ଏହାର ସୁ ତୀବ୍ର ଆବେଦନ ଓ ତତ୍ତ୍ୱ ଆଲୋଡ଼ନକାରୀ ଭାବ ଯେ, 'ଛ'ମାଣ ଆଠଗୁଣ୍ଠ'ଠାରୁ କେବେହେଲେ ଟପିଯାଇନାହିଁ ବୋଲି କୁହାଯାଇପାରେ । ପୁଣି 'ମାମୁଁ' ଘଟଣା, ବର୍ଣ୍ଣନା, ଶୈଳୀ ଦୃଷ୍ଟିରୁ 'ଛ'ମାଣ ଆଠଗୁଣ୍ଠ'ର ଚର୍ବିତ ଚର୍ବଣ ରୂପ ବୋଲି ମନେହୁଏ ।

'ଛ'ମାଣ ଆଠଗୁଣ୍ଠ' ଓ 'ମାମୁଁ'ର ଗଳ୍ପାଂଶ ପରସ୍ପରଠାରୁ ଭିନ୍ନ; କିନ୍ତୁ କଥା-ବସ୍ତୁରେ ଅନେକ ସାମ୍ୟ ପରିଲକ୍ଷିତ ହୋଇଥାଏ । 'ଛ'ମାଣ ଆଠଗୁଣ୍ଠ'ର ସେଇ 'ଛଳେ-ବଳେ-କୌଶଳେ' ପରସ୍ୱତ୍ୱ ଅପହରଣ, ନିଷ୍ଠୁର ଚକ୍ରାନ୍ତ ଓ ତାର ବିଷମ ପରିଣତି 'ମାମୁଁ'ରେ ମଧ୍ୟ ରୂପାୟିତ । 'ଛ'ମାଣ ଆଠଗୁଣ୍ଠ'ର ପାପ-ପୁଣ୍ୟଜନିତ ସଂଘର୍ଷ, ଶୋଷକ-ଶୋଷିତ ସଂଘର୍ଷର ତୀବ୍ରତା ମଧ୍ୟ 'ମାମୁଁ'ରେ ସ୍ପଷ୍ଟ ଅନୁଭୂତ ହୁଏ । 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ଭଗିଆର ସ୍ୱତ୍ୱ ଅପହରଣ ପାଇଁ ଚମ୍ପା ଓ ମଙ୍ଗରାଜ ଯେପରି ବ୍ୟାକୁଳ ହୋଇଛନ୍ତି ଓ ଏଥିପାଇଁ ନାନା ଫନ୍ଦି ଚକ୍ରାନ୍ତ କରିଛନ୍ତି, 'ମାମୁଁ' ଉପନ୍ୟାସରେ ନାଜର ନଟବର ଦାସ ମଧ୍ୟ ଚନ୍ଦ୍ରକଳା ସହିତ ପରାମର୍ଶ କରି ଚକ୍ରାନ୍ତରେ ନିଜର ବିଧବା ଭଉଣୀ ଗୁନ୍ଦମଣିର ସର୍ବସ୍ୱ ଅପହରଣ କରିବାର ଫନ୍ଦିକୌଶଳ କରିଛନ୍ତି । 'ଛ'ମାଣ ଆଠଗୁଣ୍ଠ' ଚମ୍ପାର 'ମାମୁଁ'ର ଚନ୍ଦ୍ରକଳାର ଏକ ସହଜ ସଂସ୍କରଣ ହୋଇଯାଇଛି । ଅତ୍ର ଶୋଷିତ ବା ଅତ୍ୟାଚାରିତ ଶ୍ରେଣୀର ଭଗିଆ, ସାରିଆଙ୍କ ପରି ଗୁନ୍ଦମଣି ଓ ନାରୁବାବୁଙ୍କ ଅବସ୍ଥା ବେଶ୍ ଶୋଚନୀୟ ହୋଇଉଠିଛି । ଅବଶ୍ୟ ଘଟଣାର ଗତିରେ କଥାବସ୍ତୁ ସମୟେ ସମୟେ ଦୁଇ ଉପନ୍ୟାସରେ ଭିନ୍ନମୋଡ଼ ନେଇଛି; କିନ୍ତୁ 'ଛ'ମାଣ ଆଠଗୁଣ୍ଠ' ପରି 'ମାମୁଁ'ର ପରିଣତି ମଧ୍ୟ ବେଶ୍ ମର୍ମନ୍ତୁଦ ହୋଇପଡ଼ିଛି । 'ଛ'ମାଣ ଆଠଗୁଣ୍ଠ'ର ଲୋଭୀ, ପ୍ରତାରକ, ପ୍ରବଞ୍ଚକ ମଙ୍ଗରାଜଙ୍କ ଅବସ୍ଥା 'ମାମୁଁ'ର କୂଟଚକ୍ରୀ ନାଜର ନଟବର ଦାସଙ୍କୁ ମଧ୍ୟ ଭୋଗ କରିବାକୁ ପଡ଼ିଛି ।

(୬) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା-୧୦୩

ରାମଚନ୍ଦ୍ର ମଙ୍ଗରାଜଙ୍କ ପରି ନାଜର ନଟବର ଦାସ ମଧ୍ୟ ଜେଲ୍ ଭୋଗିଛନ୍ତି । 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସଟି ମଫସଲକୁ କେନ୍ଦ୍ର କରି ଗଢ଼ିଉଠିଥିବାବେଳେ 'ମାମୁଁ' ସହରୀ ଜୀବନକୁ କେନ୍ଦ୍ର କରି ଗଢ଼ିଉଠିଛି । ଏତଦ୍‌ଭିନ୍ନ 'ଛ'ମାଣ ଆଠଗୁଣ୍ଠ' ଠାରୁ 'ମାମୁଁ'ର ପ୍ରାସ୍ତୁତଃ ବିଶେଷ ବ୍ୟତିକ୍ରମ ପରିଲକ୍ଷିତ ହୁଏନାହିଁ । ଦୁଇ ଉପନ୍ୟାସରେ ସେହି ଶୋଷଣ, ଅତ୍ୟାଗ୍ର, କର୍ମଫଳର ପରିଣତି ସଂପର୍କରେ ସମାନ ବର୍ଣ୍ଣନା ମଧ୍ୟ ଫକୀରମୋହନ ଉପସ୍ଥାପିତ କରିଛନ୍ତି । କେବଳ କାଳ ଦୃଷ୍ଟିରୁ 'ମାମୁଁ'ର କାଳଗତ ସ୍ପନ୍ଦନ ଭିନ୍ନ ବୋଧହୁଏ । ଅତଏବ କୁହାଯାଇପାରେ—"ମାମୁଁ ଉପନ୍ୟାସ ବିଂଶ ଶତାବ୍ଦୀର ଆରମ୍ଭରେ ଓଡ଼ିଶାରେ ଅମଲା ଗୃକରିକୁ କେନ୍ଦ୍ର କରି ଗଢ଼ିଉଠୁଥିବା ନୂଆ ମଧ୍ୟବିତ୍ତ ସମାଜର ଗୋଟିଏ ଅତି ମନୋଜ୍ଞ ପ୍ରତିଛବି ।" (୭)

**(ଗ) ପ୍ରାୟଶ୍ଚିତ :**

ଊନବିଂଶ ଶତାବ୍ଦୀର ଅସ୍ତମାତ୍ରମ୍ଭରେ ଭାରତୀୟ ସମାଜରେ ସଂସ୍କାରର ଉଗ୍ରରୂପ ଦେଖିବାକୁ ମିଳିଥାଏ । ଇଂରେଜୀ ଶିକ୍ଷା, ସଭ୍ୟତା, ସଂସ୍କୃତି ତଥା ଚିନ୍ତାଧାରାରେ ପ୍ରଭାବିତ ହୋଇ ତଥାକଥିତ ଶିକ୍ଷିତ ଗୋଷ୍ଠୀ ପ୍ରଚଳିତ ସମାଜର କୁସଂସ୍କାର ବିରୁଦ୍ଧରେ ସ୍ୱର-ଉତ୍ତୋଳନ କରି ଏହାକୁ ଏକ ନୂତନ ରୂପ ଦେବାରେ ଲାଗିପଡ଼ିଥିଲେ । ପାଶ୍ଚାତ୍ୟ ସଭ୍ୟତା ଚଳଣୀକୁ ଅନୁସରଣ ନକଲେ ସଭ୍ୟତାର ଆସ୍ୱାଦନ ଅସମ୍ଭବ—ଏହି ଚିନ୍ତାଧାରା ସେତେବେଳେ ଶିକ୍ଷିତ ଗୋଷ୍ଠୀଙ୍କ ମନରେ ଏକ ବଦ୍ଧମୂଳ ଧାରଣା ସୃଷ୍ଟି କରିପାରିଥିଲା । ଅତଏବ ଏହି ପୃଷ୍ଠଭୂମିରେ 'ପ୍ରାୟଶ୍ଚିତ' ଉପନ୍ୟାସକୁ ରଚନା କରିଛନ୍ତି ଔପନ୍ୟାସିକ ଫକୀରମୋହନ ।

ଆଲୋଚ୍ୟ ଉପନ୍ୟାସର ନାୟକ ଗୋବିନ୍ଦ ଚନ୍ଦ୍ର ସମାଜସଂସ୍କାର ଓ ପ୍ରଗତିର ଚମକରେ ମାତିଉଠି ପ୍ରତିଷ୍ଠିତ ପରମ୍ପରା ଓ ବିଧି ନିଷେଧ ଆଦିକୁ ପାଦରେ ଦଳି ଏକ ନୂତନ ପରମ୍ପରା ସୃଷ୍ଟି କରିବାକୁ ବସିଲେ । କିନ୍ତୁ ପ୍ରଚଳିତ ସମାଜ କିମ୍ବା ଶ୍ରୀକରଣ ସମାଜର ସଂକୀର୍ଣ୍ଣ ଆତ୍ମଅଭିମାନ ଓ ଆଭିଜାତ୍ୟ, ଆଡ଼ମ୍ବର ବିରୁଦ୍ଧରେ ଗୋବିନ୍ଦ ଚନ୍ଦ୍ରଙ୍କ ଅଭିଯାନ କେବଳ ଅନୁଶୋଚନାରେହିଁ ପରିଣତ ହେଲା । ଏ ଅନୁଶୋଚନା ସତେ-ଯେପରି ଇଂରେଜୀ ଶିକ୍ଷା ସଭ୍ୟତା ପ୍ରଭାବିତ ଗୋବିନ୍ଦଚନ୍ଦ୍ରଙ୍କ କୃତକର୍ମର ପ୍ରାୟଶ୍ଚିତ ।

ଗୋବିନ୍ଦଚନ୍ଦ୍ର ଅନ୍ୟର ପ୍ରରୋଚନାରେ ହେଉ କିମ୍ବା ନିଜର ସିଦ୍ଧାନ୍ତ ବଳରେ ହେଉ ସମାଜସଂସ୍କାର କରିବାର ଆଶା ସେ ପୋଷଣ କରିଥିଲେ । କିନ୍ତୁ ଏଥିରେ ତାଙ୍କ ଆଦର୍ଶ ଯାହା ଥିଲା—ତାହା ହୁଏତ ଅନ୍ୟମାନଙ୍କୁ ପ୍ରଭାବିତ କରିପାରିନଥିଲା, ଯାହାର

(୭) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା—୧୦୮ ।

ପରିଣତ ଉପନ୍ୟାସର ନାୟକ ଗୋବିନ୍ଦ ଚନ୍ଦ୍ର ଓ ନାୟିକା ଇନ୍ଦୁମତୀଙ୍କୁ ହିଁ ଭୋଗିବାକୁ ପଡ଼ିଲା । "ଗୋବିନ୍ଦଚନ୍ଦ୍ର ଯଦି ନିଜର ଉନ୍ନତ ଆଦର୍ଶରେ ଅନ୍ୟମାନଙ୍କୁ ପ୍ରଭାବିତ କରି ବୈଷ୍ଣବ ଚରଣ ଓ ତାଙ୍କ ସମାଜର ମୂଲ୍ୟବୋଧରେ ପରିବର୍ତ୍ତନ ଆଣିପାରିଥା'ନ୍ତେ, ତା'ହେଲେ ତାଙ୍କ ସମାଜ ସଂସ୍କାରର ଆଦର୍ଶ ସାର୍ଥକ ହୋଇଥାନ୍ତା । କିନ୍ତୁ ସେଥିପାଇଁ ଗୋବିନ୍ଦ ଚନ୍ଦ୍ରଙ୍କର ସାହସ ଓ ପ୍ରସ୍ତୁତି ନଥିଲା । ସଦାନନ୍ଦର ବିଶ୍ୱାସଘାତୀ ପ୍ରରୋଚନାରେ ଭୁଲିଯାଇ ସେ ସହଜ ବାଟ ଧରିଲେ । ଫଳରେ ସମାଜ ସଂସ୍କାର ଯାହା ହେଲା ତ ହେଲା, ସରଳ ଧର୍ମପ୍ରାଣ ବୈଷ୍ଣବ ଚରଣଙ୍କ ବହୁ ଆଶା ଓ ସ୍ୱପ୍ନର ସଂସାର ବିପର୍ଯ୍ୟସ୍ତ ହୋଇଗଲା । ଗୋବିନ୍ଦ ଚନ୍ଦ୍ରଙ୍କ ପୁତ୍ର ପ୍ରାଣା ସ୍ନେହମୟୀ ଜନନୀ ହାୟ ହାୟ କରି ପ୍ରାଣ ଛାଡ଼ିଲେ । ପରସ୍ଥିତିର ନିଷ୍ଠୁର ପରିହାସରେ ସଂସ୍କାରର ଯୂପକାଠରେ ନିସ୍ସହା, ପତିପ୍ରାଣା, ଇନ୍ଦୁମତୀ ଆତ୍ମବଳୀ ଦେଲେ ।" (୮) ପ୍ରାୟଶ୍ଚିତ ଏକ ସାମାଜିକ ତଥା ସମସ୍ୟା ପ୍ରଧାନ ଉପନ୍ୟାସ । ସମାଜସଂସ୍କାର ଏହାର ପ୍ରଧାନ ସମସ୍ୟା ହୋଇପଡ଼ିଛି । ଯେଉଁମାନେ ଏହି ସମସ୍ୟାର ସମାଧାନ ପାଇଁ ଆଗେଇଯାଇଛନ୍ତି, ଆଦର୍ଶ ନାମରେ ସେମାନେ ଅନାଦର୍ଶର, ନୀତି ନାମରେ ଅନୀତିର, ସେବା ନାମରେ ସ୍ୱାର୍ଥର ପନ୍ଥା ଅବଲମ୍ବନ କରିଛନ୍ତି । ଫଳରେ ସମସ୍ୟା ଦ୍ୱିଗୁଣିତ ହୋଇଛି; ମାତ୍ର ସମାଧାନ ହୋଇପାରିନାହିଁ । ବରଂ ଆତ୍ମବଳି ଓ ଚରମ ଅନୁଶୋଚନାରେ ଏଥିର ପ୍ରାୟ ଚରିତ୍ର ନିଜ ନିଜର କୁକର୍ମର ପ୍ରାୟଶ୍ଚିତ କରିଛନ୍ତି ।

'ପ୍ରାୟଶ୍ଚିତ୍ତ' ଭାବପ୍ରଧାନ ଉପନ୍ୟାସ । ତେଣୁ ଏହାର ଘଟଣାବିନ୍ୟାସରେ 'ମାମୁଁ' ବା 'ଛମାଣ ଆଠଗୁଣ୍ଠ'ର ଚମତ୍କାରିତା ଦୃଷ୍ଟିଗୋଚର ହୁଏନାହିଁ; ବରଂ ଏକଥା କୁହା-ଯାଇପାରେ ଯେ,—"'ମାମୁଁ' ଉପନ୍ୟାସରେ ଫକୀରମୋହନଙ୍କର କ୍ରମକ୍ଷୀଣାୟମାନ ଶୈଳ୍ପିକ ପ୍ରତିଭାର ସୂଚନା 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ପୂର୍ଣ୍ଣତା ପ୍ରାପ୍ତ ହୋଇଥିଲା । ତଥାପି 'ମାମୁଁ' ଉପନ୍ୟାସରେ 'ଛମାଣ ଆଠଗୁଣ୍ଠ'ର ଚର୍ବିତ ଚର୍ବଣ ପରେ 'ପ୍ରାୟଶ୍ଚିତ୍ତ'ର ଚରିତ୍ର ଚିତ୍ରଣରେ ନୂତନତାର ଏକ ଆସ୍ୱାଦ ମିଳେ । ଚନ୍ଦନପୁର ଗ୍ରାମର ଶ୍ରୀକରଣ ସମାଜ, ସମାଜ ପ୍ରତି ଜମିଦାର ବୈଷ୍ଣବ ଚରଣ ପଟ୍ଟନାୟକ, ବିଦ୍ୟାଧର ମହାପାତ୍ର, ଗୋବିନ୍ଦ ଚନ୍ଦ୍ରଙ୍କର ସ୍ନେହମୟୀ ଜନନୀ ଓ ସେ ସମୟର ନବ୍ୟଶିକ୍ଷିତ ଭୁଇଁଫୋଡ଼ ତରୁଣ ସମାଜ ସଂସ୍କାରକ ମାନଙ୍କର ଚିତ୍ରଣରେ ଫକୀରମୋହନଙ୍କ ଅପୂର୍ବ କଳାକୁଶଳତାର ସ୍ପର୍ଶ ସ୍ପଷ୍ଟଭାବେ ଲାଗି-ରହିଛି । ତଥାପି ପ୍ରାୟଶ୍ଚିତ୍ତ 'ଉପନ୍ୟାସ ଗୋଟିଏ ଷ୍ଟିତିକୃତ ଚଳିତ, ପୁଣି ମୁଖ୍ୟତଃ ଭାବଧର୍ମୀ ହୋଇଥିବାରୁ ଚରିତ୍ର ଗୁଡ଼ିକ ଯଥାର୍ଥ ଭାବରେ ବିକଶିତ ହୋଇପାରି ନାହିଁ ।" (୯)

---

(୮) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା-୧୪୬

(୯) ସୁରେନ୍ଦ୍ର ମହାନ୍ତି—ଫକୀରମୋହନ ସମୀକ୍ଷା, ପୃଷ୍ଠା-୧୪୭

'ମାମୁ' ଓ 'ଛ'ମାଣ ଆଠଗୁଣ୍ଠ ଉପନ୍ୟାସରେ ଯେପରି ପାପର ଚିତ୍ର ବର୍ଣ୍ଣିତ ଅବିକଳ ଭାବେ ତାହା 'ପ୍ରାୟଶ୍ଚିତ୍ତ'ରେ ବର୍ଣ୍ଣିତ ହୋଇନାହିଁ । କିନ୍ତୁ ଛ'ମାଣ ଆଠଗୁଣ୍ଠ' ଓ 'ମାମୁ'ରେ ଯେଉଁ ଶୋଷଣ, ତୋଷଣ, ପେଷଣ ଦୂଷଣ ତଥା କୁକର୍ମ ଜନିତ ପାପ ଦୃଷ୍ଟିଗୋଚର ହୁଏ ତାହା 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ଭିନ୍ନଭାବେ ଚର୍ଚ୍ଚିତ । ଏଥିରେ ବର୍ଣ୍ଣିତ ପାପ ଦଣ୍ଡବିଧି ଅନୁସାରେ ଦଣ୍ଡନୀୟ ନୁହେଁ । ତେଣୁ ଏଥିରେ କେତେକ ଦୁଷ୍ଟ ଚରିତ୍ର କେବଳ ଜୀବନସାରା ଅନୁଶୋଚନାର ଦାବାନଳରେ ଚିରଦଣ୍ଡିତ । ଦୈହିକ ଦଣ୍ଡଲାଭ ଏଥିରେ ନାହିଁ । ଏଥିରେ ପ୍ରାୟଶ୍ଚିତ୍ତ ପାଇଁ ଅଛି ମାନସିକ ଦଣ୍ଡ, ଯାହା ପ୍ରତ୍ୟେକ ଚରିତ୍ରଙ୍କ ମାନସିକ ସ୍ତରକୁ ସଙ୍କୁଚିତ କରିଛି । 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ନାନା ଚରିତ୍ର ଘଟଣା, ଅବାସ୍ତବ କଳ୍ପନା ତଥା ଅତି ସଂସ୍କାର ମନୋବୃତ୍ତିଜନିତ ଦୁର୍ବଳତା ପ୍ରକାଶ ପାଇଥିଲେ ହେଁ, ଏହାର ଶୈଳୀଗତ ଦୃଷ୍ଟିକୋଣ 'ଛମାଣ ଆଠଗୁଣ୍ଠ' ବା 'ମାମୁ' ଠାରୁ ଭିନ୍ନ । ପୁଣି ଏଥିରେ ତଥାକଥିତ ସମାଜର ହସପୋଷାକି ଓ ସମାଜପତିମାନଙ୍କର ପରମ୍ପରାଗତ ସମାଜ ପ୍ରତି ଦୁର୍ବଳତା ଯେପରି ବର୍ଣ୍ଣିତ, ତାହା ବେଶ୍ ବାସ୍ତବ ଓ ବୈଭବ ମଣ୍ଡିତ ହୋଇପାରିଛି । ତେଣୁ ଏହି ଉପନ୍ୟାସଟିକୁ ଓଡ଼ିଆ ଉପନ୍ୟାସ ଜଗତରେ ଏକ ଭିନ୍ନ ମାନର ଉପନ୍ୟାସ ବୋଲି କହିବାକୁ ହେବ ।

**ତୁଳନାତ୍ମକ ବିଚାର .**

ଆମେରିକାସ୍ଥ ଉପନ୍ୟାସ ଜଗତର ଖ୍ୟାତିସଂପନ୍ନ ଔପନ୍ୟାସିକ ହଥର୍ଣ୍ଣଙ୍କ 'The House of the Seven Gables' ଉପନ୍ୟାସ ସହ ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ' ଉପନ୍ୟାସର ଯେ ନାନା ଅଦ୍ଭୁତ ଧରଣର ସାମ୍ୟ ନିହିତ, ତାହା ପୂର୍ବରୁ ଆଲୋଚନା କରାଯାଇଛି । ଅତଏବ ଏହି ପରିପ୍ରେକ୍ଷୀରେ ଉଭୟ ଔପନ୍ୟାସିକଙ୍କ ଅନ୍ୟାନ୍ୟ ଉପନ୍ୟାସମାନଙ୍କ ମଧ୍ୟରେ କି ପ୍ରକାର ସାମ୍ୟ ରହିଛି, ତାହା ତୁଳନାତ୍ମକ ଭାବେ ଆଲୋଚନା କରାଯାଇ ପାରେ ।

(୧) ହଥର୍ଣ୍ଣଙ୍କ 'The Scarlet Letter' ପାପପୂର୍ଣ୍ଣ ବିଶ୍ବରବୋଧର ଏକ ସଙ୍ଗୀତ ଚରଣୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ଭଗବାନଙ୍କ ନ୍ୟାୟାଳୟରେ ପାପୀ ଯେ ସର୍ବଦା ଦଣ୍ଡିତ ଓ କୌଣସି ପାପ ଗୋପନୀୟ ରହିପାରେ ନାହିଁ, ତାହା ହେଷ୍ଟର ଚରିତ୍ର ମାଧ୍ୟମରେ ଔପନ୍ୟାସିକ ହଥର୍ଣ୍ଣ ବର୍ଣ୍ଣନା କରିଛନ୍ତି । ଅନୁରୂପଭାବେ ପାପ ଓ ପାପୀର ଚିତ୍ର 'ମାମୁ' ଉପନ୍ୟାସରେ ଔପନ୍ୟାସିକ ଫକୀରମୋହନ ବର୍ଣ୍ଣନା କରିଅଛନ୍ତି । ନାଜର ନଟବର ଦାସ ବିଶ୍ବାସ ନାମରେ ନିଜର ବିଧବା ଭଉଣୀ ଗୁହମଣି ଓ ନାବାଳକ ଭଣଜା ନାରୁବାବୁ ପାଇଁ ଯେଉଁ ଅକ୍ଷମଣୀୟ ବିଶ୍ବାସଘାତକତା କରିଛନ୍ତି, ତାହା ଫକୀରମୋହନଙ୍କ ମତରେ କାହିଁକି ଉତ୍କଳୀୟ ସମାଜର ବିବୃତିବୋଧରେ ଏହା ପାପ । ଏହି ପାପପାଇଁ

ନାଜର ନଟବର ଦାସଙ୍କୁ ଅବଶ୍ୟ ନ୍ୟାୟାଳୟରେ ଦଣ୍ଡିତ ହେବାକୁ ପଡ଼ିଛି । ଏତେ-ବେଳେ ତାଙ୍କର ମାନସିକ ଦାବଦହନ ଘଟିଛି । ତେଣୁ ପାପ କରି କେହି ସବୁଦିନେ ଲୁଚିରହି ପାରେ ନାହିଁ ଏବଂ ଦିନେନା ଦିନେ ଲୋକଚକ୍ଷୁରେ ତା'ର ବିଚାର ହୁଏ—ଏହି ଭାବାଦର୍ଶ ହଥର୍ଣ୍ଣ ଓ ଫକୀରମୋହନଙ୍କ 'The Scarlet Letter' ଓ 'ମାମୁଁ' ଉପନ୍ୟାସରେ ଦର୍ଶାଇଥିବାରୁ, ଭାବାଦର୍ଶ ହେତୁ ଏହି ଦୁଇ ଉପନ୍ୟାସରେ ଯେ ସମନ୍ୱୟ ସ୍ଥାପିତ ହୋଇପାରିଛି, ଏହା ନିଃସନ୍ଦେହରେ କୁହାଯାଇପାରେ ।

(୨) ଅବଶ୍ୟ 'ମାମୁଁ'ର ଶୋଷଣ ପେଷଣର ଚିତ୍ର 'The Scarlet Letter' ରେ ଅଭାବିତ । କିନ୍ତୁ ଉଭୟ ଉପନ୍ୟାସରେ ନ୍ୟାୟାନ୍ୟାୟ ବିଚାରର ପୃଷ୍ଠଭୂମି ହେଉଛି ଏକ । 'The Scarlet Letter' ଉପନ୍ୟାସରେ ଗୁପ୍ତ ପ୍ରଣୟକୁ ଯେପରି ପାପଦୃଷ୍ଟିରେ ଓ ଘୃଣ୍ୟଭାବରେ ଦେଖାଯାଇଛି, ଅନୁରୂପ ଭାବେ ନାଜର ନଟବର ଦାସ ଓ ହରକଲାଙ୍କ ମଧ୍ୟରେ ଥିବା ଗୁପ୍ତ ସମ୍ପର୍କକୁ ଔପନ୍ୟାସିକ ଅଭିରୁଚିବିହୀନ ଇଙ୍ଗିତ ପ୍ରଦାନ କରିଛନ୍ତି । ଅର୍ଥାତ୍ ଅବୈଧ ପ୍ରଣୟ ଯେ, ଦୁଇଟି ସମାଜ ପାଇଁ ପ୍ରତ୍ୟାଖିତ ହୋଇଛି, ତାହା ଏହି ଦୁଇ ଉପନ୍ୟାସରୁ ସ୍ପଷ୍ଟ ପ୍ରମାଣିତ ହୁଏ ।

(୩) 'The Scarlet Letter' ଉପନ୍ୟାସରେ ହେଷ୍ଟର ଅବୈଧ ସନ୍ତାନର ଜନନୀ; କିନ୍ତୁ ତା'ର ଏ ପରିଣତି ପାଇଁ ଦାୟୀ କିଏ ? ଯେଉଁ ସମାଜ ତାକୁ ଏଥିପାଇଁ ଦଣ୍ଡ ପ୍ରଦାନ କରିଛି, ସେହି ସମାଜର ଅନ୍ୟତମ ନିୟାମକ Demesdale ତା'ର ଗୁପ୍ତ ପ୍ରଣୟର ନାୟକ । କିନ୍ତୁ ସେ ହେଷ୍ଟର ସାଙ୍ଗରେ ଛଳନା କରିଛି । ଅବୈଧ ସନ୍ତାନ ପିଅର୍ଲର ଜନକ ହୋଇ ମଧ୍ୟ ତା'ର ପିତା ହିସାବରେ ପରିଚୟ ଦେବାକୁ ଯେ କୁଣ୍ଠା ପ୍ରକାଶ କରିଛି । ଏ ପ୍ରକାର ଛଳନା, ପ୍ରବଞ୍ଚନା ଯେଉଁ ସମାଜର ସମାଜପତିମାନେ କରି-ପାରନ୍ତି, ସେ ସମାଜ ନିଶ୍ଚିତ ଭାବେ ଏକ ଭ୍ରଷ୍ଟାଚାରୀ ସମାଜ । ଏହି ଭ୍ରଷ୍ଟାଚାରୀ ସମାଜର ଚିତ୍ର ଔପନ୍ୟାସିକ ଫକୀରମୋହନ ତାଙ୍କ 'ମାମୁଁ' 'ଛ'ମାଣ ଆଠଗୁଣ୍ଠ' ରେ ପ୍ରଦାନ କରିଛନ୍ତି । ହେଷ୍ଟରର ବିଶ୍ୱାସରେ ଯେପରି ପ୍ରେମିକ ଡିମେସ୍‌ଡେଲ୍ ବିଷ ଦେଇଛି, ସେହିପରି ଚନ୍ଦକଳା ଓ ଚମ୍ପା ଯଥାକ୍ରମେ ଗୃହମଣି ଓ ସାରିଆ ମନରେ ବିଶ୍ୱାସ ଜାଗ୍ରତ କରି ସେଥିରେ ବିଷ ଦେଇଛନ୍ତି । ଆତ୍ମଘାତୀ, ବିଶ୍ୱାସଘାତକ ଚରିତ୍ର ସୃଷ୍ଟିରେ ହଥର୍ଣ୍ଣ ଯେପରି ଥିଲେ ଦକ୍ଷ, ଫକୀରମୋହନ ମଧ୍ୟ ଥିଲେ ସେହିପରି କୁଶଳୀ । ତେଣୁ 'The Scarlet Letter' ଉପନ୍ୟାସରେ ଯେଉଁ ଅଧଃପତିତ ସମାଜ ଚରିତ୍ରିକ ସ୍ଖଳନ, ପ୍ରବଞ୍ଚନା, ଆତ୍ମଘାତୀ କାର୍ଯ୍ୟକଳାପ, ସତ୍ୟ ନ୍ୟାୟ ନାମରେ ଅସତ୍ୟ, ଅନ୍ୟାୟର ବାତାବରଣ ସୃଷ୍ଟିର ଚିତ୍ର ପ୍ରକାଶ ପାଇଛି, ତାହା କାହାଣୀର ଭିନ୍ନତା ସତ୍ତ୍ୱେ ବି ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ', 'ମାମୁଁ' ରେ ଅନୁରୂପ ଭାବେ ପରିଲକ୍ଷିତ ହୁଏ । ଅତଏବ

ଏ କ୍ଷେତ୍ରରେ ହଥର୍ଣ୍ଣଙ୍କ 'The Scarlet Letter' ସହ 'ଛ'ମାଣ ଆଠଗୁଣ୍ଠ' ଓ 'ମାମୁଁ' ଉପନ୍ୟାସର ଯେ ଅନ୍ତର୍ନିହିତ ସାମ୍ୟ ରହିଛି, ତାହା ଅସ୍ୱୀକାର କରିହୁଏ ନାହିଁ ।

(୪) ହଥର୍ଣ୍ଣଙ୍କ 'Blithedale Romance' ଉପନ୍ୟାସରେ ସେ ସମାଜ ସଂସ୍କାର, ନାରୀସ୍ୱାଧୀନତାର ସ୍ୱର ଉନ୍ମୋଚନ କରିଛନ୍ତି ସତ୍ୟ; କିନ୍ତୁ ସେଥିରେ ସେ ସଫଳତା ହାସଲ କରିପାରି ନାହାନ୍ତି । ପୁଣି ଏଥିରେ ଅଧଃପତିତ ମଣିଷ ଜୀବନର ଚିତ୍ରକୁ ମଧ୍ୟ ସେ ମନୋଜ୍ଞ ଭାବେ ବର୍ଣ୍ଣନା କରିଛନ୍ତି । ଫକୀରମୋହନଙ୍କ 'ପ୍ରାୟଶ୍ଚିତ'କୁ ଏହି ଉପନ୍ୟାସ ସହ ତୁଳନା କରାଯାଇପାରେ । ଫକୀରମୋହନ 'ପ୍ରାୟଶ୍ଚିତ' ଉପନ୍ୟାସରେ ତଥାକଥିତ ଶିକ୍ଷିତ ଗୋଷ୍ଠୀଙ୍କ ସମାଜ ସଂସ୍କାର ଲିପ୍ସା ଓ ନାନା କାରଣରୁ ସେଥିରେ ସେମାନଙ୍କର ଅସଫଳତାର ଚିତ୍ର ପ୍ରଦାନ କରିଅଛନ୍ତି । ପୁଣି ଏହି ସଂସ୍କାରର ଅନ୍ତରାଳରେ ଶିକ୍ଷିତ ଗୋଷ୍ଠୀର ଯେଉଁ ମନମୁଖୀ—ଅବାଧତା ତଥା ଗୁଣ୍ଡ୍ରିକ ସ୍ଖଳନଜନିତ ଅଧଃପତନର ଚିତ୍ର ବର୍ଣ୍ଣିତ, ତାହା 'Blithedale Romance' ର ସାମାଜିକ ସଂସ୍କାରର ବେଶ୍ ନିକଟବର୍ତ୍ତୀ । ଏଥିରେ ମଧ୍ୟ ତଥାକଥିତ ସଂସ୍କାରକ ଗୋଷ୍ଠୀର ଅସଫଳତା ଓ ଅଧଃପତନର ଚିତ୍ର ବର୍ଣ୍ଣିତ ।

(୫) 'Blithedale Romance' ଉପନ୍ୟାସରେ ଦୋଷୀକୁ ଦଣ୍ଡ ନ ଦେଇ ତା'ର ହୃଦ ପରିବର୍ତ୍ତନ କରିବା ଓ ଶତ୍ରୁକୁ ନିଜଭାବେ ଭଲପାଇବାପାଇଁବାର ଯେଉଁ ଅଦ୍ଭୁତ ଖିଆଲର ବର୍ଣ୍ଣନା ହଥର୍ଣ୍ଣ କରିଛନ୍ତି, ତାହା ଫକୀରମୋହନଙ୍କ 'ପ୍ରାୟଶ୍ଚିତ୍ତ'ରେ ପରୋକ୍ଷ ଭାବେ ବର୍ଣ୍ଣିତ । 'ପ୍ରାୟଶ୍ଚିତ୍ତ'ର ଦଣ୍ଡବିଧାନ ଦୈହିକ ସ୍ତରରେ ଘଟିନାହିଁ । ପ୍ରତ୍ୟେକ ଚରିତ୍ରକୁ ଏକ ମାନସିକ ଅନୁଶୋଚନା ବା ମନସ୍ତାପ ମଧ୍ୟରେ ଆତ୍ମଶୁଦ୍ଧି କରିବାର ସୁଯୋଗ ଦିଆଯାଇଛି । ତେଣୁ ସେମାନେ ପ୍ରାୟଶ୍ଚିତ୍ତ କରିବାକୁ ଯାଇ ପ୍ରକୃତରେ ଯେଉଁ ମନସ୍ତାପ କରିଛନ୍ତି, ତାହା ତାଙ୍କର ଦୈହିକ ଦଣ୍ଡଠାରୁ ଯଥେଷ୍ଟ ପରିମାଣରେ ଅଧିକ ହୋଇଛି । ଏ କ୍ଷେତ୍ରରେ ଫକୀରମୋହନଙ୍କ ମନ୍ତବ୍ୟ ଉଲ୍ଲେଖଯୋଗ୍ୟ—

> "ଯେଉଁଠାରେ ସମାଜ ଦଣ୍ଡ ଦେଉନାହିଁ କି ଦେଇପାରୁ ନାହିଁ, ସେଠାରେ ନିୟମ ଲଙ୍ଘନକାରୀ ବ୍ୟକ୍ତିଙ୍କୁ କହୁଅଛୁ—ତୁ ନିଜ ମୁଣ୍ଡରେ କୁଠାରାଘାତ କର – ପାପର ପ୍ରାୟଶ୍ଚିତ କର ।"

ହଥର୍ଣ୍ଣ ତାଙ୍କ ଉପନ୍ୟାସ 'Blithedale Romance' ରେ 'ଦୋଷୀକୁ ଦଣ୍ଡ ନଦେଇ ତାକୁ ହୃଦ ପରିବର୍ତ୍ତନ କରିବାର ଯେଉଁ ସୁଯୋଗ ଦେବାକଥା ଉଲ୍ଲେଖ କରିଛନ୍ତି, ତାହା କ'ଣ ଫକୀରମୋହନଙ୍କ ଉପରୋକ୍ତ ଉକ୍ତିର ଅନୁରୂପ ନୁହେଁ କି ? ହଥର୍ଣ୍ଣଙ୍କର ଏହି ଆଦର୍ଶ ସମ୍ପର୍କରେ କୁହାଯାଇଛି—"Blithedale is a cool and skeptical study of various project of social reform such as had engaged the advocacy of Hawtherne's Transcendentalist

acquaintances in concord : feminism, or 'equal rights' for women; Socialism, the reformation rather than .punishment of criminals, according to the assumption the crivinal are victi:n rather than enemies of society."(୧୦)

(୬) ହଥର୍ଣ୍ଣଙ୍କ 'The Marble Faun' ଏକ ଭିନ୍ନ ସ୍ୱାଦର ଉପନ୍ୟାସ । ଏହା ତାଙ୍କର ଅନ୍ୟାନ୍ୟ ଉପନ୍ୟାସଠାରୁ ସମ୍ପୂର୍ଣ୍ଣ ଭାବେ ଭିନ୍ନ । ଏଥିରେ ତାଙ୍କର ଐତିହ୍ୟବାଦୀ ଦୃଷ୍ଟିକୋଣ ପ୍ରତିଫଳିତ । ଇଟାଲି ଭ୍ରମଣ କରି ପ୍ରତ୍ୟାବର୍ତ୍ତନ କରିବାପରେ ଇଟାଲି ଭ୍ରମଣକାଳୀନ ଅନୁଭୂତି ଓ ସେ ଦେଶର ସଂସ୍କୃତି, କଳା, ଆଗ୍ରର ବ୍ୟବହାର ଆଦିକୁ ଐତିହାସିକ ଦୃଷ୍ଟିକୋଣରୁ ଏଥିରେ ସେ ବର୍ଣ୍ଣନା କରିଛନ୍ତି । ଅନୁରୂପ ଭାବେ 'ଲଛମା' ମଧ୍ୟ ଫକୀରମୋହନଙ୍କର ଅନ୍ୟାନ୍ୟ ଉପନ୍ୟାସଠାରୁ ସମ୍ପୂର୍ଣ୍ଣ ଭାବେ ଭିନ୍ନ । ଏଥିରେ ସେ ଆପଣାର ଐତିହ୍ୟବାଦୀ ଦୃଷ୍ଟିକୋଣର ପ୍ରତିଫଳନ କରିଛନ୍ତି । ବର୍ଗୀ ଶାସନକାଳୀନ ଓଡ଼ିଶାର ଦୁର୍ଗତିର ଚିତ୍ର ଏଥିରେ ସେ ପ୍ରଦାନ କରି ତତ୍କାଳୀନ ଓଡ଼ିଶାର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ଜୀବନଧାରା ଉପରେ ଆଲୋକପାତ କରିଛନ୍ତି । ଘଟଣା ଦୃଷ୍ଟିରୁ ଲଛମା ଓ Marble Faun ଉପନ୍ୟାସ ଭିନ୍ନ ଭିନ୍ନ । କିନ୍ତୁ ଔପନ୍ୟାସିକ ଦୃଷ୍ଟିକୋଣରୁ ଦେଖିବାକୁ ଗଲେ ଏହି ଦୁଇ ଉପନ୍ୟାସରେ ଦୁଇ ଔପନ୍ୟାସିକଙ୍କ ଐତିହ୍ୟବାଦୀ ଦୃଷ୍ଟିକୋଣର ପ୍ରତିଫଳନ ଘଟିଛି । ପୁଣି ଏହି ଦୁଇ ଉପନ୍ୟାସର ଐତିହାସିକ ପୃଷ୍ଠଭୂମିର ଅନ୍ତରାଳରେ ନାୟକ ନାୟିକାଙ୍କ ପ୍ରେମପର୍ବ ଅନୁଷ୍ଠିତ ହେବା ଘଟଣାରୁ ଉଭୟ ଔପନ୍ୟାସିକଙ୍କ ଦୃଷ୍ଟିକୋଣରେ ଆଲୋଚ୍ୟ ଦୁଇ ଉପନ୍ୟାସରେ ଯେ ସାମ୍ୟ ପ୍ରତିଷ୍ଠିତ ହୋଇଛି—ଏକଥା ଅସ୍ୱୀକାର କରିହୁଏ ନାହିଁ ।

କିନ୍ତୁ 'The House of the Seven Gables' ଉପନ୍ୟାସ ସହ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ଯେପରି ଆଶ୍ଚର୍ଯ୍ୟ ପ୍ରକାର ସମନ୍ୱୟ ରହିଛି, ତାହା ହଥର୍ଣ୍ଣ ଓ ଫକୀରମୋହନଙ୍କ ଅନ୍ୟ କୌଣସି ଉପନ୍ୟାସରେ ସମ୍ଭବ ହୋଇନାହିଁ । ଉପରୋକ୍ତ ତିନୋଟି ଉପନ୍ୟାସ ମଧ୍ୟରେ ଯେଉଁ ସାମ୍ୟ ବା ତୁଳନାତ୍ମକ ବିଚାର କରାଗଲା, ତାହା ମୁଖ୍ୟତଃ ଉପନ୍ୟାସର କାହାଣୀ ବା ଚରିତ୍ରର ସାମ୍ୟ ନୁହେଁ, ତାହା ହେଉଛି ଉଭୟ ଔପନ୍ୟାସିକଙ୍କ ଆଦର୍ଶଗତ ସାମ୍ୟ, ଚିନ୍ତାଚେତନାର ଅପୂର୍ବ ସମନ୍ୱୟ ଓ ଦେଶ, କାଳ ପାତ୍ରର ଅନୁକୂଳ ପରିବେଶର ଆବାହକ, ଯାହା ଆଶ୍ଚର୍ଯ୍ୟ ଭାବେ ଦୁଇ ଔପନ୍ୟାସିକଙ୍କ ଜୀବନ ଉପରେ ସମଭାବରେ ଅନୁଭୂତ ହୁଏ । ତେଣୁ ଫକୀରମୋହନ ଓ ହଥର୍ଣ୍ଣଙ୍କ ସାହିତ୍ୟକୃତିର ଯେଉଁ ତୁଳନାତ୍ମକ ବିଚାର କରାଗଲା, ତାହା ମୁଖ୍ୟତଃ ଏହି ଦୁଇ ଔପନ୍ୟାସିକଙ୍କ ସମକାଳର ପ୍ରଭାବ, ପରିସ୍ଥିତି ଓ ପରିବେଷ୍ଟନୀର ସମସଙ୍ଘଟିତ ହେତୁ ସମ୍ଭବପର ହୋଇପାରିଛି ବୋଲି କୁହାଯାଇପାରେ । □ □ □

(୧୦) American Literature, Vol-2, Page-205/206.

# ହଥର୍ଣ୍ଣ ଓ ଫକୀରମୋହନଙ୍କ ଜୀବନା-ଦର୍ଶର ତୁଳନାତ୍ମକ ଅଧ୍ୟୟନ

ମଣିଷ ଜୀବନର ଚିରନ୍ତନ ଜିଜ୍ଞାସାବୋଧ, ଆତ୍ମପରିଚୟର ଅଭିବ୍ୟକ୍ତି, ନିଜକୁ ପ୍ରକାଶ କରିବାର ଏକ ସଫଳ ତଗନ୍ତ୍ରର ଉନ୍ମୋଚନ ତାର ଜୀବନାଦର୍ଶରେ ହିଁ ପ୍ରତିଫଳିତ ହୋଇଥାଏ । ପୁଣି ତାର ଜୀବନାଦର୍ଶ ଭିତରେ ତା' ଜୀବନର ଉତ୍ଥାନପତନ, ସଂଗ୍ରାମ-ସଂଘର୍ଷ ଓ ସମାଜର ପ୍ରଚଣ୍ଡ ତଥା ପ୍ରଗାଢ଼ ଅନୁଭୂତିହିଁ ପରିବେଶ ଓ ପରିସ୍ଥିତି ଅନୁଯାୟୀ ପ୍ରକାଶିତ ହୋଇଥାଏ । ଯଦି ଜଣେ ବ୍ୟକ୍ତି ଭିତରେ ସାହିତ୍ୟିକର ଆତ୍ମା ଥାଏ ଓ ତାହା ନାନା କ୍ଷେତ୍ରରେ ପ୍ରକାଶିତ ହେବାର ସୁଯୋଗ ଲୋଡ଼ୁଥାଏ, ତେବେ ତାହା ପ୍ରକାଶିତ ହେବାମାତ୍ରେ ହିଁ ସେଥିରେ ତାର ଜୀବନାଦର୍ଶର ପ୍ରଚଣ୍ଡ ମାର୍ତ୍ତଣ୍ଡ ହିଁ ଉଦିତ ହୋଇଥିବାର ଲକ୍ଷ୍ୟ କରାଯାଏ ।

ମଣିଷ ପରିସ୍ଥିତିର ଦାସ । ପରିସ୍ଥିତି ଓ ପରିବେଶକୁ ଏଡ଼ାଇଯିବା ତା' ପକ୍ଷେ ଆଦୌ ସମ୍ଭବପର ହୁଏନାହିଁ । ତେଣୁ ସେ ପରିସ୍ଥିତି ଓ ପରିବେଶ ମଧ୍ୟରେ ନାନା ଘାତ-ପ୍ରତିଘାତ, ଭଲମନ୍ଦକୁ ନିଜ ଅଙ୍ଗେ ନିଭାଇବାକୁ ବାଧ୍ୟ ହୋଇଥାଏ ଏବଂ ନିଜର ମାନସିକ ଦ୍ୱନ୍ଦ୍ୱକୁ ହେଲକୁ ବ୍ୟକ୍ତ କରିବାକୁ ବାଟ ଲୋଡ଼ିଥାଏ । ସାହିତ୍ୟିକର ଏହି ମାନସିକ ଦ୍ୱନ୍ଦ୍ୱହିଁ ତାର ଜୀବନାଦର୍ଶ । ସେ ଯେଉଁଥିରେ ଭୁକ୍ତଭୋଗୀ, ଯେଉଁଥିରେ ବିଶ୍ୱାସୀ, ଯାହା ଗଢ଼ି-ବାକୁ ବା କରିବାକୁ ପ୍ରୟାସୀ, ତାକୁହିଁ ସମାଜରେ ସେ ପ୍ରତିଷ୍ଠିତ କରିବାକୁ ଚାହେଁ । ତେଣୁ ସାହିତ୍ୟକୁ ସେ ନିଜର ମତବାଦ ପ୍ରତିଷ୍ଠାର ପ୍ରକୃତ ମାଧ୍ୟମ ବୋଲି ଧରିନେଇଥାଏ । ସୁତରାଂ ଏହି ସାହିତ୍ୟ ମଧ୍ୟରେ ତା' ଜୀବନର ପ୍ରକୃତ ଆଦର୍ଶହିଁ ପ୍ରତିଫଳିତ ହୋଇଥାଏ ବୋଲି ନିଃସନ୍ଦେହରେ କୁହାଯାଇପାରେ । ଏହି ପରିପ୍ରେକ୍ଷୀରେ ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣ ଓ ଓଡ଼ିଆ ଔପନ୍ୟାସିକ ଫକୀରମୋହନଙ୍କ ଜୀବନାଦର୍ଶ କଥା ବିଚାର୍ଯ୍ୟ । ଏମାନଙ୍କ ଜୀବନାଦର୍ଶର ସାମ୍ୟ ପ୍ରଦର୍ଶନ ଏହି କ୍ଷୁଦ୍ର-ଆଲୋଚନାର ଉଦ୍ଦେଶ୍ୟ ।

**(କ) ହଥର୍ଣ୍ଣଙ୍କ ଜୀବନାଦର୍ଶ :**

"He (Hawthorne) has been called a puritan and a rebel against puritanism, a Romantic and an anti-Romantic, a trans-

cendentalist and a critic of Transcendentalism, a socially—cons- cious bunmanitarian and an introverted aesthete, an aristocrat and a democrat, a realist and an 'idealist. The dis-agreement about a proper lebel for him is as general as the agreement about his literary excellence." (1)

ହଥର୍ଣ୍ଣଙ୍କ ସାହିତ୍ୟାଦର୍ଶ ତାଙ୍କ ଜୀବନାଦର୍ଶର ଯଥାର୍ଥ ପରିପୂରକ । ଏହି ଆଦର୍ଶ ଭିତରେ ହଥର୍ଣ୍ଣଙ୍କ ଜୀବନର ନାନା ଅନୁଭୂତି, ପାରିବାରିକ ଜୀବନର ଚିତ୍ର, ସାମାଜିକ କୁଳାଗ୍ରର, ସଂସ୍କାର ଅସ୍ପୃହା ଆଦିର ମନୋଜ୍ଞ ପ୍ରତିଫଳନ ଘଟିଛି । ଅତଏବ ହଥର୍ଣ୍ଣଙ୍କ ସାହିତ୍ୟାଦର୍ଶ ଦେଇ ତାଙ୍କ ଜୀବନାଦର୍ଶର ଅନୁଶୀଳନ ଏ କ୍ଷେତ୍ରରେ ଆମ ପାଇଁ ସର୍ବୋ- ପରି ନିର୍ଭରଯୋଗ୍ୟ ଓ ପ୍ରମାଣଭିତ୍ତିକ ।

ଊନବିଂଶ ଶତାବ୍ଦୀର ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣ ତାଙ୍କର ନୂତନ ଶୈଳୀ, ମାର୍ଜିତ ରୁଚିବୋଧ ଓ ତତ୍କାଳୀନ ଆମେରିକାର ସାମାଜିକ, ରାଜନୈତିକ ଓ ଅର୍ଥ- ନୈତିକ ସମସ୍ୟାକୁ ତାଙ୍କ ଉପନ୍ୟାସମାନଙ୍କରେ ରୂପ ଦେଇ ଆମେରିକୀୟ ଉପନ୍ୟାସ ଜଗତରେ ଅବିସ୍ମରଣୀୟ ହୋଇପାରିଛନ୍ତି । ହଥର୍ଣ୍ଣ ଆମେରିକାର ମାସାଚୁସେଟ୍ ସହରରେ ୧୮୦୪ ମସିହାରେ ଜନ୍ମଗ୍ରହଣ କରିଥିଲେ । କୁପରଙ୍କ ପରବର୍ତ୍ତୀ ଔପନ୍ୟାସିକ ଭାବେ ସେ ଆମେରିକୀୟ ଉପନ୍ୟାସ ଜଗତରେ ବେଶ୍ ପ୍ରତିଷ୍ଠିତ ଓ ଖ୍ୟାତିସମ୍ପନ୍ନ ହୋଇପାରିଛନ୍ତି । ଜୀବନର ଅତି ବାଲ୍ୟକାଳରୁ ପିତାଙ୍କୁ ହରାଇ ଏକ ଅନିଶ୍ଚିତ ସାମାଜିକ ପୃଷ୍ଠଭୂମି ଉପରେ ହଥର୍ଣ୍ଣଙ୍କ ବାଲ୍ୟାବସ୍ଥା ଅତି ଶୋଚନୀୟ ହୋଇପଡ଼ିଥିଲା । ତଥାପି ଜୀବନ ସଂଗ୍ରାମର ପୃଷ୍ଠ- ଭୂମିରେ ଅଦମ୍ୟ ସାହସର ସହ ସେ ଅବତରଣ କରି ନିଜକୁ ଉଚ୍ଚଶିକ୍ଷା ପ୍ରାପ୍ତ ଓ ଜଣେ ପ୍ରତିଷ୍ଠିତ ସାହିତ୍ୟିକ ଭାବେ ମର୍ଯ୍ୟାଦାବନ୍ତ କରିପାରିଥିଲେ । ଏହି ଯନ୍ତ୍ରଣା ଓ ବିପର୍ଯ୍ୟୟର ଅଭିଜ୍ଞତା, ସାମାଜିକ ନ୍ୟାୟ୍ୟ ଦାବି ତଥା ସଂସ୍କାରବାଦୀ ମନୋବୃତ୍ତି ନେଇ ସେ ତାଙ୍କ ଉପନ୍ୟାସ ଜଗତକୁ ଋଦ୍ଧିମନ୍ତ କରିଯାଇଛନ୍ତି ।

ଊନବିଂଶ ଶତାବ୍ଦୀର ମଧ୍ୟ ଓ ଶେଷପାଦ ବେଳକୁ ଆମେରିକାର ପୁରୁଣା ବୁନିଆଦି ସମାଜ ଓ ଆଦର୍ଶର ମୂଳଦୁଆ ଦୋହଲିଯାଇଥିଲା । ହଥର୍ଣ୍ଣଙ୍କ ବୁନିଆଦି ଜନ୍ମଧରୁ ଅନ୍ୟ- ତମ । ତାଙ୍କ ପାରିବାରିକ ଜୀବନର ବିପର୍ଯ୍ୟସ୍ତ ଚିତ୍ରକୁ ସେ ତାଙ୍କର 'The House of the Seven Gables' ଉପନ୍ୟାସରେ ବର୍ଣ୍ଣନା କରିଛନ୍ତି । ଅର୍ଥାତ୍ ହଥର୍ଣ୍ଣଙ୍କ ସମୟକୁ ତାଙ୍କ ଆଗରେ ଥିଲା ଏକ ବିଲୟମୁଖୀ, ଅବକ୍ଷୟବାଦୀ ସମାଜ । ଏହି ବିଲୟର ଚିତ୍ର ମଧ୍ୟରେ ହଥର୍ଣ୍ଣଙ୍କ ପରିବାରର ସମସ୍ତ ରକ୍ଷଣଶୀଳତା ଧ୍ୱଂସ ପାଇଯାଇଥିଲା । ପୁରୁଣା

(1) American literature, vol-2

ବୃନଆଢର ଅବକ୍ଷୟ୍ତାରେ ମିୟମାଣ ହୋଇ ସେ ଯେଉଁ 'The House of the Seven Gables' ଉପନ୍ୟାସ ରଚନା କଲେ, ତହିଁରେ ତାଙ୍କ ଜୀବନାଦର୍ଶର ଅନେକ ଇଙ୍ଗିତ ପରିପୂର୍ଣ୍ଣ ହୋଇଛି ।

ବାଲୟମୂର୍ଖୀ ଏହି ବୃନଆଢର ରକ୍ଷଣଶୀଳ ଚରିତ୍ରମାନେ (କର୍ଣ୍ଣେଲ୍, ଜାଫେରୀ) ନିଜର ବୃନଆଢର ଭିଟାମାଟିରୁ ବିଦାୟ ନେବାପରେ ଏହାର ଭଗ୍ନସ୍ତୂପ ଉପରେ ଯେଉଁ ନୂଆ ବୃନଆଢ ପ୍ରତିଷ୍ଠା ପାଇବାକୁ ଯାଉଥିଲା, ତହିଁରେ ପ୍ରବଳଭାବେ ମଣିଷର ସଂକୀର୍ଣ୍ଣତା, ଲୋଭ, ହିଂସା, ଅସୂୟା ଓ ପରସ୍ୱାପହରଣର ହୀନ ପ୍ରବୃତ୍ତି ପ୍ରକାଶ ପାଇଥିଲା । ସେଥିପାଇଁ ହଥର୍ଣ୍ଣଙ୍କୁ ଆମେ ତାଙ୍କ ଗଳ୍ପ, ଉପନ୍ୟାସରେ ଜଣେ ଚରମ ପ୍ରଗତିଶୀଳ ସଂସ୍କାରକ ଭାବେ ଦେଖିବାକୁ ପାଉଁ । ହଥର୍ଣ୍ଣଙ୍କର ଧର୍ମ-ଅଧର୍ମ, ପାପ-ପୁଣ୍ୟ, ନୀତି-ଅନୀତିର ଧାରଣା ଥିଲା ଖୁବ୍ ଜୋର । ସେ ଥିଲେ କର୍ମଫଳରେ ବିଶ୍ୱାସୀ ଓ ଭାଗ୍ୟବାଦୀ ମଧ୍ୟ । ତେଣୁ କୃତକର୍ମର ସୁଫଳ ବା କୁଫଳ । ମାନବର ନ୍ୟାୟଦାବି—ଏଇ କଥା ସେ ତାଙ୍କର 'The Scarlet Letter' ଓ 'The House of the Seven Gables'ରେ ଦେଖାଇଛନ୍ତି ।

ଆମେରିକାର ଊନବିଂଶ ଶତାବ୍ଦୀର ଜ୍ୱାଳାମୟ ଜୀବନ-ପ୍ରବାହର ଏକ ସନ୍ଧିକ୍ଷଣରେ, ଏକ ଅନିଶ୍ଚିତ ସାମାଜିକ ପୃଷ୍ଠଭୂମି ଉପରେ ହଥର୍ଣ୍ଣଙ୍କ ଜୀବନାଦର୍ଶର ବିକାଶ ଘଟିଥିଲା । ସାଂପ୍ରତିକ ଶାନ୍ତ ଚେତନା କେତେବେଳେ କୌଣସିଥିରେ ନିଜର ପ୍ରଭାବ ବା ପ୍ରତିଷ୍ଠା ବିସ୍ତାର କରିବା ପୂର୍ବରୁ ସମୟର ନିଷ୍ଠୁର ଚାବୁକରେ ଭାଙ୍ଗିରୁଜି ଚୂର୍ଣ୍ଣହୋଇ ଯାଉଥିଲା । ତେଣୁ ସାଂପ୍ରତିକ ଜୀବନର ସହଜ ମୂଲ୍ୟବୋଧ ଅପେକ୍ଷା ଅତୀତର ପରୀକ୍ଷିତ ଓ ପ୍ରତିଷ୍ଠିତ ପରମ୍ପରାକୁ ନେଇ ହଥର୍ଣ୍ଣଙ୍କ ସାହିତ୍ୟାଦର୍ଶ ଓ ତଦାନୁସାରେ ତାଙ୍କ ଜୀବନାଦର୍ଶ ରୂପ ପାଇବା କିଛି ଅସ୍ୱାଭାବିକ ଘଟଣା ନୁହେଁ । ସେଥିପାଇଁ ସେ କଥାବସ୍ତୁ ନିର୍ବାଚନରେ ବିଗତ ଅତୀତ ସହ ଚଳନ୍ତ ବର୍ତ୍ତମାନର ଏକ ନିବିଡ଼ ଯୋଗାଯୋଗ ରକ୍ଷା କରି ତାଙ୍କ ସାହିତ୍ୟାଦର୍ଶକୁ ସମ୍ପୂର୍ଣ୍ଣ ଭାବେ ଚିରନ୍ତନ ମୂଲ୍ୟ ପ୍ରଦାନ କରିପାରିଛନ୍ତି । ତାଙ୍କ ଜୀବନର ପ୍ରତ୍ୟେକ ପରୀକ୍ଷିତ ମୁହୂର୍ତ୍ତର ଶାନ୍ତ କପୋତ ନୀଡ଼ ରଚନା କରିଛି, ତାଙ୍କ ସାହିତ୍ୟାଦର୍ଶରେ ଓ ଯଦି କେତେବେଳେ ସେ ନୀଡ଼ହରା ହୋଇଥାଏ, ତେବେ ତାହା ହେଉଛି ତାଙ୍କ ଜୀବନାଦର୍ଶରେ, ନୀଡ଼ ଭାଙ୍ଗି ଅନ୍ୟଠାକୁ ଉଡ଼ିଯିବାର ମୋହରେ । କାରଣ— ଆଗରୁ କହିଛି ହଥର୍ଣ୍ଣ ପ୍ରତିଷ୍ଠିତ ପରମ୍ପରାର ମୂଲ୍ୟବୋଧକୁ ସ୍ୱୀକୃତି ଦେଉଥିଲେ ପୁଣି ଏଥିରୁ ପରିସ୍ଥିତି ଓ ପରିବେଶ ଅନୁଯାୟୀ ନିଜର ସ୍ୱୀକୃତି ମଧ୍ୟ ପ୍ରତ୍ୟାହୃତ କରୁଥିଲେ; ଅର୍ଥାତ୍ ହଥର୍ଣ୍ଣ କେତେବେଳେ ରକ୍ଷଣଶୀଳତା ବିରୁଦ୍ଧରେ ସଂଗ୍ରାମ କରୁଥିଲେ ତ ଆଉ କେତେବେଳେ ରକ୍ଷଣଶୀଳତାର ପରମ ଭକ୍ତ ବନିଯାଉଥିଲେ । ତେଣୁ ତାଙ୍କ ଜୀବନାଦର୍ଶ

ଏ କ୍ଷେତ୍ରରେ କେବଳ ଦ୍ୱନ୍ଦ୍ୱ ଦେହଲା ଭିତରେ ହିଁ ବୁଡ଼ିରହିଥିଲା ବୋଲି କୁହାଯାଇ ପାରେ । ଅତଏବ ନିମ୍ନମତେ ହଥର୍ଣ୍ଣଙ୍କ ଜୀବନାଦର୍ଶକୁ ଆଲୋଚନା କରାଯାଇପାରେ—

## (୧) କର୍ମଫଳ ଅଲଙ୍ଘନୀୟ

ଆଗରୁ ବହୁବାର ପ୍ରସଙ୍ଗକ୍ରମେ କୁହାଯାଇଛି ଯେ, ହଥର୍ଣ୍ଣ ଥିଲେ କର୍ମଫଳରେ ପ୍ରଗାଢ଼ ବିଶ୍ୱାସୀ । ତେଣୁ କର୍ମଫଳର ଅଲଙ୍ଘନୀୟ ଦଣ୍ଡକୁ ସେ ଉପେକ୍ଷା କରିପାରିନାହାନ୍ତି । ଏହା ତାଙ୍କ ଜୀବନାଦର୍ଶର ଏକ ବଳିଷ୍ଠ ବିଭବ । ତେଣୁ ସେ 'The House of the Seven Gables' ଓ 'The Scarlet Letter' ଏହି ଉଭୟ ଉପନ୍ୟାସରେ କୃତକର୍ମର ଅଲଙ୍ଘନୀୟ ପରିଣତିକୁ ଅତି ମନୋଜ୍ଞ ଭାବେ ଦର୍ଶାଇଛନ୍ତି । 'The House of the Seven Gables'ରେ ପିନ୍‌ଚନ୍ ପରିବାର ତାର କୃତକର୍ମର ଅଲଙ୍ଘନୀୟ ପରିଣତିକୁ ଅତି ନିର୍ମମ ଭାବରେ ଭୋଗ କରିଛନ୍ତି, ପୁରୁଷ ପୁରୁଷ ଧରି । ଏହି ଉପନ୍ୟାସରେ ମନୁଷ୍ୟ କେତେକ ପ୍ରବୃତ୍ତିର ଦାସ ହୋଇପଡ଼ିଛି । ଆଉ ଏହି ପ୍ରବୃତ୍ତିର ପ୍ରବାହରେ ସେ ଭାସିଯାଇ ପରେ ଯେଉଁ ଅଲଙ୍ଘନୀୟ କର୍ମଫଳ ଭୋଗ କରିଛି, ତାହା ଅତି ପ୍ରାଞ୍ଜଳ ଭାବରେ ହଥର୍ଣ୍ଣଙ୍କ ଜୀବନାଦର୍ଶର ହିଁ ସୂଚନା ଦେଇଛି ।

ପିନ୍‌ଚନ୍ ପରିବାରର କର୍ଣ୍ଣେଲ୍ ପିନ୍‌ଚନ୍ ମାଥିଉ ମାଉଲେଙ୍କ ଜମି ନେବାକୁ ଷଡ଼ଯନ୍ତ୍ର କରି ତାଙ୍କୁ ଫାଶୀଦେବାକୁ ଯାଇଁ ଯେଉଁ ସୁଚିନ୍ତିତ ଯୋଜନା କରିଥିଲେ ଓ ମାଉଲେଙ୍କ ତତଲା ନିଶ୍ୱାସର ପରିଣତିରେ ସେ ଅଭିଶପ୍ତ ହୋଇଯାଇ ପରବର୍ତ୍ତୀ ବଂଶଧର-ମାନଙ୍କୁ ସେଥିରେ ଯେପରି ଜଡ଼ିତ କରିଗଲେ, ତାହା ବାସ୍ତବିକ କର୍ଣ୍ଣେଲଙ୍କ ପରିବାରର ଲୋକଙ୍କ ଭାବେ ଦେଖାଦେଇଛି । ଏହାର ଫଳ ତାଙ୍କୁ ଓ ତାଙ୍କ ପରିବାରକୁ ମଧ୍ୟ ଭୋଗ କରିବାକୁ ପଡ଼ିଛି; ପୁଣି ପୁରୁଷ ପୁରୁଷ ଧରି । ଜର୍ଜ ପିନ୍‌ଚନ୍, କର୍ଣ୍ଣେଲ୍ ଆଦି ଚରିତ୍ର-ମାନେ କେହି ଏହି ଅଲଙ୍ଘନୀୟ କର୍ମଫଳକୁ ଅତିକ୍ରମ କରିପାରିନାହାନ୍ତି ।

'The Scarlet Letter' ଉପନ୍ୟାସରେ Hester ଚରିତ୍ର ମାଧ୍ୟମରେ ହଥର୍ଣ୍ଣ ଅଲଙ୍ଘନୀୟ କର୍ମଫଳର ପରିଣତିକୁ ସୂଚାଇ ଅଛନ୍ତି । ଏହି ଉପନ୍ୟାସରେ ନିଜର ସ୍ୱାମୀକୁ ଉପେକ୍ଷା କରି ହେଷ୍ଟର ବୋଷ୍ଟନର ଜଣେ ଯୁବ ନେତାଙ୍କ ସହ ଯେଉଁ ଅବୈଧ ପ୍ରେମରେ ଜଡ଼ିତ ହେଲା, ସେହି କର୍ମର ଫଳ ସ୍ୱରୂପ ସେ ଜନ୍ମ ଦେଲା ଅବୈଧସନ୍ତାନ ପିଅର୍ଲଙ୍କୁ ଏବଂ ଏଥିପାଇଁ ଜେଲ୍ ସମ୍ମୁଖରେ ଲୋକଙ୍କ ଆଗରେ ତାକୁ ଲାଞ୍ଛିତ ହେବାକୁ ପଡ଼ିଛି । ଏଥିରୁ ସ୍ପଷ୍ଟ ଭାବେ ଜଣାଯାଏ ଯେ ହଥର୍ଣ୍ଣ କର୍ମଫଳରେ ଥିଲେ ଦୃଢ଼ବିଶ୍ୱାସୀ । ଏପରିକି ନିଜ ବଂଶର ଜଣେ ପୂର୍ବପୁରୁଷ Witch Craftମାନଙ୍କର ବିଚାରକ ଥିଲେ । ହୁଏତ ଅନେକଙ୍କୁ ସେ ଫାଶୀ ଦେଇଥିବେ । ସେମାନଙ୍କ ତତଲା ନିଃଶ୍ୱାସରେ ହଥର୍ଣ୍ଣଙ୍କ ପରିବାର ଅଭିଶପ୍ତ ହୋଇଥିଲେ ବୋଲି ହଥର୍ଣ୍ଣ ବିଶ୍ୱାସ କରୁଥିଲେ । ସେ ଭାବୁଥିଲେ

ତାଙ୍କ ପୂର୍ବପୁରୁଷଙ୍କ କୃତକର୍ମର ଫଳକୁ ସେ ଏବେ ମଧ୍ୟ ଭୋଗ କରୁଛନ୍ତି । ଏହି ପୁରୁଷ ପୁରୁଷ ଧରି କୃତକର୍ମର ଫଳ ଭୋଗ ବିଶ୍ୱାସକୁ ସେ ତାଙ୍କ 'The House of the Seven Gables' ଉପନ୍ୟାସରେ ରୂପାୟିତ କରିଛନ୍ତି । (୨)

## (୨) ସମାଜ ସଂସ୍କାର :

ହଥର୍ଣ୍ଣଙ୍କ ଜୀବନାଦର୍ଶର ଅନ୍ୟତମ ଦିଗ ହେଲା ତାଙ୍କ ସାମାଜିକ ସଂସ୍କାର ସ୍ପୃହା । 'The Scarlet Letter' ଠାରୁ ଆରମ୍ଭକରି 'The Marble Faun' ଉପନ୍ୟାସ ପର୍ଯ୍ୟନ୍ତ ସବୁଥିରେ ସେ ଆପଣା ଜୀବନର ଏହି ଆଦର୍ଶବୋଧକୁ ପ୍ରକଟିତ କରିଛନ୍ତି । ଆମେରିକୀୟ ସମାଜର ଅଧଃଗତିରେ ହଥର୍ଣ୍ଣ ଥିଲେ ଜଣେ ବିଦ୍ରୋହବାଦୀ ବ୍ୟକ୍ତିତ୍ୱ । ତାଙ୍କ ସମୟରେ ଆମେରିକୀୟ ସମାଜର ରକ୍ଷଣଶୀଳ ଗୋଷ୍ଠୀ ଓ ଅପରପକ୍ଷରେ ଏହି ରକ୍ଷଣଶୀଳତା ଲୋପପାଇଁ ସଂଘର୍ଷ ଆରମ୍ଭ ହୋଇଯାଇଥିଲା । ଏହି ପରିପ୍ରେକ୍ଷୀରେ ହଥର୍ଣ୍ଣ ତାଙ୍କର ସମାଜ ସଂସ୍କାରସ୍ପୃହାକୁ ଫଳବତୀ କରିବା ପାଇଁ ପ୍ରଗାଢ଼ ପ୍ରୟାସ କରିଥିଲେ ।

'The Scarlet Letter' ଉପନ୍ୟାସରେ ସେ ଆମେରିକୀୟ ସମାଜର ଚାରିତ୍ରିକ ସ୍ଖଳନ ପାଇଁ Hester କୁ ଦଣ୍ଡିତ କରି ସେ ଦିଗରେ ଆପଣାର ସମାଜ ସଂସ୍କାର ସ୍ପୃହାକୁ ପ୍ରକଟିତ କରିଛନ୍ତି । ପୁଣି ଦୋଷକଲେ ଦଣ୍ଡ ମିଳେ ଏହି କଥାକୁ ଏହି ଉପନ୍ୟାସରେ ପ୍ରମାଣିତ କରାଇ ସେ ତତ୍କାଳୀନ ସମାଜପତି ମାନଙ୍କୁ ପରୋକ୍ଷ ଭାବରେ ଧମକ୍ ଦେଇଛନ୍ତି । ତାଙ୍କର ଏହି ଧମକ୍ ବଳରେ ସେ ପ୍ରକୃତରେ ସାମାଜିକ ସଂସ୍କାରହିଁ କରିଛନ୍ତି ।

'The House of the Seven Gables'ର ଅଭିଜାତ୍ୟର ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରି ସଫଳ ହୋଇଛନ୍ତି । ଏ କ୍ଷେତ୍ରରେ ରକ୍ଷଣଶୀଳତା ବିରୁଦ୍ଧରେ ତାଙ୍କର ସଂଗ୍ରାମ ମୂଳରୁ ଶେଷପର୍ଯ୍ୟନ୍ତ ଅବ୍ୟାହତ ରହିଛି ଏବଂ ପରିଶେଷରେ ଶୋଷିତ ଜନତାର ପ୍ରତିନିଧି ମାଉଲେଙ୍କ ବଂଶର ଜଣେ ଯୁବକଙ୍କ ସହିତ ଅହଂ, ଗର୍ବୋନ୍ମତ୍ତ

---

(2) The House of the Seven Gables, utilizes materials from Hawthorne's family history which had haunted his imagination. One of his Hawthorne ancestors had been a judge in the salem wich-trials, and Hawthorne was impressed by the traditon of a curse laid upon him and his descendants by one of the victims of the witch craft delusion. Howthorne

ଚକ୍ଷଣଶୀଳ, ଶୋଷକ ଗୋଷ୍ଠୀର ପ୍ରତିନଧି ପିନ୍‌ଚନ୍ ପରିବାରର କନ୍ୟା ଫୋଏବ୍‌ର ବିବାହ ଦେଇ ସେ ଆପଣାର ସାମାଜିକ ସଂସ୍କାରକୁ ଚରିତାର୍ଥ କରିଛନ୍ତି ।

ପୁଣି Blithedale Romance ଓ 'The Marble Faun' ଉପନ୍ୟାସ ଦ୍ୱୟରେ ତାଙ୍କ ସାମାଜିକ ସଂସ୍କାର ପ୍ରୟାସ କୁଲଲଙ୍ଘନ କରିଛି । 'Blithedale Romance' ତାଙ୍କର ଏକ ସଂପୂର୍ଣ୍ଣ ସମାଜ ସଂସ୍କାରମୂଳକ ଉପନ୍ୟାସ (୩) । ଏହିସବୁ ଉପନ୍ୟାସର ଘଟଣାକୁ ଅନୁଶୀଳନ କଲେ ହଥର୍ଣ୍ଣ ଯେ ଆମେରିକୀୟ ସମାଜର ଜଣେ ଏକନିଷ୍ଠ ସଂସ୍କାରକ ତାହା ବେଶ୍ ହୃଦୟଙ୍ଗମ କରିହୁଏ ।

**(୩) ଦୋଷୀକୁ ଦଣ୍ଡ :**

ହଥର୍ଣ୍ଣଙ୍କ ଜୀବନାଦର୍ଶ ବହୁଭାବରେ ତାଙ୍କ ଉପନ୍ୟାସକୁ ପ୍ରଭାବିତ କରିଛି । ହଥର୍ଣ୍ଣଙ୍କର ଦୃଢ଼ବିଶ୍ୱାସ ଥିଲା ଯେ, କୃତକର୍ମର ଫଳ ଯେପରି ସମସ୍ତଙ୍କୁ ଭୋଗ କରିବାକୁ ହୁଏ, ସେହିପରି ସ୍ୱସ୍ୱ ଦୋଷ ପାଇଁ ଦୋଷୀକୁ ନିଶ୍ଚିତ ଦଣ୍ଡ ମିଳେ । କ୍ଷମତାରେ ମଦମତ୍ତ ହୋଇ ମଣିଷ ନାନା ପ୍ରକାର ଅନ୍ୟାୟ ଅତ୍ୟାଚାର କରିଚାଲିଥାଏ । ଏତେବେଳେ ଭବିଷ୍ୟତ ପରିଣତି ପାଇଁ ତାର ଦୃଷ୍ଟି ନଥାଏ । ମାତ୍ର ସବୁଦିନେ କାହାରି ଭାଗ୍ୟରେ ସୁଖ ଲେଖାଯାଇ ନାହିଁ, କି ଦୁଃଖର ଯନ୍ତ୍ରଣା ନାହିଁ । ସମୟର ପରିବର୍ତ୍ତିତ ପ୍ରବାହରେ ମଣିଷ ଜୀବନ ନାନାଭାବେ ପରିବର୍ତ୍ତିତ ହୁଏ । ଅସଂଖ୍ୟ ଅଗଣନ, ଅନ୍ୟାୟ ଅତ୍ୟାଚାରରେ ଜଡ଼ିତ ବ୍ୟକ୍ତି ଦିନେ ନା ଦିନେ ଦଣ୍ଡ ପାଏ । ଏହି ନ୍ୟାୟ ଓ ଆଦର୍ଶରେ ବିଶ୍ୱାସୀ ହଥର୍ଣ୍ଣଙ୍କ 'The House of the Seven Gables' ଠାରୁ ଆରମ୍ଭକରି 'The Scarlet Letter' ପର୍ଯ୍ୟନ୍ତ ତାଙ୍କର 'ଦୋଷୀକୁ ଦଣ୍ଡ' ଜୀବନାଦର୍ଶଟି ପ୍ରତିଫଳିତ ହୋଇଥିବାର ଲକ୍ଷ୍ୟ କରାଯାଏ ।

---

used the ancestral curse as akind of allegorical mode of expressing way in which the dead band of the Pastbears upon affairs of the present."

(American Literature, vol-2, Page—202)

(3) "Blithedale is a cool and skeptical study of various project of ocial reform such as had engaged the advocacy of Hawthorne's Transcendentalist acquaintances in concord : feminism or 'equal rights for women, socialism; the reformation rather than punishment of criminals, according to the assumption that criminal are victims rather than enemies of society"—American Literature-vol-2, P-205

'The House of the Seven Gables' ଉପନ୍ୟାସରେ କର୍ଣ୍ଣେଲ୍ ମାଉଲେଙ୍କୁ ନିଷ୍ଠୁର ଭାବେ ଶୋଷଣ କରିଛନ୍ତି । ତାଙ୍କୁ ମୃତ୍ୟୁମୁଖକୁ ଠେଲି ଦେଇ ତାଙ୍କର ଶ୍ରେଷ୍ଠ ତଥା ସୁନ୍ଦର ଓ ମୂଲ୍ୟବାନ୍ ଜମି ଖଣ୍ଡିକୁ ଆତ୍ମସାତ୍ କରିଛନ୍ତି; କିନ୍ତୁ ତାଙ୍କର ଏହି ଅନ୍ୟାୟ ପାଇଁ ତାଙ୍କୁ କ୍ଷମା ମିଳିନି । ସେ ଅସହାୟ ଭାବରେ ଏକ ଅସ୍ୱାଭାବିକ ପରିସ୍ଥିତିରେ ମୃତ୍ୟୁ ବରଣ କରିଛନ୍ତି । ତାଙ୍କ କର୍ମଫଳ ଏ କ୍ଷେତ୍ରରେ ଅଲଙ୍ଘନୀୟ ହୋଇଛି । ସେ ଦୋଷପାଇଁ ଦଣ୍ଡ ପାଇଛନ୍ତି । କେବଳ ଏତିକି ନୁହେଁ·ତାଙ୍କର ସାମାନ୍ୟ ତ୍ରୁଟି ପାଇଁ ତାଙ୍କର ପରିବାର ଭବିଷ୍ୟତରେ ପୁରୁଷ ପୁରୁଷ ଧରି ମାଉଲେଙ୍କ ଅଭିଶାପରୁ ବର୍ତ୍ତିପାରି ନାହାନ୍ତି । 'The House of the Seven Gables'ରେ ସେମାନେ ଶାନ୍ତିରେ ବସବାସ କରି ପାରି ନାହାନ୍ତି । କର୍ଣ୍ଣେଲଙ୍କ କର୍ମଫଳ ତାଙ୍କୁ ତ ଭୋଗ କରିବାକୁ ପଡ଼ିଛି; ପୁଣି ତାଙ୍କ ପରବର୍ତ୍ତୀ ବଂଶଧରମାନେ ଏଥିରେ ସମ୍ପୃକ୍ତ ହୋଇଛନ୍ତି ।

ଜର୍ଜ ପିନ୍‌ଚନ୍ ତାଙ୍କର ଅନ୍ୟାୟ ଅତ୍ୟାଚାର, ଚାରିତ୍ରିକ ଦୁର୍ବଳତାଜନିତ ଦୋଷରେ ଦୋଷୀ । ତେଣୁ ହଥର୍ଣ୍ଣ ତାଙ୍କୁ ମଧ୍ୟ ଅବଶ୍ୟମ୍ଭାବୀ ଦଣ୍ଡରେ ଦଣ୍ଡିତ କରିଛନ୍ତି । ସେ ମରିଛନ୍ତି ଅତି ଅସହାୟ ଭାବରେ । ହଥର୍ଣ୍ଣ ଯେଉଁ କେଉଁଠାରେ ଚରିତ୍ରରେ ଦୋଷ ଆରୋପ କରିଛନ୍ତି, ସେମାନଙ୍କୁ ଦଣ୍ଡ ନ ଦେଇ ଯେ ଛାଡ଼ି ନାହାନ୍ତି । 'The Scarlet Letter' ରେ Hester ଓ ତା'ର ପ୍ରେମିକ ଉଭୟ ଦୋଷୀ । ହେଷ୍ଟର ଏ କ୍ଷେତ୍ରରେ ଦୈହିକ ଦଣ୍ଡ ଭୋଗିଲା ବେଳେ ତାଙ୍କୁ ଠକିଦେଇଥିବା ତା'ର ପ୍ରେମିକ ମଧ୍ୟ ଉପଯୁକ୍ତ ଦଣ୍ଡ ପାଇଛି । କେହି ଦୋଷ କରି ଦଣ୍ଡର ବଳୟ ଭିତରୁ ମୁକ୍ତ ପାଇ ପାରିନାହାନ୍ତି । ଅତଏବ 'ଦୋଷୀକୁ-ଦଣ୍ଡ' ଯେ ହଥର୍ଣ୍ଣଙ୍କ ଜୀବନାଦର୍ଶର ଅନ୍ୟତମ ବିଭବ, ତାହା ଅସ୍ୱୀକାର କରିହୁଏ ନାହିଁ ।

## (୪) ଶୋଷଣ ଓ ଅତ୍ୟାଚାରର କୁ-ପରିଣତି ଓ ପାପର ପରିଣତି ପ୍ରତି ଅଙ୍ଗୀକାର :

''ଅଧର୍ମ ବିତ୍ତ· ବଢ଼େ ବହୁତ/ଗଲାବେଳେ ଯାଏ ମୂଳ ସହିତ''—ହଥର୍ଣ୍ଣ ଏହି ନ୍ୟାୟରେ ତାଙ୍କର ଜୀବନାଦର୍ଶକୁ 'ଶୋଷଣ ଓ ଅତ୍ୟାଚାରର କୁ-ପରିଣତି' ଓ 'ପାପର ପରିଣତି ପ୍ରତି ଅଙ୍ଗୀକାର' ଭିତରେ ଉଦ୍‌ଜୀବିତ କରିଅଛନ୍ତି ।

ବିଶ୍ୱର କୌଣସି ଦେଶରେ, ସମାଜରେ ବା ସାହିତ୍ୟରେ ଶୋଷକ ବା ଅତ୍ୟାଚାରୀ ଗୋଷ୍ଠୀ ଚିରଦିନ ତିଷ୍ଠି ରହିବାର ପ୍ରଶ୍ରୟ·ପାଇନାହାନ୍ତି । ତେଣୁ ଏମାନଙ୍କ ଆକାଂକ୍ଷା,ସ୍ୱାର୍ଥ ଅହଂଭାବ ଓ ସର୍ବବ୍ୟାପୀ କ୍ଷମତା ମୋହ ଯେ· ଚିରଦିନ ରହେନାହିଁ, ହଥର୍ଣ୍ଣ ତାହା ବେଶ୍ ଭଲଭାବେ ହୃଦୟଙ୍ଗମ କରିଥିଲେ । ତେଣୁ 'The House of the Seven

Gables' ଉପନ୍ୟାସରେ ସେ ପିନ୍‌ଚନ୍ ପରିବାରର ରକ୍ଷଣଶୀଳତା, ଅହଂ, ଗର୍ବ, ତଥା କ୍ଷମତାମଦମତ୍ତ ହୋଇ ନିରୀହ ମାଉଲେଙ୍କୁ ଶୋଷଣ କରିବାର କୁ-ପରିଣତି ସମ୍ପର୍କରେ ଯଥାଯଥଭାବେ ଇଙ୍ଗିତ ପ୍ରଦାନ କରିଛନ୍ତି । ମାଉଲେଙ୍କ ଜମି ନେବା ପରେ ଓ ନାନା-ଭାବେ ତାଙ୍କୁ ଶୋଷଣ କଲାପରେ ହଥର୍ଣ୍ଣ ପିନ୍‌ଚନ୍ ପରିବାରର ମୁଖ୍ୟ କର୍ଣ୍ଣେଲଙ୍କ ପତନ ଘଟାଇଛନ୍ତି ଓ ପରେ ଏହି ପଥର ଅନୁଗାମୀ ଜର୍ଜଙ୍କର ମଧ୍ୟ ବିନାଶ କରିଛନ୍ତି । ତେଣୁ ଶୋଷକ ଗୋଷ୍ଠୀର ପତନ ଯେ, ଏକ ସାଙ୍ଘାତିକ ପରିସ୍ଥିତିରେ ହୁଏ, ତାହା ହଥର୍ଣ୍ଣ ବେଶ୍ ଭଲଭାବେ ହୃଦୟଙ୍ଗମ କରିଥିଲେ ବୋଲି ତାଙ୍କର ଏହି ଉପନ୍ୟାସରୁ ସୂଚିତ ହୁଏ ।

ବାଲ୍ୟମୁଖୀ ପିନ୍‌ଚନ୍ ପରିବାରର ବୁନିଆଦି, କିପରି କେଉଁ ଦୃଷ୍ଟିରୁ ଭୂଷୁଡ଼ି ପଡ଼ିଲା, ସେହି କଥାକୁ ହଥର୍ଣ୍ଣ 'ପାପର ପରିଣତି ପ୍ରତି ଅଙ୍ଗୀକାର' ବୋଧରେ ବର୍ଣ୍ଣନା କରିଛନ୍ତି । ଏହି ବୁନିଆଦିର ବାଲ୍ୟ କାଳରେ ଯେଉଁ ପୁରାତନ ବୁନିଆଦିର ନୂତନ-ତାତ୍ତ୍ୱିକମାନେ ନିଜର ସାମାଜିକ ସ୍ଥିତିପାଇଁ ମୋହାନ୍ଧ ହୋଇପଡ଼ୁଥିଲେ, ସେମାନେ ଅନ୍ୟର ହାନି-ଲାଭ ପ୍ରତି ଉଲେହେଲେ ଦୃଷ୍ଟି ନ ଦେଇ ସଙ୍କୀର୍ଣ୍ଣତା, ଲୋଭ, ହିଂସା, ଅସୂୟା, ପରସ୍ୱାପହରଣର ହୀନପ୍ରବୃତ୍ତିକୁ ସେମାନଙ୍କ ଅଗ୍ରଗତିରେ ଚରମ ଓ ପରମ ପଥ ବୋଲି ଧରିନେଇଥିଲେ । 'The House of the Seven Gables' ଉପନ୍ୟାସରେ ଜର୍ଜ ପିନ୍‌ଚନ୍ ନିଜ କକାପୁଅ ଭାଇ କ୍ଲିଫର୍ଡ଼ ଓ ଭଉଣୀ ହେପ୍‌ଜିବାକୁ ଏକ ପ୍ରହସନମୂଳକ ଆନ୍ତରିକତା ଦେଖାଇ ନିଜର ବ୍ୟକ୍ତିଗତ ସୁଖ-ସୁବିଧା ହାସଲ କରିବାକୁ ଚାହିଁଛନ୍ତି । ଯେଉଁଠି ଏ ସୁବିଧା ବାଧାପଡ଼ିଛି, ସେଠି ଜର୍ଜ କ୍ଲିଫର୍ଡ଼ଙ୍କୁ ପାଗଳ କରିଦେବାର ଧମକ୍ ଦେଇଛନ୍ତି । ପ୍ରତିପତ୍ତି କ୍ଷମତାଲୋଭୀ ଜର୍ଜ ଜୀବନର ଶେଷ ପର୍ଯ୍ୟାୟରେ ଯେପରି-ଭାବେ ଶୋଷଣର ଗଭୀର ଦରଦୀ ଓ ଚରମ ଅନୁରାଗୀ ଭାବେ ଦେଖାଦେଇଛନ୍ତି, ତାହା ସର୍ବଥା ନିନ୍ଦନୀୟ ଓ ତୀବ୍ର ଜାଲିଆତିର ଏକ ନପୁଂସକ ମୋହ ବ୍ୟତୀତ ଅନ୍ୟକିଛି ନୁହେଁ । କ୍ଲିଫର୍ଡ଼ ଓ ହେପ୍‌ଜିବାଙ୍କ ମର୍ମଭେଦୀ ହାହାକାର ଓ ଅଶ୍ରୁପାତରେ ଜର୍ଜଙ୍କ ଜୀବନ ଯେ, ଅଭିଶପ୍ତ ଓ ଅକାଳ ବର୍ଦ୍ଧକ୍ୟକୁ ଡାକିଆଣିଛି, ଏକଥା ଅସ୍ୱୀକାର କରାଯାଇ ପାରିବ ନାହିଁ । ଏହିପରି ପାପୀ, କୁ-ଚକ୍ରୀ, ଲୋକଙ୍କ ପତନ ଯେ ନିଶ୍ଚିତ, ତାହା ନିଜର ଉଚ୍ଚ ଜୀବନାଦର୍ଶ ମାଧ୍ୟମରେ ଏହି ଉପନ୍ୟାସରେ ହଥର୍ଣ୍ଣ ପ୍ରତିପାଦିତ କରିଅଛନ୍ତି । ପୁଣି 'The Scarlet Letter' ଓ 'The Marbel Faun' ଉପନ୍ୟାସରେ ମନୁଷ୍ୟର ସକଳ ସ୍ଖଳନର ମୂଳ ଯେ, ତା'ର ପାପ, ସେହି କଥାକୁ ଔପନ୍ୟାସିକ ହଥର୍ଣ୍ଣ ବାରମ୍ବାର ସୂଚାଇଛନ୍ତି ।

ଏହିସବୁ ବର୍ଣ୍ଣନାରେ ହଥର୍ଣ୍ଣଙ୍କ ଜୀବନାଦର୍ଶ ଯେ, ପାପ-ପୁଣ୍ୟର ସ୍ଥିତି ପ୍ରତି ଅଙ୍ଗୀକାର କରିଛି, ତାହା ଅସ୍ୱୀକାର କରିହୁଏ ନାହିଁ ।

## (୫) ଅଭିଶାପ ପ୍ରତି ବିଶ୍ୱାସ :

ଊନବିଂଶ ଶତାବ୍ଦୀର ଆମେରିକୀୟ ସମାଜର ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ହଥର୍ଣ୍ଣ ଆବିର୍ଭାବ ହୋଇଥିଲେ ଓ ନାନା ଦୁଃଖ ଦୁର୍ବିପାକରେ ଉଚ୍ଚଶିକ୍ଷା ମଧ୍ୟ ଲାଭକରିଥିଲେ । ମାତ୍ର ନିଜସ୍ୱ ଅନୁଭୂତି ତାଙ୍କର ଶିକ୍ଷା ଅପେକ୍ଷା ଯଥେଷ୍ଟ ଅଧିକ କାର୍ଯ୍ୟ କରିଥିଲା ତାଙ୍କ ସାହିତ୍ୟିକ ପ୍ରତିଭାର ବିକାଶ ପାଇଁ । କାରଣ ହଥର୍ଣ୍ଣଙ୍କ ପରି ଜଣେ ଉଚ୍ଚଶିକ୍ଷିତ 'ଅଭିଶାପ' ପରି ଏକ ଅନ୍ଧବିଶ୍ୱାସର ବଶବର୍ତ୍ତୀ ହେବା ଆଦୌ ସାଧାରଣ କଥା ନୁହେଁ । ଅତଏବ ଅଭିଶାପ ପ୍ରତି ବିଶ୍ୱାସ ତାଙ୍କ ଅନୁଭୂତିର ତୀବ୍ରତାରୁ ହିଁ ଉତ୍ପତ୍ତି ।

ହଥର୍ଣ୍ଣ ବିଶ୍ୱାସ କରୁଥିଲେ ଅନ୍ୟକୁ ଶୋଷଣ କଲେ ତା'ର ଆର୍ତ୍ତବିଳାପ, ଉତ୍ତପ୍ତ ନିଃଶ୍ୱାସ ଶୋଷକ ଉପରେ ନିଶ୍ଚୟ ପଡ଼ିବ ହିଁ ପଡ଼ିବ ଏବଂ ଏହା ହିଁ ତା' ପାଇଁ ହେବ ଶୋଷିତର ଅଭିଶାପ । ତେଣୁ ଅନ୍ୟକୁ ଶୋଷଣ କଲେ, ମଣିଷ ଶାନ୍ତିରେ ବସବାସ କରିପାରିବ ତ ନାହିଁ, ପରନ୍ତୁ ତା'ର ବଂଶଧରମାନେ ମଧ୍ୟ ଏହି ଅଭିଶାପ ଅନଳରୁ ସହଜରେ ବାଦ୍ ଯିବେ ନାହିଁ । ହଥର୍ଣ୍ଣ ତାଙ୍କର ଏହି ଜୀବନାଦର୍ଶକୁ 'The House of the Seven Gables' ଉପନ୍ୟାସରେ ଅତି ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଅଛନ୍ତି । କର୍ଣ୍ଣେଲ୍ ପିନ୍‌ଚନ୍—କୌଶଳକ୍ରମେ ମାଥିଉ ମାଉଲେଙ୍କୁ ଯାଦୁକର ବୋଲି ପ୍ରମାଣିତ କରି ତାଙ୍କୁ ଫାଶୀ ଦଣ୍ଡରେ ଦଣ୍ଡିତ କରିଥିଲେ; କିନ୍ତୁ ତାଙ୍କର ଏପରି କରିବାର ଉଦ୍ଦେଶ୍ୟ ଥିଲା ମାଉଲେଙ୍କ ଜମି ଖଣ୍ଡିକୁ ହସ୍ତଗତ କରିବା । ତାହା ସେ ଅବଶ୍ୟ ସହଜରେ କରିପାରିଥିଲେ ମାଉଲେଙ୍କ ମୃତ୍ୟୁ ପରେ । ମାତ୍ର ମାଉଲେ ଏହି ଷଡ଼ଯନ୍ତ୍ରର ଶିକାର ହୋଇ ଯେତେବେଳେ ଫାଶୀମଞ୍ଚ ଉପରକୁ ଉଠିଲେ, ସେତେବେଳେ ସେ କର୍ଣ୍ଣେଲ୍‌ଙ୍କୁ ଅଭିଶାପ ଦେଇଥିଲେ—'God will give to him, blood to drink.' ମାଉଲେଙ୍କ ଏହି ଅଭିଶାପ ଯେ, କେବଳ କର୍ଣ୍ଣେଲ୍‌ଙ୍କ ଜୀବନରେ ଫଳବତୀ ହେଲା ତାହା ନୁହେଁ, ଏହା କ୍ରମାଗତଭାବେ ପୁରୁଷ ପୁରୁଷ ଧରି ଫଳବତୀ ହେବାରେ ଲାଗିଲା ପିନ୍‌ଚନ୍ ପରିବାର ପାଇଁ ।

କର୍ଣ୍ଣେଲ୍ ମାଉଲେଙ୍କ ଅଭିଶାପର ଶିକାର ହୋଇ ବି ମାଉଲେଙ୍କ ଜମି ଉପରେ ପ୍ରାସାଦତୁଲ୍ୟ ଏକ ଘର ନିର୍ମାଣ କଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା ଅଶାନ୍ତି ଅନଳରୁ ଆହୃତ ଏହି ଜମି ଉପରେ ନିର୍ମିତ ଘରର ପ୍ରତିଷ୍ଠା ଦିନ କର୍ଣ୍ଣେଲ୍‌ଙ୍କର ରକ୍ତବାନ୍ତି ହୋଇ ଏକ ଅସ୍ୱାଭାବିକ ପରିସ୍ଥିତିରେ ମୃତ୍ୟୁ ଘଟିଲା । ଏହି ପ୍ରକାର ଅସ୍ୱାଭାବିକ ରକ୍ତବାନ୍ତି-ଜନିତ ମୃତ୍ୟୁ ପିନ୍‌ଚନ୍ ପରିବାରର ପ୍ରତ୍ୟେକ ମୃତ୍ୟୁଗାମୀ ବ୍ୟକ୍ତିଙ୍କ ଜୀବନରେ କ୍ରମାଗତ ଭାବେ ଲାଗିରହିଲା । ପୁଣି ଏହି ଘରଟିରେ କେହି ଶାନ୍ତିରେ ରହିପାରିଲେ ନାହିଁ । ଅର୍ଥାତ୍

ଏ କ୍ଷେତ୍ରରେ ମାଉଲେଙ୍କ ଅଭିଶାପର ଗୁରୁତ୍ୱକୁ ହ୍ୟୁଗୋ ପ୍ରତିପାଦନ କରି ଅଭିଶାପ ପ୍ରତି ତାଙ୍କର ଥିବା ଦୃଢ଼ ବିଶ୍ୱାସଜନିତ ଜୀବନାଦର୍ଶକୁ ଉପସ୍ଥାପିତ କରିଅଛନ୍ତି ।

କେବଳ ଏତିକି ନୁହେଁ, ହ୍ୟୁଗୋଙ୍କ ଜୀବନାଦର୍ଶ ଅନ୍ତର ନାନା ଘଟଣା, ବିଶ୍ୱାସ ଓ ପରିସ୍ଥିତିରେ ପରିପୂର୍ଣ୍ଣ ଥିଲା । ସେ ଥିଲେ ଲେକଚରିଙ୍ଗ ଅଧିସ୍ଥିନର ଜଣେ ସଫଳ ଶିଳ୍ପୀ । ପୁଣି ଏକ ଆଦର୍ଶ ସମାଜ ପ୍ରତିଷ୍ଠା ପାଇଁ ତାଙ୍କର ଥିଲା ପ୍ରଗାଢ଼ ଉଦ୍ୟମ । ନୀତିବାଦ ଉପରେ ତାଙ୍କର ଥିଲା ପ୍ରଚଣ୍ଡ ଆସ୍ଥା । ଖ୍ରୀଷ୍ଟ-ଭଗବାନଙ୍କ ଉପରେ ତାଙ୍କର ମଧ୍ୟ କିଛି କମ୍ ଆସ୍ଥା ନଥିଲା । ରକ୍ଷଣଶୀଳତା ବିରୁଦ୍ଧରେ ସଂଗ୍ରାମ ଓ ଆବଶ୍ୟକସ୍ଥଳେ ରକ୍ଷଣଶୀଳତା ରକ୍ଷିତ ରହିବା ସମ୍ବନ୍ଧରେ ତାଙ୍କ ଜୀବନାଦର୍ଶର ପରିଧିକୁ ମଧ୍ୟ ତାଙ୍କ ସୃଷ୍ଟିସମ୍ଭାର ଅନୁଶୀଳନରୁ ସ୍ପଷ୍ଟବୋଧ ହୁଏ ।

ପରିସର ଓ ପରିବେଶ ନେଇ ହ୍ୟୁଗୋ ଥିଲେ ଜଣେ ଭିନ୍ନ ମଣିଷ ଏବଂ ଏହି ଭିନ୍ନ ମଣିଷର ଏକ ଭିନ୍ନ ଚିନ୍ତାଧାରା ତାଙ୍କ ସାହିତ୍ୟ ସୃଷ୍ଟିର ପ୍ରତ୍ୟେକ ପୃଷ୍ଠାରେ ଲକ୍ଷ୍ୟଣୀୟ । ଜଣେ ଚରମ ପ୍ରଗତିବାଦୀ ସଂସ୍କାରକ ଭାବେ ସେ ତାଙ୍କ ଉପନ୍ୟାସ ଜଗତରେ ସହଜରେ ପରିଚିତ ହୋଇଯାଆନ୍ତି । ତାଙ୍କ ସାହିତ୍ୟ ସୃଷ୍ଟି ପାଇଁ ତାଙ୍କ ଆଗରେ ଥିଲା ଗୋଟିଏ କୁସଂସ୍କାର ଦୃଷ୍ଟ, ଜରାଜୀର୍ଣ୍ଣ, ପତନୋନ୍ମୁଖୀ ସମାଜ । ଯୁଗ ଯୁଗଧରି ପରାଧୀନତା, କୂପମଣ୍ଡୂକତା, ଅନ୍ଧବିଶ୍ୱାସ, ଅଜ୍ଞତା, ଅପବାଦ ଓ ଜଡ଼ତାର ପାଷାଣପାଚେରୀ ତଳେ ଘୁଣିହୋଇ ଏ ସମାଜର ଯାହାକିଛି କଲ୍ୟାଣମୟୀ ଏବଂ ସୃଷ୍ଟିଧର୍ମୀ ତାହା ବିସ୍ମୃତିର ଅତଳ ଗହ୍ୱରରେ ବିଲୟ ଭଜିଥିଲା । ସମାଜର ରଥଚକ୍ର ତଳେ ଶୋଷିତ ମଣିଷ, ଜୀବନର ମୋହ ଛାଡ଼ିନପାରି ତ୍ରାହି ତ୍ରାହି ଡାକ ଛାଡ଼ୁଥିଲା । ଏହିପରି ଏକ ଅଧୋଗତ ସମାଜ ଓ ମାନବିକତାର ପରାଜୟର ସଂକ୍ଷିପ୍ତ ଇତିହାସ ହେଉଛି ହ୍ୟୁଗୋଙ୍କ ସାହିତ୍ୟାଦର୍ଶ । ଆଗରୁ କହିଛି ତାଙ୍କ ସାହିତ୍ୟାଦର୍ଶ ତାଙ୍କ ଜୀବନାଦର୍ଶର ଏକ ନିଛକ ପ୍ରତିଫଳନ । ତେଣୁ ତାଙ୍କର ଏହି ସାହିତ୍ୟାଦର୍ଶ ମଧ୍ୟରେ ଆମେ ତାଙ୍କ ଜୀବନାଦର୍ଶର ଅତଳ ରହସ୍ୟକୁ ହିଁ ଦର୍ଶନ କରିଥାଉଁ ।

ହ୍ୟୁଗୋଙ୍କ ଜୀବନାଦର୍ଶ ସହ ଓଡ଼ିଆ ଔପନ୍ୟାସିକ ଫକୀରମୋହନ ସେନାପତିଙ୍କ ଜୀବନାଦର୍ଶର ନାନା ସାମ୍ୟ ପରିଲକ୍ଷିତ ହୁଏ । ତେଣୁ ଏହି ପର୍ଯ୍ୟାୟରେ ଫକୀର-ମୋହନଙ୍କ ଜୀବନାଦର୍ଶ ସମ୍ପର୍କରେ ଆଲୋଚନା କରାଯାଇପାରେ :—

## (ଖ) ଫକୀରମୋହନଙ୍କ ଜୀବନାଦର୍ଶ :

ପୂର୍ବରୁ କୁହାଯାଇଛି ଔପନ୍ୟାସିକ ଫକୀରମୋହନ ସେନାପତିଙ୍କ ସାହିତ୍ୟର ପୃଷ୍ଠଭୂମି ହେଉଛି ଦୀର୍ଘ ଦୁଇଶତ ବର୍ଷର ଓଡ଼ିଶାର ଇତିହାସ । ୧୭୬୧ ମସିହାଠାରୁ

୧୮୦୦ ମସିହା ପର୍ଯ୍ୟନ୍ତ ମରହଟ୍ଟାମାନଙ୍କର ଅତ୍ୟାଚାର ଓ ଦୁର୍ଭିକ୍ଷ ଦେଶରେ ଲୋକମାନଙ୍କର କରୁଣ ଚିତ୍କାର, ୧୮୦୩ ଠାରୁ ୧୮୪୦ ପର୍ଯ୍ୟନ୍ତ ସମୟ ମଧ୍ୟରେ ଇଂରେଜମାନଙ୍କର ଓଡ଼ିଶା ଅଧିକାର, ଶାସନ ବିସ୍ତାର ଓ ଶିକ୍ଷା ପ୍ରସାର ପାଇଁ ଚେଷ୍ଟା, ନୂତନ ସୃଷ୍ଟ ଜମିଦାର ଓ ପାରମ୍ପରିକ ଜମିଦାର ମଧ୍ୟରେ ଆଦର୍ଶଗତ ସଂଘର୍ଷ, ନୂତନ ସୃଷ୍ଟ ଜମିଦାରମାନଙ୍କର ଜମି ପ୍ରତି ଲୋଭ, ବଙ୍ଗାଳୀ ଜମିଦାରମାନଙ୍କ ଦ୍ୱାରା ଓଡ଼ିଆ ଗଣଜୀବନ ହାହାକାରମୟ, ୧୮୪୧ ଠାରୁ ୧୮୮୦ ପର୍ଯ୍ୟନ୍ତ ସମୟସୀମା ମଧ୍ୟରେ ଇଂରେଜ ଶିକ୍ଷା ପାଇଁ ଆଗ୍ରହ ଓ ସରକାରୀ ଚାକିରି ପାଇଁ ଲାଳନା, ଅର୍ଥପିଶାଚ ହେବାକୁ ନୂତନ କୂଟନୀତି ପ୍ରୟୋଗ, ଇଂରେଜ ଶିକ୍ଷା ଓ ସଭ୍ୟତା ଦ୍ୱାରା ଦେଶରେ ମଦ୍ୟପାନ ଓ ବେଶ୍ୟାବୃତ୍ତିର ପ୍ରସାର, ୧୮୮୧ ମସିହାଠାରୁ ୧୯୬୦ ମସିହା ସମୟସୀମା ମଧ୍ୟରେ ଓଡ଼ିଶାରେ କଲେଜ ପ୍ରତିଷ୍ଠା, ରେଭେନ୍ସା କଲେଜର ଶିକ୍ଷା କ୍ଷେତ୍ରରେ ଭୂମିକା, ନୂତନ ଶିକ୍ଷିତ ଯୁବକମାନଙ୍କ ମଧ୍ୟରେ ସଂସ୍କାର ପ୍ରୟାସ, ଆଭିଜାତ୍ୟ ବୃଦ୍ଧି ପାଇଁ ଜମିଦାରୀ ମନୋବୃତ୍ତି ପ୍ରଭୃତି ଘଟଣା ସେନାପତି ସାହିତ୍ୟ ପାଇଁ ଅନେକ କିଛି ଉପାଦାନ ଯୋଗାଇ ପାରିଥିଲା । ତତ୍କାଳୀନ ଓଡ଼ିଶାର ପରିବର୍ତ୍ତିତ ସମାଜ ଓ ବାଣିଜ୍ୟଗତ ସାମାଜିକ ଜୀବନଧାରା ସେନାପତିଙ୍କ ଜୀବନାଦର୍ଶକୁ ମଧ୍ୟ ଅନେକାଂଶରେ ପ୍ରଭାବିତ କରିପାରିଥିଲା । ତେଣୁ ଔପନ୍ୟାସିକ ହିସାବରେ ପରେ ସେ ତାଙ୍କ ଜୀବନାଦର୍ଶର ନିଚ୍ଛକ ପ୍ରତିଫଳନ ତାଙ୍କ ସାହିତ୍ୟାଦର୍ଶରେ ପ୍ରତିଫଳନ କରାଇଛନ୍ତି । ସମ୍ପ୍ରତି ତାଙ୍କ ଜୀବନର ମୁଖ୍ୟ ଆଦର୍ଶଗୁଡ଼ିକୁ ଆଲୋଚନା କରାଯାଇପାରେ ।

(୧) ଲୋକଚରିତ୍ର ରୂପାୟନର ବାସ୍ତବ କଳାକାର :

ଫକୀରମୋହନଙ୍କ ଜୀବନାଦର୍ଶର ଅନ୍ୟତମ ଦିଗ ତାଙ୍କ ଲୋକଚରିତ୍ର ଅନୁଧ୍ୟାନରେ ପ୍ରତିଫଳିତ । ଫକୀରମୋହନ ଥିଲେ ଲୋକଚରିତ୍ର ରୂପାୟନରେ ଏକ ବାସ୍ତବ କଳାକାର । ତାଙ୍କର ନିବିଡ଼ ଅନୁଭୂତି, ତାଙ୍କ ଜୀବନର ବିଭିନ୍ନ ଦୁଃଖଦ କାହାଣୀ, ତାଙ୍କ ଉପନ୍ୟାସର ବିଭିନ୍ନ ଚରିତ୍ର ମାଧ୍ୟମରେ ସନ୍ନିବେଶିତ ହୋଇଛି । ଫକୀରମୋହନ କର୍ମମୟ ଜୀବନରେ ଯେପରି କୂଟନୀତି ସମ୍ପନ୍ନ ବ୍ୟକ୍ତି ଥିଲେ, ସେହିପରି କୌଶଳୀ ମଧ୍ୟ ଥିଲେ । ସେ ତାଙ୍କର ଉପନ୍ୟାସ ମଧ୍ୟରେ କେତେକ କ୍ଷେତ୍ରରେ ନିଜକୁ ରୂପାୟନ କରିଥିବାର ମନେହୁଏ । ସେ ସୁଖକୁ ସୁଖ ଭାବରେ, ଦୁଃଖକୁ ଦୁଃଖ ଭାବରେ ଦେଖିଛନ୍ତି । ମଣିଷର ଅନ୍ତଃସତ୍ତାକୁ ସେ ପ୍ରକାଶ କରିବାର ଚେଷ୍ଟା କରିଅଛନ୍ତି । ଏହି ମଣିଷ ମଧ୍ୟରେ ଅଛନ୍ତି ଦେବତା, ପୁଣି ଏହି ମଣିଷ ମଧ୍ୟରେ ଅଛନ୍ତି ରାକ୍ଷାସ । ମଣିଷ ବାହାରେ ସାଧୁସନ୍ଥ ଜନସ୍ୱର ଅବତାର ଦେଖାଇ ଭିତରେ ହଳାହଳମୟ ପରିସ୍ଥିତି ସୃଷ୍ଟି କରେ, ଉପରେ ଅମୃତର ଧାର ସିଂଚନ କରି ସେ ଭିତରେ ଚେର କାଟେ । ମଣିଷ ତାର ସ୍ୱାର୍ଥ ସାଧନ ପାଇଁ ଭୟଙ୍କର ହୋଇପାରେ । ଫକୀରମୋହନ ତାଙ୍କର ବ୍ୟାପକ ସୂକ୍ଷ୍ମ ଅନୁଭୂତି ଫଳରେ ସଭ୍ୟତାର

ଖୋଲଭିତରୁ ବାସ୍ତବ ମଣିଷକୁ ବାହାରକରି ଦେଖାଇବାକୁ ଚେଷ୍ଟା କରିଛନ୍ତି । ସମାଜର ଅନ୍ତଃଜୀବନ୍ତ ଚିତ୍ର ପ୍ରଦାନ କରିବାରେ ଫକୀରମୋହନ ଯେଉଁ ଅନନ୍ୟ ସଫଳତାର ଅଧିକାରୀ, ତାହା ଓଡ଼ିଆ ସାହିତ୍ୟର ଅନ୍ୟ କୌଣସି ଔପନ୍ୟାସିକଙ୍କ ପକ୍ଷେ ଅଦ୍ୟାବଧି ସେଭଳି ସମ୍ଭବ ହୋଇନାହିଁ । ଅର୍ଥାତ୍ ଫକୀରମୋହନଙ୍କର ପ୍ରଚୁର ଲୋକସମ୍ପର୍କ ଥିବାରୁ ସେ ତାଙ୍କ ଜୀବନାଦର୍ଶକୁ ଲୋକଚରିତ୍ର ଅନୁଧ୍ୟାନ କଲାଭଳି ଗଢ଼ି ପାରିଥିଲେ ।

## (୬) ଅଲଙ୍ଘନୀୟ କର୍ମଫଳରେ ବିଶ୍ୱାସୀ :

ଫକୀରମୋହନଙ୍କ ଜୀବନାଦର୍ଶର ଅନ୍ୟତମ ଦିଗ ହେଲା ସେ ଥିଲେ କର୍ମଫଳରେ ପ୍ରଗାଢ଼ ବିଶ୍ୱାସୀ । ମଣିଷ ଯେ ତାର କୃତକର୍ମର ଫଳ ଭୋଗକରେ ଏବଂ ସମୟେ ସମୟେ ଏହା ତାର ଆଗାମୀ ବଂଶଧରମାନଙ୍କୁ ଭୋଗ କରିବାକୁ ପଡ଼ିଥାଏ, ତାହା ସେ ବେଶ୍ ଗମ୍ଭୀର ଭାବେ ଅନୁଧ୍ୟାନ କରିଥିଲେ । ମଣିଷ ତା'ର କ୍ଷମତା ବଳରେ ଦୁନିଆରେ ସବୁକିଛିକୁ ହେୟ ମନେକରିପାରେ, ନିଜର ଅଖଣ୍ଡ ପ୍ରଭୁତ୍ୱକୁ ପ୍ରତିଷ୍ଠା କରିପାରେ; ମାତ୍ର କର୍ମଫଳକୁ ସେ ଏଡ଼ାଇ ନପାରେ । କର୍ମଫଳ ଅଲଙ୍ଘନୀୟ । ମଣିଷର ଗର୍ବ, ଅହଙ୍କାରକୁ ତାହା ଉପହାସ କରେ । ଫକୀରମୋହନ କର୍ମଫଳ ସମ୍ପର୍କରେ ଉଲ୍ଲେଖ କରିଛନ୍ତି—"ମନୁଷ୍ୟ ଆପଣାର କର୍ମଫଳ ଭୋଗକରେ । ତୁମ୍ଭେ ଭଲ ଅବା ମନ୍ଦ ଯେପରି କର୍ମ କରିବ ତହିଁର ପ୍ରତିଫଳ ଅବଶ୍ୟ ତୁମ୍ଭଙ୍କୁ ଭୋଗ କରିବାକୁ ହେବ । ହେ ବୁଦ୍ଧିମାନ, ତୁମେ ଅତି ନିର୍ଜନରେ, ଅତିସାବଧାନରେ କିଛି କମିବାର ମନେକରୁଅଛ, ମନୁଷ୍ୟର ଦୃଷ୍ଟିରେଖାର ଅନ୍ତରାଳରେ ରହିଛ । ଭୂମିରେ ଗୋଟିଏ କ୍ଷୁଦ୍ରବୀଜ ପୋତିବାବେଳେ କେହି ଦେଖୁନାହିଁ; ମାତ୍ର ସେଥିରୁ ଜାତ ବୃକ୍ଷ ମନୁଷ୍ୟ ନେତ୍ର ଅତିକ୍ରମ କରିବାର ଉପାୟ ନାହିଁ । ପୁଣି ତୁମ୍ଭେ ଯେଉଁ ବୃକ୍ଷରୋପଣ କଲ, ତାହାର ଫଳ ତୁମ୍ଭଙ୍କୁ କଦାଚିତ୍ ବଂଶ ପରମ୍ପରାକୁ ଭୋଗ କରିବାକୁ ହେବ ।" (୪) ଏହି କର୍ମଫଳ ନିକଟରେ ମନୁଷ୍ୟର ସକଳ ପୁରୁଷାକାର ପରାଜିତ ହୁଏ । ସେଥିରୁ ତାର ମୁକ୍ତି ନାହିଁ । ତେଣୁ କର୍ମଫଳରୁ 'ଛମାଣ ଆଠଗୁଣ୍ଠ'ର ମଙ୍ଗରାଜ, ଚମ୍ପା, ଗୋବିନ୍ଦା ଭଣ୍ଡାରୀ, ଗୋବରା ଜେନା ବା 'ମାମୁଁ'ର ଚନ୍ଦ୍ରକଳା, ନାଜର ନଟବର ଦାସ, କିମ୍ବା—'ପ୍ରାୟଶ୍ଚିତ୍ତ'ର ସଙ୍କର୍ଷଣ ମହାନ୍ତି ବା ଗୋବିନ୍ଦଚନ୍ଦ୍ର କେହି ମୁକ୍ତି ପାଇନାହାନ୍ତି ।

ଜୀବନସାରା ଭଲ ଅବା ମନ୍ଦ କର୍ମକରି ଉପନ୍ୟାସର ପରିଣତିରେ ଫକୀର ମୋହନ ତାଙ୍କର ପ୍ରାୟ ସମସ୍ତ ଚରିତ୍ରଙ୍କୁ ଅଲଙ୍ଘନୀୟ କର୍ମଫଳ ଭୋଗ କରିବାକୁ ଛାଡ଼ି ଦେଇଛନ୍ତି ।

---

(୪) ଛ'ମାଣ ଆଠଗୁଣ୍ଠ—ଫକୀରମୋହନ ସେନାପତି ।

ତେଣୁ ଫକୀରମୋହନଙ୍କ ଜୀବନାଦର୍ଶ ଯେ ଅନେକାଂଶରେ କର୍ମଫଳ ଦ୍ୱାରା ପ୍ରଭାବିତ ଥିଲା, ତାହା ଅସ୍ୱୀକାର କରାଯାଇ ନପାରେ ।

**(୩) ସାମାଜିକ ସଂସ୍କାର :**

ସାମାଜିକ ସଂସ୍କାର ହେଉଛି ଫକୀର ମୋହନଙ୍କ ଜୀବନାଦର୍ଶର ଅନ୍ୟତମ ଉଲ୍ଲେଖ ଯୋଗ୍ୟ ଦିଗ । ଫକୀର ମୋହନ ସେନାପତି ତାଙ୍କର ଉପନ୍ୟାସ, କ୍ଷୁଦ୍ରଗଳ୍ପ ଓ କବିତା ମାନଙ୍କରେ ତତ୍କାଳୀନ ସାମାଜିକ ସ୍ୱରୂପକୁ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସମାଜ ସଂସ୍କାର ପାଇଁ ମଧ୍ୟ ପ୍ରେରଣା ପ୍ରଦାନ କରିଯାଇଛନ୍ତି । ସେ ତାଙ୍କ ଉପନ୍ୟାସ ମାନଙ୍କରେ ଏକ ବ୍ୟଙ୍ଗାତ୍ମକ ଦୃଷ୍ଟିକୋଣ ନେଇ ପ୍ରଚଳିତ ସାମାଜିକ କୁସଂସ୍କାର ଓ ପ୍ରଶାସନିକ ସ୍ୱେଚ୍ଛାଚାରିତାକୁ ବର୍ଣ୍ଣନା କରିଛନ୍ତି । ସେ ଚାହିଁଛନ୍ତି ଏକ ସୁନ୍ଦର, ସୁସ୍ଥ ଆଦର୍ଶ ସମାଜ ଗଠନ କରିବାକୁ । ଇଂରେଜ ଶାସନ ପ୍ରତିଷ୍ଠା ପରେ ଓଡ଼ିଶାର ସାମାଜିକ ଜୀବନରେ ଦେଖାଦେଇଥିବା ବିଭିନ୍ନ ପରିବର୍ତ୍ତନକୁ ସେ ମନୋଜ୍ଞ ଭାବରେ ବ୍ୟକ୍ତ କରିଛନ୍ତି । ସେ ଚାହୁଁଛନ୍ତି—"ଇଂରେଜୀ ଶିକ୍ଷା ଓ ସଭ୍ୟତା ପ୍ରତି ସତର୍କ ହେବା, ଯୁଗଯୁଗର ଅନ୍ଧବିଶ୍ୱାସକୁ ଦୂରୀଭୂତ କରିବା, ପ୍ରଶାସନିକ ଓ ବିଚାର ବିଭାଗରୁ ଦୁର୍ନୀତି ଲୋପ କରିବା ଓ ଶୋଷକ ଗୋଷ୍ଠୀର ଆବରଣ ଉନ୍ମୋଚନ କରି ସେ ସ୍ଥଳେ ଏକ ଆଦର୍ଶ ଓ ପବିତ୍ର ଜୀବନ ପ୍ରତିଷ୍ଠା କରିବା । ଏହିସବୁ ସମାଜ-ସଂସ୍କାର ଚିନ୍ତାର ଉତ୍ସାହର ଭାବେ ତାଙ୍କ—"ଛମାଣ ଆଠଗୁଣ୍ଠ," 'ମାମୁଁ' ଓ 'ପ୍ରାୟଶ୍ଚିତ୍ତ' ଉପନ୍ୟାସକୁ ଧରି ନିଆଯାଇ ପାରେ । ଫକୀର ମୋହନ ତାଙ୍କ ସମସାମୟିକ ସମାଜ ପାଇଁ ଯେଉଁ ସଂସ୍କାର ଆବଶ୍ୟକ କରୁଥିଲେ, ତାହାକୁ ସେ ନିଜର ଜ୍ଞାତ ଓ ଅଜ୍ଞାତସାରରେ ତାଙ୍କ ଉପନ୍ୟାସ ମାନଙ୍କରେ ବର୍ଣ୍ଣନା କରିଯାଇଛନ୍ତି । ତେଣୁ ସାମାଜିକ ସଂସ୍କାର ତାଙ୍କ ଜୀବନାଦର୍ଶର ଅନ୍ୟତମ ଉଜ୍ଜ୍ୱଳ ଆଲେଖ୍ୟ ।

**(୪) ଶୋଷଣ—ଅତ୍ୟାଚାର ପ୍ରତି ସଚେତନ ଓ ଶୋଷକର ଅଧଃପତନ :**

ଫକୀରମୋହନ ଥିଲେ ଜଣେ ଦକ୍ଷ ପ୍ରଶାସକ । ତାଙ୍କ କର୍ମମୟ ମଧ୍ୟ ତଦାନୁସାରେ ଥିଲା ଗଭୀର ଓ ଅନ୍ତରଙ୍ଗ । ସେ ପଲ୍ଲୀଜନତାର ଶୋଷିତ ଜୀବନ ଓ ଜମିଦାର ମାନଙ୍କର ଶୋଷଣର ଚିତ୍ରକୁ ତାଙ୍କ ପ୍ରଶାସକ ଜୀବନରେ ବେଶ୍ ଭଲଭାବେ ହୃଦୟଙ୍ଗମ କରିଛନ୍ତି । ତେଣୁ ତାଙ୍କ ଜୀବନାଦର୍ଶ ଶୋଷଣ—ପେଷଣ ତଥା ଅତ୍ୟାଚାରକୁ ଚିତ୍ରିତ କରିବାରେ ଏକନିଷ୍ଠ ଭାବ ପ୍ରଦର୍ଶନ କରିଛି । ତାଙ୍କର ପ୍ରାୟ ଗଳ୍ପ ତଥା ଉପନ୍ୟାସରେ ସେ ଶୋଷଣ ଓ ଅତ୍ୟାଚାରର କୁପରିଣତି ସମ୍ପର୍କରେ ଯଥେଷ୍ଟ ସଚେତନ ଥିବାର ପ୍ରମାଣ ଦେଇଅଛନ୍ତି ।

ଫକୀରମୋହନ ସେନାପତିଙ୍କର ଉପନ୍ୟାସର ମୂଳବୀଜ ହେଉଛି ଶୋଷଣ । ଶୋଷକ ଶ୍ରେଣୀ ନିର୍ମମ ନିଷ୍ଠୁର ଭାବରେ ଶୋଷଣ କରିଚାଲିଛି ଶୋଷିତ ଶ୍ରେଣୀକୁ । ଶୋଷିତ ଶୋଷକ ବିରୁଦ୍ଧରେ ପ୍ରତିବାଦ କରିପାରୁନାହିଁ । ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସେ ପାଟି ଫିଟାଇ ପାରିନାହିଁ । ସେ କେବଳ ସହୁଛି ଶୋଷକ ଅତ୍ୟାଚାରକୁ । ସେ ଲୁହ ଗଡ଼ାଉଛି । ବୁକୁଫଟା ପ୍ରଳାପ କରୁଛି । କେହି ତାର ବିଳାପ—ପ୍ରଳାପ ଶୁଣିନାହିଁ କିମ୍ବା କେହି ତାକୁ ସାହାଯ୍ୟ କରିନାହିଁ । ତାର ସରଳତାର ସୁଯୋଗ ନେଉଛି ଅର୍ଥଗୃଧ୍ନୁ ଶୋଷକଶ୍ରେଣୀ । କିନ୍ତୁ ଏ ଶୋଷଣର ଏକ ପରିଣତି ମଧ୍ୟ ଅଛି । ଏହାର ପରିଣତି ଅତି ଭୟାବହ । ସରଳ ନିରୀହ ଜନତାକୁ ନାନାଭାବେ ଅତ୍ୟାଚାରିତ, ଲାଞ୍ଛିତ କରି ଶୋଷକ ଶ୍ରେଣୀ ଚିରଦିନ ଆପଣାର ବିଜୟ କେତନ ଉଡ଼ାଇ ପାରିନାହିଁ । ତାର ଅବଶ୍ୟମ୍ଭାବୀ ପତନ ଘଟିଛି । ଫକୀରମୋହନ ଶୋଷକର ପତନକୁ ବିଶ୍ୱାସ କରନ୍ତି । ତେଣୁ ସେ ଶୋଷକକୁ ଅତି ନିର୍ମମ ଦଣ୍ଡ ଦେଇଛନ୍ତି । ପ୍ରତ୍ୟେକ ଶୋଷକ ଚରିତ୍ର କର୍ମଫଳ ଦ୍ୱାରା ଦଣ୍ଡିତ ହୋଇଛନ୍ତି । 'ଛମାଣ ଆଠଗୁଣ୍ଠ'ର ରାମଚନ୍ଦ୍ର ମଙ୍ଗରାଜ, ଚମ୍ପା, 'ମାମୁ'ର ଚନ୍ଦ୍ରକଳା, ନାଜର ନଟବର ଦାସ, ତଥା ପ୍ରଭୁଦୟାଲ. 'ପ୍ରାୟଶ୍ଚିତ୍ତ'ର ସଂକର୍ଷଣ ମହାନ୍ତି ପରି ଚରିତ୍ର କେହି କର୍ମଫଳରୁ ଏଡ଼ିଯାଇ ପାରିନାହାନ୍ତି । ଅନ୍ୟର ସର୍ବନାଶ କଲେ ତାହାର ପରିଣତି ଯେ ବିଷମ, ଶୋଷକ ଚରିତ୍ରର ପତନ ମାଧ୍ୟମରେ ତାହାହିଁ ପ୍ରମାଣିତ କରିଛନ୍ତି ଔପନ୍ୟାସିକ ଫକୀର ମୋହନ । ତେଣୁ ଶୋଷଣ ଅତ୍ୟାଚାର ପ୍ରତି ଲୋକଙ୍କ ଦୃଷ୍ଟି ଆକର୍ଷଣ କରିବାପାଇଁ ଚମ୍ପା, ମଙ୍ଗରାଜ, ନାଜବର ନଟବର ଦାସଙ୍କ ପାଇଁ ସେ ଯେଉଁ ଦଣ୍ଡଭୟ ଦେଖାଇଛନ୍ତି, ତାହା ତାଙ୍କ ଜୀବନର ଅନ୍ୟତମ ଆଦର୍ଶ ହୋଇ ରହିଛି ।

### (୫) ଅଭିଶାପ ପ୍ରତିବିଶ୍ୱାସ ଓ ଅଭିଶପ୍ତ ପ୍ରତି ସମ୍ବେଦନଶୀଳତା :

ଅଭିଶାପ ପ୍ରତି ବିଶ୍ୱାସ ଓ ଅଭିଶପ୍ତ ପ୍ରତି ସମ୍ବେଦନା ପ୍ରକାଶ ଫକୀରମୋହନଙ୍କର ଜୀବନର ଅନ୍ୟତମ ଆଦର୍ଶ । ଧନ, କ୍ଷମତା, ପ୍ରତିପତ୍ତିର ମୋହରେ ଶୋଷକ, ଚିର ଅବହେଳିତ, ଦରିଦ୍ର ଜନତାକୁ ଶୋଷଣ କରେ; ମାତ୍ର ଏତେବେଳେ ସେ ପରିଣତି ପ୍ରତି ସଚେତନ ନଥାଏ । ଶୋଷିତର ଯେଉଁ ଆର୍ତ୍ତ ଚିତ୍କାର, ନିଷ୍ପେଷିତ ଜୀବନର ଅଶ୍ରୁ; ଅତ୍ୟାଚାରିତ ମନର ଦୀର୍ଘଶ୍ୱାସ ବାହାରିଥାଏ, ତାହା ଯେ ଶୋଷକ ଉପରେ ପଡ଼ିପାରେ ତାହା ହୁଏତ ସେ ହୃଦୟଙ୍ଗମ କରିପାରି ନଥାଏ । କିନ୍ତୁ ଫକୀରମୋହନ ଅବହେଳିତ, ନିଷ୍ପେଷିତ ଜନତାର ଆକୁଳ, ଆତୁର ହୃଦୟର ବ୍ୟଥାତୁର ଅଭିଶାପକୁ ହୃଦୟଙ୍ଗମ କରିଛନ୍ତି । ଗରିବର ତତଲା ନିଃଶ୍ୱାସ ବା ଶୋଷିତ ମଣିଷର ଆର୍ତ୍ତଚିତ୍କାରରେ ଯେ ଶୋଷକର ପ୍ରାସାଦ ଦିନେ ଭସ୍ମୀଭୂତ ହୋଇଯିବ, ତାହା ଫକୀରମୋହନ ଅନୁଭବ କରିଥିଲେ । ଏହା ଅଭିଶପ୍ତ, ନିଷ୍ପେଷିତ ମଣିଷମାନଙ୍କ ପାଇଁ ଫକୀରମୋହନଙ୍କ

ସମ୍ବେଦନଶୀଳତା ବ୍ୟତୀତ ଅନ୍ୟ କିଛି ନୁହେଁ । ଛ 'ମାଣ ଆଠଗୁଣ୍ଠ'ରେ ରାମଚନ୍ଦ୍ର ମଙ୍ଗରାଜ ଭଗିଆଙ୍କର ଜମି ନେବା ପରେ, ସାରିଆର ସାରେଦ୍ଧ ଓ ନେତଗୋଇଙ୍କୁ ଆତ୍ମଘାତ କଲାପରେ ଏମାନଙ୍କ ଦୁଃଖଭରା ବୁକୁର କୋହ ଓ ନୟନର ଅଶ୍ରୁପାତରେ ତାର ପତନ ଘଟିଛି । ଏମାନଙ୍କ ନିଷ୍ପେଷିତ ପ୍ରାଣରୁ ଯେଉଁ ଅଭିଶାପ ବାହାରିଛି, ତାହା ରାମଚନ୍ଦ୍ର ମଙ୍ଗରାଜଙ୍କ ପତନର କାରଣ ହୋଇଛି । 'ମାମୁ' ଉପନ୍ୟାସରେ ନାଜର ନଟବର ଦାସଙ୍କ କୁଟଚକ୍ର ପାଇଁ ତାଙ୍କର ମଧ୍ୟ ପତନ ଘଟିଛି । ଏ କ୍ଷେତ୍ରରେ ଫକୀର ମୋହନଙ୍କର ଯେ ଅଭିଶାପ ପ୍ରତି ଏକ ବଦ୍ଧମୂଳ ଧାରଣା ଥିଲା ଓ ଅଭିଶପ୍ତ ପ୍ରତି ସର୍ବଦା ସହାନୁଭୂତି ଥିଲା, ତାହା ଅସ୍ୱୀକାର କରି ହୁଏନାହିଁ ।

### (ଚ) ନୀତି—ଅନୀତି ବିଚାରରେ ଦୋଷୀକୁ ଦଣ୍ଡ ଦେବାର ପ୍ରୟାସ :

ଫକୀରମୋହନଙ୍କ ଜୀବନାଦର୍ଶର ଅନ୍ୟତମ ଦିଗ ହେଲା ନୀତିଅନୀତିର ବିଚାର ଓ ଦୋଷୀକୁ ଉପଯୁକ୍ତ ଦଣ୍ଡବିଧାନ । 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ ଫକୀରମୋହନ ଜଣେ ନୀତିବାଦୀ ସ୍ରଷ୍ଟା । ଅନ୍ୟାୟର ପ୍ରତିବାଦ ଏବଂ ସାଧୁତାର ପ୍ରଶଂସା ମାଧ୍ୟମରେ ତାଙ୍କର ଏହି ନୀତିବାଦ ସ୍ପଷ୍ଟ ରୂପାୟିତ । ଦୁର୍ନୀତି ଗ୍ରସ୍ତ ସମାଜର ଧନୀ—ଦରିଦ୍ର ସମସ୍ୟାକୁ ଆଲୋକିତ କରି ସେ ନିର୍ଯ୍ୟାତିତ ଗୋଷ୍ଠୀଙ୍କ ପ୍ରତି ସମବେଦନା ଜ୍ଞାପନ କରିଛନ୍ତି । ଶୋଷଣକାରୀ, କୁଚକ୍ରୀମାନଙ୍କର ଅସାଧୁ ଆଚରଣ ପାଇଁ ସେ ନିର୍ମମ ଦଣ୍ଡର ବିଧାନ କରିଛନ୍ତି । ସେମାନଙ୍କ ପ୍ରତି ପାଠକମାନଙ୍କ ମନରେ ଘୃଣା ଓ ତାଚ୍ଛଲ୍ୟ ଭାବ ଜାତ କରି ଉପହସିତ କରାଇଛନ୍ତି । ତାଙ୍କ ଉପନ୍ୟାସର ଏହି ଶୋଷକ—ଶୋଷିତ, ଧନୀ-ଦରିଦ୍ର ସଂଘର୍ଷରେ ଶୋଷିତ ଓ ଦରିଦ୍ର ମଣିଷହିଁ ପରୋକ୍ଷରେ ଜୟଲାଭ କରିଛି । 'ଛମାଣ ଆଠଗୁଣ୍ଠ'ର ମଙ୍ଗରାଜଙ୍କ ଚକ୍ରାନ୍ତ ନିକଟରେ ସାରିଆ-ଭଗିଆଙ୍କ ଜୀବନ ବିପନ୍ନ ହୋଇଛି ସତ୍ୟ, କିନ୍ତୁ ସେମାନଙ୍କ ଅଭିଶାପର କରାଳ ବହ୍ନିରେ ମଙ୍ଗରାଜ ଓ ତାଙ୍କର ଅନୁଗାମୀମାନଙ୍କର ଜୀବନ ଅତି କରୁଣ ଭାବରେ ଭସ୍ମୀଭୂତ ହୋଇଯାଇଛି । ସେଥିପାଇଁ କୁହାଯାଇପାରେ ଏହି ଉପନ୍ୟାସରେ ପ୍ରକୃତ ବିଜୟୀ ମଙ୍ଗରାଜ ନୁହନ୍ତି; ବିଜୟୀ ହୋଇଛନ୍ତି ସାରିଆ ଓ ଭଗିଆ । ସେହିପରି ମଙ୍ଗରାଜଙ୍କ ପରାମର୍ଶ ଦାତ୍ରୀ, ଷଡ଼ଯନ୍ତ୍ରକାରିଣୀ ଚମ୍ପା ଓ ମଙ୍ଗରାଜଙ୍କ ବୁଦ୍ଧିରେ ପରିଚାଳିତ ଚୌକିଦାର ଗୋବରା ଜେନା ନିଜନିଜର ପରିଣତି ଭୋଗକରି ତଦାନୁସାରେ ଦଣ୍ଡ ପାଇଛନ୍ତି । ଦୋଷୀକୁ ଦଣ୍ଡଦେଇ ନୈତିକତାର ବିଜୟ ଘୋଷଣା କରିଛନ୍ତି ଔପନ୍ୟାସିକ ଫକୀର ମୋହନ । 'ମାମୁ' ବା 'ପ୍ରାୟଶ୍ଚିତ' କିମ୍ବା 'ଲଛମା'ରେ ମଧ୍ୟ ପ୍ରକୃତ ଦୋଷୀକୁ ଦଣ୍ଡବିଧାନ କରିବା ପାଇଁ ଔପନ୍ୟାସିକଙ୍କର ମହାପ୍ରୟାସ ପରିଲକ୍ଷିତ ହୁଏ ।

### (ଛ) ସତ୍ୟବାଦୀ ଓ ଭଗବତ୍ ଇଚ୍ଛାର ଅଲଙ୍ଘନୀୟ ମୋହ ପ୍ରକାଶ :

ଫକୀରମୋହନଙ୍କର ଅନ୍ୟତମ ଜୀବନାଦର୍ଶ ହେଉଛି ଭାଗ୍ୟବାଦ । ସେ ଥିଲେ ଭାଗ୍ୟବାଦୀ । ସତ୍ୟ-ଧର୍ମ-ନ୍ୟାୟ ତାଙ୍କ ଜୀବନର ବ୍ରତ ଥିଲା; କିନ୍ତୁ ବହୁ କ୍ଷେତ୍ରରେ ତାଙ୍କୁ ନାନା

କୃଷ୍ଣମାଠର ଆଶ୍ରୟ ନେବାକୁ ହୋଇଥିଲା । ସେଥିପାଇଁ ତାଙ୍କ ମନରେ ଦାରୁଣ ଅନୁଶୋଚନା ଜାତ ହୋଇଥିଲା । ମଣିଷ ଅନ୍ୟାୟ କଲେ, ପାପ କଲେ, ଅତ୍ୟାଚାର କଲେ ଏକ ଅଦୃଶ୍ୟ ଶକ୍ତିଦ୍ୱାରା ଦଣ୍ଡ ପାଏ—ଏହା ତାଙ୍କର ବିଶ୍ୱାସକୁ ସ୍ପର୍ଶ କରିଥିଲା । ଏହି ଆଦର୍ଶ ତାଙ୍କର କେତେକ ଉପନ୍ୟାସରେ ରୂପାୟିତ । ଭଗବାନଙ୍କ ନିକଟରେ ଆତ୍ମସମର୍ପଣ କଲେ ସକଳ ପାପର ବିନାଶ ଘଟେ, ସେ ଏକ ମାନସିକ ଶାନ୍ତି ପାଏ, ସେ ତାହା 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ମଙ୍ଗରାଜଙ୍କ ଅନ୍ତିମକାଳ ଓ 'ମାମୁ'ର ନଟବର ଦାସଙ୍କ ଜେଲ୍ ଭୋଗ କାଳରେ ବର୍ଣ୍ଣନା କରିଛନ୍ତି ।

'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ମଧ୍ୟ ଫକୀରମୋହନଙ୍କର ଏହି ଜୀବନାଦର୍ଶ ପ୍ରତିଫଳିତ । ଏଥିରେ ସେ ଭଗବତ୍ ଇଚ୍ଛାର ଅଲଙ୍ଘନୀୟତା ଓ ତାହା ନିକଟରେ ଆତ୍ମସମର୍ପଣ, ପୁଣି ଅବିଚଳିତ ଭାବରେ ତାହାକୁ ଗ୍ରହଣ କରି ନେବାରେ ଶାନ୍ତି ବୋଲି ବର୍ଣ୍ଣନା କରିଛନ୍ତି । 'ଗୀତାର ବାଣୀ—"ସର୍ବ ଧର୍ମାନ୍ ପରିତ୍ୟଜ୍ୟ, ମାମେକଂ ଶରଣଂ ବ୍ରଜ"—'ପ୍ରାୟଶ୍ଚିତ୍ତ'ର ତାତ୍ତ୍ୱିକ ଭିତ୍ତିଭୂମି । ନିଃସଙ୍ଗ ରୋଗଶଯ୍ୟାର ବହୁ ଦୁର୍ଯୋଗ ଓ ଦୁର୍ଭାଗ୍ୟ ମଧ୍ୟରେ ଫକୀରମୋହନ ଭବିତବ୍ୟ ଓ ଭଗବତ୍ ଇଚ୍ଛାର ଅଲଙ୍ଘନୀୟତା ନିକଟରେ ଆତ୍ମସମର୍ପଣ କରି ସମ୍ଭବତଃ ଶାନ୍ତି ଓ ସାନ୍ତ୍ୱନା ଲାଭ କରିଥିଲେ ।" (୫) ତାଙ୍କର ଏହି ସାତ୍ତ୍ୱିକ ଭାବ 'ପ୍ରାୟଶ୍ଚିତ୍ତ'ର ଗୋବିନ୍ଦ ଚନ୍ଦ୍ରଙ୍କ ବ୍ୟାକୁଳତାରେ ନିମ୍ନମତେ ପ୍ରକାଶିତ ହୋଇଛି—

> "ଈଶ୍ୱର ନିର୍ଭର ମନୁଷ୍ୟକୁ ଅନେକ ବିପଦରୁ ରକ୍ଷା କରେ; ଦୁଃଖ ଦୈନ୍ୟ ଓ ଯନ୍ତ୍ରଣା ବହନ କରିବାକୁ ଶକ୍ତି ଓ ସାମର୍ଥ୍ୟ ଦିଏ । × × × × ସାମାଜିକ ଧର୍ମ, ନାନା ମିଥ୍ୟା, ପ୍ରତାରଣା ଓ ଭଣ୍ଡତାର ଜାଲରେ ଜଡ଼ିତ । ତଥାପି ମାନବ ଅଲୌକିକ ଓ ଅତିନ୍ଦ୍ରିୟର ଆଶ୍ରୟ ଗ୍ରହଣ କରେ । ଏହି ଆଶ୍ରୟ ପାଇଁ ଗୋବିନ୍ଦ ଚନ୍ଦ୍ରଙ୍କ ମନ ଅତି ବ୍ୟାକୁଳ ।" (୬)

ଫକୀରମୋହନଙ୍କ ଜୀବନାଦର୍ଶ ବହୁବିଧ ବୈଶିଷ୍ଟ୍ୟରେ ବିମଣ୍ଡିତ । ସେ ପାପ-ପୁଣ୍ୟରେ ଥିଲେ ବିଶ୍ୱାସୀ । ପାପକୁ ଘୃଣାକରି ପାପୀକୁ ଆପଣାର କରିବା ପାଇଁ ତେଣୁ ସେ ତାଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ପରାମର୍ଶ ଦେଇଛନ୍ତି । ପୁଣି ତାଙ୍କ ଜାତି ପ୍ରେମ ଥିଲା ତାଙ୍କ ଜୀବନର ଅନ୍ୟତମ ମହାଦର୍ଶ । ସ୍ପଷ୍ଟବାଦିତା ଥିଲା ତାଙ୍କ ଜୀବନାଦର୍ଶର ଅନ୍ୟତମ ଗୁଣ । ଏହି ସବୁ ଆଦର୍ଶରେ ବିଭୂଷିତ ଫକୀରମୋହନ ତାଙ୍କ ସାହିତ୍ୟରେ ତାଙ୍କର ଏହି ଆଦର୍ଶକୁ ଅତି ପ୍ରାସଙ୍ଗିକ ଭାବରେ ଉପସ୍ଥାପିତ କରିଅଛନ୍ତି ।

---

(୫) ଫକୀରମୋହନ ସମୀକ୍ଷା, ପୃ-୧୫୬।୧୫୮

(୬) ଫକୀରମୋହନ ସେନାପତି—ପ୍ରାୟଶ୍ଚିତ୍ତ । ୫

ଅବସ୍ମରଣୀୟ ଅତୀତ ତଥା ବର୍ତ୍ତମାନର ସନ୍ଧିକ୍ଷଣରେ ଅବସ୍ଥିତ ପୃଷ୍ଠଭୂମିରେ ଫକୀରମୋହନଙ୍କର ବିକାଶ ହୋଇଥିଲା । ବର୍ତ୍ତମାନର ନୂତନ ମୂଲ୍ୟବୋଧ ସେତେବେଳେ ପର୍ଯ୍ୟନ୍ତ ସୁଦ୍ଧା ସୁନିର୍ଦ୍ଦିଷ୍ଟ ହୋଇନଥିଲା । ତେଣୁ ଫକୀରମୋହନ ବର୍ତ୍ତମାନର ସହଜ ନିର୍ଦ୍ଦେଶ ଅପେକ୍ଷା ଅତୀତର ପରୀକ୍ଷିତ ଓ ପ୍ରତିଷ୍ଠିତ ପରମ୍ପରାକୁ ସମାଜ ଜୀବନକୁ ନିୟାମକ କରିଥିଲେ ଓ ଏଥିରେହିଁ ତାଙ୍କ ଜୀବନାଦର୍ଶ ମହିମା-ମଣ୍ଡିତ, ଗୌରବ-ଭୂଷିତ ତଥା କାନ୍ତିମୟ ହୋଇଉଠିଥିଲା ଠିକ୍ ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣଙ୍କ ଜୀବନାଦର୍ଶ ପରି ।

## ହଥର୍ଣ୍ଣ ଓ ଫକୀରମୋହନଙ୍କ ଜୀବନାଦର୍ଶର ତୁଳନାତ୍ମକ ବିଚାର :

ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣ ଓ ଓଡ଼ିଆ ଔପନ୍ୟାସିକ ଫକୀରମୋହନ କାଳ ଦୃଷ୍ଟିରୁ ପ୍ରାୟତଃ ସମସାମୟିକ, ଚିନ୍ତାଧାରା ଦୃଷ୍ଟିରୁ ପରସ୍ପରର ଅତି ନିକଟବର୍ତ୍ତୀ ଓ ଆଦର୍ଶ ଦୃଷ୍ଟିରୁ ପରସ୍ପରର ସମ୍ବନ୍ଧ ଅତ୍ୟନ୍ତ ନିବିଡ଼ । ଏମାନଙ୍କ ସମୟର ସାମାଜିକ ପୃଷ୍ଠଭୂମି, ରାଜନୈତିକ ଆଦର୍ଶବାଦ ମଧ୍ୟ ସେମାନଙ୍କ ଜୀବନାଦର୍ଶରେ ଆଶ୍ଚର୍ଯ୍ୟ ରକମର ସାମ୍ୟ ପ୍ରକଟିତ ହୋଇଛି । ବ୍ୟକ୍ତିଗତ ଆଦର୍ଶବୋଧର ସାମ୍ୟ ଓ ସାହିତ୍ୟଗତ ଆଦର୍ଶ-ବୋଧର ସାମ୍ୟ ଏହି ଦୁଇଟି ଭିନ୍ନ ଭିନ୍ନ କଥା ହେଲେହେଁ, ଜଣେ ସାହିତ୍ୟିକ ପକ୍ଷେ ଏହି ଦୁଇ ଆଦର୍ଶର ଭିନ୍ନତା ଆଦୌ ଲକ୍ଷଣୀୟ ନୁହେଁ; କାରଣ ତାର ବ୍ୟକ୍ତିଗତ ଜୀବନାଦର୍ଶ ତାର ସାହିତ୍ୟରେ ହିଁ ପ୍ରତିଫଳିତ ହୋଇଥାଏ ।

ଔପନ୍ୟାସିକ ହଥର୍ଣ୍ଣ ଓ ଫକୀରମୋହନଙ୍କ ଜୀବନାଦର୍ଶ ଏହି ଦୃଷ୍ଟିରୁ ପରସ୍ପର ସହ କେଶ୍ ସମ୍ବନ୍ଧାନ୍ୱିତ ବୋଧ ହୁଅନ୍ତି । ହଥର୍ଣ୍ଣଙ୍କ ଜୀବନରେ ଯେଉଁ ଯେଉଁ ଝଡ଼ ଆସିଥିଲା, ସେ ତାହାକୁ ଧୈର୍ଯ୍ୟର ସହ ମୁକାବିଲା କରି ସେଥିରୁ ଯେଉଁ ଅନୁଭୂତି ହାସଲ କରିଥିଲେ, ଓ ତାକୁ ଯେପରି ନିଜର ଜୀବନାଦର୍ଶ ଦେଇ ଆପଣାର ସାହିତ୍ୟରେ ବ୍ୟକ୍ତ କରିଯାଇଛନ୍ତି ଔପନ୍ୟାସିକ ଫକୀରମୋହନ ଅନୁରୂପ ଭାବେ ତାହାହିଁ କରିଛନ୍ତି । ତେଣୁ ଉଭୟ ଔପନ୍ୟାସିକଙ୍କୁ ସେମାନଙ୍କ ଉପନ୍ୟାସର ଘଟଣାପ୍ରବାହରେ ଓ ଚରିତ୍ର ମାଧ୍ୟମରେ ବେଳେବେଳେ ପାଠକ ଭେଟେ ।

ହଥର୍ଣ୍ଣ କର୍ମଫଳରେ ବିଶ୍ୱାସୀ ଥିଲେ । ତେଣୁ ତାଙ୍କ ଉପନ୍ୟାସ "The House of the Seven Gables' ଓ 'The Scarlet Letter'ରେ ସେ କର୍ମ-ଫଳର ଅଲଙ୍ଘନୀୟ ପରିଣତି ସମ୍ପର୍କରେ ବର୍ଣ୍ଣନା କରିଛନ୍ତି ଏବଂ କର୍ମଫଳାନୁସାରେ ସେ ତାଙ୍କ ଉପନ୍ୟାସର ପ୍ରାୟ ଚରିତ୍ରଙ୍କୁ ଦଣ୍ଡିତ କରିଅଛନ୍ତି । ଅନୁରୂପ ଭାବେ ଔପନ୍ୟାସିକ ଫକୀରମୋହନଙ୍କର ମଧ୍ୟ କର୍ମଫଳରେ ବିଶ୍ୱାସ ଥିଲା । କୌଣସି ବ୍ୟକ୍ତି ଯେ କର୍ମଫଳର ଅଲଙ୍ଘନୀୟ ପରିଣତିକୁ ଅତିକ୍ରମ କରିଯାଇପାରେ ତା' ସେ କେବେ ହୁଏତ ଚିନ୍ତାକରି-. ନଥିଲେ । ତେଣୁ ତାଙ୍କ ଉପନ୍ୟାସ ଜଗତରି ଶୂର. ଚରିତ୍ର ମଙ୍ଗରାଜ, ଚମ୍ପା, ନାଜର

ନଟବର ଦାସ । ଚନ୍ଦ୍ରକଳା, ସଙ୍କର୍ଷଣ ମହାନ୍ତି, ଗୋପବ ମହାନ୍ତି ଓ ପ୍ରଭୁ ଦୟାଳ ପ୍ରଭୃତି ଏହି ଅଲକ୍ଷଣୀୟ କର୍ମଫଳର ଶିକାର ହୋଇଛନ୍ତି ଅତି ଶୋଚନୀୟ ଭାବେ ଠିକ୍ ହଥର୍ଣ୍ଣଙ୍କ କର୍ଣ୍ଣେଲ୍, ଜର୍ଜ ହେଷ୍ଟର ବା ଡମେସ୍‌ଡ଼େଲ୍‌ଙ୍କ ପରି । ତେଣୁ କର୍ମଫଳରେ ବିଶ୍ୱାସ ସ୍ଥାପନ କ୍ଷେତ୍ରରେ ଉଭୟ ଔପନ୍ୟାସିକଙ୍କ ଜୀବନାଦର୍ଶରେ ସାମ୍ୟ ପରିଲକ୍ଷିତ ହୁଏ ବୋଲି ନିର୍ଦ୍ଦିଷ୍ଟ ଭାବେ କୁହାଯାଇପାରେ ।

ହଥର୍ଣ୍ଣ ଓ ଫକୀରମୋହନ ଉଭୟଙ୍କ ଜୀବନର ଅନ୍ୟତମ ଆଦର୍ଶ ଥିଲା ସମାଜ ସଂସ୍କାର । ହଥର୍ଣ୍ଣ ତତ୍କାଳୀନ ରକ୍ଷଣଶୀଳ ଆମେରିକୀୟ ସମାଜ, ଥିଲାବାଲା ନଥିଲାବାଲା ମଧ୍ୟରେ ଥିବା ପାର୍ଥକ୍ୟ, ମନୁଷ୍ୟ-ମନୁଷ୍ୟ ମଧ୍ୟରେ ଥିବା ଘୃଣାଭାବର ସଂସ୍କାର ଶୁହିଁଥିଲେ ବେଳେ ଫକୀରମୋହନ ତତ୍କାଳୀନ ଓଡ଼ିଶାର ସାମାଜିକ ଜୀବନଧାରା, ଇଂରେଜ ଶିକ୍ଷା ସଭ୍ୟତାର ନକଲ ଅନୁକରଣ ଜମିଦାର ଓ ପ୍ରଜାଙ୍କ ମଧ୍ୟରେ ଥିବା ମତାନ୍ତରର ସଂସ୍କାର ଶୁହିଁଥିଲେ । ଅତଏବ ଉଭୟ ଔପନ୍ୟାସିକ ସଂସ୍କାରକୁ ସେମାନଙ୍କ ଜୀବନର ଏକ ଆଦର୍ଶଭାବେ ଧରିନେଇଥିବାରୁ ଏ କ୍ଷେତ୍ରରେ ମଧ୍ୟ ସେମାନଙ୍କ ଜୀବନା-ଦର୍ଶରେ ସାମ୍ୟ ଲକ୍ଷ୍ୟ କରାଯାଇପାରେ ।

'ଦୋଷୀକୁ ଦଣ୍ଡ' ଉଭୟ ଔପନ୍ୟାସିକଙ୍କ ଜୀବନର ଅନ୍ୟତମ ଆଦର୍ଶ ଥିଲା । ଯିଏ ପ୍ରକୃତ ଦୋଷୀ ତାକୁ ଦଣ୍ଡ ଦେଇ, ନୀତିବାନ୍ ଓ ଆଦର୍ଶ ଚରିତ୍ରକୁ ପୁରସ୍କୃତ କରିବା ପାଇଁ ହଥର୍ଣ୍ଣ ଯେପରି ତାଙ୍କର ଉପନ୍ୟାସମାନଙ୍କରେ ତତ୍ପର ହୋଇଉଠିଛନ୍ତି, ଫକୀର-ମୋହନ ମଧ୍ୟ ତାହାହିଁ କରିଛନ୍ତି ତାଙ୍କ ଉପନ୍ୟାସମାନଙ୍କରେ 'The House of the Seven Gables' ଓ 'The Scarlet Letter' ଉପନ୍ୟାସ ଦ୍ୱୟରେ ହଥର୍ଣ୍ଣ—କର୍ଣ୍ଣେଲ୍, ଜର୍ଜ, ହେଷ୍ଟର ଆଦି ଦୋଷୀ ଚରିତ୍ରମାନଙ୍କୁ ଯଥାସମ୍ଭବ ଦଣ୍ଡରେ ଦଣ୍ଡିତ କଲାବେଳେ ଫକୀରମୋହନ ତାଙ୍କର 'ଛ ମାଣ ଆଠ ଗୁଣ୍ଠ'ର ରାମଚନ୍ଦ୍ର ମଙ୍ଗରାଜ, ଚମ୍ପା, 'ମାମୁଁ'ର ନାଜର ନଟବର ଦାସ, ଚନ୍ଦ୍ରକଳା ଆଦି ଦୋଷୀ ଚରିତ୍ରଙ୍କୁ ଦଣ୍ଡିତ କରି ପ୍ରକୃତ ଦୋଷୀକୁ ଦଣ୍ଡଦେବାରେ ଆପଣାର ଜୀବନାଦର୍ଶକୁ ପ୍ରତିପାଦିତ କରିଅଛନ୍ତି । 'ତେଣୁ ଦୋଷୀକୁ ଦଣ୍ଡଦେବା' ଓ 'ନ୍ୟାୟବାନ୍ ନିର୍ଦୋଷ ଚରିତ୍ରଙ୍କୁ ପୁରସ୍କୃତ କରିବା ଥିଲା ଉଭୟ ହଥର୍ଣ୍ଣ ଓ ଫକୀରମୋହନଙ୍କ ଜୀବନର ଅନ୍ୟତମ ଆଦର୍ଶ ବୋଲି କୁହାଯାଇ ପାରେ ।

ହଥର୍ଣ୍ଣ ଯେପରି ତାଙ୍କ ଉପନ୍ୟାସରେ ଶୋଷଣକାରୀ, ଅତ୍ୟାଚାରୀ ଚରିତ୍ର-ମାନଙ୍କର ଭୀଷଣ ପରିସ୍ଥିତିକୁ ବର୍ଣ୍ଣନା କରିଛନ୍ତି ଓ ପାପକଲେ ପାପୀର ପରିଣତି କିପରି ବିଷମ ହୁଏ ବୋଲି ଦର୍ଶାଇଛନ୍ତି ଫକୀରମୋହନ ମଧ୍ୟ ଅନୁରୂପଭାବେ ତାଙ୍କ ଉପନ୍ୟାସରେ ଏହି ଶୋଷଣ ଓ ପାପର ବିଷମ ପରିଣତି କଥା ଉଲ୍ଲେଖ କରିଛନ୍ତି । ଉଭୟ ଔପନ୍ୟାସିକଙ୍କର ଶୋଷକ ଓ ପାପୀ ଚରିତ୍ରମାନଙ୍କ ପ୍ରତି ଏକ ନାସିକା କୁଞ୍ଚନ

ଭାବ ଥିଲା ବୋଲି ଏଥିରୁ ସ୍ପଷ୍ଟ ଅନୁମିତ ହୁଏ । ତେଣୁ ପାପୀଙ୍କୁ ପ୍ରାୟଶ୍ଚିତ ଓ ଶୋଷଣକାରୀର ନିର୍ଦ୍ଦିଷ୍ଟ ପତନ କଥା ଉଭୟ ଔପନ୍ୟାସିକଙ୍କ ଜୀବନାଦର୍ଶରେ ସ୍ଥାନ ପାଇଥିଲା । ତେଣୁ ଏ କ୍ଷେତ୍ରରେ ସେମାନଙ୍କ ଜୀବନର ଆଦର୍ଶ ସମାନ ବୋଲି କହିବାକୁ ହେବ ।

ଅଭିଶାପ ପ୍ରତି ହଥର୍ଣ୍ଣଙ୍କର ଥିଲା ଅଗାଧ ବିଶ୍ୱାସ । କୌଣସି ଲୋକଙ୍କୁ ଅନ୍ୟାୟରେ ଦଣ୍ଡିଲେ ବା ଅତ୍ୟାଚାର କଲେ ତା'ର ଅଭିଶାପରେ ସେ ଦଣ୍ଡ ପ୍ରଦାନକାରୀ ବା ଅତ୍ୟାଚାରୀର ଅଧଃପତନ ନିଶ୍ଚିତ ତାହା ସେ ବିଶ୍ୱାସ କରୁଥିଲେ । ଏହି ବିଶ୍ୱାସରେ 'The House of the Seven Gables'ର କର୍ଣ୍ଣେଲ୍ ପିନ୍‌ଚନ୍ ପରିବାରର ଅଧଃପତନକୁ ସେ ମାଉଲେଙ୍କ ଅଭିଶାପର ଫଳ ବୋଲି କହିଛନ୍ତି । ଅନୁରୂପଭାବେ ଫକୀରମୋହନ ମଧ୍ୟ ଅଭିଶାପ ବା ଅତ୍ୟାଚାରିତ ବ୍ୟକ୍ତିର ଉତ୍ତପ୍ତ ନିଶ୍ୱାସ ପଡ଼ିବା କଥାକୁ ସ୍ୱୀକାର କରିଅଛନ୍ତି । 'ଛମାଣ ଆଠଗୁଣ୍ଠ'ରେ ରାମଚନ୍ଦ୍ର ମଙ୍ଗରାଜର ପତନ ଓ ବିନାଶ ଭଗିଆ ସାରିଆଙ୍କ ଅଭିଶାପ ବା ବ୍ୟଥାତୁର ହୃଦୟର ତପ୍ତ ନିଃଶ୍ୱାସର ପରିଣତି ବୋଲି ସେ ବିଶ୍ୱାସ କରନ୍ତି । ଅତଏବ 'ଅଭିଶାପ ପ୍ରତି ବିଶ୍ୱାସ' ଓ ତଜ୍ଜନିତ ଭୟଙ୍କର ପରିଣାମ ପ୍ରତି ଆସ୍ଥା ସ୍ଥାପନ ହଥର୍ଣ୍ଣଙ୍କ ଜୀବନର ଯେପରି ଆଦର୍ଶ ଥିଲା ଫକୀରମୋହନଙ୍କ ଜୀବନର ମଧ୍ୟ ସେହିପରି ତାହା ଆଦର୍ଶ ଥିଲା ବୋଲି କୁହାଯାଇପାରେ ।

ଏତଦ୍‌ଭିନ୍ନ ହଥର୍ଣ୍ଣ ଓ ଫକୀରମୋହନ, ଉଭୟ ନୀତି ଅନୀତି, ପାପ ପୁଣ୍ୟ, କର୍ମଫଳ ଓ ଭାଗ୍ୟବାଦରେ ବିଶ୍ୱାସୀ ଥିଲେ । ତେଣୁ ଉଭୟଙ୍କ ସାହିତ୍ୟ ଦୃଷ୍ଟିରେ ଏହି ଆଦର୍ଶର ନିଚ୍ଛକ ପ୍ରତିଫଳନ ଘଟିଥିବାରୁ ସେମାନଙ୍କ ଜୀବନାଦର୍ଶରେ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ପରି ଅଭିନ୍ନ ଓ ଗୋଟିଏ ମନୁଷ୍ୟର ଦୁଇଟି ହାତ ପରି ଅବିଚ୍ଛେଦ୍ୟ ତାହା ନିଃସନ୍ଦେହରେ କୁହାଯାଇପାରେ । ଉଭୟଙ୍କ ଜୀବନାଦର୍ଶରେ ପରିଲକ୍ଷିତ ହେଉଥିବା ସାମ୍ୟପାଇଁ ପରିବେଶର ସାମାଜିକ ଭିତ୍ତିଭୂମି ଓ ତଜ୍ଜନିତ ଚିନ୍ତା-ଚେତନାର ପରିପ୍ରକାଶହିଁ ବହୁମାତ୍ରାରେ ଦାୟୀ ବୋଲି କହିବାକୁ ପଡ଼ିବ ।

□□□

# ହାର୍ଡି ଓ ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟିରେ ବୈଚିତ୍ର୍ୟ, ସାମଞ୍ଜସ୍ୟ ଓ ବୈଷମ୍ୟ :

ପୂର୍ବୋକ୍ତ ଛ'ଟି ଅଧ୍ୟାୟରେ ହାର୍ଡି ଓ ଫକୀରମୋହନଙ୍କ ସମ୍ପର୍କରେ ନାନା ଦିଗରୁ ତୁଳନାତ୍ମକ ବିଚାର କରାଯାଇଛି । ସେମାନଙ୍କ ସାହିତ୍ୟ ସୃଷ୍ଟିର ବୈଚିତ୍ର୍ୟ, ସାମଞ୍ଜସ୍ୟ ଓ ବୈଷମ୍ୟ ସମ୍ପର୍କରେ ଏହିସବୁ ଅଧ୍ୟାୟରେ ଯେ ସୂଚନା ନ ଦିଆଯାଇଛି ତାହା ନୁହେଁ, ମାତ୍ର ଏ କ୍ଷେତ୍ରରେ ତା'ର ସମ୍ୟକ୍ ସୂଚନା ଦିଆଯିବାର ଆବଶ୍ୟକତା ରହିଛି । କାରଣ ପୂର୍ବବର୍ତ୍ତୀ ଛଅଟି ଅଧ୍ୟାୟରେ ଉପରୋକ୍ତ ତିନୋଟି ଧାରଣା ନିର୍ଦ୍ଦିଷ୍ଟ ଭାବେ ବର୍ଣ୍ଣିତ ହୋଇନାହିଁ; ଯାହା ବର୍ଣ୍ଣିତ ହୋଇଛି ତାହା ପ୍ରସଙ୍ଗକ୍ରମେ । ତେଣୁ ଏ କ୍ଷେତ୍ରରେ ହାର୍ଡି ଓ ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟିରେ କି ପ୍ରକାର ବୈଚିତ୍ର୍ୟ, ସାମଞ୍ଜସ୍ୟ ଓ ବୈଷମ୍ୟ ରହିଛି, ତାହା ସ୍ୱତନ୍ତ୍ରଭାବେ ଆଲୋଚନା କରାଯାଇପାରେ ।

(କ) ବୈଚିତ୍ର୍ୟ :

(୧) ହାର୍ଡିଙ୍କ ଜୀବନ ଯେପରି ବୈଚିତ୍ର୍ୟପୂର୍ଣ୍ଣ, ତାଙ୍କ ସାହିତ୍ୟ ସୃଷ୍ଟି ସେହିପରି ବୈଚିତ୍ର୍ୟ ମଣ୍ଡିତ । ହାର୍ଡି ତାଙ୍କ ଜୀବଦ୍ଦଶାରେ ଯେଉଁ ଯେଉଁ ଦୁର୍ଯୋଗ, ଦୁର୍ବିପାକର ସମ୍ମୁଖୀନ ହୋଇଥିଲେ, ସେ ତାହାକୁ ବୈଚିତ୍ର୍ୟମଣ୍ଡିତ କରି ତାଙ୍କ ସାହିତ୍ୟରେ ରୂପ ଦେଇଛନ୍ତି । ତେଣୁ ତାଙ୍କ ସାହିତ୍ୟକୁ ତାଙ୍କ ବ୍ୟକ୍ତିଗତ ଜୀବନର ଏକ ଗବେଷଣାତ୍ମକ ଡାଏରୀ କହିଲେ ଅତ୍ୟୁକ୍ତି ହେବନାହିଁ । ହାର୍ଡି ଅନେକ ସମୟ ନିଃସଙ୍ଗ ଜୀବନ-ଯାପନ କରିଥିଲେ । ତାଙ୍କ ଜୀବଦ୍ଦଶାର ଅନ୍ତିମ ଭାଗରେ ସେ ସାଂସାରିକ ମୋହ ପ୍ରତି ଅନାସକ୍ତ ହୋଇପଡ଼ିଥିଲେ । ପୁଣି ହାର୍ଡିଙ୍କ ପାରିବାରିକ ଅବକ୍ଷୟତା ତାଙ୍କୁ ନାନା ଦିଗରୁ ଦୁର୍ବଳ କରିଦେଇଥିଲା । ଆର୍ଥିକ ଅଭାବ ଅନଟନ ମଧ୍ୟରେ ସମୟେ ସମୟେ ସେ ଉଚ୍ଛନ୍ନ ହୋଇ-ପଡ଼ିଥିଲେ । ତେଣୁ ତାଙ୍କ ଜୀବନର ଏହି ଘଟଣା, ଦୁର୍ଘଟଣାକୁ ସେ ଅତି ମନୋଜ୍ଞ ଭାବରେ ତାଙ୍କ ସାହିତ୍ୟ ସୃଷ୍ଟିରେ ପ୍ରକାଶ କରିଅଛନ୍ତି ।

ତାଙ୍କ ପୂର୍ବରୁ ଆମେରିକୀୟ ଉପନ୍ୟାସ ଜଗତରେ ଜନଜୀବନକୁ ନେଇ, କିମ୍ବା ଘର୍ଷଣଶୀଳତା, କୁ-ସଂସ୍କାର ବିରୁଦ୍ଧରେ ଉପନ୍ୟାସ ରଚନା ପ୍ରାୟତଃ ଥିଲା ବିରଳ । ହାର୍ଡି

ଏ କ୍ଷେତ୍ରରେ ସ୍ୱତନ୍ତ୍ରତଃ ପ୍ରଥମ ପଦକ୍ଷେପ ନେଇ ତାଙ୍କ ସାହିତ୍ୟ ଜଗତରେ ଏକ କ୍ରାନ୍ତିକାରୀ ଆଦର୍ଶ ସୃଷ୍ଟି କଲେ । ହରିଅର୍ଣ୍ଣ ଏକାଧାରରେ ଥିଲେ ଜଣେ କୁଶଳୀ ଗାଳ୍ପିକ, ପ୍ରତିଷ୍ଠିତ ଔପନ୍ୟାସିକ, ବୁଦ୍ଧିଦୀପ୍ତ ପ୍ରାବନ୍ଧିକ ଓ ହୃଦୟସ୍ପର୍ଶୀ ଶିଶୁସାହିତ୍ୟ ସ୍ରଷ୍ଟା । ଏକାଧାରରେ ତାଙ୍କଠାରେ ସାହିତ୍ୟର ଏହିପରି ବିଭବର ସମାବେଶ ତାଙ୍କ ସାହିତ୍ୟ-ଜଗତରେ ଅନ୍ୟ କୌଣସି ଔପନ୍ୟାସିକଙ୍କ ଭାଗ୍ୟରେ ଜୁଟିନାହିଁ କହିଲେ ଚଳେ । ହରିଅର୍ଣ୍ଣଙ୍କ ସାହିତ୍ୟ ସୃଷ୍ଟିରେ ବାସ୍ତବ ଘଟଣାର ମନୋଜ୍ଞ ରୂପାୟନ, ଅନ୍ଧକୁଳାଗ୍ରର ପ୍ରତି ଶ୍ୟେନଦୃଷ୍ଟି, ଶୋଷଣ; ପେଷଣ ବିରୁଦ୍ଧରେ ସଂଗ୍ରାମ, ଅସହାୟ ଜନତା ପ୍ରତି ସମ୍ବେଦନ-ଶୀଳତା, ଚରିତ୍ର ଚୟନରେ ମନୋଜ୍ଞ ରୂପାୟନ, ସାମାଜିକ ସମସ୍ୟାର ସଫଳ ଅବତାରଣା, ଭାଗ୍ୟବାଦ ଓ କର୍ମଫଳରେ ବିଶ୍ୱାସ, ସତ୍ୟ ନ୍ୟାୟ ପ୍ରତି ଅନୁରାଗ, ବର୍ଣ୍ଣନାରେ ନାଟକୀୟ ଛଟା ଆଦି ହେଉଛି ତାଙ୍କ ସାହିତ୍ୟ ସୃଷ୍ଟିର ବୈଚିତ୍ର୍ୟ ।

ହରିଅର୍ଣ୍ଣଙ୍କ ପୂର୍ବରୁ ଆମେରିକୀୟ ଉପନ୍ୟାସ ଜଗତରେ ଏତେ ପ୍ରାଞ୍ଜଳ ଭାବରେ ଗୋଟିଏ ସୃଷ୍ଟିରେ ଉପରୋକ୍ତ ଚିନ୍ତା-ଚେତନାକୁ କେହି ରୂପାୟିତ କରିପାରି ନଥିଲେ । ତେଣୁ ହରିଅର୍ଣ୍ଣଙ୍କ ସାହିତ୍ୟ ସୃଷ୍ଟି ଉପରୋକ୍ତ ଚେତନା ସମୂହରେ ବିମଣ୍ଡିତ ହୋଇ ଊନବିଂଶ ଶତାବ୍ଦୀର ଆମେରିକୀୟ ସାହିତ୍ୟରେ ଯେ ଏକ ଯୁଗାନ୍ତକାରୀ ବିପ୍ଳବ ସୃଷ୍ଟି କରିଥିଲା, ତାହା ଅସ୍ୱୀକାର କରିହେବ ନାହିଁ । ତେଣୁ ହରିଅର୍ଣ୍ଣଙ୍କ ସାହିତ୍ୟ ସୃଷ୍ଟିରେ ବୈଚିତ୍ର୍ୟ ଏଇଠି ନିହିତ ଥିଲା ବୋଲି କହିବାକୁ ହେବ ।

(୨) ହରିଅର୍ଣ୍ଣଙ୍କ ପରି ଫକୀରମୋହନଙ୍କ ଜୀବନବୃତ୍ତ ମଧ୍ୟ ନାନା ଘଟଣାରେ ପରିପୂର୍ଣ୍ଣ । ତାଙ୍କ ଜୀବନରେ ନାନା ବିଚିତ୍ର ଘଟଣାମାନ ଘଟିଥିଲା । ଯାହାକି ଗୋଟିଏ ଲୋକ ପକ୍ଷେ ସମ୍ଭାଳିବା ପାଇଁ ଅସୀମ ଧୈର୍ଯ୍ୟର ଆବଶ୍ୟକତା ଅନ୍ୱେଷଣ କରେ । ବାଲ୍ୟକାଲରୁ ନାନା ଦୁଃଖ, ଦୁର୍ବିପାକରେ ବଢ଼ିଥିବା ଫକୀରମୋହନ ସାହିତ୍ୟରେ ଖ୍ୟାତି ଅର୍ଜନ କଲାବେଳକୁ ପ୍ରଚୁର ଉପାଦାନ ପାଇଯାଇଥିଲେ ତାଙ୍କ ସ୍ୱ-ଜୀବନ ବୃତ୍ତର ପ୍ରତ୍ୟକ୍ଷ ଅନୁଭୂତିରୁ । ତେଣୁ ହରିଅର୍ଣ୍ଣଙ୍କ ପରି ତାଙ୍କ ଜୀବନର ଅନେକ ଘଟଣା ମଧ୍ୟ ତାଙ୍କ ସାହିତ୍ୟରେ ମର୍ମରିତ ହୋଇଉଠିଛି । ଅତଏବ ଏ କ୍ଷେତ୍ରରେ କୁହାଯାଇପାରେ ଯେ, ଆପଣା ଜୀବନର ପ୍ରଗାଢ଼ ଅନୁଭୂତିରେ ଫକୀରମୋହନ ତାଙ୍କ ସାହିତ୍ୟକୁ ଯେଉଁ ରୂପ ପ୍ରଦାନ କରିଯାଇଛନ୍ତି, ତାହାହିଁ ତାଙ୍କ ସାହିତ୍ୟର ବୈଚିତ୍ର୍ୟ ।

ଫକୀରମୋହନ ଲୋକଚରିତ୍ର ଅଧ୍ୟୟନରେ ଥିଲେ ଜଣେ କୁଶଳୀ ଶିଳ୍ପୀ । ତାଙ୍କ ସାହିତ୍ୟ ଜଗତରେ ସେ ଅନେକ ପ୍ରକାର ମଣିଷଙ୍କର ବର୍ଣ୍ଣନା କରିଛନ୍ତି ଏବଂ ଏମାନଙ୍କ ଚରିତ୍ରକୁ ସେ ଯେଉଁଭଳି ସଫଳ ଭାବରେ ଚିତ୍ରିତ କରିଛନ୍ତି, ତାହା ଅଦ୍ୟାବଧି ଓଡ଼ିଆ ସାହିତ୍ୟରେ ଅନତିକ୍ରମଣୀୟ ରହିଛି । ପୁଣି ସମାଜର ଜୀବନ୍ତଚିତ୍ର ପ୍ରଦାନ କରିବାରେ

ଫକୀରମୋହନ ଅଦ୍ୟାବଧି ଅଦ୍ୱିତୀୟ ସାହିତ୍ୟିକ । ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟିରେ ସହରଠାରୁ ପଲ୍ଲୀ ପର୍ଯ୍ୟନ୍ତ, ରାଜପ୍ରାସାଦଠାରୁ ଦରିଦ୍ର-ପର୍ଣ୍ଣକୁଟୀର ପର୍ଯ୍ୟନ୍ତ, ସାଧୁଆ ରୁଠ-ଠାରୁ ଆରମ୍ଭକରି ଅନ୍ତଃପୁର ପର୍ଯ୍ୟନ୍ତ ଓ ନାରୀମହଲର ବିଭିନ୍ନ ରହସ୍ୟ ଉଦ୍‌ଘାଟନ ପରିପ୍ରକାଶ ଲଭିଛି, ଯାହାକି ଓଡ଼ିଶାର କୌଣସି ସାହିତ୍ୟିକଙ୍କ ସୃଷ୍ଟିରେ ଏତେ ଜୀବନ୍ତ, ଏତେ ବାସ୍ତବ ବା ଏପରି ଏକନିଷ୍ଠ ସମାହାର ଭାବେ ଅଦ୍ୟାପି ପ୍ରକାଶିତ ହୋଇପାରିନାହିଁ ।

ଶୋଷକ, ଅତ୍ୟାଚାରୀ, ଶଯ୍ୟତାନ୍ ଚରିତ୍ର ଚିତ୍ରଣ ଓ ନାରୀ ଚରିତ୍ର ଅଧ୍ୟୟନରେ ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟି ବେଶ୍ ଉପଭୋଗ୍ୟ । ପୁଣି ଶୋଷକ ଚରିତ୍ରକୁ ନାନା ଢଙ୍ଗରୁ ପତନ ଘଟାଇବା ଓ ଶୋଷିତ ମଣିଷ ପ୍ରତି ସମ୍ବେଦନଶୀଳ ହେବା ଫକୀର-ମୋହନଙ୍କ ସାହିତ୍ୟ ସୃଷ୍ଟିର ଅନ୍ୟତମ ବୈଚିତ୍ର୍ୟ । ଫକୀରମୋହନ ଭାଗ୍ୟ, ଭଗବାନ ଓ କର୍ମଫଳରେ ଦୃଢ଼ ବିଶ୍ୱାସ କରୁଥିଲେ । ତେଣୁ ତାଙ୍କ ସାହିତ୍ୟ ସୃଷ୍ଟି ସେହି ଚିନ୍ତା-ଚେତନାର ସଫଳ ରୂପାୟନ । ଏହା ମଧ୍ୟ ତାଙ୍କ ସାହିତ୍ୟ ସୃଷ୍ଟିର ଅନ୍ୟତମ ବୈଚିତ୍ର୍ୟ । ହାସ୍ୟରସ ପରିବେଷଣ, ଚଟୁଳଭାବ୍ୟଙ୍ଗ ଓ ତୀକ୍ଷ୍ଣ ଇଙ୍ଗିତର ଉପସ୍ଥାପନା, ସତ୍ୟ-ନ୍ୟାୟ ପ୍ରତି ଆନ୍ତରିକତା, ତତ୍କାଳୀନ ସମାଜର ଦୋଷ ଦୁର୍ବଳତା ଉନ୍ମୋଚନର ପ୍ରୟାସ ଆଦିକୁ ତାଙ୍କ ସାହିତ୍ୟ ସୃଷ୍ଟିର ଅନେକ କେତେକ ବୈଚିତ୍ର୍ୟ ଭାବେ ମଧ୍ୟ ଧରି ନିଆଯାଇପାରେ ।

ହଥର୍ଣ୍ଣ ଓ ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟିର ବୈଚିତ୍ର୍ୟ ସେମାନଙ୍କ ଜୀବନର ପ୍ରଗାଢ଼ ଅନୁଭୂତି ପାଇଁ ହିଁ ଐକ୍ୟ ସ୍ଥାପନ କରିପାରିଛି । କେତେକ ବିଷୟର ବର୍ଣ୍ଣନାକୁ ଛାଡ଼ିଦେଲେ (ଯଥା-ହାସ୍ୟରସ, ଜାତୀୟତାବାଦ ସୃଷ୍ଟି, ବ୍ୟଙ୍ଗୋକ୍ତି, ନାରୀଚରିତ୍ର, ପ୍ରେମ) ହଥର୍ଣ୍ଣ ଓ ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟିର ବୈଚିତ୍ର୍ୟ ଆମ ଆଗରେ ଯେଉଁ ସାମ୍ୟ ଦର୍ଶାଏ, ତାହା ବିଶ୍ୱର ଅନ୍ୟ କୌଣସି ସାହିତ୍ୟିକଙ୍କ ସୃଷ୍ଟିରେ ମିଳିବା ହୁଏତ ଏତେ ସହଜ ନୁହେଁ । ଏହିସବୁ ବୈଚିତ୍ର୍ୟ ପାଇଁ ହଥର୍ଣ୍ଣ ତାଙ୍କ ସାହିତ୍ୟ ଜଗତରେ ଯେପରି ଅଦ୍ୟାବଧି ଏକ ଆଦର୍ଶ ହୋଇ ରହିଯାଇଛନ୍ତି । ଅନୁରୂପଭାବେ ଫକୀରମୋହନ ମଧ୍ୟ ଓଡ଼ିଆ ସାହିତ୍ୟର ଏକ ଆକର୍ଷଣ ହୋଇ ରହିଯାଇଛନ୍ତି । ଏମାନଙ୍କ ସାହିତ୍ୟ ସୃଷ୍ଟିର ବୈଚିତ୍ର୍ୟ ହେତୁ ଏମାନେ ଅଦ୍ୟାବଧି ସେମାନଙ୍କ ସାହିତ୍ୟ ଜଗତରେ ଜଣେ ଅନତି-କ୍ରମଣୀୟ ପ୍ରତିଭା ଓ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟାର ଆସନରେ ଆସୀନ ହୋଇପାରିଛନ୍ତି ।

(ଖ) **ସାମଞ୍ଜସ୍ୟ :**

ହଥର୍ଣ୍ଣ ଓ ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟିରେ ନାନା ପ୍ରକାର ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ସେସବୁ ପୂର୍ବବର୍ତ୍ତୀ ଅଧ୍ୟାୟମାନଙ୍କରେ ପ୍ରସଙ୍ଗକ୍ରମେ ଉଲ୍ଲେଖ କରାଯାଇଛି । ପୂର୍ବରୁ କୁହାଯାଇଛି ହଥର୍ଣ୍ଣ ଓ ଫକୀରମୋହନଙ୍କ ସୃଷ୍ଟିକାଳକୁ ଏମାନଙ୍କ ସମ୍ମୁଖରେ ଥିଲା ଏକ ଜରାଜୀର୍ଣ୍ଣ ପତନୋନ୍ମୁଖୀ ସମାଜ । ତେଣୁ ଏହି ସମାଜର ଚରିତ୍ର, କାହାଣୀକୁ ନ ନେଇ ସେମାନେ ବା ଆଉ କେଉଁ ନୂତନ କଳ୍ପନା ମିଶାଇ ସେମାନଙ୍କ ରଙ୍ଗାୟିତ

କରି ପାରି ଥା'ନ୍ତେ ? ପୁଣି ଏ ପ୍ରକାର କଳ୍ପନା ପ୍ରବଣତା ହଥର୍ଣ୍ଣ ଓ ଫକୀରମୋହନଙ୍କର କାହାରି ନଥିଲା କହିଲେ ଚଳେ । ଦୁହେଁ ଥିଲେ ବାସ୍ତବତାର ପୂଜାରୀ । ତେଣୁ କାହାଣୀ-ଠାରୁ ଆରମ୍ଭକରି ଚରିତ୍ର ପର୍ଯ୍ୟନ୍ତ ସବୁଥିରେ ସେମାନେ ତତ୍କାଳୀନ ସମାଜଚିତ୍ରକୁ ରୂପ ଦେଇଛନ୍ତି । ସେଥିପାଇଁ କାହାଣୀ ମନୋନୟନ ଓ ଚରିତ୍ର ନିର୍ବାଚନରେ ଉଭୟ ଔପନ୍ୟାସିକଙ୍କ ସାହିତ୍ୟ ସୃଷ୍ଟିରେ ଯଥେଷ୍ଟ ସାମଞ୍ଜସ୍ୟ ଦେଖାଦେଇଛି ।

ଦେଶ, କାଳ, ପାତ୍ରରେ ଭିନ୍ନତା ହେତୁ ଘଟଣା ପ୍ରବାହ ହୁଏତ ପ୍ରସଙ୍ଗାନୁଯାୟୀ ଭିନ୍ନ ମୋଡ଼ ନେବା ଯଥାର୍ଥ । ମାତ୍ର ଉଭୟ ଔପନ୍ୟାସିକଙ୍କ ଆଦର୍ଶ ତାଙ୍କ ସାହିତ୍ୟ ସୃଷ୍ଟିରେ ପ୍ରାୟତଃ ଏକ । ଉଭୟ ଔପନ୍ୟାସିକ ସେମାନଙ୍କ ସାହିତ୍ୟ ସୃଷ୍ଟିରେ ଆଦର୍ଶର ଯେଉଁ ଢଙ୍ଗ ପରିଚୟ, ବିସ୍ତୃତ ବିବେଚନାର ଯେଉଁ ମନୋଜ୍ଞ ସାମଞ୍ଜସ୍ୟ ପରିଲକ୍ଷିତ କରାଇପାରିଛନ୍ତି, ତାହା ଅନନ୍ୟ ଓ ଅସାଧାରଣ । ଫକୀରମୋହନ ଓ ହଥର୍ଣ୍ଣଙ୍କ ସାହିତ୍ୟରେ ବିଷୟବସ୍ତୁ ଦୃଷ୍ଟିରୁ, ଶୈଳୀ ଦୃଷ୍ଟିରୁ, ସମୟ ଦୃଷ୍ଟିରୁ ସାମାଜିକ ଚେତନା ଦୃଷ୍ଟିରୁ ସାମାଜିକ ମୂଲ୍ୟବୋଧ ଦୃଷ୍ଟିରୁ, କାଳପାତ୍ର ଚରିତ୍ରକଳ୍ପନା ଦୃଷ୍ଟିରୁ ଚରିତ୍ର ବିସ୍ତାର ଦୃଷ୍ଟିରୁ ଅନେକ ସାମ୍ୟ ପରିଲକ୍ଷିତ ହୁଏ । ହଥର୍ଣ୍ଣଙ୍କ 'The House of the Seven Gables' ଓ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ତୁଳନାତ୍ମକ ବିସ୍ତାରରେ ଏହା 'ଅଧ୍ୟାୟ : ଚତୁର୍ଥ' ରେ ସ୍ପଷ୍ଟ କରିଦିଆଯାଇଛି ।

କେବଳ 'The House of the Seven Gables' ସହ 'ଛ'ମାଣ ଆଠଗୁଣ୍ଠ'ର ତୁଳନାତ୍ମକ ବିସ୍ତାରରେ ହଥର୍ଣ୍ଣ ଓ ଫକୀରମୋହନଙ୍କ ସାହିତ୍ୟିକ ଦୃଷ୍ଟି-କୋଣର ସାମଞ୍ଜସ୍ୟ ନିହିତ ନୁହେଁ, ଉଭୟଙ୍କର ଗଳ୍ପ ଓ ଅନ୍ୟାନ୍ୟ ଉପନ୍ୟାସକୁ ଲକ୍ଷ୍ୟକଲେ ମଧ୍ୟ ଉପରୋକ୍ତ ସାହିତ୍ୟିକ ସାମଞ୍ଜସ୍ୟ ଉଭୟଙ୍କ ସାହିତ୍ୟ ସୃଷ୍ଟିରେ ପରିଲକ୍ଷିତ ହୁଏ । ତେଣୁ ବିଶ୍ୱସାହିତ୍ୟ କ୍ଷେତ୍ରରେ ହଥର୍ଣ୍ଣ ଓ ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟିରେ ସାମଞ୍ଜସ୍ୟ ଏକ ଅନନ୍ୟଅସାଧାରଣ ଘଟଣା ବୋଲି କହିବାକୁ ହେବ ।

## (ଗ) ବୈଷମ୍ୟ :

ହଥର୍ଣ୍ଣ ଓ ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟିକୁ ନାନା ଦିଗରୁ ଆଲୋଚନା କରାଯାଇ ଉଭୟଙ୍କ ମଧ୍ୟରେ ଥିବା ସାମ୍ୟକଥା ଏପର୍ଯ୍ୟନ୍ତ ଉଲ୍ଲେଖ କରାଯାଇଛି । ଏତେ ପ୍ରକାର ସାମ୍ୟ ସତ୍ତ୍ୱେ ଉଭୟଙ୍କ ସୃଷ୍ଟିରେ ଯେ ବୈଷମ୍ୟ ନାହିଁ, ଏ କଥା କୁହାଯାଇ ପାରିବ ନାହିଁ । ଚନ୍ଦ୍ରରେ କଳଙ୍କ ଥାଏ ଏବଂ ତାହା ଯେପରି ଚନ୍ଦ୍ର ଗ୍ରହଣ ସମୟରେ ସ୍ପଷ୍ଟ ଦିଶେ, ଅନ୍ୟ ସମୟରେ ତାହା ସେପରି ପରିଦୃଶ୍ୟ ହୁଏନାହିଁ । ହଥର୍ଣ୍ଣ ଓ ଫକୀର-ମୋହନଙ୍କର ସାହିତ୍ୟିକ ବୈଷମ୍ୟ ଏହି ଚନ୍ଦ୍ରରେ କଳଙ୍କ ପରି, ଯାହା ନାନା ସାମ୍ୟ ପ୍ରଦର୍ଶନ ପରେ ଚନ୍ଦ୍ର ଗ୍ରହଣ ପରି ସାମାନ୍ୟ ଅଥଚ ନୁହଁଳତର କେତେକ ବୈଷମ୍ୟ ହିଁ

ପ୍ରକାଶ କରନ୍ତି । ବସ୍ତୁ ସାମ୍ୟ ଆଗରେ ଏ ପ୍ରକାର ବୈଷମ୍ୟ ଯେ ଗୌଣ—ଏହା ନିଃସନ୍ଦେହରେ କୁହାଯାଇପାରେ ।

ହଥର୍ଣ୍ଣ ତାଂକ ଉପନ୍ୟାସମାନଂକରେ କେତେକ ଅସ୍ୱାଭାବିକ ମୃତ୍ୟୁଚିତ୍ର ପ୍ରଦାନ କରିଛନ୍ତି । 'The House of the Seven Gables' ଉପନ୍ୟାସରେ ଏହି ମୃତ୍ୟୁଚିତ୍ର ଉଦ୍‌ଭାସିତ ହୋଇଛି । ପ୍ରତ୍ୟେକ ପିନ୍‌ଚନ୍‌ମାନଙ୍କର ମୃତ୍ୟୁ ଏହି ଉପନ୍ୟାସରେ ପ୍ରାୟତଃ ସମଧର୍ମୀ । କୌଣସି ଜଣେ ପିନ୍‌ଚନ୍ ମରିଗଲେ, ସେ ରକ୍ତବାନ୍ତି କରି ମରିଯିବ—ଏହା ହୁଏତ ଜଣକର ମୃତ୍ୟୁରେ ସ୍ୱାଭାବିକ ହୋଇପାରିଥାଆନ୍ତା, ମାତ୍ର ଔପନ୍ୟାସିକ ହଥର୍ଣ୍ଣ—କର୍ଣ୍ଣେଲ୍, ଜାଫେଟ୍, ଜର୍ଜଙ୍କ ମୃତ୍ୟୁ ବେଳର ଦୃଶ୍ୟ ଉପନ୍ୟାସରେ ଠିକ୍ ଏହି ପ୍ରକାର ସମାନ ମୃତ୍ୟୁଚିତ୍ର ବର୍ଣ୍ଣନା କରି, ସେମାନଙ୍କ ମୃତ୍ୟୁଚିତ୍ର ବର୍ଣ୍ଣନାରେ ପ୍ରହେଳିକା ସୃଷ୍ଟି କରିଅଛନ୍ତି । କିନ୍ତୁ ଫକୀରମୋହନଙ୍କ ମୃତ୍ୟୁଚିତ୍ର ଏ କ୍ଷେତ୍ରରେ ବୈଷମ୍ୟ ଦର୍ଶାଏ । ଉଭୟ ଔପନ୍ୟାସିକମାନଙ୍କର ଶୟତାନ୍ ଚରିତ୍ରମାନେ ସବୁଠି ଅଲଂଘନୀୟ କର୍ମଫଳର ବଶବର୍ତ୍ତୀ ହୋଇ ଭୀଷଣ ଯନ୍ତ୍ରଣାରେ ମୃତ୍ୟୁବରଣ କରିଛନ୍ତି । ତଥାପି ଏ କ୍ଷେତ୍ରରେ ଫକୀରମୋହନ ହଥର୍ଣ୍ଣଙ୍କଠାରୁ ବେଶି ବାସ୍ତବାଭିମୁଖୀ । ତାଙ୍କ ଚରିତ୍ରମାନଂକ ମୃତ୍ୟୁ ଅକାଳରେ ହେଲେ ବି ଅକଳ୍ପିତ ନୁହେଁ, ଅସ୍ୱାଭାବିକ ନୁହେଁ—ଏ ମୃତ୍ୟୁ ସ୍ୱାଭାବିକ ଓ ବାସ୍ତବ ।

ହଥର୍ଣ୍ଣ ତାଂକ ଉପନ୍ୟାସର ଦୁଷ୍ଟଚରିତ୍ରମାନଙ୍କୁ ଅନୁତାପ କିମ୍ବା ଅନୁଶୋଚନା କରିବାର ସୁଯୋଗ ନଦେଇ ଏକାଥରକେ ମୃତ୍ୟୁର ବିକଟ ଗର୍ତ୍ତକୁ ଠେଲି ଦେଇଛନ୍ତି । ମାତ୍ର ଫକୀରମୋହନ ଏ କ୍ଷେତ୍ରରେ ହଥର୍ଣ୍ଣଂକ ଠାରୁ ଏକ ବ୍ୟତିକ୍ରମ । ତାଂକର ପ୍ରାୟ ଦୁଷ୍ଟ ଚରିତ୍ରମାନେ ଅଲଂଘନୀୟ କର୍ମଫଳର ଶୀକାର ହେବାପୂର୍ବରୁ ପ୍ରଚଣ୍ଡ ମାନସିକ ଦାବ-ଦହନ ମଧ୍ୟରେ ଘୁରି ବୁଲିଛନ୍ତି ।

ପୁଣି ଫକୀର ମୋହନଂକ ନାଟ୍ୟଚରିତ୍ର ବର୍ଣ୍ଣନ ହଥର୍ଣ୍ଣଂକ ପାଣ୍ଡିତ୍ୟ ସୃଷ୍ଟିରେ ଦୃଷ୍ଟିଗୋଚର ହୁଏନାହିଁ । ଫକୀର ମୋହନ ତାଂକ ଚରିତ୍ର ଚିତ୍ରଣରେ ଯେଉଁ ଅଭିନବତା ପ୍ରଦର୍ଶନ କରିଛନ୍ତି, ହଥର୍ଣ୍ଣ ସେପରି ବର୍ଣ୍ଣନା ପାଠକ ତାଂକର କୌଣସି ନାଟ୍ୟଚରିତ୍ର ମାଧ୍ୟମରେ ପ୍ରଦାନ କରିବାକୁ କ୍ଷମଶୀଳ ହୋଇପାରି ନାହାନ୍ତି ।

ହଥର୍ଣ୍ଣ ତତ୍କାଳୀନ ସାମାଜିକ ପରମ୍ପରା, ରକ୍ଷଣଶୀଳତାକୁ ବିରୋଧ କରିଛନ୍ତି ଏବଂ କେତେକାଂଶରେ ବ୍ୟଙ୍ଗ ବିଦ୍ରୁପ କରିଛନ୍ତି; ମାତ୍ର ତାଂକ ବ୍ୟଙ୍ଗ, ବିଦ୍ରୁପ ଫକୀର ମୋହନଂକ ପରି ତୀବ୍ର ବା ମର୍ମସ୍ପର୍ଶୀ ହୋଇପାରି ନାହିଁ ।

ହଥର୍ଣ୍ଣ ଓ ଫକୀରମୋହନଙ୍କର ମଧ୍ୟ ଏକ ଦୃଷ୍ଟି ଆକର୍ଷଣକାରୀ ବୈଷମ୍ୟ ହେଉଛି ପ୍ରେମବର୍ଣ୍ଣନା । ହଥର୍ଣ୍ଣ ତାଙ୍କ 'The House of the Seven Gables', 'The Scarlet Letter,' ଓ 'The Marble Faun' ଆଦି ଉପନ୍ୟାସରେ

ମନୋଜ୍ଞ ପ୍ରେମଚିତ୍ର ବର୍ଣ୍ଣନା କରିଛନ୍ତି । ଅବଶ୍ୟ ଘଟଣା ଦୃଷ୍ଟିରୁ ଏହି ପ୍ରେମଚିତ୍ର କେତେକାଂଶରେ ଅବାସ୍ତବ ବୋଧହୁଏ, ତଥାପି 'ଉପନ୍ୟାସରେ ପ୍ରେମ' (Romance in Novel) ଯେପରି ପାଠକକୁ ଆକର୍ଷିତ କରେ ସେପରି ଆକର୍ଷଣ ହଥର୍ଣ୍ଣଙ୍କ ଉପନ୍ୟାସରେ ଅଛି । କିନ୍ତୁ ଏ କ୍ଷେତ୍ରରେ ଫକୀର ମୋହନଙ୍କ ଲେଖନୀ ଭିନ୍ନ ରୂପ ନେଇଛି । ସେ ତତ୍କାଳୀନ ବେଶ୍ୟାବୃତ୍ତି ମାଧ୍ୟମରେ ସ୍ୱାଭାବିକ ସ୍ଖଳନ ଜନିତ ପ୍ରେମର ବର୍ଣ୍ଣନା କରନ୍ତି । ଅବଶ୍ୟ 'ଛ'ମାଣ ଆଠଗୁଣ୍ଠ,' ଓ 'ମାମୁଁ'ର ପ୍ରେମ ଚିତ୍ରଭିନ୍ନ । କାରଣ ଏଠାରେ ଚମ୍ପାସହ ମଙ୍ଗରାଜାଂକର ବା ଚନ୍ଦ୍ରକଳା ସହ ନାଜର ନଟବରଂକର ପ୍ରେମ ସମାଜ ଅସ୍ୱୀକୃତ । ଏହା ପରକୀୟା ଓ ଅବୈଧ । ଏ ପ୍ରେମରେ ପ୍ରାଣ ନାହିଁ, ଅଛି ଦେହ ଭୋଗସର୍ବସ୍ୱ ଚିନ୍ତା ଓ ସ୍ୱାର୍ଥ । ଏହି ଦୃଷ୍ଟିରୁ ବିଗ୍ଚାର କଲେ ହଥର୍ଣ୍ଣଂଙ୍କ 'The Scarlet Letter' ରେ ହେଷ୍ଟର ଓ ଡିମେସ୍‌ଡ଼ଲ୍‌ଙ୍କ ମଧ୍ୟରେ ଅନୁଷ୍ଠିତ ଅବୈଧ ଗୁପ୍ତ ପ୍ରେମ ପ୍ରାଣବନ୍ତ ହୃଦ୍ୟ ଓ ମୁଗ୍ଧକର ମଧ୍ୟ । ଅବଶ୍ୟ ଫକୀର ମୋହନଂକର 'ଲଛମା'ରେ ଲଛମା-ବାଦଲ ସିଂହଂକ ପ୍ରେମ ଓ 'ପ୍ରାୟଶ୍ଚିତ୍ତ'ରେ ଗୋବିନ୍ଦ ଚନ୍ଦ୍ର-ଇନ୍ଦୁମତୀଂକ ସାର୍ଥକ ପ୍ରେମ ବୋଲି କୁହାଯାଇ ପାରେ । କିନ୍ତୁ ସେଠି ଲଜ୍ଜା ଓ ରକ୍ଷଣଶୀଳତା ପ୍ରେମର ମନୋଜ୍ଞ ରୂପଟିକୁ ପ୍ରକଟିତ କରିପାରି ନାହିଁ । ଯାହାକି କରିପାରିଛି ହଥର୍ଣ୍ଣଂଙ୍କ ପ୍ରେମ ବର୍ଣ୍ଣନା ।

ଏତଦ୍‌ଭିନ୍ନ ଉଭୟ ଔପନ୍ୟାସିକଂକର ଅନେକ ବର୍ଣ୍ଣନାଗତ ଦୁର୍ବଳତା ରହିଅଛି । ହଥର୍ଣ୍ଣ ଯେପରି ଅନେକସ୍ଥଳେ ନୀରସ ବର୍ଣ୍ଣନାରେ ପାଠକର ବିରକ୍ତିଭାଜନ ଶିକାର ହୁଅନ୍ତି, ଫକୀର ମୋହନ ମଧ୍ୟ ଅନେକ ସ୍ଥଳେ ସେହିପରି ଅଯଥା ଓ ପ୍ରାଣହୀନ ବର୍ଣ୍ଣନା କରି ପାଠକ ଦ୍ୱାରା ପରିତ୍ୟଜ୍ୟ ହୋଇଛନ୍ତି । ପୁଣି ଉଭୟଂକ ବର୍ଣ୍ଣନାରେ ନାନା ଅପ୍ରାସଙ୍ଗିକ କଥା ପ୍ରବନ୍ଧଶୈଳୀ ଓ ନାଟକୀୟ ଅତିରଞ୍ଜନତାଗତ ଦୁର୍ବଳତା ଦୃଷ୍ଟି-ଗୋଚର ହୁଏ ।

ଏହିସବୁ ବୈଷମ୍ୟ ଓ ତ୍ରୁଟି ବିଚ୍ୟୁତି ସତ୍ତ୍ୱେ ଔପନ୍ୟାସିକ ହଥର୍ଣ୍ଣ ଓ ଔପନ୍ୟାସିକ ଫକୀର ମୋହନଂକ ମଧ୍ୟରେ ଥିବା ନାନାଦିଗରୁ ସାମ୍ୟରେ କୌଣସି ବ୍ୟତିକ୍ରମ ପରିଲକ୍ଷିତ ହୁଏନାହିଁ । ଅତଏବ ଏ କ୍ଷେତ୍ରରେ କୁହାଯାଇପାରେ ଯେ, ବିନା ଅନୁକରଣ ଓ ବିନା ଆହରଣରେ ହଥର୍ଣ୍ଣଂଙ୍କ ସହ ଫକୀର ମୋହନଂକର ଯେଉଁ ସାମ୍ୟ ପରିଲକ୍ଷିତ ହେଲା, ତାହା ବିଶ୍ୱସାହିତ୍ୟ କ୍ଷେତ୍ରରେ ଏକ ଅନନ୍ୟ ଓ ଅସାଧାରଣ ବ୍ୟାପାର ବୋଲି କହିବାକୁ ହେବ ।

# ବିଶ୍ୱସାହିତ୍ୟରେ ଉଭୟ ଔପନ୍ୟାସିକଙ୍କ ପ୍ରଭାବ ଓ ପ୍ରତିଷ୍ଠା :

ଆଜି ବିଶ୍ୱ ସାହିତ୍ୟର ପୃଷ୍ଠାରେ ଅନେକ ସ୍ରଷ୍ଟା ଓ ସୃଷ୍ଟି, ମାନ ଚିତ୍ରର ଦେଶ-ପ୍ରଦେଶ ପରି ଉଦ୍‌ଭାସିତ । ଭୌଗୋଳିକ ସୀମାରେଖାରେ ଦେଶ-ପ୍ରଦେଶର ଆକାର ଅନୁସାରେ ମାନଚିତ୍ରରେ ଯେପରି ସେ ଦୃଷ୍ଟି ଆକର୍ଷଣ କରେ, ବିଶ୍ୱସାହିତ୍ୟର ପୃଷ୍ଠାରେ ଆପଣା ଆପଣା ପ୍ରଭାବ, ପ୍ରତିଷ୍ଠା ଓ ପ୍ରତିଭାରେ ଅନେକ ସ୍ରଷ୍ଟା ଓ ସୃଷ୍ଟି-ପାଠକର ଦୃଷ୍ଟି ଆକର୍ଷଣ କରନ୍ତି । ଆଜି ବିଶ୍ୱସାହିତ୍ୟ ଅନେକ ସୃଷ୍ଟି ସମ୍ଭାରରେ ସମୃଦ୍ଧ । ଊନବିଂଶ ଶତାବ୍ଦୀର ଶୀର୍ଷସ୍ଥାନୀୟ ବିଶ୍ୱସାହିତ୍ୟ ଆଜିର କାଳକୁ ଅନେକ ପୃଷ୍ଠାର କଳେବରରେ ବିପୁଳକାୟ । ଏହାର ମଧ୍ୟରେ ଆପଣାର ସାଧନା ଓ କୃତିତ୍ୱ ବଳରେ ଯେଉଁ କେତେଜଣ ସାହିତ୍ୟିକ ନିଜନିଜର ଆସନ ଦୃଢ଼କରି ନେଇଛନ୍ତି, ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣ ଓ ଓଡ଼ିଆ ଔପନ୍ୟାସିକ ଫକୀରମୋହନ ତନ୍ମଧ୍ୟରୁ ଦୁଇ ବିଶେଷ ପ୍ରତିଭା । ଏମାନେ ବିଶ୍ୱସାହିତ୍ୟରେ ସ୍ଥାନ ପାଇଁ କୃତ୍ୟ କୃତ୍ୟ ନୁହନ୍ତି କିମ୍ବା ଗର୍ବୋନ୍ନତ ନୁହନ୍ତି ଅଥବା ଏପ୍ରକାର ଲାଳସା ମଧ୍ୟ ସେମାନଙ୍କର କେବେ ଥିଲା ବୋଲି କୁହାଯାଏ ନାହିଁ । ଅବଶ୍ୟ ଏକ୍ଷେତ୍ରରେ କୁହାଯାଇ ପାରେ ଯେ ବିଶ୍ୱସାହିତ୍ୟ ନିଜ ପୃଷ୍ଠାରେ ଏହି ଦୁଇ ସ୍ୱନାମଧନ୍ୟ ଔପନ୍ୟାସିକଙ୍କୁ ସ୍ଥାନ ଦେଇ ଧନ୍ୟ ଓ ଗୌରବାନ୍ୱିତ ହୋଇପାରିଛି । ତେଣୁ ବିଶ୍ୱ-ସାହିତ୍ୟରେ ସେମାନଙ୍କର ଯେ ଏକ ନିର୍ଦ୍ଦିଷ୍ଟ ପ୍ରଭାବ ଅଛି ଓ ପ୍ରତିଷ୍ଠା ମଧ୍ୟ ଅଛି, ତାହା ଅନାୟାସରେ କୁହାଯାଇପାରେ । ଏ କ୍ଷେତ୍ରରେ ତାହା ଆମର ଆଲୋଚ୍ୟ ।

ଦୀର୍ଘଦିନ ଇଂରେଜ ଶାସନାଧୀନ ହୋଇ ରହିଥିବା ଆମେରିକା, ଇଂରେଜ ସାହିତ୍ୟ, ସଂସ୍କୃତି ଓ ସାମାଜିକ ଚେତନା ଦ୍ୱାରା ବହୁ ଭାବେ ପରିପୁଷ୍ଟ ଓ ପ୍ରଭାବିତ ହୋଇଥିଲା । ସ୍ୱାଧୀନତା ଲାଭ ପରେ ଏହି ପ୍ରଭାବ, ବିଶେଷକରି ତାର ସାହିତ୍ୟରୁ ସହଜରେ ଅନ୍ତର୍ହିତ ହୋଇଯାଇନଥିଲା । ଏପରିକି ହଥର୍ଣ୍ଣଙ୍କ ସାହିତ୍ୟ ସୃଷ୍ଟି ସମୟକୁ ମଧ୍ୟ ଏପ୍ରକାର ପ୍ରଭାବ ଅନୁଭୂତ ହେଉଥିଲା । ଇଂରେଜ ସାହିତ୍ୟର ଏହି ପ୍ରଭାବ ସତ୍ତ୍ୱେ ଔପନ୍ୟାସିକ ହଥର୍ଣ୍ଣ ଆପଣାର ସ୍ୱକୀୟ ଶୈଳୀରେ ଆମେରିକୀୟ ସାହିତ୍ୟରେ ପ୍ରତିଷ୍ଠା ଅର୍ଜନ କରିଯାଇଛନ୍ତି । ତାଙ୍କର କହିବା ପୂର୍ବବର୍ତ୍ତୀ ସାହିତ୍ୟିକ (James Fanimore Cooper) ଜେମ୍ସ ଫେନିମୋର୍ କୁପର୍ ଆମେରିକୀୟ ସାହିତ୍ୟରେ ଯଥେଷ୍ଟ ପ୍ରତିଷ୍ଠା ଅର୍ଜନ କରିଥିବା ସତ୍ତ୍ୱେ ହଥର୍ଣ୍ଣ ତାଙ୍କ ପ୍ରଭାବରେ ପ୍ରଭାବିତ ହେବା ପରି ମନେହୁଅନ୍ତି ନାହିଁ । ମାତ୍ର ହଥର୍ଣ୍ଣଙ୍କ ସାହିତ୍ୟିକ ପ୍ରଭାବରେ ତାଙ୍କର କେତେକ ସମସାମୟିକ ଓ ପରବର୍ତ୍ତୀ ଔପନ୍ୟାସିକଙ୍କୁ

ପ୍ରଭାବିତ କରିଥିଲା, ଏକଥା ନିଃସନ୍ଦେହରେ କୁହାଯାଇପାରେ । ହଥର୍ଣ୍ଣଙ୍କ ସମସାମୟିକ (ଊନବିଂଶ ଶତାବ୍ଦୀର) ସାହିତ୍ୟିକ ଭାବେ ପ୍ରତିଷ୍ଠା ଅର୍ଜନ କରିଥିବା ମାର୍କଟୁଇନ୍, ହର୍ମାନ ମେଲ୍ଭିଲେ, ହେନେରି ଜେମ୍ସ, ଉଇଲିୟମ୍ ଡି. ହଏଲ୍ସ, ଆଦି ଔପନ୍ୟାସିକବୃନ୍ଦ ହଥର୍ଣ୍ଣଙ୍କ ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇଥିଲେ । ଏପରିକି ତାଂକ ସାହିତ୍ୟିକ ପ୍ରତିଭା ଓ ବ୍ୟକ୍ତିତ୍ୱକୁ ସମ୍ମାନ ଦର୍ଶାଇ ତାଂକର ଲେଖକ ବନ୍ଧୁ ମେଲ୍ଭିଲେ ତାଂକର ପ୍ରଖ୍ୟାତ ଉପନ୍ୟାସ 'ମୋବେଡ଼ିକ୍'କୁ ତାଂକୁ ଉତ୍ସର୍ଗ କରିଥିଲେ । କେବଳ ଆମେରିକୀୟ ସାହିତ୍ୟରେ ହଥର୍ଣ୍ଣଂକର ଏ ପ୍ରଭାବ ବା ପ୍ରତିଷ୍ଠା ସୀମିତ ନଥିଲା, ଏହା ଥିଲା ବିଶ୍ୱବ୍ୟାପୀ । ତତ୍କାଳୀନ ବିଶ୍ୱସାହିତ୍ୟରେ ଯେଉଁ କେତେଜଣ ପ୍ରଖ୍ୟାତ ସାହିତ୍ୟ ସ୍ରଷ୍ଟା, ଯଥା— Turgnev, Tolstoy, Taine, Verga, Hardy, Shaw, Kipling, Dickens, Thackeray Heriet Becker Stow, George Eliot, Flaubert ଓ Zola ସେତେବେଳେ ଆପଣାର ପ୍ରଭାବ ଓ ପ୍ରତିଷ୍ଠା ଜାହିର୍ କରିଥିଲେ, ହଥର୍ଣ୍ଣ ଥିଲେ ସେମାନଂକ ମଧ୍ୟରୁ ଅନ୍ୟତମ । ତାଂକ ଦ୍ୱାରା ବିଶେଷକରି ଆମେରିକୀୟ ଲେଖକଗୋଷ୍ଠୀ ଆଶାତୀତ ଭାବେ ପ୍ରଭାବିତ ହୋଇଥିଲେ ବୋଲି କୁହାଯାଇପାରେ । ଊନବିଂଶ ଶତାବ୍ଦୀର ଆମେରିକୀୟ ସାହିତ୍ୟକୁ ସେ ଆପଣାର ବଳିଷ୍ଠ ପ୍ରତିନିଧିତ୍ୱରେ ଯେ ପ୍ରଭାବିତ କରିଥିଲେ, ତା' ନୁହେଁ, ତାଂକର ପ୍ରଭାବ ଓ ପ୍ରତିଷ୍ଠା ଅଦ୍ୟାବଧି ଆମେରିକୀୟ ସାହିତ୍ୟରେ ଅନତିକ୍ରମଣୀୟ ହୋଇରହିଛି । ଯେଥିପାଇଁ ସମାଲୋଚକ Hyatth, Waggoner ଯଥାର୍ଥରେ କହିଛନ୍ତି—"Few nineteenth century American writers today seems so likely rewased rereading as Hawthorne." ହଥର୍ଣ୍ଣଂକ ସାହିତ୍ୟ ସୃଷ୍ଟି ସେତେବେଳେ କେବଳ ଆମେରିକୀୟ ସାହିତ୍ୟର ଆଦର୍ଶର ହୋଇଥିଲା ବୋଲି କୁହାଯାଇନପାରେ; ବରଂ ଏହି ଆଦର୍ଶ ତତ୍କାଳୀନ ବିଶ୍ୱ ସାହିତ୍ୟରେ ତାଙ୍କୁ ଏକ ସ୍ୱତନ୍ତ୍ର ସ୍ଥାନ ଦେବାର ମାଧ୍ୟମ ହୋଇଥିଲା ବୋଲି କୁହାଯାଇପାରେ ।

ହଥର୍ଣ୍ଣଂକ ସାହିତ୍ୟ ପ୍ରତିଭା ସହ ଅନେକ ଦୃଷ୍ଟିରୁ ତୁଳନୀୟ ଓଡ଼ିଆ ଔପନ୍ୟାସିକ ଫକୀରମୋହନ ମଧ୍ୟ ବିଶ୍ୱ ସାହିତ୍ୟରେ ଆପଣା ପ୍ରତିଭାର କିଛି କମ୍ ଚମତ୍କାରିତା ଦେଖାଇନାହାନ୍ତି । ତାଂକ ପ୍ରତିଭାର ଜଣେ ଗୁଣମୁଗ୍ଧ ପୂଜାରୀ ଭାବେ ପାଶ୍ଚାତ୍ୟ ଗବେଷକ 'John Botton' ତାଂକ ଉପରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି ଡିଗ୍ରୀ ଲାଭ କରିଛନ୍ତି । ବିଶ୍ୱସାହିତ୍ୟରେ ଔପନ୍ୟାସିକ ଫକୀରମୋହନଂକର ଏହାକ'ଣ ପ୍ରତିଷ୍ଠା ଓ ପ୍ରଭାବର କମ୍ ପରିଚୟସୂଚକ ? ଫକୀରମୋହନଂକ ଉପନ୍ୟାସ ରଚନାର ଶୈଳୀ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଏବେ ବି ଅନତିକ୍ରମଣୀୟ ହୋଇରହିଛି । ଭାରତୀୟ ପ୍ରଖ୍ୟାତ କଥାକାର ପ୍ରେମ୍‌ଚନ୍ଦ୍ ଓ ବଂକିମଚନ୍ଦ୍ର ଆଦିଂକ ସହ ସେ ତୁଳନୀୟ । ଏପରିକି

ବଂକିମ ଚନ୍ଦ୍ରଂକ ପ୍ରତିଭାରେ ସେ ପ୍ରଭାବିତ ବୋଲି ଅନେକ ସମାଲୋଚକ ମତବ୍ୟକ୍ତ କରିଥା'ନ୍ତି । କିନ୍ତୁ ଏହା ସତ୍ତ୍ୱେ ତାଂକର ସ୍ୱକୀୟ ଶୈଳୀ ତାଙ୍କୁ ଓଡ଼ିଆ ସାହିତ୍ୟ, ଭାରତୀୟ ସାହିତ୍ୟ, ସର୍ବୋପରି ବିଶ୍ୱସାହିତ୍ୟରେ ଯେ ପ୍ରତିଷ୍ଠା କରିଛୁ—ଏକଥା ନିଃସନ୍ଦେହରେ କୁହାଯାଇପାରେ । ଫକୀରମୋହନ ଯେତେବେଳେ ଓଡ଼ିଆ ସାହିତ୍ୟରେ ଲେଖନୀ ଚାଳାଇ ଅପୂର୍ବ ସଫଳତା ଅର୍ଜନ କରିଥିଲେ, ସେତେବେଳେ ବିଶ୍ୱସାହିତ୍ୟରେ ହାର୍ଡି, ମେଲ୍‌ଭିଲେ, ଟଲ୍‌ଷ୍ଟୟ, ଡିକେନ୍ସ, ପ୍ରେମଚାନ୍ଦ ବଂକିମ ଚନ୍ଦ୍ର ଆଦି ସାହିତ୍ୟିକ ବୃନ୍ଦ ଓ ଚିନ୍ତାନାୟକମାନେ ପ୍ରତିଷ୍ଠା ଅର୍ଜନ କରିସାରିଥିଲେ । "ଫକୀର-ମୋହନଂକ ଚିନ୍ତାର କେନ୍ଦ୍ରବିନ୍ଦୁ ଥିଲା ସାମାଜିକ ଉପଯୋଗିତାବାଦର ଆଦର୍ଶ । ଉପନ୍ୟାସର ପ୍ରତିଛବି ହିସେବେ ଏଇ କଥା ଫୁଟିଉଠିଛି । ଯେଉଁ ସାମାଜିକ ଉପଯୋଗିତାବାଦର ଫକୀରମୋହନ ଅଭିନିବେଶୀ ଛାତ୍ର ଥିଲେ, ଜନ୍ ଷ୍ଟୁଆର୍ଟ ମିଲ୍ ଊନବିଂଶ ଶତାବ୍ଦୀର ଇଂଲଣ୍ଡରେ ଥିଲେ ତାର ପ୍ରଧାନ ପ୍ରବକ୍ତା ଓ ପ୍ରାଚ୍ୟରେ ବଂଗ-ସାହିତ୍ୟର ଚିନ୍ତାନାୟକ ବଂକିମଚନ୍ଦ୍ର ଥିଲେ ଏହାର ପ୍ରଧାନ ପୃଷ୍ଠପୋଷକ । ଅଷ୍ଟାଦଶ ଶତାବ୍ଦୀର ଯୁକ୍ତିବାଦୀ ଚିନ୍ତାଧାରାର ପ୍ରଭାବରେ ଏହି ସାମାଜିକ ଉପଯୋଗିତାବାଦର ଜନ୍ମ ଜେରେମି ବେନ୍ଥାମ ଏହାର କୁଳଗୁରୁ । ଫକୀରମୋହନଙ୍କ ଚିନ୍ତାରେ ବିଶେଷତଃ ତାହାର ବୈପ୍ଳବିକ ଉନ୍ନତ ଚିନ୍ତାରେ ଏହି ମତବାଦର ପ୍ରଭାବ ଖୁବ୍ ସ୍ପଷ୍ଟ ।" (୧) ବିଶ୍ୱସାହିତ୍ୟର ତତ୍କାଳୀନ ଚିନ୍ତାଧାରାର ସମଗ୍ର ପ୍ରତିଫଳନ ଔପନ୍ୟାସିକ ଫକୀର-ମୋହନଙ୍କ ଉପନ୍ୟାସରେ ପ୍ରତିଫଳିତ ହୋଇଥିଲା । ତେଣୁ ବିଶ୍ୱସାହିତ୍ୟ କ୍ଷେତ୍ରରେ ଆପଣାର ଚିନ୍ତାଧାରା, ଶୈଳୀ ପାଇଁ ସେ ହେଲେ ପ୍ରତିଷ୍ଠିତା, ଯେଉଁମାନେ ତାଙ୍କର ପୂର୍ବ-ସୂରୀ, ସମସାମୟିକ ଓ ବିଶ୍ୱସାହିତ୍ୟରେ ଆପଣାର ପ୍ରଭାବ ଓ ପ୍ରତିଷ୍ଠା ଅର୍ଜନ କରି-ଯାଇଛନ୍ତି ଔପନ୍ୟାସିକ ଫକୀରମୋହନ ସେମାନଙ୍କ ମଧ୍ୟରେ ହଜିଯାଇ ନାହାନ୍ତି । ତାଙ୍କ ସାହିତ୍ୟର ଯାହା ଶ୍ରେଷ୍ଠ ସଂପଦ, ଯଥା—କଥାବସ୍ତୁରେ ବୈଚିତ୍ର ଓ ଚରିତ୍ର ଚିତ୍ରଣରେ ବାସ୍ତବତା ପାଇଁ ସେ ସେମାନଙ୍କ ମଧ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନ ହାସଲ କରିଯାଇଛନ୍ତି । "ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓ ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଭାରତୀୟ ଉପନ୍ୟାସ ମାନ ମୁଖ୍ୟତଃ ରୋମାନ୍‌ସଧର୍ମୀ ଓ ଐତିହାସିକ ଉପନ୍ୟାସ ଥିବାକଥା ପୂର୍ବେ ଉଲ୍ଲେଖ କରାଯାଇଛି । ଏହି ପରିସ୍ଥିତିରେ ପ୍ୟାରୀଚାନ୍ଦ ଠାକୁରଙ୍କର 'ଆଲେଲ୍ ଘରର ଦୁଲାଲ୍ ।" (୧୮୫୮) ଉପନ୍ୟାସରେ ସାମାଜିକ ଆଭିମୁଖ୍ୟର ଆଦ୍ୟଅନୁଶୀଳନ ଓ ତାହାର ପରିଣତି ପୂର୍ବେ ସୂଚିତ ହୋଇଛି । ଭାଷାତତ୍ତ୍ୱବିତ୍ ସାର୍ ଜନ୍ ବୀମ୍‌ସ ଏହି ଉପନ୍ୟାସଟିର ଉଚ୍ଛ୍ୱସିତ ପ୍ରଶଂସା କରି ଲେଖିଥିଲେ—X X X Might fairly claim to be ranked with some of the best Comic

(୧) ଭାରତୀୟ ନବ୍ୟନ,—ବ୍ରହ୍ମାନନ୍ଦ ସିଂହ, ପୃଷ୍ଠା—୧୪୧-୧୪୨

**novels in our own language !"** ଅର୍ଥାତ୍ ଇଂରାଜୀ ସାହିତ୍ୟରେ ହାସ୍ୟରସ ଧର୍ମୀ ଶ୍ରେଷ୍ଠ ଉପନ୍ୟାସମାନଙ୍କ ସହିତ ଏହି ଉପନ୍ୟାସ ସମାନକୋଟୀ ଦାବିକରିପାରେ । ଆଲୋଚିତ ଉପନ୍ୟାସର ଏପରି ଆଦର ଓ ଲୋକପ୍ରିୟତା ସତ୍ତ୍ୱେ ବଙ୍କିମଚନ୍ଦ୍ର ଓ ରମେଶ ଚନ୍ଦ୍ର ପ୍ରମୁଖଙ୍କ ରୋମାନ୍ସ ଓ ଐତିହାସିକ ଉପନ୍ୟାସ ମାନଙ୍କର ରୋମାଣ୍ଟିସିଜମ୍ ମଧ୍ୟରେ ଥେକ୍‌ରେ ବା ପ୍ୟାରୀଚାନ୍ଦ ଠାକୁରଙ୍କର ନୂତନ ଅଭିମୁଖ୍ୟ ସମ୍ପୂର୍ଣ୍ଣ ନିଷ୍ପ୍ରଭ ହୋଇପଡ଼ିଥିଲା ।

ମାତ୍ର ଓଡ଼ିଆ ଉପନ୍ୟାସରେ ଫକୀରମୋହନ ତାଙ୍କ ସମସାମୟିକ ରୁଚି, ସ୍ୱାଦ ଓ ପୃଷ୍ଠଭୂମିର ପ୍ରତିକୂଳାଚରଣ କରି ଓଡ଼ିଆ ଉପନ୍ୟାସର ଯେଉଁ ମୋଡ଼ ଫେରାଇଲେ ତାହା କାହ୍ନୁଚରଣଙ୍କ ପର୍ଯ୍ୟନ୍ତ ସୁଦ୍ଧା ଓଡ଼ିଆ ଉପନ୍ୟାସର ଗତିପଥକୁ ନିୟନ୍ତ୍ରିତ କରିଛି । ଅତୀତର ଐତିହ୍ୟରୁ ସ୍ୱପ୍ନପ୍ରବଣତା ଓ ଦୃଷ୍ଟି ପ୍ରତ୍ୟାହାର କରି ଉପସ୍ଥିତ ବର୍ତ୍ତ-ମାନରେ ସମାଜର କଠୋର ଓ ବିକଟ ବାସ୍ତବତା ପ୍ରତି ଫକୀରମୋହନ ଯେପରି ଲେଖକ, ଚିନ୍ତକ ଓ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ, ପୁଣି ରୋମାନ୍ସଧର୍ମୀ ଐତିହାସିକ ଉପନ୍ୟାସ ପରିବର୍ତ୍ତେ ସମସ୍ୟାଧର୍ମୀ ସାମାଜିକ ଉପନ୍ୟାସର ଧାରା ପ୍ରବର୍ତ୍ତନ କରିଥିଲେ, ତାହା କେବଳ ଓଡ଼ିଆ ଉପନ୍ୟାସ ନୁହେଁ, ସମଗ୍ର ଭାରତୀୟ ଉପନ୍ୟାସର ଅଭିବ୍ୟକ୍ତିରେ ଏକ ଯୁଗାନ୍ତର ସୃଷ୍ଟି କରିଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । (୨) ଫକୀରମୋହନଙ୍କ ଉପନ୍ୟାସର ଅଭିବ୍ୟକ୍ତିରେ ଏହି ଯୁଗାନ୍ତର ସୃଷ୍ଟି ତାଙ୍କୁ ବିଶ୍ୱସାହିତ୍ୟରେ ପ୍ରତିଷ୍ଠା ପ୍ରଦାନ କରିଛି । ତାଙ୍କର ରୀତିକୁ ଗୁର୍ଲିଏ ଡିକେନ୍ସଙ୍କ ସହ ତାଙ୍କର ହାସ୍ୟରସକୁ ଫିଲ୍‌ଡ଼ିଂଙ୍କ ପ୍ରହସନ ସହ ତୁଳନା କରାଗଲାବେଳେ ତାଙ୍କ ଉପନ୍ୟାସର ଚରିତ୍ର ଚିତ୍ରଣ, ରୀତି, କଥାବସ୍ତୁ ଶୈଳୀ ଆଦି ଉପନ୍ୟାସର ସାମଗ୍ରିକ ରୂପକୁ ହାର୍ଡିଙ୍କ ଉପନ୍ୟାସ ସହିତ ତୁଳନା କରା-ଯାଇଛି ଏହି ଗବେଷଣା ସନ୍ଦର୍ଭରେ ।

ଅତଏବ ହାର୍ଡି ଉପସ୍ଥିତ ବର୍ତ୍ତମାନରେ ସମାଜର କଠୋର ଓ ବିକଟ ବାସ୍ତବତାକୁ ତାଙ୍କ ଉପନ୍ୟାସରେ ଆନୟନ କରି ବିଶ୍ୱସାହିତ୍ୟରେ ଯେଉଁ ସ୍ୱତନ୍ତ୍ର ସ୍ଥାନ ହାସଲ କରିଛନ୍ତି ଓ ଅନ୍ୟମାନଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି, ଅନୁରୂପଭାବେ ଫକୀରମୋହନ ସେହି ସମ୍ମାନର ଅଧିକାରୀ । ତେଣୁ ଏହି ଦୁଇ ଔପନ୍ୟାସିକଙ୍କ ପ୍ରଭାବ ଓ ପ୍ରତିଷ୍ଠାକୁ ବିଶ୍ୱ-ସାହିତ୍ୟରେ ଅସ୍ୱୀକାର କରାଯାଇନପାରେ ।

---

(୨) ଫକୀର ମୋହନ ସମୀକ୍ଷା, ପୃଷ୍ଠା—୨୪/୨୫ ।

## ଉପସଂହାର :

"ଆମେରିକୀୟ ଔପନ୍ୟାସିକ ହଥର୍ଣ୍ଣ ଓ ଓଡ଼ିଆ ଔପନ୍ୟାସିକ ଫକୀର ମୋହନ— ଏକ ତୁଳନାତ୍ମକ ଅଧ୍ୟୟନ"—ଶୀର୍ଷକ ଏହି ଗବେଷଣାତ୍ମକ ସନ୍ଦର୍ଭର ୭ଟି ଅଧ୍ୟାୟରେ ବିଭିନ୍ନ ଯୁକ୍ତି, ଉଦାହରଣ ଆଦି ଦର୍ଶାଯାଇ ଔପନ୍ୟାସିକ ହଥର୍ଣ୍ଣ ଓ ଫକୀରମୋହନଙ୍କ ବ୍ୟକ୍ତିଗତ ଜୀବନ ଠାରୁ ସାହିତ୍ୟ-ପ୍ରତିଭା ପର୍ଯ୍ୟନ୍ତ ତୁଳନା କରାଯାଇଛି । ଏହା ପୂର୍ବରୁ ଔପନ୍ୟାସିକ ଫକୀରମୋହନଙ୍କୁ ବିଶ୍ୱର କୌଣସି ପ୍ରତିଷ୍ଠିତ ସାହିତ୍ୟିକଙ୍କ ସହ ଏତେଟା ଅନ୍ତରଙ୍ଗ ଭାବେ ଓ ବିସ୍ତୃତ ଭାବେ ତୁଳନା କରାଯାଇଥିବାର ପରିଲକ୍ଷିତ ହୁଏନାହିଁ । ଅତଏବ ଏହି ବିପୁଳକାୟ ଆଲୋଚନାରେ ଫକୀରମୋହନଙ୍କ ସ୍ଥାନକୁ ଯେ ବିଶ୍ୱସାହିତ୍ୟ-ଦରବାରରେ ଆହୁରି ଦୃଢ଼ ଓ ଆହୁରି ବଳିଷ୍ଠ କରିଦେବାର ଯଥାସାଧ୍ୟ ପ୍ରୟାସ କରାଯାଇଛି ବୋଲି କୁହାଯାଇପାରେ । ପୁଣି ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ, ଯୁଗଧର୍ମ ଓ ବ୍ୟକ୍ତିଗତ ଅଭିରୁଚିରେ ହଥର୍ଣ୍ଣ ଓ ଫକୀରମୋହନ ଥିଲେ ଏକାତ୍ମ, ଯାହାକି ତାଙ୍କ ସାହିତ୍ୟ ସୃଷ୍ଟିରେ ଅତି ମନୋଜ୍ଞ ଭାବରେ ପ୍ରକାଶ ପାଇଛି, ବ୍ୟକ୍ତିଗତ ଜୀବନରେ ଅତି ସ୍ୱଚ୍ଛ ଭାବେ ପ୍ରକଟିତ ହୋଇଛି ଓ ସାର୍ବଜନୀନ ସତ୍ୟ ପ୍ରତିଷ୍ଠା କ୍ଷେତ୍ରରେ ଉଭୟଙ୍କ ଚିନ୍ତା ଓ ଚେତନାକୁ ଏକ ତଥା ଅଭିନ୍ନ ବୋଲି ପ୍ରତିପାଦିତ କରିଛି ।

———

# ସହାୟକ ଗ୍ରନ୍ଥସୂଚୀ

## ଓଡ଼ିଆ


୧ । ଫକୀରମୋହନ ଗ୍ରନ୍ଥାବଳୀ—କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ

୨ । ମାମୁ—ଫକୀରମୋହନ ସେନାପତି, ଫ୍ରେଣ୍ଡସ୍ ପବ୍ଲିଶର୍ସ, ୩ୟ ସଂସ୍କରଣ, ୧୯୮୧

୩ । ଲଛମା ,, ,, , ,, ;, , ୨ୟ ସଂସ୍କରଣ, ୧୯୭୯

୪ । ପ୍ରାୟଶ୍ଚିତ୍ତ—ଫକୀରମୋହନ ସେନାପତି, ଗ୍ରନ୍ଥମନ୍ଦିର, ପ୍ରଥମ ସଂସ୍କରଣ ।

୫ । ଛ'ମାଣ ଆଠଗୁଣ୍ଠ— ,, ,, , ନାଳନ୍ଦା, ପ୍ରଥମ ସଂସ୍କରଣ ।

୬ । ଆତ୍ମଜୀବନ ଚରିତ—ଫକୀରମୋହନ ସେନାପତି, ନାଳନ୍ଦା, ପ୍ରଥମ ସଂସ୍କରଣ, ୧୯୮୧

୭ । ସରସ୍ୱତୀ ଫକୀରମୋହନ—ଡକ୍ଟର ମାୟାଧର ମାନସିଂହ, ଗ୍ରନ୍ଥମନ୍ଦିର, ୧୯୭୨

୮ । ଓଡ଼ିଆ ସାହିତ୍ୟରେ ତ୍ରିବେଣୀ ଯୁଗ—ଯଦୁନାଥ ଦାଶମହାପାତ୍ର, ନାଳନ୍ଦା, ପ୍ରଥମ ସଂସ୍କରଣ, ୧୯୮୦

୯ । ଓଡ଼ିଆ ସାହିତ୍ୟର ଇତିହାସ—ଡକ୍ଟର ମାୟାଧର ମାନସିଂହ, ଗ୍ରନ୍ଥମନ୍ଦିର, ୧୯୮୧

୧୦ । ଓଡ଼ିଆ ଉପନ୍ୟାସ—ଡକ୍ଟର କୃଷ୍ଣଚରଣ ବେହେରା, ପ୍ରକାଶକ—ଜଗନ୍ନାଥ ରଥ ୧୯୬୮

୧୧ । ଛ'ମାଣ ଆଠଗୁଣ୍ଠ ଏକ ଅଧ୍ୟୟନ—ଶ୍ରୀମ ଦାସ, ନାଳନ୍ଦା, ଚତୁର୍ଥ ସଂସ୍କରଣ, ୧୯୮୨

୧୨ । ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ (୧୮୧୧-୧୯୨୦)—ଡକ୍ଟର ଶ୍ରୀନିବାସ ମିଶ୍ର, ପ୍ରକାଶକ—ବିଦ୍ୟାପୁରୀ, ପ୍ରଥମ ପ୍ରକାଶ, ୧୯୭୮

୧୩ । ବ୍ୟାସକବି ଫକୀରମୋହନ—ଡକ୍ଟର ନଟବର ସାମନ୍ତରାୟ, ଲବଣ୍ୟ ଭବନ ଭୁବନେଶ୍ୱର, ଦ୍ୱିତୀୟ ସଂସ୍କରଣ—୧୯୭୨

୧୪ । ଆଧୁନିକ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ—ଡକ୍ଟର ନଟବର ସାମନ୍ତରାୟ, ପ୍ରଥମ ସଂସ୍କରଣ

୧୫ । ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି—ଡକ୍ଟର ନଟବର ସାମନ୍ତରାୟ, ,,

୧୬ । ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)— ,, ,, ,,

୧୭ । ଗଳ୍ପସ୍ୱଳ୍ପ ପ୍ରଥମ ଓ ଦ୍ୱିତୀୟ ଖଣ୍ଡ—ଫକୀରମୋହନ ସେନାପତି, ନାଳନ୍ଦା

୧୮ । ସାହିତ୍ୟ ଓ ସମାଲୋଚନା—ଡକ୍ଟର କୁଞ୍ଜବିହାରୀ ଦାଶ, ଓଡ଼ିଶା ବୁକ୍‌ଷ୍ଟୋର, ପ୍ରଥମ ସଂସ୍କରଣ, ୧୯୮୦

୧୯ । ଫକୀରମୋହନ ସମୀକ୍ଷା—ସୁରେନ୍ଦ୍ର ମହାନ୍ତି, ନିଉଷ୍ଟୁଡେଣ୍ଟସ୍ ଷ୍ଟୋର, ୧୯୭୨

୨୦ । ଚିତ୍ରାୟୁ ନୟନ—ବ୍ରହ୍ମାନନ୍ଦ ସିଂହ, ବିଜୟ ବୁକ୍ ଷ୍ଟୋର, ବ୍ରହ୍ମପୁର, ପ୍ରଥମ ପ୍ରକାଶ- ୧୯୭୬

୨୧ । ପଦ୍ମମାଳୀ—ଉମେଶ ଚନ୍ଦ୍ର ସରକାର, ୪ମ ସଂସ୍କରଣ, ୧୯ ଅକ୍ଟୋବର, ୧୯୮୮ ଢେଙ୍କାନାଳ

୨୨ । ରାମଶଙ୍କର ଗ୍ରନ୍ଥାବଳୀ—ପ୍ରଥମ ସଂସ୍କରଣ

୨୩ । ଆଧୁନିକ ଓଡ଼ିଆ ସାହିତ୍ୟ—ଡକ୍ଟର ଜାନକୀବଲ୍ଲଭ ମହାନ୍ତି, ଗ୍ରନ୍ଥମନ୍ଦିର

୨୪ । ଓଡ଼ିଆ ଉପନ୍ୟାସର ପରିଚୟ, ସମ୍ପାଦନା—ଭୋଳାନାଥ ରାଉତ, ପଠାଣି ପଟ୍ଟନାୟକ } ପ୍ରଥମ ସଂସ୍କରଣ

୨୫ । ଓଡ଼ିଆ ଭାଷା ଓ ସାହିତ୍ୟ—ପଣ୍ଡିତ ନୀଳକଣ୍ଠ ଦାସ, ପ୍ରଥମ ସଂସ୍କରଣ ।

୨୬ । ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଇତିହାସ—ଅସିତ କବି, ଗ୍ରନ୍ଥମନ୍ଦିର, ପ୍ରଥମ ସଂସ୍କରଣ

୨୭ । କଥାସମ୍ରାଟ ଫକୀରମୋହନ—ଖଗେନ୍ଦ୍ର ମଲ୍ଲିକ, ବୁକ୍‌ସ ଏଣ୍ଡ ବୁକ୍‌ସ, ,,

୨୮ । ଯୁଗସ୍ରଷ୍ଟା ଫକୀରମୋହନ—ସର୍ବେଶ୍ୱର ଦାସ, ଗ୍ରନ୍ଥମନ୍ଦିର

୨୯ । ସ୍ୱାଧୀନୋତ୍ତର ଓଡ଼ିଆ ସାହିତ୍ୟ—ସମ୍ପାଦନା : ଡକ୍ଟର ରତ୍ନାକର ଚଇନି, ସାର୍ଥମହଲ

## ଇଂରାଜୀ

1) Six American Novelists of the nineteenth century, Editor—Ricard Foster. Publisher—L. B. D , 1968.

2. History of American literature—Wasington Press, 1978

3. A Brief History of American Novel—Hyatt.

4. The House of the Seven Gables—Hawthorne

5. The Scarlet Letter—Nathniel Hawthorne

6. The Marble Faun— ,, ,,

7. The Blithadale Romance—,, ,,

8. American literature—Vol, 1-2, By Darrel Abel, Publisher—Barron's Educational Series, I. N. C. Wood Burcy, Newyork —1963

9. The Growth of English Novel—E. A. Baker,

10. The Art offiction—Henery James.

11. Modern Fiction astudies of value—Muller

12. World History—C. D. Hazen

13 Encyclopaedia Britanica—14th Ed. Novel

14. History of Orissa—Dr. H. K. Mahatab

15 History of Orissa—Vol-II. R. D. Banerjee

16. Prose fiction—(Harvard's Classic-Lectures)

17. Aspect of the Novel—E. M, Forster

18. Oliver Twist—Charter Dickens.

19. Early Victorian Novelist—Devid Cecil

20. History of Oriya literature—Dr. M. Mansingha (Sahitya Academy Publication)

21. Modern Oriya literature—Prof. Priyaranjan Sen

22. The Leather-Stocking Tales—J. F. cooper, 1850

23. James Fanimore Cooper—By : Robert E. Spiller

24. Mobey Dick—Herman Melville

25. Pierre— „ „

26. The wings of the Dove—Henery James

27. The Golden Bowl— „ „

28. The Portrait of a lady— „ „

29. Fanshaw—Nathniel Hawthorne—1828.

30 Twice—Told Tales—American stationers co. 1837

31. The American Note book—Hawthorne— Pub By : Yale University Press, 1932

32. Form and Fable in American Fiction—Oxford University Press—1961

# ସହାୟକ ପତ୍ରପତ୍ରିକା


୧ । ଉତ୍କଳ ସାହିତ୍ୟ—୨୨ଭାଗ, ୫ମ ସଂଖ୍ୟା, ଅଗଷ୍ଟ, ୧୯୧୮

୨ । ଉତ୍କଳ ସାହିତ୍ୟ—୧।୧୦ କାର୍ତ୍ତିକ –୧୩୦୫ (ଅକ୍ଟୋବର–୧୮୯୭)

୩ । ଉତ୍କଳ ସାହିତ୍ୟ—୨।୧୧ (ନଭେମ୍ବର, ୧୮୯୮)

୪ । ଉତ୍କଳ ସାହିତ୍ୟ—୭।୪ ଶ୍ରାବଣ, ୧୩୧୦ (ଜୁଲାଇ, ୧୯୦୩)

୫ । ଉତ୍କଳ ସାହିତ୍ୟ—୧୭।୧, ୨ (ବୈଶାଖ, ଜ୍ୟେଷ୍ଠ, ୧୩୨୦)

୬ । ଉତ୍କଳ ସାହିତ୍ୟ—୨୦।୯ (ଡିସେମ୍ବର, ୧୯୧୬)

୭ । ଉତ୍କଳ ସାହିତ୍ୟ—୨।୧୦ କାର୍ତ୍ତିକ, ୧୩୦୬ (ଅକ୍ଟୋବର, ୧୮୯୮)

୮ । ଉତ୍କଳ ସାହିତ୍ୟ—୨୦।୮ ମାର୍ଗଶୀର ୧୩୨୪ (ନଭେମ୍ବର, ୧୯୧୬)

୯ । ଉତ୍କଳ ସାହିତ୍ୟ—୮।୮ ମାର୍ଗଶୀର ୧୩୧୨ (ନଭେମ୍ବର, ୧୯୦୫)

୧୦ । ଉତ୍କଳ ସାହିତ୍ୟ—୧୬ । ୫ । ୧୪

୧୧ । ଉତ୍କଳ ସାହିତ୍ୟ—୧୯ଶ ଭାଗ ଅଷ୍ଟମ ସଂଖ୍ୟା

୧୨ । ବାଲେଶ୍ୱର ସମ୍ବାଦ ବାହିକା—୧୭ । ୧୧ । ୮୧

୧୩ । ବାଲେଶ୍ୱର ସମ୍ବାଦ ବାହିକା—୭।୧ (୧ । ୮ । ୮୭୭)

୧୪ । ମୁକୁର—ବୈଶାଖ ୧୩୧୯—୭।୧ (ଏପ୍ରିଲ, ୧୯୧୨)

୧୫ । ମୁକୁର—୯ମ ଭାଗ, ୧୦ମ ସଂଖ୍ୟା—ରାମଶଙ୍କରଙ୍କ ଅଭିଭାଷଣ ।

୧୬ । ଉତ୍କଳ ଦୀପିକା—୨।୫, ୧୮୮୯—ଏଥିରେ ଗୌରୀଶଙ୍କରଙ୍କର 'ପଦ୍ମମାଳୀ' ଉପରେ ସମ୍ପାଦକୀୟ ପ୍ରକାଶ ପାଇଛି ।

୧୭ । ଡଗର—୧୬ଶ ବର୍ଷ, ୧ମ ସଂଖ୍ୟା—ଓଡ଼ିଆ ସାହିତ୍ୟର ଅନ୍ଧକାର ଯୁଗ—ସୁରେନ୍ଦ୍ର ମହାନ୍ତି ।


□□□



## ଡକ୍ଟର ନୃସିଂହ ଷଡ଼ଙ୍ଗୀ

ଡକ୍ଟର ଷଡ଼ଙ୍ଗୀ ସାଂପ୍ରତିକ ଓଡ଼ିଆ ସାହିତ୍ୟରେ ସମାଲୋଚନା ଦିଗଟିକୁ ସମୃଦ୍ଧ କରିବାରେ ଅଭିନବ ପାରଦର୍ଶିତା ଦେଖାଇଛନ୍ତି । ଜଣେ ପ୍ରୟୋଗବାଦୀ ସମୀକ୍ଷକ ଓ ନିଷ୍ଠାପର ଗବେଷକ ଭାବେ ତାଙ୍କର ଖ୍ୟାତି ସୁବିଦିତ । କୋଡ଼ିଏ ଖଣ୍ଡରୁ ଅଧିକ ଗବେଷଣା ଧର୍ମୀ ପୁସ୍ତକ ରଚନା କରି ସେ ଓଡ଼ିଆ ଗବେଷଣା ତଥା ସମାଲୋଚନାର କ୍ଷେତ୍ରକୁ ପ୍ରଶସ୍ତ କରିଛନ୍ତି । ଫକୀରମୋହନଙ୍କ କୃତି ଉପରେ ଗବେଷଣା କରି ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୮୬ ମସିହାରେ ପିଏଚ୍.ଡି ଡିଗ୍ରୀ ଓ ୧୯୯୦ ମସିହାରେ ଡି.ଲିଟ୍ ଡିଗ୍ରୀ ଲାଭ କରିଛନ୍ତି ।

ଏତଦ୍‌ଭିନ୍ନ ଡକ୍ଟର ଷଡ଼ଙ୍ଗୀ ଜଣେ ସାର୍ଥକ ରୋମାଣ୍ଟିକ କବି । 'ବିଦଗ୍ଧ ହସିନା', 'ଲୁହବୋଲ କହିଯାଏ ନଈ', 'ନିଷିଦ୍ଧ ପଦ୍ମବନ', 'ଦୂରନ୍ତ ଦେହି ହୃଦୟରେ', ଆଦି କବିତା ଗ୍ରନ୍ଥ ତାଙ୍କ ପରୀକ୍ଷାଧର୍ମୀ ରୋମାଣ୍ଟିକ କାବ୍ୟ-ଚେତନାର ପରିଚାୟକ ।

ଡକ୍ଟର ଷଡ଼ଙ୍ଗୀଙ୍କ ଜନ୍ମ ଐତିହାସିକ ଯାଜପୁର ସହରର ବିଭୂତିପୁର ଗ୍ରାମରେ, ୧୯୪୪ ମସିହା ଅକ୍ଟୋବର ମାସ ୨୧ ତାରିଖରେ । ୧୯୬୬ ମସିହାରେ ଏନ୍.ସି. କଲେଜ ଯାଜପୁରରୁ ସ୍ନାତକ ଡିଗ୍ରୀ ଓ ୧୯୬୯ ମସିହାରେ ରେଭେନ୍ସା କଲେଜରୁ ଓଡ଼ିଆ ଏମ୍.ଏ ରେ ପ୍ରଥମ ଶ୍ରେଣୀ ଲାଭକରି ଉତ୍ତୀର୍ଣ୍ଣ ହେବାପରେ ୧୯୮୦ ମସିହାରୁ ଅଧ୍ୟାପକ ଭାବେ ଡକ୍ଟର ଷଡ଼ଙ୍ଗୀ କାର୍ଯ୍ୟରତ । ଏହି ପ୍ରତିଭାଧରଙ୍କ ଠାରୁ ଓଡ଼ିଆ ସାହିତ୍ୟ ଭବିଷ୍ୟତ ପାଇଁ ଅଧିକ କିଛି ଆଶା କରିବା ସ୍ୱାଭାବିକ ।